# ଶ୍ରୀମଦ୍ଭାଗବତ

## ସଚିତ୍ର

## ନବମସ୍କନ୍ଧ

ସଂସ୍କୃତଶ୍ଳୋକ, ଗଦ୍ୟାନୁବାଦ,

ଭକ୍ତକବି ଜଗନ୍ନାଥଦାସଙ୍କ ପଦ୍ୟାନୁବାଦ

ଓ

ଟୀକା ସମ୍ବଳିତ

ସମ୍ପାଦକ—

ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଏମ. ଏ. ବି. ଏଲ୍

ପ୍ରକାଶକ—ଅରୁଣୋଦୟ ପ୍ରେସ,

ପ୍ରଥମ ସଂସ୍କରଣ

ପ୍ରାପ୍ତିସ୍ଥାନ—ଅରୁଣୋଦୟ ପ୍ରେସ,

ବାଲୁବଜାର

ପୋ: ଅ: ଚାନ୍ଦନୀଚୌକ, କଟକ

୧୯୫୦

ମୂଲ୍ୟ ଟ ୪ (

# ନବମସ୍କନ୍ଧର ପ୍ରସଙ୍ଗ

ନବମସ୍କନ୍ଧ ବର୍ଣ୍ଣିତ ବିଷୟମାନ ସାଧାରଣତଃ ବଂଶାନୁଚରିତ ବୋଲି ପ୍ରସିଦ୍ଧ, ଏହି ସ୍କନ୍ଧରେ ପୁଣ୍ୟଭୂମି ଭାରତର ପ୍ରସିଦ୍ଧ ରାଜବଂଶମାନଙ୍କର ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ପ୍ରସିଦ୍ଧ ଲୋକମାନଙ୍କର ଗୁଣଗାଥା ଶ୍ରବଣ କରିବାକୁ ସମସ୍ତଙ୍କର ମନ ବଳିଥାଏ । ଏହି ନବମ ସ୍କନ୍ଧରେ ସୁଦ୍ୟୁମ୍ନ ପ୍ରସଙ୍ଗ, ପୃଷଧ୍ର ଚରିତ କରୁଷାଦି ବଂଶ ଓ ଶର୍ଯାତିବଂଶ ପ୍ରଥମ ତିନି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ତଦନନ୍ତର ଚତୁର୍ଥ ଓ ପଞ୍ଚମ ଅଧ୍ୟାୟରେ ନାଭାଗ ଓ ଅମ୍ବରୀଷ ଉପାଖ୍ୟାନ ଓ ଅମ୍ବରୀଷଙ୍କ ପ୍ରତି ଦୁର୍ବାସାଙ୍କର ଅଭିଶାପ ବର୍ଣ୍ଣିତ ହୋଇଅଛି । ସେହି ଅମ୍ବରୀଷ କିଏ, ତାହାଙ୍କ ବଂଶାନୁଚରିତ ଷଷ୍ଠ ଅଧ୍ୟାୟରେ ବର୍ଣ୍ଣିତ; ରାଜା ହରିଶ୍ଚନ୍ଦ୍ର ସତ୍ୟପାଳନ ନିମିତ୍ତ ଆଜି ସୁଦ୍ଧା ଜଗତରେ ପ୍ରସିଦ୍ଧି ଲାଭ କରିଅଛନ୍ତି । ସପ୍ତମ ଅଧ୍ୟାୟରେ ରାଜା ସଗର ଉପାଖ୍ୟାନ ଓ ଭଗୀରଥ କର୍ତ୍ତୃକ ଗଙ୍ଗା ଆନୟନ ବର୍ଣ୍ଣିତ ହୋଇଅଛି । ସେହି ଭଗୀରଥଙ୍କ ବଂଶରେ ପୁଣ୍ୟ ଶ୍ଳୋକ ଶ୍ରୀରାମଚନ୍ଦ୍ର ଜନ୍ମିଥିଲେ, ଶ୍ରୀରାମଚନ୍ଦ୍ରଙ୍କର ପୁତ୍ର ଲବ କୁଶ, ଏମାନେ ସୂର୍ଯ୍ୟବଂଶାବତଂଶ। ତ୍ରୟୋଦଶ ଅଧ୍ୟାୟରେ ଇକ୍ଷ୍ୱାକୁନନ୍ଦନ ନିମି ଉପାଖ୍ୟାନ ବର୍ଣ୍ଣିତ, ପରଶୁରାମ ଭଗବାନଙ୍କର ଦଶାବତାର ମଧ୍ୟରେ ଗଣ୍ୟ, ସେ ବ୍ରାହ୍ମଣର ପ୍ରାଧାନ୍ୟ ରକ୍ଷା ଲାଗି ବ୍ରାହ୍ମଣ ନିନ୍ଦୁକ କ୍ଷତ୍ରିୟମାନଙ୍କୁ ନିଧନ କରି ବ୍ରାହ୍ମଣର ପ୍ରତିଷ୍ଠା ସ୍ଥାପନ କରିଥିଲେ । ପରଶୁରାମଙ୍କ ଦ୍ୱାରା ନିକୃଷ୍ଟ କ୍ଷତ୍ରିୟମାନେ ନିହତ ହେଲାପରେ ପୁନଶ୍ଚ ଧାର୍ମିକ ବ୍ରାହ୍ମଣ ଭକ୍ତ, କ୍ଷତ୍ରିୟମାନଙ୍କର ଉତ୍ପତ୍ତି ହୋଇଥିଲା । ବ୍ରାହ୍ମଣମାନେ ସମାଜର ଶିର ସ୍ୱରୂପ ଓ ଅଗ୍ରଗଣ୍ୟ, ବ୍ରାହ୍ମଣଙ୍କୁ ସ୍ୱୟଂ ନାରାୟଣଙ୍କର ପ୍ରତିମୂର୍ତ୍ତି ବୋଲି କଳ୍ପନା କରାଯାଏ । ପୁଣ୍ୟଭୂମି ଭାରତର ଇତିହାସରେ ଏହା ଯୁଗେ ଯୁଗେ ପ୍ରତିପାଦିତ ହୋଇଅଛି ଯେ କ୍ଷତ୍ରିୟମାନେ ବ୍ରାହ୍ମଣମାନଙ୍କ ପ୍ରତି ସର୍ବଦା ଭକ୍ତିମାନ ରହି ସେମାନଙ୍କର ମର୍ଯ୍ୟାଦା ରକ୍ଷା କରୁଥିବା ପର୍ଯ୍ୟନ୍ତ ପୃଥିବୀର କାର୍ଯ୍ୟ ଠିକ ଚାଲିଥିବ । ଯେତେବେଳେ ପାପର ଭାର ବଢିଯାଏ ସେତେବେଳେ କ୍ଷତ୍ରିୟ, ବୈଶ୍ୟ, ଶୂଦ୍ରାଦି ବ୍ରାହ୍ମଣମାନଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରିଥାଆନ୍ତି । ବ୍ରାହ୍ମଣମାନଙ୍କ ପ୍ରତି ଅବଜ୍ଞା ମନୁଷ୍ୟ ନାସ୍ତିକ ଭାବର ପ୍ରାଧାନ୍ୟ ହେତୁ ଘଟିଥାଏ । ବ୍ରାହ୍ମଣଙ୍କୁ ସେତେବେଳେ ନାରାୟଣଙ୍କର ସ୍ୱରୂପ ବୋଲି କଳ୍ପନା କରିବାକୁ ଅନ୍ୟମାନେ ପଶ୍ଚାତ୍ପଦ ହୁଅନ୍ତି । ବ୍ରାହ୍ମଣନିନ୍ଦା ଓ ବ୍ରହ୍ମ ନିନ୍ଦା ଉଭୟ ମାନବଜାତିର ଅବନତିର ହେତୁ ଅଟେ । ପରଶୁରାମ ଥରେ ସେହି ବ୍ରହ୍ମନିନ୍ଦୁକ କ୍ଷତ୍ରିୟମାନଙ୍କୁ ବିନାଶ କରିଥିଲେ । ତଦନନ୍ତର ବିଶ୍ୱାମିତ୍ର ଆବିର୍ଭୂତ ହୋଇଥିଲେ । ଷୋଡ଼ଶ ଅଧ୍ୟାୟରେ ବିଶ୍ୱାମିତ୍ର ଓ ତାଙ୍କର ବଂଶ ପ୍ରସଙ୍ଗବର୍ଣ୍ଣିତ ହୋଇ ଅଛି । ନିକୃଷ୍ଟ କ୍ଷତ୍ରିୟମାନେ ନିହତ ହେଲାପରେ ପୁନଶ୍ଚ କ୍ଷତ୍ରିୟବଂଶର ବୃଦ୍ଧି ହୋଇଥିଲା । ରାଜା ଯଯାତି ଏହି କ୍ଷତ୍ରିୟମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଯଯାତିଙ୍କ ପ୍ରସଙ୍ଗରେ କୁରୁବଂଶ, ଯଦୁବଂଶ ପ୍ରଭୃତିର ପ୍ରସଙ୍ଗ କଥିତ ହୋଇଅଛି । ଯେତେବେଳେ ପୁଣ୍ୟର ଛତ୍ର, ଏକଦିଗରେ ଜାଜ୍ୱଲ୍ୟମାନ, ଅନ୍ୟ ଦିଗରେ ପାପର ଅନ୍ଧକାର ପୃଥିବୀକୁ ଆଚ୍ଛନ୍ନ କରିଥାଏ । ପାପ ଓ ପୁଣ୍ୟ ମଧ୍ୟରେ ଚିରକାଳ କଷାକଷି ଚାଲିଅଛି । ପାଣ୍ଡବବଂଶ ପୁଣ୍ୟର ଛତ୍ର ଦୁର୍ଯ୍ୟୋଧନାଦି କୌରବଗଣ ତହିଁରେ ପାପର ଛତ୍ର । ଯଦୁବଂଶରେ ଆନକ ଦୁନ୍ଦୁଭି ବସୁଦେବ ପୁଣ୍ୟର ଛତ୍ର, ପକ୍ଷାନ୍ତରେ କଂସ ଜରାସନ୍ଧ ପ୍ରଭୃତି ପାପର କାଳିମା । ଏହି ପ୍ରସଙ୍ଗମାନ ଓ ଯଦୁବଂଶ ବିଦର୍ଭବଂଶ ପ୍ରଭୃତି ସପ୍ତଦଶ ଅଧ୍ୟାୟରୁ ଚତୁର୍ବିଂଶ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣନା କରି ଶ୍ରୀ ଶୁକଦେବ ଭଗବାନ୍ ଶ୍ରୀକୃଷ୍ଣଙ୍କ ମାନବଦେହ ଧାରଣର ଉଦ୍ଦେଶ୍ୟ ସୂଚନା ଦେଇ ରାଜା ପରୀକ୍ଷିତ ମନରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ପୁଣ୍ୟ ଚରିତ ଶୁଣିବା ଲାଗି ଔତ୍ସୁକ୍ୟ ଜନ୍ମାଇଥିଲେ । ଦଶମ ସ୍କନ୍ଧରେ ସେହି ପୁଣ୍ୟ ଶ୍ଳୋକ ଶ୍ରୀକୃଷ୍ଣଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ।

# ନବମ ସ୍କନ୍ଧର ସୂଚୀପତ୍ର



ନବମସ୍କନ୍ଧର ସୂଚୀ ସମାପ୍ତ

# ଚିତ୍ରସୂଚୀ

# ଶ୍ରୀମଦ୍ଭାଗବତ

## ନବମସ୍କନ୍ଧ



### ପ୍ରଥମ ଅଧ୍ୟାୟ

ସଦ୍ଧର୍ମ୍ମ ଶୁଦ୍ଧସତ୍ତ୍ୱାନା ମନ୍ତରଙ୍ଗେଶସତ୍କଥା ।
ସୂର୍ଯ୍ୟସୋମାନ୍ୱୟାଖ୍ୟାନୈରଧୁନା ସଙ୍ଗତୋଚ୍ୟତେ ॥
ତତ୍ର ତୁ ପ୍ରଥମେଽଧ୍ୟାୟେ ବୈବସ୍ୱତସୁତାନ୍ୱୟେ ।
ସୋମବଂଶପ୍ରବେଶୋକ୍ତ୍ୟୈ ସୁଦ୍ୟୁମ୍ନ ସ୍ତ୍ରୀତ୍ୱମୁଚ୍ୟତେ ॥ ( ଶ୍ରୀଧରସ୍ୱାମୀ )

---

**ବୈବସ୍ୱତ ମନୁବଂଶ ଓ ଚନ୍ଦ୍ରବଂଶ କଥନ ଓ ସୁଦ୍ୟୁମ୍ନର ସ୍ତ୍ରୀତ୍ୱପ୍ରାପ୍ତି ।**

ନବମ ସ୍କନ୍ଧରେ ଭଗବାନଙ୍କର ଚରିତ ବର୍ଣ୍ଣନା ପ୍ରସଙ୍ଗରେ ସୂର୍ଯ୍ୟ, ଚନ୍ଦ୍ରବଂଶ ବିଷୟ ବର୍ଣ୍ଣନା କରାଯାଇଅଛି । ପ୍ରଥମ ଅଧ୍ୟାୟରେ ବୈବସ୍ୱତ ମନୁବଂଶରେ ସୁଦ୍ୟୁମ୍ନ ସ୍ତ୍ରୀରୂପ ଧାରଣ ପୂର୍ବକ ସୋମବଂଶ ଉତ୍ପତ୍ତି କରିବା ବିଷୟ ବର୍ଣ୍ଣିତ ହୋଇଅଛି ।

---

ନବମସ୍କନ୍ଧେ ଈଶକଥା, ସୂର୍ଯ୍ୟ ଚନ୍ଦ୍ର ବଂଶ ବ୍ୟବସ୍ଥା ।
ତାହାର ପ୍ରଥମ ଅଧ୍ୟାରେ ବୈବସ୍ୱତ ମନୁ ବଂଶରେ—
ସୁଦ୍ୟୁମ୍ନ ନାରୀରୂପ ହୋଇ ଚନ୍ଦ୍ରବଂଶକୁ ଉପୁଜାଇ ॥

ଶ୍ରୀ ରାଜୋବାଚ

ମନ୍ୱନ୍ତରାଣି ସର୍ବାଣି ତ୍ୱୟୋକ୍ତାନି ଶ୍ରୁତାନି ମେ ।
ବୀର୍ଯ୍ୟାଣ୍ୟନନ୍ତବୀର୍ଯ୍ୟସ୍ୟ ହରେସ୍ତତ୍ର କୃତାନି ଚ । ୧ ।
ଯୋଽସୌ ସତ୍ୟବ୍ରତୋ ନାମ ରାଜର୍ଷିର୍ଦ୍ରବିଡ଼େଶ୍ୱରଃ ।
ଜ୍ଞାନଂ ଯୋଽତୀତକଳ୍ପାନ୍ତେ ଲେଭେ ପୁରୁଷସେବୟା । ୨ ।
ସ ବୈ ବିବସ୍ୱତଃ ପୁତ୍ରୋ ମନୁରାସୀଦିତି ଶ୍ରୁତମ୍ ।
ତ୍ୱତ୍ତସ୍ତସ୍ୟ ସୁତାଃ ପ୍ରୋକ୍ତା ଇକ୍ଷ୍ୱାକୁପ୍ରମୁଖା ନୃପାଃ ।୩।
ତେଷାଂ ବଂଶଂ ପୃଥଗ୍ ବ୍ରହ୍ମନ୍ ବଂଶାନୁଚରିତାନି ଚ ।
କୀର୍ତ୍ତୟସ୍ୱ ମହାଭାଗ ନିତ୍ୟଂ ଶୁଶ୍ରୂଷତାଂ ହି ନଃ । ୪ ।

---

ଶ୍ରୀ ରାଜା ପରୀକ୍ଷିତ କହିଲେ :—

ହେ ବ୍ରହ୍ମନ୍ ! ଆପଣଙ୍କ ନିକଟରୁ ସମସ୍ତ ମନ୍ୱନ୍ତରର ପ୍ରସଙ୍ଗ ଏବଂ ସେହି ମନ୍ୱନ୍ତରରେ ଅନନ୍ତ ବୀର୍ଯ୍ୟଶାଳୀ ଶ୍ରୀହରିଙ୍କର କର୍ମମାନଙ୍କର ବର୍ଣ୍ଣନା ମୁଁ ସମ୍ୟକ୍‌ରୂପେ ଶ୍ରବଣ କରିଅଛି । ୧ ।

ଦ୍ରାବିଡ଼ ଦେଶାଧିପତି ରାଜର୍ଷି ସତ୍ୟବ୍ରତଙ୍କର ଅତୀତ କଳ୍ପର ଅବସାନ କାଳରେ ଭଗବତ୍ ଆରାଧନା ଫଳରେ ସେ ତତ୍ତ୍ୱଜ୍ଞାନ ଲାଭ କରିଥିଲେ ଏବଂ ସେ ସୂର୍ଯ୍ୟପୁତ୍ର ମନୁ ହୋଇଥିଲେ । ଏହା ଆପଣଙ୍କ ନିକଟରୁ ଶ୍ରବଣ କରିଅଛି, ତାହାଙ୍କରପୁତ୍ର ଇକ୍ଷ୍ୱାକୁ ପ୍ରଭୃତିଙ୍କର ପ୍ରସଙ୍ଗ ମଧ୍ୟ ଆପଣ ବର୍ଣ୍ଣନା କରିଅଛନ୍ତି । ୨-୩ ।

ହେ ବ୍ରହ୍ମନ୍ ! ସେହି ରାଜପୁତ୍ରମାନଙ୍କର ପୃଥକ୍ ପୃଥକ୍ ବଂଶାନୁଚରିତ ନିତ୍ୟ ଶ୍ରବଣେଚ୍ଛୁ ମୋ ନିକଟରେ ସମ୍ୟକ୍‌ରୂପେ ବର୍ଣ୍ଣନା କରନ୍ତୁ । ୪ ।

---

ଶ୍ରୀ ରାଜୋବାଚ—

ଆନନ୍ଦେ ଅଭିମନ୍ୟୁ-ସୁତ
ଶୁଣି ଗୋବିନ୍ଦର ଚରିତ
ବ୍ୟାସ-ନନ୍ଦନ ମୁଖ ଚାହିଁ
ବୋଲଇ ଶିରେ କର ଦେଇ
ହେ ମୁନି ! ମନ୍ୱନ୍ତର କଥା
କହିଲ ସକଳ ବ୍ୟବସ୍ଥା
ଯେ ମନ୍ୱନ୍ତରେ ଯେବା ଦେହୀ
ଧର୍ମ୍ମ ରକ୍ଷଣେ ଅବତାହି
ଅନନ୍ତ ଯାହାର ମହିମା
କେ ଜାଣିପାରେ ଗୁଣ ସୀମା
ତୁମ୍ଭେ କହିଲ ମୁହିଁ ଶୁଣି
ବିଷ୍ଣୁର ମହିମା ପ୍ରମାଣି । ୧ ।
ଦ୍ରବିଡ଼େଶ୍ୱର ସତ୍ୟବ୍ରତ
ସେ ରାଜଋଷି ଦଇବତ
ଅତୀତ କଳ୍ପାନ୍ତରେ ଥିଲ
ଭାବେ ସେ ବିଷ୍ଣୁଙ୍କୁ ଭେଟିଲ
ନିତ୍ୟେ ଗୋବିନ୍ଦ ପାଦଧ୍ୟାୟି
ବିଷ୍ଣୁର ତହୁଁ ଶିକ୍ଷା ପାଇ
ପୁଣି ସେ ସୃଷ୍ଟି ଆଦି କାଳେ
ଜନମନ୍ତେ ବୈବସ୍ୱତ କୁଳେ
ବଇବସ୍ୱତ ମନୁ ହୋଇ
ଜନ୍ମ ଲଭିଲା ଦେହ ବହି
ପୁଣି ତାହାର ବୀର୍ଯ୍ୟେ ଜାତ
କେତେ ବା ହୋଇଲେକ ସୁତ
ଇକ୍ଷ୍ୱାକୁ ଆଦି ଯେତେ ସୁତେ
ରାଜାହୋଇଲେ ଏଜଗତେ । ୨,୩
ଏଣୁ ଅଦିତ୍ୟ କୁଳେ ଯେତେ
କହିବା ବଂଶାନୁଚରିତେ

ଯେ ଭୂତା ଯେ ଭବିଷ୍ୟାଶ୍ଚ ଭବନ୍ତ୍ୟଦ୍ୟତନାଶ୍ଚ ଯେ ।
ତେଷାଂ ନଃ ପୁଣ୍ୟକୀର୍ତ୍ତୀନାଂ ସର୍ବେଷାଂ ବଦ ବିକ୍ରମାନ୍ । ୫ ।

ଶ୍ରୀ ସୂତ ଉବାଚ ।

ଏବଂ ପରୀକ୍ଷିତା ରାଜ୍ଞା ସଦସି ବ୍ରହ୍ମବାଦୀନାମ୍ ।
ପୃଷ୍ଟଃ ପ୍ରୋବାଚ ଭଗବାନ୍ ଶୁକଃ ପରମଧର୍ମ୍ମବିତ୍ । ୬ ।

ଶ୍ରୀ ଶୁକଉବାଚ—ଶ୍ରୂୟତାଂ ମାନବୋ ବଂଶଃ ପ୍ରାଚୁର୍ଯ୍ୟେଣ ପରନ୍ତପ ।
ନ ଶକ୍ୟତେ ବିସ୍ତରତୋ ବକ୍ତୁଂ ବର୍ଷଶତୈରପି । ୭ ।
ପରାବରେଷାଂ ଭୂତାନାମାତ୍ମା ଯଃ ପୁରୁଷଃ ପରଃ ।
ସ ଏବାସୀଦିଦଂ ବିଶ୍ୱଂ କଳ୍ପାନ୍ତେଽନ୍ୟନ୍ନ କିଞ୍ଚନ । ୮ ।

---

ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ନୃପତିମାନଙ୍କର ପବିତ୍ର କୀର୍ତ୍ତିଶାଳୀ ଚରିତ ଓ ବିକ୍ରମମାନ ମୋ ନିକଟରେ କହନ୍ତୁ । ୫ ।

ଶ୍ରୀ ସୂତ କହିଲେ :—ବ୍ରହ୍ମଜ୍ଞମାନଙ୍କ ସଭାରେ ମହାରାଜ ପରୀକ୍ଷିତ ଏହିପରି ପ୍ରଶ୍ନ କରନ୍ତେ ପରମ ଧର୍ମବିତ୍ ଯୋଗୈଶ୍ୱର୍ଯ୍ୟ ଶାଳୀ ଶ୍ରୀ ଶୁକଦେବ କହିବାକୁ ଆରମ୍ଭ କଲେ । ୬ ।

ଶ୍ରୀ ଶୁକଦେବ କହିଲେ :—

ହେ ଶତ୍ରୁନାଶନ ! ପ୍ରଧାନ ପ୍ରଧାନ ମନୁବଂଶୀୟ ବ୍ୟକ୍ତିଙ୍କ ପ୍ରସଙ୍ଗ ବର୍ଣ୍ଣନା କରୁଅଛି ଶ୍ରବଣ କର ଏହା ଶତବର୍ଷରେ ସୁଦ୍ଧା କେହି ବର୍ଣ୍ଣନା କରିବାକୁ ସମର୍ଥ ହୁଏ ନାହିଁ । ୭ ।

ହେ ରାଜନ୍ ! ପରମପୁରୁଷ ଶ୍ରେଷ୍ଠ ପର ଓ ଅପରଭୂତ ସମସ୍ତଙ୍କର ଆତ୍ମାସ୍ୱରୂପ ସେହି ଶ୍ରୀହରି ମାତ୍ର କଳ୍ପାନ୍ତର ବିଦ୍ୟମାନ ଥିଲେ, ଅନ୍ୟ କେହି ନ ଥିଲେ । ୮ ।

---

ଯାହାର ବଂଶେ ଯେବା ହୋଇ
ଏ ଭୂମିତଳେ ଦେହ ବହି
ଯେବା ଚରିତ କଲେ ଯେତେ
ହେ ମୁନି ! କହ ତାହା ଅଗତେ
ମୋତେ ଏ ସଂକଟୁ ଉଦ୍ଧର
ମୁଁ ତୁମ୍ଭ ଚରଣେ କିଙ୍କର
ଭୂତ ଭବିଷ୍ୟ ବର୍ତ୍ତମାନେ
ସମ୍ପୂର୍ଣ୍ଣ ବଂଶାନୁକୀର୍ତ୍ତନେ
ଯେବା ଜଗତେ କଲେ ଯାହା
କହିବା ଯେବେ ମୋତେ ଦୟା ।୪,୫।

ଶ୍ରୀ ସୂତ ଉବାଚ—

ଏମନ୍ତେ ଋଷିଗଣ ମଧ୍ୟେ
ଉତ୍ତରା-ସୁତ ଅନୁବାଦେ
ଶୁଣି ଆନନ୍ଦେ କୃତକୃତ
କହନ୍ତି ବ୍ୟାସଙ୍କର ସୁତ । ୬ ।

ଶ୍ରୀ ଶୁକଉବାଚ—

ଶୁଣ ପରୀକ୍ଷ ନରନାଥ
ଆଦିତ୍ୟ ବଂଶାନୁଚରିତ
ହରି ମହିମା ଅପ୍ରମିତ
କେ ଅବା କଥନେ ସମର୍ଥ
ସଂକ୍ଷେପେ କହିବି ହୋ ତୋତେ
ମୁଁ ଯୋଗବଳେ ଜାଣେ ଯେତେ
ଏ ଭୂମିମଧ୍ୟେ ଦେହ ବହି
ଶତେ ବରଷେ କେବା କହି ?
ରବିର ବଂଶେ ନୃପ ଯେତେ
ଯେ ଯାହା କଲେ ଏ ଜଗତେ
ଭକତ ଶିରୋମଣି ଏହା କହି
ଏବେ ତୁ ଶୁଣ ଚିତ୍ତ ଦେଇ
ଯେବା ଉପୁଜେ ଯାର ଅଂଶେ
ବୈବସ୍ୱତ ମନୁବଂଶେ । ୭ ।
ଶୁଣ ପାଣ୍ଡବ ଚୂଡ଼ାମଣି
ପ୍ରଳୟ କାଳେ ବେଦବାଣୀ
ଯେ ହରି ଜଗତ କାରଣ
ଜଗତ ଆତ୍ମା ନାରାୟଣ
ପୂର୍ବେ ଯେ ସଂସାର ସଂହରି
ଜଳେ ଅନନ୍ତ ଶଯ୍ୟା କରି
ନିବିଡ଼ ଅନ୍ଧାରେ ଶୋଇଲେ
ତାହାଙ୍କୁ କେହି ନ ଦେଖିଲେ । ୮ ।

ତସ୍ୟ ନାଭେଃ ସମଭବତ୍ ପଦ୍ମକୋଷୋ ହିରଣ୍ମୟଃ ।
ତସ୍ମିନ୍ ଜଜ୍ଞେ ମହାରାଜ ସ୍ୱୟମ୍ଭୂଶ୍ଚତୁରାନନଃ । ୯ ।
ମରୀଚିର୍ମନସସ୍ତସ୍ୟ ଜଜ୍ଞେ ତସ୍ୟାପି କଶ୍ୟପଃ ।
ଦାକ୍ଷାୟଣ୍ୟାଂ ତତୋଽଦିତ୍ୟାଂ ବିବସ୍ୱାନଭବତ୍ ସୁତଃ । ୧୦ ।
ତତୋ ମନୁଃ ଶ୍ରାଦ୍ଧଦେବଃ ସଂଜ୍ଞାୟାମାସ ଭାରତ ।
ଶ୍ରଦ୍ଧାୟାଂ ଜନୟାମାସ ଦଶ ପୁତ୍ରାନ୍ ସ ଆତ୍ମବାନ୍ । ୧୧ ।
ଇକ୍ଷ୍ୱାକୁନୃଗଶର୍ଯ୍ୟାତିଦିଷ୍ଟଧୃଷ୍ଟକରୂଷକାନ୍ ।
ନରିଷ୍ୟନ୍ତଂ ପୃଷଧ୍ରଞ୍ଚ ନଭଗଞ୍ଚ କବିଂ ବିଭୁଃ । ୧୨ ।
ଅପ୍ରଜସ୍ୟ ମନୋଃ ପୂର୍ବଂ ବଶିଷ୍ଠୋ ଭଗବାନ୍ କିଳ ।
ମିତ୍ରାବରୁଣୟୋରିଷ୍ଟିଂ ପ୍ରଜାର୍ଥମକରୋଦ୍ବିଭୁଃ । ୧୩ ।

---

ହେ ମହାରାଜ ! ସେହି ପରମ ପୁରୁଷଙ୍କର ନାଭିରୁ ହିରଣ୍ମୟ ପଦ୍ମକୋଷ ସମ୍ଭୂତ ହେଲା ଏବଂ ସେହି ପଦ୍ମକୋଷରେ ଚତୁର୍ମୁଖ ବ୍ରହ୍ମା ଅବତୀର୍ଣ୍ଣ ହେଲେ । ୯ ।

ସେହି ବ୍ରହ୍ମାଙ୍କର ମନରୁ ମରୀଚି ଜନ୍ମ ଗ୍ରହଣ କରିଥିଲେ । ମରୀଚିଙ୍କଠାରୁ ଦାକ୍ଷାୟଣୀଙ୍କ ଗର୍ଭରେ କଶ୍ୟପ ଜାତ ହେଲେ ଏବଂ କଶ୍ୟପଙ୍କଠାରୁ ଅଦିତିଙ୍କ ଗର୍ଭରେ ସୂର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ୧୦ ।

ହେ ଭରତ ! ସୂର୍ଯ୍ୟଙ୍କଠାରୁ ସଂଜ୍ଞାଙ୍କ ଗର୍ଭରେ ଶ୍ରାଦ୍ଧଦେବ ନାମକ ମନୁ ଜନ୍ମଗ୍ରହଣ କଲେ । ଜିତେନ୍ଦ୍ରିୟ ଏହି ମନୁ ଶ୍ରଦ୍ଧାନାମ୍ନୀ ପତ୍ନୀ ଗର୍ଭରେ ଦଶୋଟି ପୁତ୍ର ଉତ୍ପାଦନ କରିଥିଲେ । ୧୧ ।

ମହା ମନସ୍ୱୀ ଏହି ମନୁଙ୍କର ଦଶପୁତ୍ରଙ୍କର ନାମ ଇକ୍ଷ୍ୱାକୁ, ନୃଗ, ଶର୍ଯ୍ୟାତି, ଦିଷ୍ଟ, ଧୃଷ୍ଟ, କରୂଷକ ନରିଷ୍ୟନ୍ତ, ପୃଷଧ୍ର, ନଭଗ ଏବଂ କବି । ପ୍ରଥମେ ଅପୁତ୍ରକ ମନୁଙ୍କର ପୁତ୍ର ନିମିତ୍ତ ମହାଶକ୍ତିଶାଳୀ ଭଗବାନ୍ ବଶିଷ୍ଠ ଋଷି ମିତ୍ରାବରୁଣ ଯଜ୍ଞ କରିଥିଲେ । ୧୨,୧୩ ।

---

ସେ ପୁଣ ପ୍ରଳୟର ଅନ୍ତେ
ହିସ୍ତିନ ଶୋଇ ଅନାସ୍ତେଉ
ତା ନାଭି-କମଳୁଁ ପ୍ରକାଶି
ହୋଇଲା ହିରଣ୍ମୟ କୋଷ
ସୁବର୍ଣ୍ଣମୟ ଦିବ୍ୟ ରୂପୀ
ଜଟିଲ ମହାଜଳ ବ୍ୟାପି
ସେ ପଦ୍ମକୋଷୁଁ ବ୍ରହ୍ମାଜାତ
ଯାର ଶରୀରୁଁ ଏ ଜଗତ
ହୁମି ଭିଆଇ ଯୋଗବଳେ
ବସିଲା ସମାଧି ଛଳେ । ୯ ।
ବ୍ରହ୍ମାର ମନରୁ ବାହାର
ହୋଇଲା ମରୀଚି କୁମର

କଶ୍ୟପ ତାର ଠାରୁଁ ଜାତ
ଯାହା ମହିମା ଅପ୍ରମିତ
ଦକ୍ଷ ଦୁହିତା ବିଭା କଲା
ତା ଠାରୁଁ ସୂର୍ଯ୍ୟ ଉପୁଜିଲା ।୧୦।
ସୂର୍ଯ୍ୟର ପତ୍ନୀ ସଂଜ୍ଞା ନାମ
ଅତି ସୁନ୍ଦର ଅନୁପମ
ତାର ଉଦରୁ ଦିବ୍ୟ ତନୁ
ହୋଇଲେ ଶ୍ରାଦ୍ଧଦେବ ମନୁ
ସେ ପୁତ୍ର ଶ୍ରଦ୍ଧା କନ୍ୟା ଗର୍ଭେ
ଦଶ କୁମର କଲା ଗର୍ବେ ।୧୧।
ରୂପ ଶୋଭିତ ଅନୁପମ
ଶୁଣ ହେ ତାହାଙ୍କର ନାମ

ଇକ୍ଷ୍ୱାକୁ ନୃଗ ପୁତ୍ର ବେନି
ଶର୍ଯ୍ୟାତି ଦିଷ୍ଟ ଧୃଷ୍ଟ ଘେନି
ପୁଣି କରୁଷ ନରିଷ୍ୟନ୍ତ
ପୃଷଧ୍ର ନଭଗ ଉଦିତ
ହୋଇଲେ କବି ବିଭୁ ଆଦି
ସର୍ବେ ପ୍ରସିଦ୍ଧ ସର୍ବସିଦ୍ଧି ।୧୨।
ସେ ଶ୍ରାଦ୍ଧ ଦେବ ପୁତ୍ର ଅର୍ଥେ
ବରୁଣ ବଶିଷ୍ଠ ସଙ୍ଗତେ
ମିତ୍ରାବରୁଣ ଅର୍ଥେ ଇଷ୍ଟି
ଆରମ୍ଭ କଲା ପୁତ୍ରକଷ୍ଟୀ ।୧୩।

ତତ୍ର ଶ୍ରଦ୍ଧା ମନୋଃ ପତ୍ନୀ ହୋତାରଂ ସମଯାଚତ ।
ଦୁହିତ୍ରର୍ଥମୁପାଗମ୍ୟ ପ୍ରଣିପତ୍ୟ ପୟୋବ୍ରତା । ୧୪ ।
ପ୍ରେଷିତୋଽଧ୍ୱର୍ଯ୍ୟୁଣା ହୋତା ବ୍ୟଚରତ୍ ତତ୍ ସମାହିତଃ ।
ଗୃହୀତେ ହବିଷି ବାଚା ବଷଟ୍‌କାରଂ ଗୃଣନ୍ ଦ୍ୱିଜଃ । ୧୫ ।
ହୋତୁସ୍ତଦ୍‌ବ୍ୟଭିଚାରେଣ କନ୍ୟେଳା ନାମ ସାଭବତ୍ ।
ତାଂ ବିଲୋକ୍ୟ ମନୁଃ ପ୍ରାହ ନାତିତୁଷ୍ଟମନା ଗୁରୁମ୍ । ୧୬ ।
ଭଗବନ୍ କିମିଦଂ ଜାତଂ କର୍ମ୍ମ ବୋ ବ୍ରହ୍ମବାଦିନାମ୍ ।
ବିପର୍ଯ୍ୟୟମହୋ କଷ୍ଟଂ ମୈବଂ ସ୍ୟାଦ୍‌ବ୍ରହ୍ମବିକ୍ରିୟା । ୧୭ ।
ଯୂୟଂ ବ୍ରହ୍ମବିଦୋ ଯୁକ୍ତାସ୍ତପସା ଦଗ୍‌ଧକିଲ୍‌ବିଷାଃ ।
କୁତଃ ସଂକଳ୍ପବୈଷମ୍ୟମନୃତଂ ବିବୁଧେଷ୍ୱିବ । ୧୮ ।

---

ସେହି ଯଜ୍ଞରେ ଜଳାହାର ମାତ୍ର କରି ନିୟମ ପରାୟଣା ହୋଇ ମନୁପତ୍ନୀ ଶ୍ରଦ୍ଧା ହୋତାଙ୍କ ନିକଟକୁ ଗମନ କରି କନ୍ୟାଲାଭ କରିବାକୁ ପ୍ରାର୍ଥନା କରିଥିଲେ । ୧୪ ।

ଯଜୁର୍ବେଦବେତ୍ତାଙ୍କ କର୍ତ୍ତୃକ ଯଜ୍ଞ କରିବାକୁ ଆଦିଷ୍ଟ ହୋଇ ହୋତା ସଂଯତ ମନରେ ଘୃତ ଗ୍ରହଣ କରି ମନୁପତ୍ନୀଙ୍କର ପ୍ରାର୍ଥିତ ବିଷୟ ଧ୍ୟାନ ପୂର୍ବକ ବଷଟ୍‌କାର ଉଚ୍ଚାରଣ କରି ଯଜ୍ଞ କରିଥିଲେ । ୧୫ ।

ହୋତାଙ୍କର ସେହି ବ୍ୟଭିଚାର ଦ୍ୱାରା ଅର୍ଥାତ୍ ହୋତାଙ୍କର ମନ ଓ ବାକ୍ୟର ଐକ୍ୟ ନଥିବାରୁ ତାହାଙ୍କର ଗୋଟିଏ କନ୍ୟା ଜନ୍ମିଥିଲା । ସେହି କନ୍ୟାକୁ ଦେଖି ମନୁ ସନ୍ତୁଷ୍ଟ ନ ହୋଇ ଗୁରୁ ବଶିଷ୍ଠଙ୍କୁ କହିଲେ ।୧୬

ହେ ଭଗବନ୍ ! ଏହା କପରି ହେଲା ? ବ୍ରହ୍ମଜ୍ଞ ଆପଣମାନଙ୍କର କ୍ରିୟାର ଫଳ ବିପରୀତ ହେଲା କପରି ? ଅର୍ଥାତ୍ ପୁତ୍ରପାଇଁ ଯଜ୍ଞକରି କନ୍ୟା ଉତ୍ପତ୍ତି ହେଲା କପରି ? । ୧୭ ।

ଆପଣମାନେ ମନ୍ତ୍ରଜ୍ଞ, ସଂଯତ ଏବଂ ତପସ୍ୟା ଦ୍ୱାରା ନିଷ୍ପାପ । ସୁତରାଂ ଦେବତାମାନଙ୍କର ବାକ୍ୟ ଯେପରି ଅନ୍ୟଥା ହେବା ସମ୍ଭବ ନୁହେଁ, ସେହିପରି ଆପଣମାନଙ୍କର କ୍ରିୟାର ବିପରୀତ ହେବା ସମ୍ଭବ ନୁହେଁ ; ସୁତରାଂ ସଙ୍କଳ୍ପିତ କାର୍ଯ୍ୟ ଏପରି ଅନ୍ୟଥା ହେଲା କପରି ? । ୧୮ ।

---

ଏମନ୍ତେ ତାର ଶ୍ରଦ୍ଧା ନାରୀ
ବଶିଷ୍ଠ ସଙ୍ଗତେ ବିଚାରି
ବୋଲଇ ମୁହିଁ ପୟୋବ୍ରତା
ଯେମନ୍ତେ ହୋଇବ ଦୁହିତା
ଯେ ଅର୍ଥେ ଯଜ୍ଞ ତୁମ୍ଭେ କର
ସେବଇଁ ଚରଣେ ତୁମ୍ଭର
ତା ଶୁଣି ହୋତା ଯେବା ଥିଲା
ବିପ୍ରଙ୍କ ସଙ୍ଗେ ବିଚାରିଲା
ଅଦ୍ଭୁତ ଦେଲେକ ଆହୁତି
ଯେମନ୍ତେ କନ୍ୟା ହୋଏ ଜାତ

ତା ରୂପ ଜଗତ ମୋହିଲା
ତାହାକୁ ଇଳା ନାମ ଦେଲା ।୧୪-୧୬
ରାଜେ ସେ କନ୍ୟା ରୂପ ଦେଖି
ରାଜନ ଶୂନ୍ୟ ଉପେକ୍ଷି
ବୋଲଇ ବିପ୍ରଙ୍କୁ ଅନାଇଁ
ଏମନ୍ତେ ଦେଖିଲିତ ନାହିଁ
ତୁମ୍ଭେ ସକଳେ ବ୍ରହ୍ମବେତ୍ତା
ଏ କର୍ମ୍ମ ଅସମ୍ଭବ କଥା

ବ୍ରାହ୍ମଣ କର୍ମ୍ମତ ନୁହଇ
ଏ କର୍ମ୍ମ କଲ କସ ପାଇଁ
ତୁମ୍ଭେ ଯେ ନିଜ ତପ ବଳେ
ଦଗ୍ଧ କଲୁଷ ଏ ଶରୀରେ
ସଙ୍କଳ୍ପ ହୋଇଲା ଅନ୍ୟଥା
ଏ ବଡ଼ ଅସମ୍ଭବ କଥା
ଅଜ୍ଞାନୀ ଜନଙ୍କର ମତ
ମୋର ସଂକଳ୍ପ ବିପରୀତ ।୧୭,୧୮

ନିଶମ୍ୟ ତଦ୍‌ବଚସ୍ତସ୍ୟ ଭଗବାନ୍ ପ୍ରପିତାମହଃ ।
ହୋତୁର୍ବ୍ୟତିକ୍ରମଂ ଜ୍ଞାତ୍ୱା ବଭାଷେ ରବିନନ୍ଦନମ୍ । ୧୯ ।
ଏତତ୍ ସଂକଳ୍ପବୈଷମ୍ୟଂ ହୋତୁସ୍ତେ ବ୍ୟଭିଚାରତଃ ।
ତଥାପି ସାଧୟିଷ୍ୟେ ତେ ସୁପ୍ରଜାସ୍ତ୍ୱଂ ସ୍ୱତେଜସା । ୨୦ ।
ଏବଂ ବ୍ୟବସିତୋ ରାଜନ୍ ଭଗବାନ୍ ସ ମହାଯଶାଃ ।
ଅସ୍ତୌଷୀଦାଦିପୁରୁଷମିଳାୟାଃ ପୁଂସ୍ତ୍ୱକାମ୍ୟୟା । ୨୧ ।
ତସ୍ମୈ କାମବରଂ ତୁଷ୍ଟୋ ଭଗବାନ୍ ହରିରୀଶ୍ୱରଃ ।
ଦଦାବିଲାଭବତ୍ ତେନ ସୁଦ୍ୟୁମ୍ନଃ ପୁରୁଷର୍ଷଭଃ । ୨୨ ।
ସ ଏକଦା ମହାରାଜ ବିଚରନ୍ ମୃଗୟାଂ ବନେ ।
ବୃତଃ କତିପୟାମାତ୍ୟୈରଶ୍ୱମାରୁହ୍ୟ ସୈନ୍ଧବମ୍ । ୨୩ ।

---

ଭଗବନ୍ ମୋର ପ୍ରପିତାମହ ବଶିଷ୍ଠ ମନୁଙ୍କର ଏହି ବାକ୍ୟ ଶ୍ରବଣ କରି ହୋତାଙ୍କର ବ୍ୟତିକ୍ରମ ବୁଝିପାରି ସୂର୍ଯ୍ୟପୁତ୍ର ମନୁଙ୍କୁ କହିଲେ । ୧୯ ।

ତୁମ୍ଭର ହୋତାଙ୍କର ବ୍ୟଭିଚାର ଦୋଷରୁ ଏପରି ସଙ୍କଳ୍ପ ବୈଷମ୍ୟ ଘଟିଅଛି । ତଥାପି ମୁଁ ନିଜର ତେଜ ଦ୍ୱାରା ତୁମ୍ଭର ଏହି କନ୍ୟାକୁ ପୁରୁଷତ୍ୱ ପ୍ରଦାନ କରିବି । ୨୦ ।

ହେ ରାଜନ୍ ! ମହାଯଶା ଭଗବାନ ବଶିଷ୍ଠ ଏହିପରି ସ୍ଥିର କରି ଇଳାର ପୁରୁଷତ୍ୱ କାମନା କରି-ଆଦିପୁରୁଷ ବିଷ୍ଣୁଙ୍କୁ ସ୍ତବ କରିଥିଲେ । ୨୧ ।

ଭଗବାନ ଈଶ୍ୱର ଶ୍ରୀହରି ସନ୍ତୁଷ୍ଟ ହୋଇ ତାହାଙ୍କୁ କାମ୍ୟ ବର ପ୍ରଦାନ କରିଥିଲେ । ସେହି ବର ପ୍ରଭାବରେ ଇଳା ସୁଦ୍ୟୁମ୍ନ ରୂପୀ ଶ୍ରେଷ୍ଠ ପୁରୁଷ ହୋଇଥିଲେ । ୨୨ ।

ହେ ମହାରାଜ ! ସେହି ବୀର ପୁରୁଷ ସୁଦ୍ୟୁମ୍ନ ଏକ ସମୟରେ କତିପୟ ଅମାତ୍ୟ ପରିବୃତ ହୋଇ କବଚ ଧାରଣ କରି ସିନ୍ଧୁଦେଶ ଜାତ ଅଶ୍ୱାରୋହଣ କରି ମୃଗୟା ନିମିତ୍ତ ବନରେ ବିଚରଣ କରୁ କରୁ

---

ଏମନ୍ତେ ମନୁର ନିକଟେ
ବଶିଷ୍ଠ ମିଳି ଯଜ୍ଞ ବାଟେ
ହୋତାଙ୍କ ବ୍ୟଭିଚାର ଜାଣି
ମନୁଙ୍କୁ ବଶିଷ୍ଠ ବଖାଣି
ତୋହର ନିଜ ନାରୀ ବୋଲେ
ଦୁହିତା ଅର୍ଥେ ଯଜ୍ଞ କଲେ
ମୁଁ ଏବେ ସାଧିବି ତୋ ଅର୍ଥେ
କହିବି ବିଷ୍ଣୁର ଅଗ୍ରତେ

ଯେମନ୍ତେ ଏ କନ୍ୟା ତୋହର
ହୋଇବ ପୁରୁଷ କଳେବର
ଏମନ୍ତ କହି ପ୍ରଜାପତି
ବିଷ୍ଣୁଙ୍କୁ କଲେ ଦିବ୍ୟ ସ୍ତୁତି ।୧୯-୨୧
ବଶିଷ୍ଠ ସ୍ତୁତି ବାକ୍ୟ ଶୁଣି
ତକ୍ଷଣେ ପ୍ରଭୁ ଚକ୍ରପାଣି
ଇଳା କନ୍ୟାକୁ ବିଷ୍ଣୁ ସ୍ୱହି
କେ ଇଲେ ପୁତ୍ର ହୁଅ ତୁହି

ତକ୍ଷଣେ ପୁରୁଷ ହୋଇଲା
ସୁଦ୍ୟୁମ୍ନ ନାମ ତାର ହେଲା
ନିଜ ଭୁବନେ ଗଲେ ହରି
ଏବେ ହୋ ଶୁଣ ଦଣ୍ଡଧାରି ।୨୨।
ବେଦ ବଚନର ସ୍ୱଭାବ
କେ ତାହା ଅନ୍ୟଥା କରିବ
ଶୁଣ ରାଜନ ଶୁଦ୍ଧ ମନେ
ସେ ମନୁ ପୁତ୍ର ଏକ ଦିନେ

ପ୍ରଗୃହ୍ୟ ରୁଚିରଂ ଚାପଂ ଶରାଂଶ୍ଚ ପରମାଦ୍ଭୁତାନ୍ ।
ଦଂଶିତୋଽନୁମୃଗଂ ବୀରୋ ଜଗାମ ଦିଶମୁତ୍ତରାମ୍ । ୨୪ ।
ସୁକୁମାରବନଂ ମେରୋରଧସ୍ତାତ୍ ପ୍ରବିବେଶ ହ ।
ଯତ୍ରାସ୍ତେ ଭଗବାନ୍ ଶର୍ବୋ ରମମାଣଃ ସହୋମୟା । ୨୫ ।
ତସ୍ମିନ୍ ପ୍ରବିଷ୍ଟ ଏବାସୌ ସୁଦ୍ୟୁମ୍ନଃ ପରବୀରହା ।
ଅପଶ୍ୟତ୍ ସ୍ତ୍ରିୟମାତ୍ମାନମଶ୍ୱଞ୍ଚ ବଡ଼ବାଂ ନୃପ । ୨୬ ।
ତଥା ତଦନୁଗାଃ ସର୍ବେ ଆତ୍ମଲିଙ୍ଗବିପର୍ଯ୍ୟୟମ୍ ।
ଦୃଷ୍ଟ୍ୱା ବିମନସୋଽଭୂବନ୍ ବୀକ୍ଷମାଣାଃ ପରସ୍ପରମ୍ । ୨୭ ।

---

ମନୋଜ୍ଞ ଧନୁ ଓ ପରମାଦ୍ଭୁତ ଶର ସମୂହ ଗ୍ରହଣ କରି ମୃଗମାନଙ୍କ ପଛେ ପଛେ ଉତ୍ତର ଦିଗକୁ ଗମନ କରିଥିଲେ । ୨୩, ୨୪ ।

ତଦନନ୍ତର ଅମାତ୍ୟ ପରିବୃତ ସୁଦ୍ୟୁମ୍ନ ମେରୁର ଅଧଃ ପ୍ରଦେଶରେ ସୁକୁମାର ନାମକ ବନରେ ପ୍ରବେଶ କଲେ । ସେହି ବନରେ ପାର୍ବତୀଙ୍କ ସହିତ ଈଶ୍ୱର ବିହାର କରୁଥିଲେ । ୨୫ ।

ହେ ରାଜନ୍ ! ସେହି ଶତ୍ରୁ ଦମନକାରୀ ସୁଦ୍ୟୁମ୍ନ ଏହି ବନ ମଧ୍ୟରେ ପ୍ରବେଶ କରିବା ମାତ୍ରେ ନିଜ ଦେହକୁ ସ୍ତ୍ରୀ ରୂପରେ ଏବଂ ଘୋଟକମାନଙ୍କୁ ଘୋଟକୀ ରୂପରେ ଦର୍ଶନ କଲେ । ୨୬ ।

ତାହାଙ୍କର ଅନୁଚର ବର୍ଗ ମଧ୍ୟ ସେହିପରି ନିଜ ନିଜର ଦେହକୁ ସ୍ତ୍ରୀ ରୂପରେ ଦର୍ଶନ କରି ପରସ୍ପରକୁ ଅବଲୋକନ କରି ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ୨୭ ।

---

ମୃଗୟା ଅର୍ଥେ ଘୋର ବନେ
ପଶିଲ ହରଷିତ ମନେ
ଧନୁକୁ ଦୃଢ ଧରି କରେ
ବସିଲ ଅଶ୍ୱର ଉପରେ
ସେବକେ ତାହାର ସଙ୍ଗତେ
ଧାଇଁଲେ ଅଶ୍ୱ ପୃଷ୍ଠଗତେ
ନାନା ଆୟୁଧ କରେ ଧରି
ପଶୁ ଖୋଜନ୍ତି ବନେ ହେରି
ଗିରି କାନନେ ଲତା କୁଞ୍ଜେ
ଖୋଜି ଅନେକ ଗିରି ପୁଞ୍ଜେ
ମୃଗ ନ ଦେଖି ଘୋର ବନେ
ପଶିଲେ ଉତ୍ତର କାନନେ । ୨୩, ୨୫

ଏମନ୍ତେ ସୁକୁମାର ବନେ
ମେରୁ ନିକଟେ ଖେଦମନେ
ଯେ ବନେ ପ୍ରଭୁ ଶୂଳଧାରୀ
ସଙ୍ଗତେ ଘେନି ନିଜ ନାରୀ
ନିତ୍ୟେ ସେ ଉଦିତ ମଦନେ
ଗଉରୀ ସଙ୍ଗତେ ନିର୍ଜନେ
ନିତ୍ୟେ ରମନ୍ତି ସୁଖମନେ
ଆନନ୍ଦେ ପୁଷ୍ପିତ କାନନେ
ସେ ବନେ ପଶି ମନୁ ବାଳା
ଅନେକ ପଶୁ ବଧ କଲା
ମୃଗଙ୍କୁ ମାରି ଅବହେଳେ
ଗ୍ରାମକୁ ଆସିବାର ବେଳେ

ଅଶ୍ୱ ସହିତେ ସର୍ବଜନେ
ପଶିଲେ ସୁକୁମାର ବନେ
ସର୍ବେ ହୋଇଲେ ସ୍ତ୍ରୀୟଗଣ
ଅଶ୍ୱ ସହିତେ କୁଘଟଣ
ଚାହାନ୍ତି ଅନ୍ୟୋଅନ୍ୟ ମୁଖେ
ସର୍ବେ ରହିଲେ ମନ ଦୁଃଖେ
ସ୍ତ୍ରୀୟ ସ୍ୱଭାବେ କଲେ ଭ୍ରାନ୍ତ
ସ୍ୱଭାବେ ଚଳି ନ ପାରନ୍ତି । ୨୫-୨୭
ଶୁକ ବଦନୁ ବାକ୍ୟ ଶୁଣି
ବୋଲେ ପାଣ୍ଡବ ଚୂଡ଼ାମଣି

ଶ୍ରୀ ରାଜୋବାଚ । କଥମେବଂ ଗୁଣୋ ଦେଶଃ କେନ ବା ଭଗବନ୍ କୃତଃ ।
ପ୍ରଶ୍ନମେନଂ ସମାଚକ୍ଷ୍ୱ ପରଂ କୌତୂହଲଂ ହି ନଃ । ୨୮ ।
ଶ୍ରୀ ଶୁକ ଉବାଚ । ଏକଦା ଗିରିଶଂ ଦ୍ରଷ୍ଟୁମୃଷୟସ୍ତତ୍ର ସୁବ୍ରତାଃ ।
ଦିଶୋ ବିତିମିରାଭାସାଃ କୁର୍ବନ୍ତଃ ସମୁପାଗମନ୍ । ୨୯ ।
ତାନ୍ ବିଲୋକ୍ୟାମ୍ବିକାଦେବୀ ବିବାସା ବ୍ରୀଡ଼ିତା ଭୃଶମ୍ ।
ଭର୍ତ୍ତୁରଙ୍କାତ୍ ସମୁତ୍ଥାୟ ନୀବୀମାଶ୍ୱଥ ପର୍ଯ୍ୟଧାତ୍ । ୩୦ ।
ଋଷୟୋଽପି ତୟୋର୍ବୀକ୍ଷ୍ୟ ପ୍ରସଙ୍ଗଂ ରମମାଣୟୋଃ ।
ନିବୃତ୍ତାଃ ପ୍ରୟୟୁସ୍ତସ୍ମାତ୍ ନରନାରାୟଣାଶ୍ରମମ୍ । ୩୧ ।

ରାଜା ପରୀକ୍ଷିତ କହିଲେ :—

ହେ ଭଗବନ୍ ! ସେ ସ୍ଥାନ କି ହେତୁ ଏପରି ଗୁଣଯୁକ୍ତ ହେଲା ଏବଂ କେଉଁ ବ୍ୟକ୍ତି ସେ ସ୍ଥାନକୁ ଏପରି କଲା ଏହି ପ୍ରଶ୍ନର ଉତ୍ତର କହନ୍ତୁ । ତାହା ଶୁଣିବା ଲାଗି ମୋର କୌତୂହଳ ଜନ୍ମିଅଛି । ୨୮ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଦିନେ ନିୟମ ପରାୟଣ ଋଷିମାନେ ନିଜ ନିଜର ତେଜଦ୍ୱାରା ଅନ୍ଧକାର ଦୂରୀଭୂତ କରି ଓ ଅନ୍ୟାନ୍ୟ ପଦାର୍ଥ ପ୍ରକାଶ କରି ମହାଦେବଙ୍କୁ ଦର୍ଶନ କରିବା ନିମନ୍ତେ ସେ ବନରେ ଉପସ୍ଥିତ ହୋଇଥିଲେ । ସେହି ଋଷିମାନଙ୍କୁ ଦର୍ଶନ କରି 'ବିବସ୍ତ୍ରା ଅମ୍ବିକାଦେବୀ ଅତ୍ୟନ୍ତ ଲଜ୍ଜିତା ହୋଇ ସ୍ୱାମୀଙ୍କ କୋଡ଼ରୁ ଅବତରଣ କରି ବସ୍ତ୍ରଦ୍ୱାରା ନୀବୀ ଆଚ୍ଛାଦନ କରିଥିଲେ । ୨୯, ୩୦ ।

ଋଷିମାନେ କ୍ରୀଡ଼ାରତ ହର ପାର୍ବତୀଙ୍କର ସଙ୍ଗମ ଦର୍ଶନ କରି ସେହି ବନରୁ ନିବୃତ୍ତ ହୋଇ ନର ନାରାୟଣାଶ୍ରମକୁ ଗମନ କରିଥିଲେ । ୩୧ ।

ଶ୍ରୀ ରାଜୋବାଚ—
ହେ ମୁନି ! ଅପୂର୍ବ ବାଣୀ
ହୃଦୟ କମ୍ପିଲାଇ ଶୁଣି
ନାରୀ ହୋଇଲେ କିସ ଅର୍ଥେ
ଏ କଥା କହ ମୋ ଅଗ୍ରତେ
ସୁଦ୍ୟୁମ୍ନ ମନୁର ନନ୍ଦନ
ପୁରୁଷ କଲେ ଭଗବାନ
ସେ କିମ୍ପା କାମିନୀ ହୋଇଲା
ଅଶ୍ୱ ସହିତେ ମନୁ-ବାଳା
କି ଅଛି ବନେ ଅଛି ଦୋଷ
କିବା ଶଙ୍କର କଲେ ରୋଷ
କିମ୍ପା ହୋଇଲା ସ୍ତ୍ରୀଙ୍କ ଦେହ
ଅଶେଷ ଯାକ ମୁନି କହ । ୨୮ ।

ଶ୍ରୀ ଶୁକଉବାଚ—
ମୁନି କହନ୍ତି ଅନୁରାଗେ
ଆନନ୍ଦେ ପରୀକ୍ଷିତ ଆଗେ
ଶୁଣ ହୋ ଅଭିମନ୍ୟୁ ସୁତ
କହିବା ତହିଁର ଚରିତ
ସପତ ଋଷି ଏକଦିନେ
ଗଲେ ଶଙ୍କର ଦରଶନେ
ଦିଶନ୍ତି ରବି ତେଜ ପ୍ରାୟେ
ସେ ବନେ ଚଳନ୍ତି ନିର୍ଭୟେ । ୨୯
ଦୂରୁ ତାହାଙ୍କ ରୂପ ଦେଖି
ଅମ୍ବିକା ଶୟନ ଉପେକ୍ଷି

ଶଙ୍କର ସଙ୍ଗ ଛାଡ଼ି ବେଗେ
ବସ୍ତ୍ର ପିନ୍ଧିଲେ ପୃଷ୍ଠଭାଗେ
ଲାଜେ ଲୁଗ୍ନ କଳେବର
ଭୟେ କମ୍ପନ୍ତି ଥରହର
ଶଙ୍କର ରହେ ଅଧୋମୁଖେ
ରହି ନ ପାରି ମନଦୁଃଖେ । ୩୦ ।
ଏମନ୍ତ ମୁନିଗଣ ରହି
ପାଦେକ ନ ପାରନ୍ତି ଯାଇ
ତାହାଙ୍କ ଗତି ଦେଖି ଛଳେ
ତକ୍ଷଣେ ଗଲେ ଅନ୍ୟ ବନେ
ପଥ ଚଳନ୍ତି ମହାଶ୍ରମ
ମିଳିଲେ ନାରାୟଣାଶ୍ରମେ । ୩୧ ।

ତଦିଦଂ ଭଗବାନାହ ପ୍ରିୟାୟାଃ ପ୍ରିୟକାମ୍ୟୟା ।
ସ୍ଥାନଂ ଯଃ ପ୍ରବିଶେଦେତତ୍ ସ ବୈ ଯୋଷିଦ୍‌ଭବେଦିତି । ୩୨ ।
ତତ ଊର୍ଦ୍ଧ୍ୱଂ ବନଂ ତଦ୍ ବୈ ପୁରୁଷା ବର୍ଜୟନ୍ତି ହ ।
ସା ଚାନୁଚରସଂଯୁକ୍ତା ବିଚଚାର ବନାଦ୍‌ବନମ୍ । ୩୩ ।
ତଥା ତାମାଶ୍ରମାଭ୍ୟାସେ ଚରନ୍ତୀଂ ପ୍ରମଦୋତ୍ତମାମ୍ ।
ସ୍ତ୍ରୀଭିଃ ପରିବୃତାଂ ବୀକ୍ଷ୍ୟ ଚକମେ ଭଗବାନ୍ ବୁଧଃ । ୩୪ ।
ସାପି ତଂ ଚକମେ ସୁଭ୍ରୂଃ ସୋମରାଜସୁତଂ ପତିମ୍ ।
ସ ତସ୍ୟାଂ ଜନୟାମାସ ପୁରୁରବସମାତ୍ମଜମ୍ । ୩୫ ।
ଏବଂ ସ୍ତ୍ରୀତ୍ୱମନୁପ୍ରାପ୍ତଃ ସୁଦ୍ୟୁମ୍ନୋ ମାନବୋ ନୃପଃ ।
ସସ୍ମାର ସ କୁଳାଚାର୍ଯ୍ୟଂ ବଶିଷ୍ଠମିତି ଶୁଶ୍ରୁମ । ୩୬ ।

---

ତଦନନ୍ତର ଭଗବାନ୍ ଶିବ ପ୍ରିୟତମାଙ୍କର ପ୍ରିୟ କାମନାରେ ତାହାଙ୍କୁ ସାନ୍ତ୍ୱନା କରି କହିଲେ "ଏ ବନ ମଧ୍ୟରେ ଯେଉଁ ପୁରୁଷ ପ୍ରବେଶ କରିବ ସେ ତତ୍‌କ୍ଷଣାତ୍ ସ୍ତ୍ରୀ ହୋଇଯିବ" । ୩୨ ।

ସେହିଦିନଠାରୁ ପୁରୁଷମାନେ ଏହି ବନକୁ ବର୍ଜନ କରିଅଛନ୍ତି, ଅର୍ଥାତ୍ କୌଣସି ପୁରୁଷ ସେଠାକୁ ଗମନ କରନ୍ତି ନାହିଁ । ୩୩ ।

ତଦନନ୍ତର ଭଗବାନ୍ ବୁଧ ନିଜର ଆଶ୍ରମ ନିକଟରେ ବିଚରଣ କାରିଣୀ ସ୍ତ୍ରୀଗଣ ପରିବୃତ ସେହି ପ୍ରମୋଦୋତ୍ତମାଙ୍କୁ ଦର୍ଶନ କରି କାମ ଉଚ୍ଚାସନ୍ନ ହୋଇଥିଲେ । ୩୪ ।

ସେହି ସୁଦ୍ୟୁମ୍ନ ପ୍ରମୋଦୋତ୍ତମା ହୋଇଥିଲେ ଏବଂ ସୋମ ତନୟ ବୁଧଙ୍କୁ ପତିରୂପେ ବରଣ କରିଥିଲେ । ତଦନନ୍ତର ଭଗବାନ୍ ବୁଧ ତାହାଙ୍କ ଗର୍ଭରେ ପୁରୁରବା ନାମକ ପୁତ୍ର ଉତ୍ପାଦନ କରିଥିଲେ । ୩୫ ।

ହେ ରାଜନ ! ଏହିପରି ମନୁପୁତ୍ର ସୁଦ୍ୟୁମ୍ନ ସ୍ତ୍ରୀତ୍ୱ ପ୍ରାପ୍ତ ହୋଇ ସ୍ୱୀୟ କୁଳାଚାର୍ଯ୍ୟ ବଶିଷ୍ଠଙ୍କୁ ସ୍ମରଣ କରିଥିଲେ । ୩୬ ।

---

ସେ କଥା ଜାଣି ଶୂଳପାଣି
ଅମ୍ବିକା ମୁଖ ଚାହିଁ ଭଣି
ପୁରୁଷ ହୋଇ ଯେବେ ଏଥି
ପ୍ରବେଶ ହୋଇବ ବନସ୍ଥି
ତକ୍ଷଣେ ହେଉ ସ୍ତ୍ରୀଙ୍କ ରୂପ
ଏମନ୍ତ ରୁଦ୍ର ଦେଲେ ଶାପ
ସେ ଦିନୁ ମହାଦେବ ରୋଷେ
ସେ ବନେପୁରୁଷନପଶେ ।୩୨,୩୩
ଏବେ ହୋ ଶୁଣ ନରନାଥ
ମନୁ ତନୟ ବିପରୀତ
ଅଶ୍ୱ ସହିତେ ଘୋର ବନେ
ସର୍ବେ ଭ୍ରମନ୍ତି ଦୁଃଖ ମନେ
ସେ ବନୁ ଗଲେ ଅନ୍ୟବନେ
ସୋମନନ୍ଦନ ତପ ସ୍ଥାନେ
ଭ୍ରମନ୍ତି ଏକୁ ଆରେ ଧରି
ସ୍ତ୍ରୀଭାବେ ସର୍ବେ ମନୋହାରୀ
ତାହାଙ୍କ ମଧ୍ୟେ ଇଳା ଦେଖି
ସେ ବୁଧ ତପସ୍ୟା ଉପେକ୍ଷି
ମନ କଲିଲି କାମ ହେଳେ
ତକ୍ଷଣେ ଧରି ତାକୁ କୋଳେ
ବଳେ ରମିଲି ଚନ୍ଦ୍ର-ସୁତ
ତକ୍ଷଣେ ପୁତ୍ର ହେଲା ଜାତ
ତାହାଙ୍କୁ ଦେଖି ଗୁଣଧାମ
ଦେଲେସେପୁରୁରବାନାମ ।୩୪,୩୫
ଏବେ ହୋ ଶୁଣ କୁରୁବୀର
ସେ ବନେ ମନୁର କୁମର
କୁଳ ଆଚାର୍ଯ୍ୟ ସୁମରିଲେ
ତକ୍ଷଣେ ବଶିଷ୍ଠ ମିଳିଲେ
ତାହାର ସ୍ତ୍ରୀଙ୍କ ରୂପ ଚାହିଁ
ସେ ବ୍ରହ୍ମ-ଋଷି ଦୟା ବହି

ସ ତସ୍ୟ ତାଂ ଦଶାଂ ଦୃଷ୍ଟ୍ୱା କୃପୟା ଭୃଶପୀଡ଼ିତଃ ।
ସୁଦ୍ୟୁମ୍ନସ୍ୟାଶୟନ୍ ପୁଂସ୍ତ୍ୱମୁପାଧାବତ ଶଙ୍କରମ୍ । ୩୭ ।
ତୁଷ୍ଟସ୍ତସ୍ମୈ ସ ଭଗବାନୃଷୟେ ପ୍ରିୟମାବହନ୍ ।
ସ୍ୱାଞ୍ଚ ବାଚମୃତାଂ କୁର୍ବନ୍ନିଦମାହ ବିଶାମ୍ପତେ । ୩୮ ।
ମାସଂ ପୁମାନ୍ ସ ଭବିତା ମାସଂ ସ୍ତ୍ରୀ ତବ ଗୋତ୍ରଜଃ ।
ଇତ୍ଥଂ ବ୍ୟବସ୍ଥୟା କାମଂ ସୁଦ୍ୟୁମ୍ନୋଽବତୁ ମେଦିନୀମ୍ ।୩୯।
ଆଚାର୍ଯ୍ୟାନୁଗ୍ରହାତ୍ କାମଂ ଲବ୍ଧ୍ୱା ପୁଂସ୍ତ୍ୱଂ ବ୍ୟବସ୍ଥୟା ।
ପାଳୟାମାସ ଜଗତୀଂ ନାଭ୍ୟନନ୍ଦନ୍ ସ୍ମ ତଂ ପ୍ରଜାଃ । ୪୦ ।
ତସ୍ୟୋତ୍କଳୋ ଗୟୋ ରାଜନ୍ ବିମଳଶ୍ଚ ତ୍ରୟଃ ସୁତାଃ ।
ଦକ୍ଷିଣାପଥରାଜାନୋ ବଭୂବୁର୍ଦ୍ଧର୍ମ୍ମବତ୍ସଳାଃ । ୪୧ ।

---

ସେହି ବଶିଷ୍ଠ ସୁଦ୍ୟୁମ୍ନଙ୍କର ଏହିପରି ଅବସ୍ଥା ଦର୍ଶନ କରି ଦୟାର୍ଦ୍ର ଚିତ୍ତରେ ସୁଦ୍ୟୁମ୍ନଙ୍କର ପୁରୁଷତ୍ୱ କାମନା କରି ଭଗବାନ୍ ଶଙ୍କରଙ୍କୁ ଆରାଧନା କରିଥିଲେ । ୩୭ ।

ହେ ରାଜନ୍ ! ବଶିଷ୍ଠଙ୍କର ଆରାଧନାରେ ଶଙ୍କର ତୁଷ୍ଟ ହୋଇ ତାହାଙ୍କର ପ୍ରିୟ କାର୍ଯ୍ୟ କରିବାକୁ ଏବଂ ନିଜର ବାକ୍ୟ ସତ୍ୟ ରଖିବାକୁ ଅଭିଳାଷ କରି ଏହିପରି କହିଲେ । ୩୮ ।

ଶ୍ରୀ ଶଙ୍କର କହିଲେ :—

ତୁମ୍ଭର ଗୋତ୍ରଜ ଏହି ସୁଦ୍ୟୁମ୍ନ ମାସେ ପୁରୁଷ ଓ ମାସେ ସ୍ତ୍ରୀ ହେବେ । ଏହି ବ୍ୟବସ୍ଥାରେ ସେ ପୃଥିବୀ ପାଳନ କରିବେ । ୩୯ ।

କୁଳାଚାର୍ଯ୍ୟ ବଶିଷ୍ଠଙ୍କର ଅନୁଗ୍ରହ ଅନୁସାରେ ମାସେ ସ୍ତ୍ରୀ ଓ ମାସେ ପୁରୁଷ ରୂପେ ରାଜ୍ୟପାଳନ କରିଥିଲେ କିନ୍ତୁ ପ୍ରଜାମାନେ ତାହାଁରେ ସୁଦ୍ୟୁମ୍ନଙ୍କ ପ୍ରତି ସନ୍ତୁଷ୍ଟ ହେଲେ ନାହିଁ । ୪୦ ।

ହେ ରାଜନ୍ ! ସେହି ସୁଦ୍ୟୁମ୍ନଙ୍କର ଉତ୍କଳ, ଗୟ ଏବଂ ବିମଳ ଏହି ତିନିପୁତ୍ର ଅତ୍ୟନ୍ତ ଧର୍ମପରାୟଣ ହୋଇ ଦକ୍ଷିଣା ପଥରେ ରାଜା ହୋଇଥିଲେ । ୪୧ ।

---

ଯେମନ୍ତେ ପୁରୁଷ ହୋଇବ
ତକ୍ଷଣେ ସେବି ସଦାଶିବ ।୩୬,୩୭
ଅନେକ କଲେ ବିବିଧ ସ୍ତୁତି
ଶୁଣି ସନ୍ତୋଷ ପଶୁପତି
ଆପଣା ବାକ୍ୟ ସତ୍ୟ ଅର୍ଥେ
ବଶିଷ୍ଠ ସ୍ନେହ ଦୟା ଚିତ୍ତେ
ବୋଲନ୍ତି ଅମ୍ବିକା ରମଣ
ବଶିଷ୍ଠ ମୋର ବାକ୍ୟ ଶୁଣ
ଏ ଯେ ତୋହର ଗୋତ୍ରେ ଜାତ
ହୋଇବେ ଶ୍ରାଦ୍ଧଦେବ ସୁତ

ମାସେ ଏ ହୋଇବ କାମିନୀ
ପୂର୍ବେ ମୋହର ବାକ୍ୟ ଘେନି
ମାସେ ଏ ପୁରୁଷ ହୋଇବ
ଜୀବନ୍ତେ ଯେତେ କାଳ ଥିବ
ଏମନ୍ତ ଦେଇ ତାଙ୍କୁ ବର
ତକ୍ଷଣେ ଗଲେ ଶୂଳଧର ।୩୮,୩୯
ତହୁଁ କେତେକ ଦିନ ଗଲା
ମାସକେ ପୁରୁଷ ଅବଳା
ରାଜ୍ୟ ସେ କଲା ଏହିମତେ
ନିଗମ ବାଣୀ ଅନୁମତେ

ତା ରାଜ୍ୟେ ରାଜ୍ୟପ୍ରଜାଜନେ
ବର୍ତ୍ତିଲେ ଦୁଃଖ ସୁଖ ମନେ ।୪୦।
ତାର ହୋଇଲା ତିନି ସୁତ
ଶୁଣ ହୋ ନୃପ ସାବହିତ !
ଗୟ ଉତ୍କଳ ପୁତ୍ର ବେନି
ବିମଳ ନାମେ ହୋଏ ତିନି
ଦକ୍ଷିଣ ପଥେ ତିନି ରାଜା
ସୁଖେ ପାଳିଲେ ଜନ ପ୍ରଜା ।୪୧।

ତତଃ ପରିଣତେ କାଳେ ପ୍ରତିଷ୍ଠାନପତିଃ ପ୍ରଭୁଃ ।
ପୁରୁରବସ ଉତ୍ସୃଜ୍ୟ ଗାଂ ପୁତ୍ରାୟ ଗତୋ ବନମ୍ । ୪୨ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଇଳୋପାଖ୍ୟାନେ ନାମ
ପ୍ରଥମୋଽଧ୍ୟାୟଃ ।

---

ତଦନନ୍ତର ବହୁକାଳ ଅତୀତ ହୁଅନ୍ତେ ପ୍ରତିଷ୍ଠାନ ଦେଶର ଅଧିପତି ସୁଦ୍ୟୁମ୍ନ ପୁତ୍ର ପୁରୁରବାଙ୍କୁ ରାଜ୍ୟଭାର ପ୍ରଦାନ କରି ବନକୁ ଗମନ କରିଥିଲେ । ୪୨ ।

---

ଏମନ୍ତେ କେତେ କାଳଗଲା
ସୁଦ୍ୟୁମ୍ନ ମନେ ବିଚାରିଲା
ପୁରୁରବାକୁ ରାଜା କରି
ଛାଡ଼ିଲା ପ୍ରତିଷ୍ଠାନ ପୁରି

ତପ ସାଧନେ ବନେ ଗଲା
ସେ ବନେ ଶରୀର ଛାଡ଼ିଲା ।୪୨।
ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ

ଚନ୍ଦ୍ରବଂଶର ଆଦ୍ୟ ପିତା
ସୁଜନେ ମନେ କରି ଦୃଢ଼
ବଂଶାନୁଚରିତେ ଏ ବାଣୀ
ଶୁଣି ସଂସାରୁ ତରି ପ୍ରାଣୀ ॥



# ଦ୍ୱିତୀୟୋଽଧ୍ୟାୟଃ

ଦ୍ୱିତୀୟେ ମନୁପୁତ୍ରାଣାଂ ଦ୍ୱାବପୁତ୍ରୌ ହ୍ୟଗତଃ ।
କରୁଷକାଦପଞ୍ଚାନାଂ ବଂଶାନାହ ଲଘୁକ୍ରମାତ୍ ॥ (ଶ୍ରୀଧର ସ୍ୱାମୀ)

ଶ୍ରୀ ଶୁକ ଉବାଚ

ଏବଂ ଗତେଽଥ ସୁଦ୍ୟୁମ୍ନେ ମନୁର୍ବୈବସ୍ୱତଃ ସୁତେ ।
ପୁତ୍ରକାମସ୍ତପସ୍ତେପେ ଯମୁନାୟାଂ ଶତଂ ସମାଃ । ୧ ।
ତତୋଽଯଜନ୍ମନୁର୍ଦେବମପତ୍ୟାର୍ଥଂ ହରିଂ ପ୍ରଭୁମ୍ ।
ଇକ୍ଷ୍ୱାକୁପୂର୍ବଜାନ୍ ପୁତ୍ରାନ୍ ଲେଭେ ସ୍ୱସଦୃଶାନ୍ ଦଶ । ୨ ।

---

## ପୃଷଧ୍ର ଚରିତ ଓ କରୁଷାଦି ମନୁପୁତ୍ରଙ୍କର ବଂଶ ବିବରଣ ।

ଦ୍ୱିତୀୟ ଅଧ୍ୟାୟରେ ମନୁ ପୁତ୍ରମାନଙ୍କର ମଧ୍ୟରୁ ଦୁଇଜଣ ତପସ୍ୟା କରିଥିଲେ ଏବଂ କରୁଷ ପ୍ରଭୃତିଙ୍କର ବଂଶ କ୍ରମରେ କୁହାଯାଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଏହାପରେ ପୁତ୍ର ସୁଦ୍ୟୁମ୍ନ ବନଗମନ କରନ୍ତେ ବୈବସ୍ୱତ ମନୁ ପୁତ୍ର କାମନାରେ ଯମୁନାତୀରରେ ଶତବର୍ଷ ବ୍ୟାପୀ ତପସ୍ୟା କରିଥିଲେ । ୧ ।

ମନୁ ପୁତ୍ର କାମନାରେ ଭଗବାନ୍ ଶ୍ରୀହରିଙ୍କୁ ପୂଜା କଲେ ଏବଂ ତାହାପରେ ଇକ୍ଷ୍ୱାକୁ ପ୍ରଭୃତି ଦଶୋଟି ପୁତ୍ରଲାଭ କରିଥିଲେ । ୨ ।

---

ମନୁ-ପୁତ୍ରଙ୍କ ବଂଶ କଥା,   ଦ୍ୱିତୀୟ ଅଧ୍ୟାୟ ବ୍ୟବସ୍ଥା ॥

ଶ୍ରୀ ଶୁକଉବାଚ—

ସୁଦ୍ୟୁମ୍ନ ଶ୍ରୀଶିବଦେବ ବଳା
ତପ କରନ୍ତେ ବନେ ଗଲା
ସେତେ ଶୁଣିଲେ ଛାଡ଼ି ତନୁ
ତା ଶୁଣି ବୈବସ୍ୱତ ମନୁ
ଅପୁତ୍ର ଭୟେ ସେ ଉଚ୍ଚାଟେ
ମିଳିଲେ ଯମୁନାର ତଟେ
ଶତେକ ବରଷ ବେଦ ମତେ
ସମାଧି କରି ଦୃଢ଼ଚିତ୍ତେ
ସନ୍ତତି ଅର୍ଥେ ସୂର୍ଯ୍ୟବଳା
ବିଷ୍ଣୁ ଚରଣ ସେବା କଲା । ୧ ।
ଅନେକ ମତେ ସ୍ତୁତି କରି
ତୋଷିଲେ ପ୍ରଭୁ ନରହରି
ପ୍ରସନ୍ନ ହୋଇ ମହାବାହୁ
ବୋଇଲେ ଦଶ ପୁତ୍ର ହେବୁ
ଇକ୍ଷ୍ୱାକୁ ଆଦି ଦଶପୁତ୍ରେ
ହୋଇଲେ କହୁଅଛୁଁ ତୋତେ । ୨

ପୃଷଧ୍ରସ୍ତୁ ମନୋଃ ପୁତ୍ରୋ ଗୋପାଲୋ ଗୁରୁଣା କୃତଃ ।
ପାଲୟାମାସ ଗା ଯତ୍ତୋ ରାତ୍ର୍ୟାଂ ବୀରାସନବ୍ରତଃ । ୩ ।
ଏକଦା ପ୍ରାବିଶଦ୍‌ଗୋଷ୍ଠଂ ଶାର୍ଦ୍ଦୂଳୋ ନିଶି ବର୍ଷତି ।
ଶୟାନା ଗାବ ଉତ୍ଥାୟ ଭୀତାସ୍ତା ବଭ୍ରମୁର୍ବ୍ରଜେ । ୪ ।
ଏକାଂ ଜଗ୍ରାହ ବଳବାନ୍ ସା ଚୁକ୍ରୋଶ ଭୟାତୁରା ।
ତସ୍ୟାସ୍ତୁ କ୍ରନ୍ଦିତଂ ଶ୍ରୁତ୍ୱା ପୃଷଧ୍ରୋଽନୁସସାର ହ । ୫ ।
ଖଡ୍ଗମାଦାୟ ତରସା ପ୍ରଲୀନୋଡୁଗଣେ ନିଶି ।
ଅଜାନନ୍ନଚ୍ଛିନଦ୍‌ବଭ୍ରୋଃ ଶିରଃ ଶାର୍ଦ୍ଦୂଳଶଙ୍କୟା । ୬ ।
ବ୍ୟାଘ୍ରୋଽପି ବୃକ୍ଣଶ୍ରବଣୋ ନିସ୍ତ୍ରିଂଶାଗ୍ରାହତସ୍ତତଃ ।
ନିଶ୍ଚକ୍ରାମ ଭୃଶଂ ଭୀତୋ ରକ୍ତଂ ପଥି ସମୁତ୍ସୃଜନ୍ । ୭ ।

---

ମନୁଙ୍କର ପୁତ୍ର ପୃଷଧ୍ର ଗୁରୁଙ୍କ କର୍ତ୍ତୃକ ଗୋରକ୍ଷା କାର୍ଯ୍ୟରେ ନିଯୁକ୍ତ ହୋଇ ରାତ୍ରିରେ ହସ୍ତରେ ଖଡ୍‌ଗ ଧାରଣ କରି ଦଣ୍ଡାୟମାନ ହୋଇ ଗୋପାଳନ କରୁଥିଲେ । ୩ ।

ଥରେ ରାତ୍ରିକାଳରେ ବର୍ଷା ହେଉଥାଏ । ଗୋଟିଏ ବ୍ୟାଘ୍ର ଗୋଷ୍ଠ ମଧ୍ୟରେ ପ୍ରବେଶ କଲା । ତହୁଁ ଗୋମାନେ ଭୀତ ହୋଇ ଇତସ୍ତତଃ ଧାବମାନ ହେଲେ । ୪ ।

ମହାବଳ ବ୍ୟାଘ୍ର ଗୋଟିଏ ଗାଈକୁ ଆକ୍ରମଣ କରନ୍ତେ ସେ ଭୟାତୁର ହୋଇ କାତରରେ ଆର୍ତ୍ତଧ୍ୱନି କଲା । ପୃଷଧ୍ର ଗାଈର କ୍ରନ୍ଦନ ଶ୍ରବଣ କରି ସେଠାକୁ ଗମନ କଲେ । ୫ ।

ଅନ୍ଧକାର ରାତ୍ରିରେ ନକ୍ଷତ୍ରମାନେ ଅଦୃଶ୍ୟ ଥିଥନ୍ତେ ଅତି ବେଗରେ ଖଡ୍‌ଗଧାରଣ କରି ପୃଷଧ୍ର ବ୍ୟାଘ୍ର ଭ୍ରମରେ କପିଳା ଗାଈର ମସ୍ତକ ଛେଦନ କରିଥିଲେ । ୬ ।

ଖଡ୍‌ଗର ଅଗ୍ରଭାଗର ଆଘାତରେ ଛିନ୍ନ କର୍ଣ୍ଣ ହୋଇ ବ୍ୟାଘ୍ର ମଧ୍ୟ ପଥ ମଧ୍ୟରେ ରକ୍ତ ନିଃସରଣ କରି ସେ ସ୍ଥଳରୁ ପଳାୟନ କଲା । ୭ ।

---

ସେ ଦଶ-ପୁତ୍ର ମଧ୍ୟେ ଏକ
ପୃଷଧ୍ର ନାମେ ସୁବିବେକ
ବଶିଷ୍ଠ-ବାକ୍ୟେ ଗୋରୁ ପାଳେ
ରାତ୍ରେ ବୀରାସନେ ନିଶ୍ଚଳେ ।୩।
ଏମନ୍ତେ ଏକଦିନ ରାତ୍ରେ
ଅଶେଷ ବୃଷ୍ଟି ବଜ୍ରାଘାତେ
ଜନ୍ତୁଙ୍କ ନିଦ୍ରା ଘୋର କାଳେ
ଶାର୍ଦ୍ଦୂଳ ମିଳିଲା ଗୋକୁଳେ
ଆଘ୍ରାଣେ ତାର ବାସ ପାଇ
ଭୟେ ଉଠିଲେ ସର୍ବ ଗାଈ

ଭ୍ରମନ୍ତି ଇତସ୍ତତଃ ହୋଇ
ବ୍ୟାଘ୍ର ଧରିଲା ଏକ ଗାଈ
ବେଗେ ସ୍ପର୍ଶିଲା ନଖ ଦାନ୍ତ
ପୁଣି ଆକର୍ଷି ପୁଣ ପାତେ
ସେ ଗୋରୁ ଭୟେ ରାବ କଲା
ତା ଶୁଣି ଉଠି ମନୁ ବଳା
ତୀକ୍ଷ୍ଣ ଖଡ୍‌ଗ ହସ୍ତେ ଘେନି
ନିବିଡ଼ ଅନ୍ଧାର ରଜନୀ
କପିଳା ଗୋଷ୍ଠେ ଥିଲା ଶୋଇ
ଅନ୍ଧାରେ କେହି ନ ଜାଣଇ

ଶାର୍ଦ୍ଦୂଳ ବୋଲି ତାର ଶିର
ଛେଦିଲା ମନୁର କୁମର
ଖଡ୍‌ଗ ଶିଖା ବ୍ୟାଘ୍ର ମୁଣ୍ଡେ
ପଡ଼ି ଛେଦିଲା କାନ ଖଣ୍ଡେ
ବ୍ୟାଘ୍ରର ମୁଣ୍ଡ ହୋଇ କ୍ଷତ
ପଥରେ ବର୍ଷିଲା ରକତ ।୪-୭।

ମନ୍ୟମାନୋ ହତଂ ବ୍ୟାଘ୍ରଂ ପୃଷଧ୍ରଃ ପରବୀରହା ।
ଅଦ୍ରାକ୍ଷୀତ୍ ସ୍ୱହତାଂ ବଭ୍ରୁଂ ବ୍ୟୁଷ୍ଟାୟାଂ ନିଶି ଦୁଃଖିତଃ ।୮।
ତଂ ଶଶାପ କୁଳାଚାର୍ଯ୍ୟଃ କୃତାଗସମକାମତଃ ।
ନ କ୍ଷତ୍ରବନ୍ଧୁଃ ଶୂଦ୍ରସ୍ତ୍ୱଂ କର୍ମଣା ଭବିତାଽମୁନା ।୯।
ଏବଂ ଶପ୍ତସ୍ତୁ ଗୁରୁଣା ପ୍ରତ୍ୟଗୃହ୍ଣାତ୍ କୃତାଞ୍ଜଳିଃ ।
ଅଧାରୟଦ୍ବ୍ରତଂ ବୀର ଊର୍ଦ୍ଧ୍ୱରେତା ମୁନିପ୍ରିୟମ୍ ।୧୦।
ବାସୁଦେବେ ଭଗବତି ସର୍ବାତ୍ମନି ପରେଽମଳେ ।
ଏକାନ୍ତିତ୍ୱଂ ଗତୋ ଭକ୍ତ୍ୟା ସର୍ବଭୂତସୁହୃତ୍ସମଃ ।୧୧।
ବିମୁକ୍ତସଙ୍ଗଃ ଶାନ୍ତାତ୍ମା ସଂଯତାକ୍ଷୋଽପରିଗ୍ରହଃ ।
ଯଦୃଚ୍ଛୟୋପପନ୍ନେନ କଳ୍ପୟନ୍ ବୃତ୍ତିମାତ୍ମନଃ ।୧୨।

---

ଶତ୍ରୁଦମନକାରୀ ପୃଷଧ୍ର ପ୍ରଥମେ ଭାବିଲେ ଯେ ବ୍ୟାଘ୍ର ନିହତ ହୋଇଅଛି । କିନ୍ତୁ ପ୍ରଭାତ ହୁଅନ୍ତେ ଗାଈକୁ ବଧ କରିଅଛନ୍ତି ଦେଖି ଅତ୍ୟନ୍ତ ଦୁଃଖିତ ହେଲେ ।୮।

ପୃଷଧ୍ର ଅଜ୍ଞାତ ଅପରାଧ କରିଥିଲେ ମଧ୍ୟ କୁଳଗୁରୁ ବଶିଷ୍ଠ ତାଙ୍କୁ ଅଭିଶାପ ଦେଲେ, ତୁମ୍ଭେ କ୍ଷତ୍ରିୟ ହୋଇ ପୂଜ୍ୟ ଜନ୍ମ ନ ହୋଇ ଶୂଦ୍ରରୂପେ ଜନ୍ମ ହେବ ।୯।

ଗୁରୁ ବଶିଷ୍ଠଙ୍କ କର୍ତ୍ତୃକ ଏହିପରି ଅଭିଶପ୍ତ ହୋଇ କୃତାଞ୍ଜଳି ପୁଟରେ ତାହା ସ୍ୱୀକାର କରିଥିଲେ ଏବଂ ଜିତେନ୍ଦ୍ରିୟ ହୋଇ ମୁନି ଜନୋଚିତ ନିୟମ ପାଳନ କରିଥିଲେ ।୧୦।

ତଦନନ୍ତର ସେ ସର୍ବାତ୍ମା, ନିର୍ମଳ, ପରମପୁରୁଷ ଭଗବାନ୍ ବାସୁଦେବଙ୍କଠାରେ ଏକାନ୍ତ ଭାବ ସ୍ଥାପନ କରି ସର୍ବଭୂତର ସୁହୃତ୍ ଓ ସର୍ବତ୍ର ସମଦର୍ଶୀ ହୋଇଥିଲେ ।୧୧।

ସେ ସଙ୍ଗ ପରିତ୍ୟାଗ, ମନ ଓ ଇନ୍ଦ୍ରିୟକୁ ସଂଯମ କରି ଆକାଙ୍କ୍ଷା ରହିତ ହୋଇ ଯଦୃଚ୍ଛା ଲାଭରେ ( ଯାହା ପାଇଲେ ତହିଁରେ ସନ୍ତୁଷ୍ଟ ) ଜୀବିକା ନିର୍ବାହ କରିଥିଲେ ।୧୨।

---

ପୃଷଧ୍ର ଜାଣେ ବ୍ୟାଘ୍ର ମଲା
ଏମନ୍ତେ ରଜନୀ ପାହିଲା
ବଭ୍ରୁ ମରଣ କଥା ଶୁଣି
ବଶିଷ୍ଠ କୋପମନେ ପୁଣି
ମିଳିଲେ ପୃଷଧ୍ର ସମୀପେ
ତାହାକୁ ଶାପଦେଲେ କୋପେ
ତୁମ୍ଭେ ହୋଇଣ କ୍ଷତ୍ରି ଦେହ
ଏବେ ତୁ ଜନମ ଶୂଦ୍ର ହୁଅ ।୮,୯

ଏମନ୍ତେ ଗୁରୁ ଶାପ ପାଇ
କପାଳେ କରାଞ୍ଜଳି ଦେଇ
ଗୁରୁଙ୍କଠାରୁ ଶିକ୍ଷା ଧରେ
ଊର୍ଦ୍ଧ୍ୱରେତରେ ତପ କରେ ।୧୦
ବିଷ୍ଣୁର ଚରଣ କମଳେ
ସମାଧି କରି ଯୋଗବଳେ
ଆତ୍ମାକୁ ଭାବ ଏକେ ଏକେ
ସକଳ ଭୂତେ ହରି ଦେଖେ

ନିଗ୍ରହ କରି ଇନ୍ଦ୍ରିଗଣେ
ନିଃଶଙ୍କେ ନିର୍ଜ୍ଜନ ଅରଣ୍ୟେ
ଯେବା ମିଳଇ ଯେତେବେଳେ
ସେ ଭକ୍ଷ କରେ ସନ୍ଧ୍ୟାକାଳେ
।୧୧,୧୨।

ଆତ୍ମନ୍ୟାତ୍ମାନମାଧାୟ ଜ୍ଞାନତୃପ୍ତଃ ସମାହିତଃ ।
ବିଚଚାର ମହୀମେତାଂ ଜଡ଼ାନ୍ଧବଧିରାକୃତିଃ । ୧୩ ।
ଏବଂବୃତ୍ତୋ ବନଂ ଗତ୍ୱା ଦୃଷ୍ଟ୍ୱା ଦାବାଗ୍ନିମୁତ୍ଥିତମ୍ ।
ତେନୋପଯୁକ୍ତକରଣୋ ବ୍ରହ୍ମ ପ୍ରାପ ପରଂ ମୁନିଃ । ୧୪ ।
କବିଃ କନୀୟାନ୍ ବିଷୟେଷୁ ନିସ୍ପୃହୋ ବିସୃଜ୍ୟ ରାଜ୍ୟଂ ସହ ବନ୍ଧୁଭିର୍ବନମ୍ ।
ନିବେଶ୍ୟ ଚିତ୍ତେ ପୁରୁଷଂ ସ୍ୱରୋଚିଷଂ ବିବେଶ କୈଶୋରବୟାଃ ପରଂ ଗତଃ ।୧୫।
କରୁଷାନ୍ମାନବାଦାସନ୍ କାରୁଷାଃ କ୍ଷତ୍ରଜାତୟଃ ।
ଉତ୍ତରାପଥଗୋପ୍ତାରୋ ବ୍ରହ୍ମଣ୍ୟା ଧର୍ମ୍ମବତ୍ସଲାଃ । ୧୬ ।

---

ତଦନନ୍ତର ଭଗବତ୍ ତତ୍ତ୍ୱ ଜ୍ଞାନରେ ପରିତୃପ୍ତ ହୋଇ ପୃଷଧ୍ର ସଂଯତ ଭାବରେ ପରମାତ୍ମାଙ୍କଠାରେ ଜୀବାତ୍ମାର ମିଳନ ଘଟାଇକରି ଜଡ଼, ଅନ୍ଧ ଓ ବଧିର ତୁଲ୍ୟ ( ଅନାସକ୍ତ ଭାବରେ ) ପୃଥିବୀରେ ପରିଭ୍ରମଣ କରିଥିଲେ । ୧୩ ।

ଏହିପରି ଅନାସକ୍ତ ବୃତ୍ତି ଓ ମୁନି ଭାବାପନ୍ନ ପୃଷଧ୍ର ବନକୁ ଗମନ କରି ଦାବାଗ୍ନି ଦେଖି ତହିଁରେ ପ୍ରବେଶ କରି ଶରୀରକୁ ଦଗ୍ଧକରି ପରଂବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥିଲେ । ୧୪ ।

ମନୁଙ୍କର କନିଷ୍ଠ ପୁତ୍ର କବି କୈଶୋର ବୟସରେ ଭୋଗାଦି ବିଷୟରୁ ନିବୃତ୍ତହୋଇ ବନ୍ଧୁଗଣଙ୍କ ସହିତ ରାଜ୍ୟ ପରିତ୍ୟାଗ କରି ବନଗମନ କରିଥିଲେ ଏବଂ ହୃଦୟସ୍ଥ ପରମାତ୍ମାଙ୍କଠାରେ ଚିତ୍ତ ନିବେଶକରି ପରଂବ୍ରହ୍ମ ପ୍ରାପ୍ତ ହୋଇଥିଲେ । ୧୫ ।

ମନୁଙ୍କର ପୁତ୍ର କରୁଷଙ୍କଠାରୁ କାରୁଷ ନାମକ କ୍ଷତ୍ରିୟଜାତି ଉତ୍ପନ୍ନ ହୋଇଥିଲେ ଏବଂ ସେମାନେ ବ୍ରାହ୍ମଣଭକ୍ତ ଧର୍ମ ବତ୍ସଳ ହୋଇ ଉତ୍ତରାପଥ ରକ୍ଷକ ହୋଇଥିଲେ । ୧୬ ।

---

ଶରୀର ଆତ୍ମାର ସଂଯତେ
ଜଡ଼ ବଧିର ଅନ୍ଧମତେ
ଭୂମି କରଇ ପର୍ଯ୍ୟଟନ
ଏମନ୍ତେ ଗଲା କେତେ ଦିନ
ଏମନ୍ତେ ହୋଏ ଗ୍ରୀଷ୍ମ କାଳ
ବନରେ ଉଠିଲା ଅନଳ
ସେ ଅଗ୍ନି ମଧ୍ୟେ ଦେହ ଦେଲା
ତକ୍ଷଣେ ଗୋବିନ୍ଦେ ପଶିଲା ୧୩,୧୪

ତା ଦେଖି ତାର ସାନ ଭାଇ
ବିଷୟ ରସେ ନ ରସଇ
ରାଜ୍ୟ ବିସର୍ଜ୍ଜି ବନ୍ଧୁ ନେଲେ
ପଶିଲା ଅରଣ୍ୟ ଗହଳେ
ନାରାୟଣ ପାଦେ
ଭକ୍ତି କରିଲା ଅପ୍ରମାଦେ
ଅନ୍ତେ ପଶିଲା ହରି ଦେହେ
କିଶୋର ବୟସେ ସେ ଦେହେ ।୧୫।

କରୁଷ ତହୁଁ ଯେତେ ସୁତ
ରାଜା ହୋଇଲେ ବଳବନ୍ତ
ସ୍ୱଭାବେ ବ୍ରହ୍ମଣ୍ୟ ଧାର୍ମିକ
ନିରତେ ବିଷ୍ଣୁର ସେବକ
ଉତ୍ତର ପଥେ ହୋଇ ରାଜା
ଧର୍ମ୍ମେ ପାଳିଲେ ଜନ ପ୍ରଜା ।୧୬।

ଧୃଷ୍ଟାଦ୍ଧାର୍ଷ୍ଟମଭୂତ୍ କ୍ଷତ୍ରଂ ବ୍ରହ୍ମଭୂୟଂ ଗତଂ କ୍ଷିତୌ ।
ନୃଗସ୍ୟ ବଂଶଃ ସୁମତିର୍ଭୂତଜ୍ୟୋତିସ୍ତତୋ ବସୁଃ । ୧୭ ।
ବସୋଃ ପ୍ରତୀକସ୍ତତ୍ ପୁତ୍ର ଓଘବାନୋଘବତ୍ ପିତା ।
କନ୍ୟା ଚୌଘବତୀ ନାମ ସୁଦର୍ଶନ ଉବାହ ତାମ୍ । ୧୮ ।
ଚିତ୍ରସେନୋ ନରିଷ୍ୟନ୍ତାଦୃକ୍ଷସ୍ତସ୍ୟ ସୁତୋଽଭବତ୍ ।
ତସ୍ୟ ମୀଢ୍ୱାଂସ୍ତତଃ ପୂର୍ଣ୍ଣ ଇନ୍ଦ୍ରସେନସ୍ତୁ ତତ୍ସୁତଃ । ୧୯ ।
ବୀତିହୋତ୍ରସ୍ତ୍ୱିନ୍ଦ୍ରସେନାଂ ତସ୍ୟ ସତ୍ୟଶ୍ରବା ଅଭୂତ୍ ।
ଉରୁଶ୍ରବାଃ ସୁତସ୍ତସ୍ୟ ଦେବଦତ୍ତସ୍ତତୋଽଭବତ୍ । ୨୦ ।
ତତୋଽଗ୍ନିବେଶ୍ୟୋ ଭଗବାନଗ୍ନିଃ ସ୍ୱୟମଭୂତ୍ ସୁତଃ ।
କାନୀନ ଇତି ବିଖ୍ୟାତୋ ଜାତୂକର୍ଣ୍ଣୋ ମହାନୃଷିଃ । ୨୧ ।

ଧୃଷ୍ଟ ନାମକ ମନୁ ପୁତ୍ରଙ୍କଠାରୁ ଧାର୍ଷ୍ଟ ନାମକ କ୍ଷତ୍ରିୟ ଜାତି ଉତ୍ପନ୍ନ । ସେମାନେ ପୃଥିବୀରେ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇଥିଲେ । ନୃଗ ନାମକ ମନୁପୁତ୍ରଙ୍କଠାରୁ ସୁମତିଙ୍କର ଜନ୍ମ, ସୁମତିଙ୍କଠାରୁ ଭୂତଜ୍ୟୋତି ଓ ତାଙ୍କଠାରୁ ବସୁ ଜାତ ହୋଇଥିଲେ । ୧୭ ।

ବସୁଙ୍କର ପୁତ୍ର ପ୍ରତୀକ, ପ୍ରତୀକଙ୍କର ପୁତ୍ର ଓଘବାନ ଓ ଓଘବାନଙ୍କର ପୁତ୍ର ମଧ୍ୟ ଓଘବାନ୍ ଓ କନ୍ୟା ଓଘବତୀ । ସୁଦର୍ଶନ ଏହି ଓଘବତୀଙ୍କୁ ବିବାହ କରିଥିଲେ ।

ନରିଷ୍ୟନ୍ତଙ୍କଠାରୁ ଚିତ୍ରସେନ, ତାହାଙ୍କର ପୁତ୍ର ଋକ୍ଷ, ତାହାଙ୍କର ପୁତ୍ର ମୀଢ୍ୱାନ୍ ତାହାଙ୍କର ପୁତ୍ର ପୂର୍ଣ୍ଣ, ତାହାଙ୍କର ପୁତ୍ର ଇନ୍ଦ୍ରସେନ । ୧୯ ।

ଇନ୍ଦ୍ରସେନଙ୍କର ପୁତ୍ର ବୀତିହୋତ୍ର, ତାହାଙ୍କର ପୁତ୍ର ସତ୍ୟଶ୍ରବା, ତାହାଙ୍କର ପୁତ୍ର ଉରୁଶ୍ରବା ଏବଂ ତାହାଙ୍କଠାରୁ ଦେବଦତ୍ତ ଜନ୍ମଗ୍ରହଣ କରିଥିଲେ । ୨୦ ।

ସ୍ୱୟଂ ଭଗବାନ୍ ଅଗ୍ନି, ଦେବଦତ୍ତଙ୍କର ପୁତ୍ର ଅଗ୍ନିବେଶ୍ୟରୂପେ ଜନ୍ମଗ୍ରହଣ କରିଥିଲେ । ଅଗ୍ନିବେଶ୍ୟ କାନୀନ ଏବଂ ଜାତୁକର୍ଣ୍ଣ ନାମରେ ବିଖ୍ୟାତ ମହାନ୍ ଋଷି ଥିଲେ । ୨୧ ।

ଧୃଷ୍ଟରୁ ଧାର୍ଷ୍ଟ କ୍ଷତ୍ରି ହୋଏ
ସେ ନ ସହିଲ ମାୟା ମୋହେ
ଭାରତେ ଜ୍ଞାନ ଭାବେ ଜାଣି
ପୂଜିଲ ପ୍ରଭୁ ଚକ୍ରପାଣି
ହରି ଭକତ ଭାବଦଭେ
ପଶିଲ ସମାଧି କଷ୍ଟକେ
ନୃଗର ବଂଶେ ଭୂତ ଜ୍ୟୋତି
ବସୁ ଯେ ତାହାର ସନ୍ତତି । ୧୭ ।
ପ୍ରତୀକ ବସୁ ଠାରୁଁ ଜାତ
ଓଘବାନ ନାମେ ତା ସୁତ

ତାହାର କନ୍ୟା ଓଘବତୀ
ସୁଦରଶନ ତାର ପତି । ୧୮ ।
ନରିଷ୍ୟନ୍ତର ଯେ ନନ୍ଦନ
ନାମ ତାହାର ଚିତ୍ରସେନ
ଚିତ୍ରସେନର ପୁତ୍ର ଋକ୍ଷ
ତହୁଁ ମୀଢବାନ ପ୍ରତ୍ୟକ୍ଷ
ମୀଢ୍ୱର ପୁତ୍ର ନାମ ପୂର୍ଣ୍ଣ
ଇନ୍ଦ୍ରସେନ ତାର ନନ୍ଦନ
ତାହାଙ୍କ ସୁତ ବୀତିହୋତ୍ର
ତା ଠାରୁଁ ସତ୍ୟଶ୍ରବା ଜାତ

ଉରୁଶ୍ରବା ତାହାଙ୍କ ସୁତ
ତାଠାରୁଁ ଜାତ ଦେବଦତ୍ତ । ୧୯, ୨୦
ଅଗ୍ନି ବେଶ୍ୟ ତାଙ୍କ ସନ୍ତତି
ତା ଠାରୁଁ ଅଗ୍ନି ଉତପତ୍ତି
ଅଗ୍ନିବେଶ୍ୟଙ୍କ ଦୁଇନାମ
ଯେ ଜାତୁ କର୍ଣ୍ଣ ଯେ କାନୀନ । ୨୧

ତତୋ ବ୍ରହ୍ମକୁଳଂ ଜାତମାଗ୍ନିବେଶ୍ୟାୟନଂ ନୃପ ।
ନରିଷ୍ୟନ୍ତାନ୍ୱୟଃ ପ୍ରୋକ୍ତୋ ଦିଷ୍ଟବଂଶମତଃ ଶୃଣୁ । ୨୨ ।
ନାଭାଗୋ ଦିଷ୍ଟପୁତ୍ରୋଽନ୍ୟଃ କର୍ମଣା ବୈଶ୍ୟତାଂ ଗତଃ ।
ଭଲନ୍ଦନଃ ସୁତସ୍ତସ୍ୟ ବତ୍ସପ୍ରୀତିର୍ଭଲନ୍ଦନାତ୍ । ୨୩ ।
ବତ୍ସପ୍ରୀତେଃ ସୁତଃ ପ୍ରାଂଶୁସ୍ତତ୍ସୁତଂ ପ୍ରମତିଂ ବିଦୁଃ ।
ଖନିତ୍ରଃ ପ୍ରମତେସ୍ତସ୍ମାଚ୍ଚାକ୍ଷୁଷୋଽଥ ବିବିଂଶତିଃ । ୨୪ ।
ବିବିଂଶତେଃ ସୁତୋ ରମ୍ଭଃ ଖନୀନେତ୍ରୋଽସ୍ୟ ଧାର୍ମିକଃ ।
କରନ୍ଧମୋ ମହାରାଜ ତସ୍ୟାସୀଦାତ୍ମଜୋ ନୃପଃ । ୨୫ ।
ତସ୍ୟାବିକ୍ଷିତ୍ ସୁତୋ ଯସ୍ୟ ମରୁତ୍ତଶ୍ଚକ୍ରବର୍ତ୍ତ୍ୟଭୂତ୍ ।
ସଂବର୍ତ୍ତୋଽଯାଜୟଦ୍ୟଂ ବୈ ମହାଯୋଗ୍ୟଙ୍ଗିରଃ ସୁତଃ । ୨୬ ।

---

ଏହି ଅଗ୍ନିବେଶ୍ୟଙ୍କଠାରୁ ଅଗ୍ନିବେଶ୍ୟାୟନ ନାମକ ପ୍ରସିଦ୍ଧ ବ୍ରହ୍ମକୁଳ ଉତ୍ପନ୍ନ ହୋଇଥିଲା । ହେ ରାଜନ୍ ! ନରିଷ୍ୟନ୍ତଙ୍କ ବଂଶ ବର୍ଣ୍ଣିତ ହେଲା ବର୍ତ୍ତମାନ ଦିଷ୍ଟବଂଶ ଶ୍ରବଣ କରନ୍ତୁ । ୨୨ ।

ଦିଷ୍ଟଙ୍କର ପୁତ୍ର ନାଭାଗ । ସେ କର୍ମଦ୍ୱାରା ବୈଶ୍ୟତ୍ୱ ପ୍ରାପ୍ତ ହୋଇଥିଲେ ନାଭାଗଙ୍କ ପୁତ୍ର ଭଲନ୍ଦନ । ଭଲନ୍ଦନଙ୍କ ପୁତ୍ର ବତ୍ସପ୍ରୀତି । ୨୩ ।

ତାହାଙ୍କର ପୁତ୍ର ପ୍ରାଂଶୁ । ପ୍ରାଂଶୁଙ୍କର ପୁତ୍ର ପ୍ରମତି, ପ୍ରମତିଙ୍କର ପୁତ୍ର ଖନିତ୍ର । ଖନିତ୍ରଙ୍କର ପୁତ୍ର ଚାକ୍ଷୁଷ । ଚାକ୍ଷୁଷଙ୍କର ପୁତ୍ର ବିବିଂଶତି । ୨୪ ।

ବିବିଂଶତିଙ୍କ ପୁତ୍ର ରମ୍ଭ । ରମ୍ଭଙ୍କର ଖନୀନେତ୍ର ନାମକ ଧାର୍ମିକ ପୁତ୍ର ଜାତ ହୋଇଥିଲା । ଖନୀନେତ୍ରଙ୍କର ପୁତ୍ର କରନ୍ଧମ ରାଜା ହୋଇଥିଲେ । କରନ୍ଧମଙ୍କର ପୁତ୍ର ଅବିକ୍ଷିତ । ତାହାଙ୍କର ପୁତ୍ର ମରୁତ୍ତ । ସେ ଚକ୍ରବର୍ତ୍ତୀ ହୋଇଥିଲେ ଏବଂ ସେ ଅଙ୍ଗିରାଙ୍କର ପୁତ୍ର ମହାଯୋଗୀ ସମ୍ବର୍ତ୍ତନଙ୍କ ଉପଦେଶରେ ଯଜ୍ଞ କରିଥିଲେ । ୨୫, ୨୬ ।

---

ଏ ଦୁଇନାମେ ମହାଋଷି
ଜଗତମଧ୍ୟେ ସଦା ଘୋଷି
ତହିଁରୁ ଅଗ୍ନି ବେଶ୍ୟାୟଣ
ନାମରେ ବ୍ରହ୍ମକୁଳ ଜନ୍ମ । ୨୨ ।
ଦିଷ୍ଟ ବଂଶର କଥାମାନ
ଏବେ ତୁ ଶୁଣ ହୋ ରାଜନ
ନାଭାଗ ଦିଷ୍ଟର ନନ୍ଦନ
ତାଙ୍କ ତନୟ ଭଲନ୍ଦନ
ଭଲନ୍ଦନର ଯେ ସନ୍ତତି
ତାହାଙ୍କ ନାମ ବତ୍ସ ପ୍ରୀତି । ୨୩ ।

ପ୍ରାଂଶୁ ତାହାର ସୁତ ହୋଏ
ଯା ରୂପ କନ୍ଦର୍ପକୁ ମୋହେ
ପ୍ରମତି ନାମେ ତାର ସୁତ
ଖନିତ୍ର ତାର ବଂଶେ ଜାତ
ଚାକ୍ଷୁଷ ନାମେ ତାର ପୁତ୍ର
ବିବିଂଶତି ତାହାର ସୁତ
ତହିଁରୁ ରମ୍ଭ ହେଲା ଜାତ
ଶୁଣ ରାଜନ ସାବହିତ
ଖନୀନେତ୍ର ତାର ବାଳକ
ଥିଲା ଯେ ପରମ ଧାର୍ମିକ

ତାର ତନୟ କରନ୍ଧମ
ନୃପତି ହୋଇଲା ଭୁବନ । ୨୪, ୨୫
ଅବିକ୍ଷି ତାହାର କୁମର
ଗୁଣେ ମୋହିଲା ତିନିପୁର
ମରୁତେ ତାହାର ସନ୍ତତି
ସେ ଭୂମିମଧ୍ୟେ ଚକ୍ରବର୍ତ୍ତୀ
ସମ୍ବର୍ତ୍ତ ଅଙ୍ଗିରାର ବଳା
ଯାହାରେ ଯାଗ କରାଇଲା । ୨୬ ।

ମରୁତ୍ତସ୍ୟ ଯଥା ଯଜ୍ଞୋ ନ ତଥାନ୍ୟୋଽସ୍ତି କଶ୍ଚନ ।
ସର୍ବଂ ହିରଣ୍ମୟଂ ତ୍ୱାସୀଦ୍ ଯତ୍‌କିଞ୍ଚାସ୍ୟ ଶୋଭନମ୍ । ୨୭ ।
ଅମାଦ୍ୟଦିନ୍ଦ୍ରଃ ସୋମେନ ଦକ୍ଷିଣାଭିର୍ଦ୍ୱିଜାତୟଃ ।
ମରୁତଃ ପରିବେଷ୍ଟାରୋ ବିଶ୍ୱେଦେବାଃ ସଭାସଦଃ । ୨୮ ।
ମରୁତ୍ତସ୍ୟ ଦମଃ ପୁତ୍ରସ୍ତସ୍ୟାସୀଦ୍ରାଜବର୍ଦ୍ଧନଃ ।
ସୁଧୃତିସ୍ତତ୍ସୁତୋ ଜଜ୍ଞେ ସୌଧୃତେୟୋ ନରଃ ସୁତଃ । ୨୯ ।
ତତ୍ସୁତଃ କେବଲସ୍ତସ୍ମାଦ୍ ଧୁନ୍ଧୁମାନ୍ ବେଗବାଂସ୍ତତଃ ।
ବୁଧ ସ୍ତସ୍ୟାଭବଦ୍‌ଯସ୍ୟ ତୃଣବିନ୍ଦୁର୍ମହୀପତିଃ । ୩୦ ।
ତଂ ଭେଜେଽଲମ୍ବୁଷା ଦେବୀ ଭଜନୀୟଗୁଣାଳୟମ୍ ।
ବରାପ୍ସରା ଯତଃ ପୁତ୍ରାଃ କନ୍ୟା ଚେଲବିଲାଭବତ୍ । ୩୧ ।

---

ମରୁତ୍ତଙ୍କର ଅନୁଷ୍ଠିତ ଯଜ୍ଞ ତୁଲ୍ୟ ଯଜ୍ଞ ହୋଇନାହିଁ । ତହିଁରେ ବ୍ୟବହୃତ ଯଜ୍ଞ ପାତ୍ରାଦି ସ୍ୱର୍ଣ୍ଣମୟ ଓ ଅତ୍ୟନ୍ତ ଶୋଭନୀୟ ହୋଇଥିଲା । ୨୭ ।

ମରୁତ୍ତଙ୍କର ଯଜ୍ଞରେ ଇନ୍ଦ୍ର ସୋମରସ ପାନରେ ଅତ୍ୟନ୍ତ ହୃଷ୍ଟ ହୋଇଥିଲେ ଏବଂ ବ୍ରାହ୍ମଣମାନେ ଦକ୍ଷିଣା ଲାଭରେ ଆହ୍ଲାଦିତ ହୋଇଥିଲେ । ଏହି ଯଜ୍ଞରେ ମରୁଦ୍‌ଗଣ ପରିବେଷ୍ଟା ଏବଂ ବିଶ୍ୱଦେବମାନେ ସଭାସଦ୍ ଥିଲେ । ମରୁତଙ୍କର ପୁତ୍ର ଦମ, ତାହାଙ୍କର ପୁତ୍ର ରାଜବର୍ଦ୍ଧନ, ତାହାଙ୍କର ପୁତ୍ର ସୁଧୃତି ଓ ତାହାଙ୍କର ପୁତ୍ର ନର । ୨୮, ୨୯ ।

ନରଙ୍କର ପୁତ୍ର ଧୁନ୍ଧୁମାନ, ଧୁନ୍ଧୁମାନଙ୍କର ପୁତ୍ର ବେଗବାନ୍, ତାହାଙ୍କର ପୁତ୍ର ବୁଧ, ବୁଧଙ୍କର ପୁତ୍ର ରାଜା ତୃଣ ବିନ୍ଦୁ । ତୃଣବିନ୍ଦୁ ବହୁଗୁଣର ଆଧାର ଥିଲେ । ସେହି ଶ୍ରେଷ୍ଠ ଗୁଣ ସମ୍ପନ୍ନ ନୃପତିଙ୍କୁ ଶ୍ରେଷ୍ଠା ଅପ୍ସରା ଅଳମ୍ବୁସା ଦେବୀ ଭଜନା କରିଥିଲେ । ଅଳମ୍ବୁସାଙ୍କ ଗର୍ଭରେ ତୃଣବିନ୍ଦୁଙ୍କର କେତୋଟି ପୁତ୍ର ଓ ଇଳା ବିଳା ନାମ୍ନୀ କନ୍ୟା ଉତ୍ପନ୍ନ ହୋଇଥିଲେ । ୩୦, ୩୧ ।

---

ସେ ଯଜ୍ଞେ ସର୍ବ ଦେବେ ଆସି
କଟିେ ସେ ଯଜ୍ଞକୁ ପ୍ରଶଂସି
ବୋଲନ୍ତି ଯଜ୍ଞ ପାତ୍ରେ ରହି
ଏମନ୍ତ ଦେଖିଲୁ ତ ନାହିଁ
ହିରଣ୍ୟମୟ ବସ୍ତୁ ଦେଖି
ସର୍ବ ଶୋଭନ ଦେଖି ସୁଖୀ
ଇନ୍ଦ୍ର ମାତିଲା ସୋମ ଖାଇ
ବିପ୍ରେ ମାତିଲେ ଦାନ ପାଇ
ଯାର ସଭରେ ବିଶ୍ୱେଦେବା
ବାୟୁ ସମେତେ କଲେ ସେବା ୨୭, ୨୮

ମରୁତ ସୁତ ଦମ ନାମ
ଜଗତ ରୂପ ଦେଖେ ସମ
ରାଜ୍ୟବର୍ଦ୍ଧନ ତା ନନ୍ଦନ
ତାର ସୁଧୃତି ଅନୁପମ
ସୁଧୃତି କୁମର ସୌଧୃତି
ନର ନାମରେ ସେହୁ ଖ୍ୟାତି । ୨୯
କେବଳ ତାହାର ନନ୍ଦନ
ତାହାର ପୁତ୍ର ଧୁନ୍ଧୁମାନ
ତାର କୁମର ବେଗବାନ
ତାର କୁମର ବୁଧ ନାମ

ତାର କୁମର ତୃଣବିନ୍ଦୁ
ତା ରୂପ ପଟାନ୍ତର ଇନ୍ଦୁ । ୩୦ ।
ତାହାର ପତ୍ନୀ ଅଳମ୍ବୁଷ
ଅପ୍ସରାଗଣେ ରୂପ ଶେଷ
ତା ଗର୍ଭେ ଇଡବିଡା ଜାତ
ବିଶ୍ରବା ମୁନି ଯାର କାନ୍ତ
ବିଶ୍ରବା ଇଡବିଡା ଗର୍ଭେ
କୁବେର ଉପୁଜିଲା ସର୍ବେ

ଯସ୍ୟାମୁତ୍ପାଦୟାମାସ ବିଶ୍ରବା ଧନଦଂ ସୁତମ୍ ।
ପ୍ରାଦାୟ ବିଦ୍ୟାଂ ପରମାମୃଷିର୍ଯୋଗେଶ୍ୱରଃ ପିତୁଃ । ୩୨ ।
ବିଶାଳଃ ଶୂନ୍ୟବନ୍ଧୁଶ୍ଚ ଧୂମ୍ରକେତୁଶ୍ଚ ତତ୍ସୁତାଃ ।
ବିଶାଳୋ ବଂଶକୃଦ୍ରାଜା ବୈଶାଳୀଂ ନିର୍ମ୍ମମେ ପୁରୀମ୍ । ୩୩ ।
ହେମଚନ୍ଦ୍ରଃ ସୁତସ୍ତସ୍ୟ ଧୂମ୍ରାକ୍ଷସ୍ତସ୍ୟ ଚାତ୍ମଜଃ ।
ତତ୍ପୁତ୍ରାତ୍ସଂଯମାଦାସୀତ୍ କୃଶାଶ୍ୱଃ ସହଦେବଜଃ । ୩୪ ।
କୃଶାଶ୍ୱାତ୍ ସୋମଦତ୍ତୋଽଭୂଦ୍ୟୋଽଶ୍ୱମେଧୈରିଡ଼ସ୍ପତିମ୍ ।
ଇଷ୍ଟ୍ୱା ପୁରୁଷମାପାଗ୍ର୍ୟାଂ ଗତିଂ ଯୋଗେଶ୍ୱରାଶ୍ରିତାମ୍ । ୩୫ ।
ସୋମଦତ୍ତିସ୍ତୁ ସୁମତିସ୍ତତ୍ପୁତ୍ରୋ ଜନମେଜୟଃ ।
ଏତେ ବୈଶାଳଭୂପାଲାସ୍ତୃଣବିନ୍ଦୋର୍ଯଶୋଧରାଃ । ୩୬ ।

---

ହେ ରାଜନ୍ ! ଯୋଗୀଶ୍ୱର ବିଶ୍ରବା ଋଷି ପିତାଙ୍କଠାରୁ ପରମବିଦ୍ୟା ଲାଭ କରି ଏହି ଇଳା, ବିଳାଙ୍କ ଗର୍ଭରେ କୁବେରଙ୍କୁ ଉତ୍ପାଦନ କରିଥିଲେ । ୩୨ ।

ତୃଣବିନ୍ଦୁଙ୍କର ବିଶାଳ, ଶୂନ୍ୟବନ୍ଧୁ ଏବଂ ଧୂମ୍ରକେତୁ ଏହି ତିନିପୁତ୍ର । ସେମାନଙ୍କ ମଧ୍ୟରେ ବିଶାଳ ବଂଶକାରୀ ରାଜା ହୋଇଥିଲେ । ସେ ବୈଶାଳୀ ପୁରୀ ନିର୍ମାଣ କରିଥିଲେ । ୩୩ ।

ବିଶାଳଙ୍କର ପୁତ୍ର ହେମଚନ୍ଦ୍ର । ତାହାଙ୍କର ପୁତ୍ର ଧୂମ୍ରାକ୍ଷ, ତାହାଙ୍କର ପୁତ୍ର ସଂଯମ, ତାହାଙ୍କର ପୁତ୍ର କୃଶାଶ୍ୱ ଓ ଦେବଜ, କୃଶାଶ୍ୱଙ୍କର ପୁତ୍ର ସୋମଦତ୍ତ, ସେ ବହୁ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କରି ଯଜ୍ଞପତି ପରମ ପୁରୁଷ ଶ୍ରୀହରିଙ୍କୁ ଅର୍ଚ୍ଚନା କରି ଶ୍ରେଷ୍ଠ ଗତିଲାଭ କରିଥିଲେ । ୩୪, ୩୫ ।

ସୋମଦତ୍ତଙ୍କର ପୁତ୍ର ସୁମତି । ସୁମତିଙ୍କର ପୁତ୍ର ଜନମେଜୟ । ଏମାନେ ସମସ୍ତେ ତୃଣବିନ୍ଦୁଙ୍କର କୀର୍ତ୍ତି ରକ୍ଷକ ଏବଂ ବିଶାଳଙ୍କ ବଂଶରେ ଜାତ ହୋଇଥିଲେ । ୩୬ ।

---

ସେ ମୁନି ଯୋଗେଶ୍ୱର ବଳା
ଆନନ୍ଦେ ପୁତ୍ରେ ଶିଖାଇଲା । ୩୧, ୩୨
ତୃଣବିନ୍ଦୁର ପୁତ୍ରଗଣ
ଏବେ ତାହାଙ୍କ ନାମ ଶୁଣ
ବିଶାଳ ଆଉ ଶୂନ୍ୟ ବନ୍ଧୁ
ଅପର ନାମ ଧୂମ୍ରକେତୁ
ବିଶାଳ ପୁରୀ ଯେ ନିର୍ମାଇ
ତା ତହୁଁ ହେମଚନ୍ଦ୍ର ହୋଇ । ୩୩ ।
ଧୂମ୍ରାକ୍ଷ ନାମେ ତାର ସୁତ
ତାର ମହିମା ଅଲୌକିକ
ସଂଯମ ତାହାର ତନୁଜ
ତହୁଁ କୃଶାଶ୍ୱ ଯେ ଦେବଜ

କୃଶାଶ୍ୱ ପୁତ୍ର ସୋମଦତ୍ତ
ଯାହାର ମହିମା ଅଦ୍ଭୁତ
ଆନନ୍ଦେ ଅଶ୍ୱମେଧ କଲା
ପରମବ୍ରହ୍ମେ ଯେ ପଶିଲା । ୩୪, ୩୫
ସୁମତି ସୋମଦତ୍ତ ବଳା
ରୂପେ ବିଜିତେ କାମକଳା
ତାର କୁମର ମହାଶୟ
ଯାହାର ନାମ ଜନମେଜୟ
ବିଶାଳ ବଂଶେ ଏତେ ରାଜା
ସୁଖେ ପାଳିଲେ ଜନ ପ୍ରଜା
ଯଶ ତାଙ୍କର ନିଜ ଧନ
ସକଳ ଗୁଣେ ସମ୍ପାଦନ । ୩୬ ।

ଏମନ୍ତେ କହିଲି ମୁଁ ଯେତେ
ତୋ ଆଗେ ବଂଶାନୁଚରିତେ
ଯେ ଏହା ଶୁଣନ୍ତି ଗୁଣନ୍ତି
ଅପୁତ୍ରେ ସୁପୁତ୍ର ଲଭନ୍ତି
କମଳା ରହେ ତା ଭୁବନେ
ଯଶ ବଢଇ ଦିନେ ଦିନେ
ବୋଲଇ ଦାସ ଜଗନ୍ନାଥ
ନବମସ୍କନ୍ଧେ ଭାଗବତ ॥



ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ଦ୍ୱିତୀୟୋଽଧ୍ୟାୟଃ ।

---

## ତୃତୀୟୋଽଧ୍ୟାୟଃ

ତୃତୀୟେ ମନୁପୁତ୍ରସ୍ୟ ଶର୍ଯ୍ୟାତେଃ କୀର୍ତ୍ତିତୋଽନ୍ୱୟଃ ।
ଯତ୍ର ସୌକନ୍ୟମାଖ୍ୟାନଂ ରୈବତସ୍ୟ ମହାଦ୍ଭୁତଂ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ଶର୍ଯ୍ୟାତିର୍ମାନବୋ ରାଜା ବ୍ରହ୍ମିଷ୍ଠଃ ସଂବଭୂବ ହ ।
ଯୋ ବା ଅଙ୍ଗିରସାଂସତ୍ରେ ଦ୍ୱିତୀୟମହରୂଚିବାନ୍ । ୧ ।
ସୁକନ୍ୟା ନାମ ତସ୍ୟାସୀତ୍ କନ୍ୟା କମଲଲୋଚନା ।
ତୟା ସାର୍ଦ୍ଧଂ ବନଗତୋ ହ୍ୟଗମଚ୍ୟବନାଶ୍ରମମ୍ । ୨ ।

---

### ଶର୍ଯ୍ୟାତି ବଂଶ, ସୁକନ୍ୟୋପାଖ୍ୟାନ, ରେବତୀ ଉପାଖ୍ୟାନ ।

ତୃତୀୟ ଅଧ୍ୟାୟରେ ମନୁଙ୍କର ପୁତ୍ର ଶର୍ଯ୍ୟାତିଙ୍କର ବଂଶ କୀର୍ତ୍ତି ବର୍ଣ୍ଣନା କରାଯାଇ ସୌକନ୍ୟ ଏବଂ ରୈବତଙ୍କର ଅଦ୍ଭୁତ ବିଷୟ ବର୍ଣ୍ଣନା କରାଯାଇଅଛି ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ମନୁପୁତ୍ର ଶର୍ଯ୍ୟାତି ଅତ୍ୟନ୍ତ ବେଦାର୍ଥ ତତ୍ତ୍ୱଜ୍ଞ ରାଜା ଥିଲେ । ସେହି ଶର୍ଯ୍ୟାତି ଅଙ୍ଗିରାମାନଙ୍କର ଯଜ୍ଞରେ ଦ୍ୱିତୀୟ ଦିବସର କର୍ତ୍ତବ୍ୟ କର୍ମର ଉପଦେଶ ପ୍ରଦାନ କରିଥିଲେ । ୧ ।

ସୁକନ୍ୟା ନାମରେ ଶର୍ଯ୍ୟାତିଙ୍କର ଗୋଟିଏ ସୁନ୍ଦରୀ କନ୍ୟା ଥିଲା । ସେହି କନ୍ୟା ସହିତ ଶର୍ଯ୍ୟାତି ବନଗମନ କରି ଚ୍ୟବନ ଋଷିଙ୍କର ଆଶ୍ରମରେ ଉପସ୍ଥିତ ହୋଇଥିଲେ । ୨ ।

---

ଶର୍ଯ୍ୟାତି ବଂଶାନୁଚରିତ ।　　ତୃତୀୟ ଅଧ୍ୟାୟ ବର୍ଣ୍ଣିତ ॥

ଶ୍ରୀ ଶୁକଉବାଚ—

ଏବେ ହୋ ଶୁଣ ସାବଧାନେ
ମନୁର ବଂଶାନୁବିଧାନେ
ଶର୍ଯ୍ୟାତି ନାମେ ମନୁ ସୁତ
ଶୁଣ ହୋ ତାହାର ଚରିତ
ସ୍ୱଭାବେ ବ୍ରହ୍ମିଷ୍ଠ ହୋଇଣ
ଅଙ୍ଗିରା ଯଜ୍ଞେ ଦୀକ୍ଷା ଦେଲା ।୧।

ସୁକନ୍ୟା ବୋଲି ତାର କନ୍ୟା
ହୋଇଲା ରୂପେ ଅନୁପମା
ସେ କନ୍ୟା ପିତାର ସଙ୍ଗତେ
ଆନନ୍ଦେ ପଶିଲା ବନସ୍ତେ
କୁମାରୀ ସାତ ସାଥୀ ସଙ୍ଗେ
ବନେ ବୁଲନ୍ତି ଅତି ରଙ୍ଗେ
ସେ ବନେ ଭୃଗୁର ନନ୍ଦନ
ତପସ୍ୱୀ ନାମ ତା ଚ୍ୟବନ

ସେ ବନେ କଣ୍ଟକ ଆସନେ
ବସିଇ ମୁନି ଯୋଗ ଧ୍ୟାନେ
ବସିଲା ଅନେକ ବରଷ
ରହିଲା ଅସ୍ଥି-ଚର୍ମ ଶେଷ
ବଲ୍ମୀକ କୀଟ ତାର ଦେହେ
ଢାଙ୍କିଲେ ମୁଖ ମୁଣ୍ଡକାଏ
ବଲ୍ମୀକ ଢିପା ପ୍ରାୟ ଦିଶେ
କେବଳ ନୟନ ପ୍ରକାଶେ

ସା ସଖୀଭିଃ ପରିବୃତା ବିଚିନ୍ୱନ୍ତ୍ୟଙ୍ଘ୍ରିପାନ୍ ବନେ ।
ବଲ୍ମୀକରନ୍ଧ୍ରେ ଦଦୃଶେ ଖଦ୍ୟୋତେ ଇବ ଜ୍ୟୋତଷୀ । ୩ ।
ତେ ଦୈବଚୋଦିତା ବାଲା ଜ୍ୟୋତଷୀ କଣ୍ଟକେନ ବୈ ।
ଅବିଧ୍ୟନ୍ମୁଗ୍‌ଧଭାବେନ ସୁସ୍ରାବାସୃକ୍ ତତୋ ବହିଃ । ୪ ।
ଶକୃନ୍ମୂତ୍ରନିରୋଧୋଽଭୂତ୍ ସୈନିକାନାଞ୍ଚ ତତ୍‌କ୍ଷଣାତ୍ ।
ରାଜର୍ଷିସ୍ତମୁପାଲକ୍ଷ୍ୟ ପୁରୁଷାନ୍ ବିସ୍ମିତୋଽବ୍ରବୀତ୍ । ୫ ।
ଅପ୍ୟଭଦ୍ରଂ ନ ଯୁଷ୍ମାଭିର୍ଭାର୍ଗବସ୍ୟ ବିଚେଷ୍ଟିତମ୍ ।
ବ୍ୟକ୍ତଂ କେନାପି ନସ୍ତସ୍ୟ କୃତମାଶ୍ରମଦୂଷଣମ୍ । ୬ ।

ସଖୀଗଣ ପରିବୃତା ସେହି ସୁକନ୍ୟା ବୃକ୍ଷରୁ ଫଳ ପୁଷ୍ପ ଆଦି ଚୟନ କରୁ କରୁ ଗୋଟିଏ ଉଇ ହୁଙ୍କାରେ ଜୁଳୁଜୁଳିଆ ପୋକ ଜ୍ୟୋତପରି ଜ୍ୟୋତ ଦେଖିଥିଲେ । ୩ ।

ଦୈବ ପ୍ରେରିତ ହୋଇ ବାଳ ସୁଲଭ ମୋହ ବଶତଃ ଏହି ଦୁଇଟି ଜ୍ୟୋତ ପଦାର୍ଥକୁ କଣ୍ଟକ ବିଦ୍ଧ କରନ୍ତେ ତହିଁରୁ ରୁଧିର ବୋହିବାକୁ ଲାଗିଲା । ୪ ।

ତତ୍‌କ୍ଷଣାତ୍ ଶର୍ଯ୍ୟାତଙ୍କର ସୈନ୍ୟମାନଙ୍କର ମଳ-ମୂତ୍ର ରୁଦ୍ଧ ହେଲା । ତାହା ଜାଣିପାରି ଶର୍ଯ୍ୟାତ ଆଶ୍ଚର୍ଯ୍ୟ ହୋଇ ସହଚର ପୁରୁଷମାନଙ୍କୁ ପ୍ରଶ୍ନ କରିଥିଲେ ।୫।

ତୁମ୍ଭେମାନେ କି କେହି ରାଜର୍ଷି ଭାର୍ଗବନ୍ ଚ୍ୟବନ ଋଷିଙ୍କର ଆଶ୍ରମ ଦୂଷିତ କରିଅଛ ? ମୁଁ ନିଶ୍ଚୟ ବିଶ୍ୱାସ କରୁଅଛି ଆମ୍ଭମାନଙ୍କ ମଧ୍ୟରୁ କେହି ମହର୍ଷିଙ୍କ ଆଶ୍ରମ ଦୂଷିତ କରିଥିବ । ୬ ।


ସୁକନ୍ୟାଙ୍କର ଜ୍ୟୋତବେଧ

ଏମନ୍ତେ ରାଜ-କନ୍ୟା ଗଲା
ଚ୍ୟବନ ନିକଟେ ମିଳିଲା
ବଲ୍ମୀକ କୁଡ଼ା ମଧ୍ୟେ ଭଲା
ଦିଶଇ ମୁନିଙ୍କ ନୟନ
ଅଦ୍ଭୁତ ବେନି ଜ୍ୟୋତ ଗୁହି
ସୁକନ୍ୟା ମନେ ବିଚାରଇ
ଏତ ସୁନ୍ଦର ଜ୍ୟୋତ ଦିଶେ
ତେଜେ ଉମିର ବନେ ନାଶେ
କଣ୍ଟକ ବୃକ୍ଷୁଁ କଣ୍ଟା ଆଣି
ଏମନ୍ତ ମନେ ପରମାଣି

ସେ ବେନି ଜ୍ୟୋତ କଲା ଘାତ
ତକ୍ଷଣେ ସ୍ରବିଲା ରକତ ।୨,୪।
ବଲ୍ମୀକ ଦେହୁଁ ଶୋଣି ବହେ
ଧାରି ଦିଶଇ ମୁନି ଦେହେ
ମୁନିଙ୍କି ଅପରାଧ କଲା
ଶୁଣ ହେ ଅଭିମନ୍ୟୁ-ବଳା ।।
ତକ୍ଷଣେ ରାଜାର ସଙ୍ଗତେ
ଅପର ଲୋକ ଥିଲେ ଯେତେ
ସର୍ବେ ହୋଇଲେ ଅପରାଧୀ
ହୋଇଲା ମୂତ୍ର-ଦ୍ୱାର ରୁଦ୍ଧି

କନ୍ୟା ସଙ୍ଗତେ କନ୍ୟା ଯେତେ
ଯେ ଥିଲେ ରାଜାର ସଙ୍ଗତେ
କେହି ନ ପାରେ ମୂତ୍ର କରି
କାନ୍ଦନ୍ତି ମୂତ୍ର ଦ୍ୱାର ଧରି । ୫ ।
ସର୍ବେ କରନ୍ତି ହାହାକାର
ଶୁଣି ଶର୍ଯ୍ୟାତ ନୃପବର
ଅଦ୍ଭୁତ ଗୁହିଁ ସର୍ବଜନ
କନ୍ୟାକୁ ବୋଲନ୍ତି ବଚନ
ତୁ ଯେ ବନପ୍ରେ ବୁଲୁଥିଲୁ
କହ ତୁ କିବା ଆଚରିଲୁ

ସୁକନ୍ୟା ପ୍ରାହ ପିତରଂ ଭୀତା କିଞ୍ଚିତ୍ କୃତଂ ମୟା ।
ଦ୍ୱେ ଜ୍ୟୋତିଷୀ ଅଜାନନ୍ତ୍ୟା ନିର୍ଭିନ୍ନେ କଣ୍ଟକେନ ବୈ । ୭ ।
ଦୁହିତୁସ୍ତଦ୍‌ବଚଃ ଶ୍ରୁତ୍ୱା ଶର୍ଯ୍ୟାତିର୍ଜାତସାଧ୍ୱସଃ ।
ମୁନିଂ ପ୍ରସାଦୟାମାସ ବଲ୍ମୀକାନ୍ତର୍ହିତଂ ଶନୈଃ । ୮ ।
ତଦଭିପ୍ରାୟମାଜ୍ଞାୟ ପ୍ରାଦାଦ୍‌ଦୁହିତରଂ ମୁନେଃ ।
କୃଚ୍ଛ୍ରାନ୍ମୁକ୍ତସ୍ତମାମନ୍ତ୍ର୍ୟ ପୁରଂ ପ୍ରାୟାତ୍ ସମାହିତଃ । ୯ ।

---

ତହୁଁ କିଞ୍ଚିତ ଭୀତା ହୋଇ ସୁକନ୍ୟା ପିତାଙ୍କୁ କହିଲା, ମୁଁ କିଞ୍ଚିତ୍ ଅନ୍ୟାୟ କାର୍ଯ୍ୟ କରିଅଛି । ମୁଁ ଜାଣି ନ ପାରି କଣ୍ଟକଦ୍ୱାରା ଦୁଇଟି ଜ୍ୟୋତି ପଦାର୍ଥକୁ ବିଦ୍ଧ କରିଅଛି ।୭ ।

କନ୍ୟାର ଏହି ବାକ୍ୟ ଶ୍ରବଣ କରି ଶର୍ଯ୍ୟାତି ଭୀତ ହେଲେ ଏବଂ ସେ ବଲ୍ମୀକର ଅନ୍ତର୍ନିହିତ ଋଷିଙ୍କୁ କ୍ରମଶଃ ବହୁ ପ୍ରାର୍ଥନା କରି ପ୍ରସନ୍ନ କରାଇଥିଲେ । ୮ ।

ସଂଯତ ଚିତ୍ତ ଶର୍ଯ୍ୟାତି ଚ୍ୟବନ ମୁନିଙ୍କର ଅଭିପ୍ରାୟ ଅବଗତ ହୋଇ ତାହାଙ୍କୁ ଏହି କନ୍ୟା ସମର୍ପଣ କରିଥିଲେ । ଅନନ୍ତର ବିପଦମୁକ୍ତ ହୋଇ ମୁନିଙ୍କର ଅନୁମତି ଅନୁସାରେ ସ୍ୱୀୟ ଭବନକୁ ପ୍ରତ୍ୟାଗମନ କରିଥିଲେ । ୯ ।

---

ସେ କର୍ମ ବଳେଟି ଏ ବ୍ୟାଧି
ରହିଲା ମୂତ୍ରଦ୍ୱାର ରୁନ୍ଧି
ସର୍ବେ ମରିବା ଏହିକ୍ଷଣି
ସୁକନ୍ୟା କହେ ତାହା ଶୁଣି
ହେ ତାତ ବଲ୍ମୀକ ଉପରେ
ଜ୍ୟୋତି ଯୁଗଳ ଦେଖି ଖରେ
ମୁଁ ଯେ ଅଦ୍ଭୁତ ପ୍ରାୟେ ମଣି
କଣ୍ଟକ ବୃକ୍ଷୁ କଣ୍ଟା ଆଣି
ଭେଦିଲି ସେ ଜ୍ୟୋତି ଅଦ୍ଭୁତ
ତକ୍ଷଣେ ସ୍ରବିଲା ରକତ ।୬,୭।
ତା ଶୁଣି ନୃପ ଅତି ବେଗେ
ମିଳିଲେ ବଲ୍ମୀକର ଆଗେ
ସଭ୍ରମେ ବେନିକର ଯୋଡ଼ି
କହେ ବଲ୍ମୀକ ତଳେ ପଡ଼ି
ହେ ପିତଃ ! ବଲ୍ମୀକ ତୋ ଦେହ
ରୁଧିର ବହେ କର୍ଣ୍ଣ କହ
ମୁଁ ତୋତେ କଲି ଅପରାଧ
ତୋ ଜ୍ୟୋତି କନ୍ୟା କଲା ଭେଦ

ସେ କନ୍ୟା ସ୍ୱଭାବେ ଚଞ୍ଚଳ
ସର୍ବେ ପାଇଲୁ ତାର ଫଳ
ନିରୋଧ କଲ ମୂତ୍ର ଦ୍ୱାର
ରଖ ଶରଣ ଗଲି ତୋର
ଏମନ୍ତେ ରାଜା ବାକ୍ୟ ଶୁଣି
ଚ୍ୟବନ କହେ ଦୁଃଖ ବାଣୀ
ହେ ନୃପ ! ଭୃଗୁର କୁମର
ଚ୍ୟବନ ଋଷିନାମ ମୋର
ମୁହିଁ ଅରଣ୍ୟେ ତପ କରି
ରହିଲି ପ୍ରଭୁ ନରହରି
ଆସନେ ବସିଲି ନିଷ୍ଠେକେ
ଏମନ୍ତେ ଗଲା କେତେ କାଳେ
ବଲ୍ମୀକ କୀଟ ମୋ ଶରୀରେ
ମାଂସ ରୁଧିର ଭକ୍ଷ୍ୟ କରେ
ମୃତ୍ତିକା ମୋହର ଉପରେ
ମୁଖେ ଆଚ୍ଛାଦି କରନ୍ତରେ
ଦେହ ଭକ୍ଷିଲେ ସ୍ୱାଦୁ ରସେ
କେବଳ ଅସ୍ଥି ରହେ ଶେଷେ

ଏମନ୍ତ ମୁନି ମୁଖୁଁ ଶୁଣି
ଚରଣେ ପଡ଼େ ନୃପମଣି
ଧରି ସେ ମୁନିଙ୍କ ଚରଣ
ବୋଲଇ କର ପରିତ୍ରାଣ
ଏ ଯେ ସୁକନ୍ୟା ମୋ ଦୁଲଣୀ
ଏ ହେଉ ତୁମ୍ଭର ଘରଣୀ
ସତ୍ୟ ବଚନ ଏ ମୋହର
ଏଥିକୁ ସାକ୍ଷୀ ଦିବାକର
ଏମନ୍ତ ରାଜା ମୁଖୁ ଶୁଣି
ଚ୍ୟବନ କହେ ମଞ୍ଜୁ ବାଣୀ
ଏ ଯେବେ ସତ୍ୟ ବାକ୍ୟ ତୋର
ସକଳେ ସ୍ରବୁ ମୂତ୍ର ଦ୍ୱାର
ଶୁଣି ସେ ଚ୍ୟବନ ବଚନ
ଫିଟିଲା ମୂତ୍ର ନିରୋଧନ
ସର୍ବେ ଲଭିଲେ ପରିତ୍ରାଣ
ଏବେ ହୋ ସସ୍ଥିତ ଶୁଣ ।୮,୯।

ସୁକନ୍ୟା ଚ୍ୟବନଂ ପ୍ରାପ୍ୟ ପତିଂ ପରମକୋପନମ୍ ।
ପ୍ରୀଣୟାମାସ ଚିତ୍ତଜ୍ଞା ଅପ୍ରମତ୍ତାନୁବୃତ୍ତିଭିଃ । ୧୦ ।
କସ୍ୟଚିତ୍ତ୍ୱଥ କାଳସ୍ୟ ନାସତ୍ୟାବାଶ୍ରମାଗତୌ ।
ତୌ ପୂଜୟିତ୍ୱା ପ୍ରୋବାଚ ବୟୋ ମେ ଦତ୍ତମୀଶ୍ୱରୌ । ୧୧ ।
ଗ୍ରହଂ ଗ୍ରହୀଷ୍ୟେ ସୋମସ୍ୟ ଯଜ୍ଞେ ବାମପ୍ୟସୋମପୋଃ ।
କ୍ରିୟତାଂ ମେ ବୟୋରୂପଂ ପ୍ରମଦାନାଂ ଯଦୀପ୍ସିତମ୍ । ୧୨ ।
ବାଢ଼ମିତ୍ୟୂଚତୁର୍ବିପ୍ରମଭିନନ୍ଦ୍ୟ ଭିଷକ୍ତମୌ ।
ନିମଜ୍ଜତାଂ ଭବାନସ୍ମିନ୍ ହ୍ରଦେ ସିଦ୍ଧବିନିର୍ମିତେ । ୧୩ ।

---

ଏଣେ ସୁକନ୍ୟା ପରମକୋପନ ସ୍ୱଭାବ ଚ୍ୟବନଙ୍କୁ ପତିରୂପେ ପ୍ରାପ୍ତ ହୋଇ ପତିଙ୍କର ଅଭିପ୍ରାୟ ଅନୁସାରେ ସତର୍କତା ସହିତ ତାହାଙ୍କର ଆଜ୍ଞା ପାଳନକରି ତାଙ୍କୁ ସନ୍ତୁଷ୍ଟ କରିଥିଲେ । ୧୦ ।

କିୟତ୍‌କାଳ ଅନ୍ତେ ଅଶ୍ୱିନୀକୁମାର ଦ୍ୱୟ ଆଶ୍ରମରେ ଉପସ୍ଥିତ ହୁଅନ୍ତେ ଚ୍ୟବନ ମୁନି ସେମାନଙ୍କୁ ପୂଜା କରି ଯୌବନଲାଭ ପାଇଁ ବର ପ୍ରାର୍ଥନା କରିଥିଲେ । ୧୧ ।

ଯଜ୍ଞରେ ସୋମରସ ପାନରୁ ବଞ୍ଚିତ ଆପଣମାନଙ୍କୁ ମୁଁ ସୋମରସ ପୂର୍ଣ୍ଣ ପାତ୍ର ପ୍ରଦାନ କରିବି । ଆପଣମାନେ ସ୍ତ୍ରୀଜନ ପ୍ରିୟ ରୂପ ଓ ଯୌବନ ମୋତେ ପ୍ରଦାନ କରନ୍ତୁ । ୧୨ ।

ଚିକିତ୍ସକ ଶ୍ରେଷ୍ଠ ଦେବବୈଦ୍ୟ ଅଶ୍ୱିନୀକୁମାର ଦ୍ୱୟ ଚ୍ୟବନ ମୁନିଙ୍କୁ ଅଭିନନ୍ଦନ କରି କହିଲେ, "ଆଚ୍ଛା ସେଇଆ ହେବ । ଆପଣ ଏହି ସିଦ୍ଧ ନିର୍ମିତ ହ୍ରଦରେ ନିମଗ୍ନ ହେଉନ୍ତୁ" । ୧୩ ।

---

ମୁନିଙ୍କି କନ୍ୟାଦାନ କରି
ରାଜା ଚଳିଲେ ନିଜ ପୁରୀ
ନିଜ ଜନଙ୍କ ସଙ୍ଗେ ବସି
ଚ୍ୟବନ ମହିମା ପ୍ରକାଶି
ସୁକନ୍ୟା ଚ୍ୟବନ ସମୀପେ
ଖଟଇ ମନ ଅନୁରୂପେ
ଛତିଶ କଳିତ ଭକ୍ଷ ଆଣି
ଯେ ମିଳେ ଶାକ କନ୍ଦ ପାଣି ।୧୦।
ଏମନ୍ତେ ଶୁଣ ନୃପବର
ବିଧାତା ବିଧି ବଳୀୟର
ଏମନ୍ତେ କେତେଦିନ ଗଲା
ସୁକନ୍ୟା ରଙ୍ଗ ପ୍ରକାଶିଲା
ସେ ବନ ପ୍ରଭାତର କାଳେ
ଅଶ୍ୱିନୀ କୁମାରେ ମିଳିଲେ
ମୁନିଙ୍କି ନମସ୍କାର କରି
ବସିଲେ ଆସନ ଆଦରି
ଚ୍ୟବନ ଉଠି ମନ ତୋଷେ
ଅଶ୍ୱିନୀ କୁମାରଙ୍କ ପାଶେ
ପାଦାର୍ଘ୍ୟେ ଚରଣ ପୂଜିଲେ
ଅନେକ ସ୍ତୁତି ବାକ୍ୟ କଲେ
ବୋଲନ୍ତି ବିଶ୍ୱାସ କରାଇ
ଦେବଙ୍କ ବୈଦ୍ୟ ତୁମ୍ଭେ ଦୁଇ
ଯେ ତୁମ୍ଭ ନାମ ଉଚ୍ଚାରନ୍ତି
ରୋଗ ପ୍ରବନ୍ଧୁ ସେ ତରନ୍ତି
ଦେଖ ଏ ମୋହର ଶରୀର
ଜରା ଅବସ୍ଥା ଜର ଜର
ଶର୍ଯ୍ୟାତି କନ୍ୟା ମୋତେ ଦେଲା
ଭାବ ଅଭାବ ନ ଜାଣିଲା
ଦେଖ ଏ କନ୍ୟା ପତିବ୍ରତା
ଏହାଙ୍କୁ ହୁଅ ବରଦାତା
ଏ ବୃଦ୍ଧ-ଦୁଃଖ ମୋର ହର
ଯୁବା ବୟସ ମୋର କର ।୧୧।
ମୁଁ ପୁଣି ତୁମ୍ଭ ଉପକାରେ
କରିବି ଯଥାର୍ଥ ବେଦରେ
ତୁମ୍ଭେ ଯେ ଦେବ-ବୈଦ୍ୟ ଦୋଷେ
ଯଜ୍ଞେ ନ ଲଭ ସୋମ ଅଂଶେ
ଯଜ୍ଞେ ମୁଁ ତୁମ୍ଭଙ୍କୁ ବରିବ
ଆନନ୍ଦେ ଯଜ୍ଞ ଭାଗ ଦେବ
ଇନ୍ଦ୍ର କି କରିବ ମୋହର
ଯୁବା ଶରୀରେ ମୋତେ କର ।୧୨

ଇତ୍ୟୁକ୍ତ୍ୱା ଜରୟା ଗ୍ରସ୍ତଦେହୋ ଧମନିସନ୍ତତଃ ।
ହ୍ରଦଂ ପ୍ରବେଶିତୋଽଶ୍ୱିଭ୍ୟାଂ ବଲିପଲିତବିଗ୍ରହଃ ।୧୪।
ପୁରୁଷାସ୍ତ୍ରୟ ଉତ୍ତସ୍ଥୁରପୀଚ୍ୟା ବନିତାପ୍ରିୟାଃ ।
ପଦ୍ମସ୍ରଜଃ କୁଣ୍ଡଲିନସ୍ତୁଲ୍ୟରୂପାଃ ସୁବାସସଃ ।୧୫।
ତାନ୍ ନିରୀକ୍ଷ୍ୟ ବରାରୋହା ସରୂପାନ୍ ସୂର୍ଯ୍ୟବର୍ଚ୍ଚସଃ ।
ଅଜାନତୀ ପତିଂ ସାଧ୍ୱୀ ଅଶ୍ୱିନୌ ଶରଣଂ ଯଯୌ ।୧୬।
ଦର୍ଶୟିତ୍ୱା ପତିଂ ତସ୍ୟୈ ପାତିବ୍ରତ୍ୟେନ ତୋଷିତୌ ।
ଋଷିମାମନ୍ତ୍ର୍ୟ ଯଯତୁର୍ବିମାନେନ ତ୍ରିବିଷ୍ଟପମ୍ ।୧୭।

---

ହେ ରାଜନ୍ ! ଅଶ୍ୱିନୀକୁମାର ଦ୍ୱୟଙ୍କର ବାକ୍ୟାନୁସାରେ ଜରାଜୀର୍ଣ୍ଣ ଶରୀର ଶିରାବ୍ୟାପ୍ତ କଳେବର, ବଳୀ ପଳିତ ଗାତ୍ର ମହର୍ଷି ଚ୍ୟବନ ଅଶ୍ୱିନୀକୁମାର ଦ୍ୱୟଙ୍କ ସହିତ ହ୍ରଦ ମଧ୍ୟରେ ପ୍ରବେଶ କରିଥିଲେ ।୧୪।

କିୟତ୍‌କ୍ଷଣ ପରେ ସେହି ହ୍ରଦରୁ ଅତ୍ୟନ୍ତ କମନୀୟ ରମଣୀଜନ ପ୍ରିୟ ପଦ୍ମମାଳୀ କୁଣ୍ଡଳଧାରୀ ସମାନରୂପ ସମ୍ପନ୍ନ, ସୁବସନ ଭୂଷିତ ତିନୋଟି ପୁରୁଷ ଉତ୍ଥିତ ହେଲେ ।୧୫।

ସୁନ୍ଦରୀ ସୁକନ୍ୟା ସମାନରୂପ ସମ୍ପନ୍ନ ସୂର୍ଯ୍ୟତେଜ ସଦୃଶ ଏହି ତିନୋଟି ପୁରୁଷଙ୍କୁ ଦେଖି କିଏ ତାଙ୍କର ପତି ବୋଲି ଚିହ୍ନି ନ ପାରି ଅଶ୍ୱିନୀକୁମାର ଦ୍ୱୟଙ୍କର ଶରଣାପନ୍ନ ହୋଇଥିଲେ ।୧୬।

ସୁକନ୍ୟାଙ୍କର ପାତିବ୍ରତ୍ୟରେ ସନ୍ତୁଷ୍ଟ ହୋଇ ଅଶ୍ୱିନୀକୁମାର ଦ୍ୱୟ ସୁକନ୍ୟାଙ୍କୁ ତାହାଙ୍କର ସ୍ୱାମୀ ଚିହ୍ନାଇ ଦେଇଥିଲେ ଏବଂ ଋଷିଙ୍କ ସହିତ ସମ୍ଭାଷଣ କରି ବିମାନରେ ଆରୋହଣ କରି ସ୍ୱର୍ଗପୁରକୁ ଗମନ କରିଥିଲେ ।୧୭।

---

ଏମନ୍ତେ ମୁନି ମୁଖୁଁ ଶୁଣି
ଅଶ୍ୱିନୀ ସୁତେ ମନେ ଗୁଣି
ବୋଲନ୍ତି ମୁନି ମୁଖ ଚାହିଁ
ଏ କଥା ଅନ୍ୟଥା ନୁହଇ
ଆମ୍ଭର ସଙ୍ଗେ ସିଦ୍ଧ ହ୍ରଦେ
ସ୍ନାହାନ କରି ଅପ୍ରମାଦେ ।୧୩।
ହୋଇବୁ ଅମର ସ୍ୱରୂପ
ପ୍ରତ୍ୟକ୍ଷେ ମନ୍ତ୍ର ବଳ ଦେଖ
ତା ଶୁଣି ଚ୍ୟବନ ଆନନ୍ଦେ
ବେଗେ ପଶିଲେ ସିଦ୍ଧ ହ୍ରଦେ

ତିନିହେଁ ହସ୍ତେ ହସ୍ତ ଧରି
ଜଳେ ବୁଡ଼ିଲେ ବୋଲି ହରି
ତତକ୍ଷଣେ ଏକ ରୂପ ହୋଇ
ଉଠିଲେ କନ୍ୟା ମୁଖ ଚାହିଁ
କି ଅବା ଦେବା ପଞ୍ଚାନ୍ତର
ରୂପେ ମୋହିଲେ ସୁର ନର
କନ୍ୟା ଯେ ତାରେ ଚାହିଁଥିଲା
ନିଜ ସ୍ୱାମୀଙ୍କି ନ ଚହ୍ନିଲା
ବିକଳେ ହୋଇ ଛନ୍ନ ଛନ୍ନ
ଅନାଇ ତାହାଙ୍କ ବଦନ

କରି ଯୁଗଳ ମୁଣ୍ଡେ ଦେଇ
ବୋଲଇ କରି ତ୍ରାହି ତ୍ରାହି
ମୁଁ ଯେବେ ସତ୍ୟ ପତିବ୍ରତା
ନିକଟେ ଦିଅ ମୋର ଭର୍ତ୍ତା ।୧୪-୧୬
ଅଶ୍ୱିନୀସୁତେ ତାହା ଶୁଣି
ସ୍ୱାମୀକି ଦେଲେ ତାରି ଆଣି
ମୁନିଙ୍କି ନମସ୍କାର ହୋଇ
ସ୍ୱର୍ଗେ ଚଳିଲେ ବେନି ଭାଇ ।୧୭

ଯକ୍ଷ୍ୟମାଣୋଽଥ ଶର୍ଯ୍ୟାତଶ୍ଚ୍ୟବନସ୍ୟାଶ୍ରମଂ ଗତଃ ।
ଦଦର୍ଶ ଦୁହିତୁଃ ପାର୍ଶ୍ୱେ ପୁରୁଷଂ ସୂର୍ଯ୍ୟବର୍ଚ୍ଚସମ୍ । ୧୮ ।
ରାଜା ଦୁହିତରଂ ପ୍ରାହ କୃତପାଦାଭିବନ୍ଦନାମ୍ ।
ଆଶିଷଶ୍ଚାପ୍ରଯୁଞ୍ଜାନୋ ନାତିପ୍ରୀତମନା ଇବ । ୧୯ ।
ଚିକୀର୍ଷିତଂ ତେ କିମିଦଂ ପତିସ୍ତ୍ୱୟା ପ୍ରଲମ୍ଭିତୋ ଲୋକନମସ୍କୃତୋ ମୁନିଃ ।
ଯତ୍ ତ୍ୱଂ ଜରାଗ୍ରସ୍ତମସତ୍ୟସମ୍ମତଂ ବିହାୟ ଜାରଂ ଭଜସେଽମୁମଧ୍ୱଗମ୍ । ୨୦ ।
କଥଂ ମତିସ୍ତେଽବଗତାନ୍ୟଥା ସତାଂ କୁଳପ୍ରସୂତେ କୁଳଦୂଷଣନ୍ତ୍ୱିଦମ୍ ।
ବିଭର୍ଷି ଜାରଂ ଯଦପତ୍ରପା କୁଳଂ ପିତୁଶ୍ଚ ଭର୍ତ୍ତୁଶ୍ଚ ନୟସ୍ୟଧସ୍ତମଃ । ୨୧ ।

---

ହେ ରାଜନ୍ ! କିୟତ୍‌କାଳ ପରେ ଶର୍ଯ୍ୟାତି ଯଜ୍ଞାନୁଷ୍ଠାନ ଅଭିପ୍ରାୟରେ ଚ୍ୟବନଙ୍କ ଆଶ୍ରମକୁ ଗମନ କରି ଦେଖିଲେ ସୁକନ୍ୟାଙ୍କ ପାର୍ଶ୍ୱରେ ସୂର୍ଯ୍ୟତୁଲ୍ୟ ତେଜସ୍ୱୀ ଏକ ପୁରୁଷ ବସି ଅଛନ୍ତି । ୧୮ ।

ସୁକନ୍ୟା ରାଜାଙ୍କର ପାଦ ବନ୍ଦନା କରନ୍ତେ ରାଜା ଶର୍ଯ୍ୟାତି ଆଶୀର୍ବାଦ ନ କରି କିଞ୍ଚିତ୍ ଅସନ୍ତୁଷ୍ଟ ଚିତ୍ତରେ ଦୁହିତାକୁ କହିଲେ । ୧୯ ।

ତୋର ଏ କି କାର୍ଯ୍ୟ । ତୁ ସର୍ବଲୋକ ପୂଜ୍ୟ ମୁନି ପତି ଚ୍ୟବନଙ୍କୁ ପ୍ରତାରଣା କରିଅଛୁ । ରେ ଅସତି ! ତୋର ସ୍ୱାମୀ ଅତିବୃଦ୍ଧ, ତୁ ସେହି ପତିଙ୍କୁ ପରିତ୍ୟାଗକରି ଏହିପଥିକକୁ ଉପପତିରୂପେ ଭଜନାକରୁଅଛୁ । ୨୦

ହେ ସତ୍‌କୁଳ ପ୍ରସୂତେ ! ତୋର ମତି କିପରି ଅସତ୍ ପଥଗାମୀ ହେଲା । ତୁ ଲଜ୍ଜାହୀନା ହୋଇ କୁଳକଳଙ୍କ ତୁଲ୍ୟ ଉପପତି ଭଜନା ସ୍ୱରୂପ ଗର୍ହିତ କାର୍ଯ୍ୟ କରୁଅଛୁ । ତୁ ପତି ଓ ପିତା ଉଭୟଙ୍କର କୁଳକୁ ନରକଗାମୀ କରିଅଛୁ । ୨୧ ।

---

ଶୁଣ ହୋ ପରୀକ୍ଷିତ ଏବେ
ଶର୍ଯ୍ୟାତି ଯଜ୍ଞର ଆରମ୍ଭେ
ଚ୍ୟବନ ଆଶ୍ରମେ ମିଳିଲା
ନୟନେ ଅଦ୍ଭୁତ ଦେଖିଲା
ନିଜ କନ୍ୟାର ପାଶେ ବସି
ପୁରୁଷେ ଅଛି ତେଜରାଶି । ୧୮ ।
ସୁକନ୍ୟା ଆସି ପିତା ପାଦେ
ସ୍ୱଚ୍ଛନ୍ଦେ ନମିଲା ଆନନ୍ଦେ

ତାହାକୁ କଲ୍ୟାଣ ନ କରି
କନ୍ୟାକୁ ବୋଇଲା କୋପଭରି । ୧୯
ଅଦ୍ଭୁତ କର୍ମ ଏ ତୋହର
ଅତ୍ୟନ୍ତ ବୃଦ୍ଧ ତୋର ବର
ତାର ଚରଣ ସେବା ଛାଡ଼ି
ଯୁବା ପୁରୁଷେ ମନ ବଢ଼ି
କେମନ୍ତେ ବଳିଲା ତୋ ମତି
ସଂସାରେ ହୋଇଲୁ ଅସତୀ

କୁଳ ଦୂଷଣ କର୍ମ କଲୁ
ବୃଦ୍ଧ ସ୍ୱାମୀକି ଉପେକ୍ଷିଲୁ
ଜାର ପୁରୁଷେ କଲୁ ମତି
ଏ ବଡ଼ ତୋହର ଅନୀତି
ଉଭୟ ଲୋକ କଲୁ ନାଶ
ପର ପୁରୁଷେ ତୋ ବିଶ୍ୱାସ
ଏ କର୍ମେ ପିତା ପତି ବଂଶ
ନରକେ କରାଇଲୁ ବାସ । ୨୦, ୨୧ ।

ଏବଂ ବ୍ରୁବାଣଂ ପିତରଂ ସ୍ମୟମାନା ଶୁଚିସ୍ମିତା ।
ଉବାଚ ତାତ ଜାମାତା ତବୈଷ ଭୃଗୁନନ୍ଦନଃ । ୨୨ ।
ଶଶଂସ ପିତ୍ରେ ତତ୍ସର୍ବଂ ବୟୋରୂପାଭିଲମ୍ଭନମ୍ ।
ବିସ୍ମିତଃ ପରମପ୍ରୀତସ୍ତନୟାଂ ପରିଷସ୍ୱଜେ । ୨୩ ।
ସୋମେନ ଯାଜୟନ୍ ବୀରଂ ଗ୍ରହଂ ସୋମସ୍ୟ ଚାଗ୍ରହୀତ୍ ।
ଅସୋମପୋରପ୍ୟଶ୍ୱିନୋଶ୍ଚ୍ୟବନଃ ସ୍ୱେନ ତେଜସା । ୨୪ ।
ହନ୍ତୁଂ ତମାଦଦେ ବଜ୍ରଂ ସଦ୍ୟୋମନ୍ୟୁରମର୍ଷିତଃ ।
ସ ବଜ୍ରଂ ସ୍ତମ୍ଭୟାମାସ ଭୁଜମିନ୍ଦ୍ରସ୍ୟ ଭାର୍ଗବଃ । ୨୫ ।



ଇନ୍ଦ୍ରଙ୍କର ଚ୍ୟବନଙ୍କୁ ବଜ୍ରନିକ୍ଷେପ

ବିସ୍ମିତା ଓ ହାସ୍ୟଯୁକ୍ତା ସୁକନ୍ୟା କଟୁବାକ୍ୟ ପ୍ରୟୋଗକାରୀ ପିତାଙ୍କୁ କହିଲେ, "ହେ ପିତଃ ! ଏହି ଆପଣଙ୍କର ଜାମାତା ଭୃଗୁନନ୍ଦନ ଚ୍ୟବନ" । ଚ୍ୟବନ ଋଷି କିପରି ରୂପ ଯୌବନ ପ୍ରାପ୍ତ ହୋଇଥିଲେ ତାହା ପିତାଙ୍କ ନିକଟରେ ବର୍ଣ୍ଣନା କରିଥିଲେ । ତାହା ଶୁଣି ଶର୍ଯ୍ୟାତି ବିସ୍ମିତ ଓ ପ୍ରୀତ ହୋଇ କନ୍ୟାକୁ ଆଲିଙ୍ଗନ କରିଥିଲେ । ୨୨, ୨୩ ।

ହେ ରାଜନ୍ ! ତଦନନ୍ତର ମହର୍ଷି ଚ୍ୟବନ ଅଶ୍ୱିନୀକୁମାରମାନେ ସୋମରସ ପାଇ ନ ଥିଲେ ମଧ୍ୟ ଆପଣାର ତେଜରେ ସେମାନଙ୍କୁ ସୋମରସ ପୂର୍ଣ୍ଣ ପାତ୍ର ପ୍ରଦାନ କରିଥିଲେ । ୨୪ ।

ସହସା କୋପନ ସ୍ୱଭାବ ଇନ୍ଦ୍ର ଅତ୍ୟନ୍ତ କ୍ରୁଦ୍ଧ ହୋଇ ଚ୍ୟବନ ଋଷିଙ୍କୁ ବିନାଶ କରିବା ନିମିତ୍ତ ବଜ୍ର ଗ୍ରହଣ କରିଥିଲେ । ଚ୍ୟବନ ମଧ୍ୟ ଯୋଗବଳରେ ବଜ୍ର ସହିତ ଇନ୍ଦ୍ରଙ୍କର ହସ୍ତକୁ ସ୍ତମ୍ଭନ କରି ଦେଇଥିଲେ । ୨୫ ।

ଏମନ୍ତେ ପିତା ବାକ୍ୟ ଶୁଣି
ହସି ବୋଲଇ ତା ଦୁଲଣୀ
ହେ ତାତ ! ଭ୍ରାନ୍ତି ନ କର
ଏହିଟି ମୋର ନିଜ ବର
ଏମନ୍ତେ ପିତାର ଅଗ୍ରତେ
ସର୍ବ କହିଲା ଆଦ୍ୟପ୍ରାନ୍ତେ
ଯେମନ୍ତେ ସ୍ୱର୍ଗ-ବୈଦ୍ୟ ଆସି
ସୁନ୍ଦର କଲେ ଜଳେ ଝାସି

ବୃଦ୍ଧକୁ ଯୁବା ରୂପ କଲେ
ରଥ ଆରୋହି ସ୍ୱର୍ଗେ ଗଲେ
ଏମନ୍ତ କନ୍ୟା ବାକ୍ୟ ଶୁଣି
ଅତି ଆନନ୍ଦେ ନୃପମଣି
ତକ୍ଷଣେ ଦୁହିତା ବଚନ
ଅଦ୍ଭୁତ ଶୁଣି ସେ ରାଜନ
ଅତି ଆନନ୍ଦ ମୋଦେ ଭରି
ନିଜ ଦୁହିତା କୋଳେ କରି

ତକ୍ଷଣେ ନିଜ ପୁରେ ଗଲା
ଶୁଣ ହୋ ଅଭିମନ୍ୟୁ ବଳା । ୨୨, ୨୩ ।
ନିଜ ଭୁବନେ ନୃପମଣି
ଚ୍ୟବନ ମୁନି ସ୍ନେହେ ଆଣି
ଆଗମ ନିଗମ ଉକତେ
ଯଜ୍ଞ ସେ କଲା ବହୁମତେ
ଚ୍ୟବନ ବାକ୍ୟେ ଯଜ୍ଞେ ତାରି
ମିଳିଲେ ଅଶ୍ୱିନୀ-କୁମାରି

ଅନ୍ୱଜାନଂ ସ୍ତୁତଃ ସର୍ବେ ଗ୍ରହଂ ସୋମସ୍ୟ ଚାଶ୍ୱିନୋଃ ।
ଭିଷଜାବିତି ଯତ୍ ପୂର୍ବଂ ସୋମାହୁତ୍ୟା ବହିଷ୍କୃତୌ । ୨୬ ।
ଉତ୍ତାନବର୍ହିରାନର୍ତ୍ତୋ ଭୂରିଷେଣ ଇତି ତ୍ରୟଃ ।
ଶର୍ଯ୍ୟାତେରଭବନ୍ ପୁତ୍ରା ଆନର୍ତ୍ତାଦ୍ରେବତୋଽଭବତ୍ । ୨୭ ।
ସୋଽନ୍ତଃସମୁଦ୍ରେ ନଗରୀଂ ବିନିର୍ମ୍ମାୟ କୁଶସ୍ଥଳୀମ୍ ।
ଆସ୍ଥିତୋଽଭୁଙ୍କ୍ତ ବିଷୟାନାନର୍ତ୍ତାଦୀନରିନ୍ଦମ ।
ତସ୍ୟ ପୁତ୍ରଶତଂ ଯଜ୍ଞେ କକୁଦ୍ମୀଜ୍ୟେଷ୍ଠମୁତ୍ତମମ୍ । ୨୮ ।

---

ସେହିଠାରୁ ସମସ୍ତ ଦେବତାମାନେ ଅଶ୍ୱିନୀକୁମାର ଦ୍ୱୟଙ୍କୁ ସୋମଯାଗ ଭାଗ ପ୍ରଦାନକରିଥିଲେ । ପୂର୍ବେ ଅଶ୍ୱିନୀକୁମାର ଦ୍ୱୟ ଚିକିତ୍ସକ ବୋଲି ଯଜ୍ଞ ଭାଗରୁ ବର୍ଜିତ ଥିଲେ । ୨୬ ।

ଶର୍ଯ୍ୟାତଙ୍କର ଉତ୍ତାନ ବର୍ହି, ଆନର୍ତ୍ତ, ଭୂରିସେନ ନାମକ ତିନିପୁତ୍ର ଜନ୍ମିଥିଲେ । ଆନର୍ତ୍ତଙ୍କ ପୁତ୍ର ରେବତ । ୨୭ ।

ହେ ଶତ୍ରୁନାଶନ ! ସେହି ରେବତ ସମୁଦ୍ର ମଧ୍ୟରେ କୁଶସ୍ଥଳୀ ନାମକ ନଗରୀ ନିର୍ମାଣ କରି ତହିଁରେ ବାସ କଲେ ଏବଂ ଆନର୍ତ୍ତାଦି ଦେଶ ସମୂହ ଭୋଗ କରିଥିଲେ । ତାହାଙ୍କର ଏକଶତ ଉତ୍ତମପୁତ୍ର ଜନ୍ମଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ କକୁଦ୍ମୀ ସର୍ବ ଜ୍ୟେଷ୍ଠ । ୨୮ ।

---

ତାହାଙ୍କୁ ସୋମ ଦେବାବେଳେ
ଇନ୍ଦ୍ର ମିଳିଲା ଯଜ୍ଞଶାଳେ
ବଜ୍ର ଉଞ୍ଚାଇ ଦକ୍ଷକରେ
ନିଷେଧ କଲା ମନ୍ତ୍ର ସ୍ୱରେ
ତା ଦେଖି ଚ୍ୟବନ ଉଠିଲେ
ଇନ୍ଦ୍ରର ବଜ୍ରକୁ ସ୍ତମ୍ଭିଲେ
ମାରି ନ ପାରି ଇନ୍ଦ୍ର କୋପେ
ଇନ୍ଦ୍ର ଶରୀର କ୍ରୋଧେ କମ୍ପେ
ବୋଲଇ ମୁନି ମୁଖ ଚାହିଁ
ଏ କଥା ଉଚିତ ନୁହଇ
ଯଜ୍ଞେ ଏହାଙ୍କ ଭାଗ ନାହିଁ
ଅଦ୍ଭୁତ ଦେଉ କାହିଁ ପାଇଁ
ଚ୍ୟବନ ବୋଲେ ଇନ୍ଦ୍ରେ ଚାହିଁ
ସତ୍ୟ ଯେ କହୁଅଛ ତୁହି
ଏ ଯେବେ ଯୁବା କଲେ ମତେ
ଆହୁତ ଦେବି ଯଜ୍ଞ ଅନ୍ତେ

ଯଜ୍ଞେ ଏ ଶେଷ ଭାଗ ପାଇ
ସନ୍ତୋଷ ହୋଇ ବେନି ଭାଇ
ବ୍ୟାଧି ନାଶିବେ ଯଜମାନେ
ଏମନ୍ତ ଚ୍ୟବନ ବଚନେ
ତୋଷ ହୋଇଲା ସୁରନାଥ
ମୁନି ଛାଡ଼ିଲେ ତାର ହସ୍ତ
ସେ ଦିନୁ ସର୍ବଦେବେ ଯଜ୍ଞେ
ତାଙ୍କୁ ସ୍ଥାପିଲେ ହବିର୍ଭାଗେ
ଶେଷେ ସେ ଶେଷ ଭାଗ ପାନ୍ତି
ଏବେହୋ ଶୁଣ ମହୀପତି ।୨୪-୨୬
ଏମନ୍ତ ଯଜ୍ଞ କର୍ମ୍ମ ଫଳେ
ପୁତ୍ରେ ଜନ୍ମିଲେ ରାଜାକୁଳେ
ଅତି ସୁନ୍ଦର ଅନୁପମ
ଶୁଣ ହୋ ପୁତ୍ରଙ୍କର ନାମ
ଉତ୍ତାନ ବରହି ଆନର୍ତ୍ତ
ତୃତୀୟ ଭୂରିଷେଣ ସୁତ

ଶର୍ଯ୍ୟାତି ସୁତେ ମହା ମହାତେଜେ
ପ୍ରଜା ପାଳିଲେ ଶୁଭ ରାଜ୍ୟ
ଆନର୍ତ୍ତ ନାମେ ମଧ୍ୟ ସୁତ
ଶୁଣ ହୋ ତାହାଙ୍କ ଚରିତ
ସେ ନିତ୍ୟେ ହରି ସେବା କରେ
ତାହାର ପତ୍ନୀର ଉଦରେ
ରେବତ ନାମେ ସୁତ ଜାତ
ହୋଇଲା ଅତି ବଳବନ୍ତ ।୨୭।
ସମୁଦ୍ର ମଧ୍ୟେ ପୁର କଲା
ତା ନାମ କୁଶସ୍ଥଳୀ ଦେଲା
ସେ ରାଜ୍ୟେ ବସି ଦିନାକେତେ
ଭୋଗ ଭୁଞ୍ଜିଲା ମନ ସୁଖେ
ନିତ୍ୟେ ସେ ବିଷ୍ଣୁଙ୍କୁ ଚିନ୍ତଇ
ତାହାର ଶତ୍ରୁ ନାହିଁ କେହି
ତାହାର ଶତେ ପୁତ୍ର ଜାତ
ତାହାଙ୍କ ମଧ୍ୟେ ଜ୍ୟେଷ୍ଠ ଭ୍ରାତା

କକୁଦ୍ମୀ ରେବତୀଂ କନ୍ୟାଂ ସ୍ୱାମାଦାୟ ବିଭୁଂ ଗତଃ ।
ପୁତ୍ର୍ୟା ବରଂ ପରିପ୍ରଷ୍ଟୁଂ ବ୍ରହ୍ମଲୋକମପାବୃତମ୍ । ୨୯ ।
ଆବର୍ତ୍ତମାନେ ଗାନ୍ଧର୍ବେ ସ୍ଥିତୋଽଲବ୍ଧକ୍ଷଣଃ କ୍ଷଣମ୍ ।
ତଦନ୍ତ ଆଦ୍ୟମାନମ୍ୟ ସ୍ୱାଭିପ୍ରାୟଂ ନ୍ୟବେଦୟତ୍ । ୩୦ ।
ତତ୍ ଶ୍ରୁତ୍ୱା ଭଗବାନ୍ ବ୍ରହ୍ମା ପ୍ରହସ୍ୟ ତମୁବାଚ ହ ।
ଅହୋ ରାଜନ୍ ନିରୁଦ୍ଧାସ୍ତେ କାଲେନ ହୃଦି ଯେ କୃତାଃ ।୩୧।
ତତ୍ପୁତ୍ରପୌତ୍ରନପ୍ତୄଣାଂ ଗୋତ୍ରାଣି ଚ ନ ଶୃଣ୍ମହେ ।
କାଲୋଽଭିଯାତସ୍ତ୍ରିନବ-ଚତୁର୍ଯୁଗବିକଳ୍ପିତଃ । ୩୨ ।

---

କକୁଦ୍ମୀ ରେବତୀ ନାମ୍ନୀ ନିଜର କନ୍ୟାକୁ ସଙ୍ଗରେ ନେଇ ବରପାତ୍ରାନ୍ୱେଷଣରେ ଅବାଧ ଗତିରେ ବ୍ରହ୍ମଲୋକକୁ ବ୍ରହ୍ମାଙ୍କ ନିକଟକୁ ଗମନ କରିଥିଲେ । ୨୯ ।

ଏହି ସମୟରେ ସେଠାରେ ଗନ୍ଧର୍ବମାନେ ଗାନ କରୁଥିଲେ । ଅବସର ନ ପାଇ କକୁଦ୍ମୀ କ୍ଷଣକାଳ ଅପେକ୍ଷା କରିଥିଲେ । ସଙ୍ଗୀତ ଶେଷ ହୁଅନ୍ତେ ବ୍ରହ୍ମାଙ୍କୁ ନମସ୍କାର କରି ନିଜର ଅଭିପ୍ରାୟ ଜ୍ଞାପନ କରିଥିଲେ । ୩୦ ।

ଏହା ଶ୍ରବଣ କରି ବ୍ରହ୍ମା ସହାସ୍ୟ ବଦନରେ କହିଲେ,"ତୁମ୍ଭେ ଯେଉଁଯେଉଁ ବ୍ୟକ୍ତିଙ୍କୁ ମନସ୍ଥକରିଥିଲ କାଳ ପ୍ରଭାବରେ ସେମାନେ ନଷ୍ଟ ହୋଇ ଅଛନ୍ତି । ୩୧ ।

ସେମାନଙ୍କର ପୁତ୍ର ପୌତ୍ର ଓ ଗୋତ୍ର ନାମ ସୁଦ୍ଧା ଶୁଣାଯାଏ ନାହିଁ । ସପ୍ତବିଂଶତ ଚତୁର୍ଯୁଗ ପରିମିତ କାଳ ଅତୀତ ହୋଇଅଛି । ୩୨ ।

---

କକୁଦ୍ମୀ ନାମ ତାର ହୋଏ
ଇନ୍ଦ୍ର କମ୍ପଇ ଯାର ଭୟେ
ରେବତୀ ନାମେ କନ୍ୟା ତାର
ସୁନ୍ଦରେ ନାହିଁ ସମାନ୍ତର
ସେ କନ୍ୟା ନେଇ ଅତି ଦୁଃଖେ
ଆସି ମିଳିଲା ବ୍ରହ୍ମଲୋକେ
ଭୂମିରେ ରାଜାର କୁମର
ତାକୁ ମିଳିଲେ ଯେତେ ବର
ତାକୁ ନ ଦେଲା କୁଳ ଶ୍ରେଷ୍ଠ
ମିଳିଲା ବ୍ରହ୍ମାର ନିକଟ । ୨୮, ୨୯
ସେ ବ୍ରହ୍ମା ଲୋକ ମହାଜନ
କରଇ ବଷ୍ଟୁର କୀର୍ତ୍ତନ

କ୍ଷଣେ ରହିଲା ତାକୁ ଦେଖି
ତକ୍ଷଣେ କୀର୍ତ୍ତନ ଉପେକ୍ଷି
ବ୍ରହ୍ମା ଅନାଇ ତା ବଦନ
ବୋଲନ୍ତି ମଧୁର ବଚନ
କପାଁ ଆଇଲୁ ବ୍ରହ୍ମଲୋକେ
ଏ କନ୍ୟା ନେଇ ମନଦୁଃଖେ
ବ୍ରହ୍ମା ବଚନେ ଦଣ୍ଡଧାରୀ
ଚରଣେ ନମସ୍କାର କରି
ବୋଲଇ ଅତି ଦୁଃଖଭରେ
ଏ କନ୍ୟା ଦେବି କେଉଁବରେ? ୩୦
ଏ କଥା ରାଜା ମୁଖୁ ଶୁଣି
ହସି ବୋଲନ୍ତି କୁଶପାଣି

ଅଦ୍ଭୁତ କଥା ଏ ତୋହର
ଭୂମିରେ ନ ବରିଲୁ ବର
ଯା କଥା ଆଇଲୁ ତୁ କହି
ଭୂମିରେ ତାଙ୍କ ବଂଶ ନାହିଁ
ବ୍ରହ୍ମାଣ୍ଡ ମଧ୍ୟେ କାଳ ଲୀଳା
ଅନେକ ଯୁଗ ବହିଗଲା
ତା ଗୋତ୍ର ନାହିଁ ରବି କୂଳେ
ଶୁଣ ହେ ଯେତେକ ଯୁଗ ଗଲେ
ପ୍ରଚଣ୍ଡ କାଳ ଲୀଳା ବଳେ
ବଷ୍ଟୁ ବହିରେ ରହିଲେ
ସପତ ଚତୁର୍ବିଂଶ ଯୁଗ
ଭୂମିରେ କାଳ କଲା ଭୋଗ

ତଦ୍‌ଗଚ୍ଛ ଦେବଦେବାଂଶୋ ବଳଦେବୋ ମହାବଳଃ ।
କନ୍ୟାରତ୍ନମିଦଂ ରାଜନ୍ ନରରତ୍ନାୟ ଦେହି ଭୋଃ । ୩୩ ।
ଭୁବୋ ଭାରାବତାରାୟ ଭଗବାନ୍ ଭୂତଭାବନଃ ।
ଅବତୀର୍ଣ୍ଣୋ ନିଜାଂଶେନ ପୁଣ୍ୟଶ୍ରବଣକୀର୍ତ୍ତନଃ । ୩୪ ।
ଇତ୍ୟାଦିଷ୍ଟୋଽଭିବନ୍ଦ୍ୟାଜଂ ନୃପଃ ସ୍ୱପୁରମାଗତଃ ।
ତ୍ୟକ୍ତଂ ପୁଣ୍ୟଜନତ୍ରାସାଦ୍‌ଭ୍ରାତୃଭିର୍ଦିକ୍ଷ୍ୱବସ୍ଥିତୈଃ । ୩୫ ।
ସୁତାଂ ଦତ୍ତ୍ୱାନବଦ୍ୟାଙ୍ଗୀଂ ବଳାୟ ବଳଶାଳିନେ ।
ବଦର୍ଯ୍ୟାଖ୍ୟଂ ଗତୋ ରାଜା ତପ୍ତୁଂ ନାରାୟଣାଶ୍ରମମ୍ । ୩୬ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ତୃତୀୟୋଽଧ୍ୟାୟଃ ।

---

ଅତଏବ ହେ ରାଜନ୍ ! ଭଗବାନ୍ ବିଷ୍ଣୁଙ୍କ ଅଂଶରେ ମହାବଳଶାଳୀ ବଳଦେବ ଯେଉଁ ସ୍ଥାନରେ ଜନ୍ମ ଗ୍ରହଣ କରିଅଛନ୍ତି ତୁମ୍ଭେ ସେଠାକୁ ଗମନ କର ଏବଂ ସେଠାରେ ନରରତ୍ନକୁ କନ୍ୟା ପ୍ରଦାନ କର ॥

ହେ ରାଜନ ! ଯାହାଙ୍କର ବିଷୟ ଶ୍ରବଣ ଓ କୀର୍ତ୍ତନରେ ପୁଣ୍ୟ ହୁଏ । ସେହି ଭୂତଭାବନ ଭଗବାନ ଭୂଭାର ହରଣାର୍ଥ ନିଜ ଅଂଶରେ ଅବତୀର୍ଣ୍ଣ ହୋଇଅଛନ୍ତି । ୩୪ ।

ଭଗବାନ୍ ବ୍ରହ୍ମାଙ୍କ କର୍ତ୍ତୃକ ଏହିପରି ଆଦିଷ୍ଟ ହୋଇ କକୁଦ୍ମୀ ବ୍ରହ୍ମାଙ୍କୁ ଅଭିବନ୍ଦନ କରି ଯକ୍ଷଗଣଙ୍କ ତ୍ରାସରେ ଚତୁର୍ଦ୍ଦିଗରେ ପଳାୟିତ ଭ୍ରାତୃଗଣଙ୍କ କର୍ତ୍ତୃକ ପରିତ୍ୟକ୍ତ ନିଜପୁରକୁ ଆଗମନ କରିଥିଲେ ଏବଂ ନିଜର ଅନିନ୍ଦ୍ୟସୁନ୍ଦରୀ କନ୍ୟା ରେବତୀକୁ ଅଶେଷ ବଳଶାଳୀ ବଳଦେବଙ୍କୁ ପ୍ରଦାନ କରି ତପସ୍ୟା ନିମିତ୍ତ ବଦରୀ ନାମକ ନାରାୟଣାଶ୍ରମକୁ ଗମନ କରିଥିଲେ । ୩୫, ୩୬ ।

---

ଅଧିକ ତିନିଯୁଗ ଗଲା
କଳି ଆଗମ ଆସି ହେଲା
ଦ୍ୱାପର ଯୁଗ ଅବସାନ
ଏବେ ତୁ ଶୁଣ ମୋ ବଚନ
ଭାର ନିବାରଣର ଅର୍ଥେ
ବିଷ୍ଣୁ ଜନ୍ମିଲେ ଏ ଜଗତେ
ଦେବକୀ ଗର୍ଭେ ଦେହ ବହି
ନୀଳ ଧବଳ ରୂପ ହୋଇ
ଅନନ୍ତ ବଳଭଦ୍ର ରୂପେ
ଜନ୍ମ ଲଭିଲେ ମୋହ କୋପେ

ଏ କନ୍ୟା ବର ତାଙ୍କୁ ଦେଇ
ଭବ ସଂସାରୁ ତରି ତୁହି । ୩୩-୩୪
ଏମନ୍ତେ ବ୍ରହ୍ମା ମୁଖୁଁ ଶୁଣି
ଆନନ୍ଦ ମନେ ନୃପମଣି
ତକ୍ଷଣେ ନିଜପୁରେ ଗଲା
ଶୁଣ ହେ ଗୋବିନ୍ଦର ଲୀଳା
ତାହାର ଯେତେ ଭ୍ରାତା ଥିଲେ
ଯକ୍ଷଙ୍କ ଭୟେ ପଳାଇଲେ
ସେ କନ୍ୟା ବଳଦେବେ ଦେଇ
ଆନନ୍ଦେ କୃତ କୃତ୍ୟ ହୋଇ

ତପ କରନ୍ତେ ଶୁଦ୍ଧ ମନେ
ମିଳିଲା ବଦରିକାଶ୍ରମେ । ୩୫,୩୬ ।
ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧ ଭାଗବତ
ଭାଷା ପ୍ରବନ୍ଧେ ଗୀତ କରି
ଯାହା କହିଲେ ନରହରି
ସୁଜନେ ଏଣେ ମତିକରି
ତରିବ ସଂସାର ସାଗର
ଅନ୍ତେ ପାଇବ ଚକ୍ରଧର
ଏଣେ ବିଶ୍ୱାସ ମନ କର ॥

# ଚତୁର୍ଥୋଽଧ୍ୟାୟଃ

ଚତୁର୍ଥେ ମନୁପୁତ୍ରସ୍ୟ ନାଭଗସ୍ୟ କଥୋଚ୍ୟତେ ।
ତତ୍ସୁତୋଽମ୍ବରୀଷସ୍ୟ କୃତ୍ୟା ପ୍ରତିହତା ଯତଃ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ନାଭାଗୋ ନଭଗାପତ୍ୟଂ ଯଂ ତତଂ ଭ୍ରାତରଃ କବିମ୍ ।
ଯବିଷ୍ଠଂ ବ୍ୟଭଜନ୍ ଦାୟଂ ବ୍ରହ୍ମଚାରିଣମାଗତମ୍ । ୧ ।
ଭ୍ରାତରୋଽଭାଙ୍କ୍ତ କିଂ ମହ୍ୟଂ ଭଜାମ ପିତରଂ ତବ ।
ତ୍ୱାଂ ମମାର୍ଯ୍ୟାସ୍ତତାଭାଙ୍କ୍ଷୁର୍ମାପୁତ୍ରକ ତଦାଦୃଥାଃ । ୨ ।

---

## ନାଭାଗ ପ୍ରସଙ୍ଗ ଏବଂ ଅମ୍ବରୀଷୋପାଖ୍ୟାନ

ଚତୁର୍ଥ ଅଧ୍ୟାୟରେ ନାଭଗଙ୍କର କଥା ଏବଂ ତାଙ୍କ ପୁତ୍ର ଅମ୍ବରୀଷଙ୍କ ପବିତ୍ର ଆଖ୍ୟାନ ଏବଂ କୃତ୍ୟାର ବିନାଶ ପ୍ରଭୃତି ବର୍ଣ୍ଣନା କରାଯାଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ନାଭାଗ ନଭଗଙ୍କର ପୁତ୍ର । ଦୀର୍ଘକାଳ ଗୁରୁଗୃହରେ ବାସକରି ଥିବାରୁ ତାହାଙ୍କର ଭ୍ରାତୃଗଣ ନାଭାଗଙ୍କୁ ନୈଷ୍ଠିକ ବ୍ରହ୍ମଚାରୀ ବୋଲି ମନେକରି ଏବଂ ସେ ଗୁରୁ ଗୃହରୁ ଫେରିବେ ନାହିଁ ବୋଲି ଭାବି ସମସ୍ତ ସମ୍ପତ୍ତି ଭାଗ କରି ନେଇଥିଲେ । କିନ୍ତୁ ପରେ କୃତବେଦ୍ୟ ନାଭାଗ ଗୁରୁକୁଳରୁ ଫେରିଆସି ନିଜର ଭାଗ ନେବାକୁ ଇଚ୍ଛା କରନ୍ତେ ଭାଇମାନେ ପିତାଙ୍କୁ ଭାଗ ସ୍ୱରୂପ ଦେଖାଇ ଦେଇଥିଲେ । ୧ ।

ନାଭାଗ ପଚାରିଲେ ହେ ଭ୍ରାତୃଗଣ ! ମୋପାଇଁ କି ଭାଗ ନିର୍ଦ୍ଦେଶ କରିଅଛ ? ଭ୍ରାତୃଗଣ କହିଲେ ! ତୁମ୍ଭେ ପିତାଙ୍କୁ ଭଜ । ତାହାଙ୍କୁହିଁ ଗ୍ରହଣ କର । ନାଭାଗ ପିତାଙ୍କୁ କହିଲେ ହେ ପିତଃ ! ଜ୍ୟେଷ୍ଠ ଭ୍ରାତାଗଣ ମୋହର ଭାଗ ସ୍ୱରୂପ ଆପଣଙ୍କୁ ପ୍ରଦାନ କରିଅଛନ୍ତି । ସୁତରାଂ ଆପଣ ମୋର । ମାତ୍ର ପିତା କହିଲେ ହେ ବତ୍ସ ! ତୁମ୍ଭେ ସେମାନଙ୍କ କଥାରେ ବିଶ୍ୱାସ କରନାହିଁ । ସେମାନେ ତୁମ୍ଭକୁ ପ୍ରତାରଣା କରୁଅଛନ୍ତି । ମୁଁ ବିଭାଗଯୋଗ୍ୟ ବସ୍ତୁ ନୁହେଁ । ୨ ।

---

ନାଭାଗ ନଭଗର ସୁତ, ଚତୁର୍ଥେ ଏହାଙ୍କ ଚରିତ ॥

ଶ୍ରୀ ଶୁକଉବାଚ—

ନାଭାଗ ନଭଗର ବଳା
ପୂର୍ବେ ଯେ ବ୍ରହ୍ମଚର୍ଯ୍ୟ କଲା
ଭାଇଏ ତାର ଭାଗ କାଟି
ସବୁ ସମ୍ପଦ ନେଲେ ବାଣ୍ଟି
ଭାଇଙ୍କୁ ବୋଇଲେ ଭାଗ କାହିଁ
"ପିତା ତୋ ଭାଗ" ବୋଲେ ଭାଇ
ପିତାଙ୍କୁ ବୋଲନ୍ତେ ତା ପାଇଁ
ସେ ବୋଇଲେ ଉଚିତ ନୁହଇ
ବୋଇଲା ପୁଣି ଯାଅ ତୁହି
ଅଙ୍ଗିରସଙ୍କ ଯଜ୍ଞ ଯହିଁ
ତାହାଙ୍କୁ ଦେବୁ ଉପଦେଶ
ଲଭିବୁ ଦ୍ରବ୍ୟ ଅଶେଷ
ପିତାର ବୋଲେ ଯଜ୍ଞେ ଗଲା
ଅନେକ ଧନ ସେ ଲଭିଲା
ତା ଘେନି ସେ ଯେ ବାହେ ଆସେ
ମିଳିଲା କାଳିଆ ପୁରୁଷେ

ଇମେ ଅଙ୍ଗିରସଃ ସତ୍ରମାସତେଽଦ୍ୟ ସୁମେଧସଃ ।
ଷଷ୍ଠଂ ଷଷ୍ଠମୁପେତ୍ୟାହଃ କବେ ମୁହ୍ୟନ୍ତି କର୍ମଣି । ୩ ।
ତାଂସ୍ତ୍ୱଂ ଶଂସୟ ସୂକ୍ତେ ଦ୍ୱେ ବୈଶ୍ୱଦେବେ ମହାତ୍ମନଃ ।
ତେ ସ୍ୱର୍ଯନ୍ତୋ ଧନଂ ସତ୍ରପରିଶେଷିତମାତ୍ମନଃ । ୪ ।
ଦାସ୍ୟନ୍ତି ତେଽଥ ତାନର୍ଚ୍ଛ ତଥା ସ କୃତବାନ୍ ଯଥା ।
ତସ୍ମୈ ଦତ୍ତ୍ୱା ଯୟୁଃ ସ୍ୱର୍ଗଂ ତେ ସତ୍ରପରିଶେଷଣମ୍ । ୫ ।
ତଂ କଶ୍ଚିତ୍ ସ୍ୱୀକରିଷ୍ୟନ୍ତଂ ପୁରୁଷଃ କୃଷ୍ଣଦର୍ଶନଃ ।
ଉବାଚୋତ୍ତରତୋଽଭ୍ୟେତ୍ୟ ମମେଦଂ ବାସ୍ତୁକଂ ବସୁ । ୬ ।
ମମେଦମୃଷିଭିର୍ଦତ୍ତମିତି ତର୍ହି ସ୍ମ ମାନବଃ ।
ସ୍ୟାନ୍ନୌ ତେ ପିତରି ପ୍ରଶ୍ନଃ ପୃଷ୍ଟବାନ୍ ପିତରଂ ତଥା । ୭ ।
ଯଜ୍ଞବାସ୍ତୁଗତଂ ସର୍ବମୁଚ୍ଛିଷ୍ଟମୃଷୟଃ କ୍ୱଚିତ୍ ।
ଚକ୍ରୁର୍ହି ଭାଗଂ ରୁଦ୍ରାୟ ସ ଦେବଃ ସର୍ବମର୍ହତି । ୮ ।

ତଥାପି ତୁମ୍ଭର ଭ୍ରାତାମାନେ ମୋତେ ତୁମ୍ଭର ଭାଗ ସ୍ୱରୂପ ନିର୍ଣ୍ଣୟ କରିଥିବାରୁ ମୁଁ ତୁମ୍ଭର ଜୀବନାର୍ଜ୍ଜନର ଉପାୟ କହୁଅଛି ଶୁଣ—ଆଙ୍ଗୀରସ ( ଅଙ୍ଗିରା ପ୍ରଭୃତି ମୁନିଗଣ ) ମାନେ ବର୍ତ୍ତମାନ ଯଜ୍ଞ କରୁଅଛନ୍ତି । ସେମାନେ ପ୍ରତ୍ୟେକେ ତୀକ୍ଷ୍ଣ ଧୀ ସମ୍ପନ୍ନ ହେଲେ ମଧ୍ୟ ବହୁତ ଷଡ଼ହ ଯାଗ ( ଛଅଦିନ ବ୍ୟାପୀ ଯଜ୍ଞ ) କର୍ମପ୍ରାପ୍ତ ହୋଇଅଛନ୍ତି । ମାତ୍ର ସେ ବିଷୟକ ସୂକ୍ତ ଜ୍ଞାତ ନ ଥିବାରୁ ଭ୍ରାନ୍ତ ହୋଇଅଛନ୍ତି ।୩।

ତୁମ୍ଭେ ସେମାନଙ୍କୁ ବୈଶ୍ୱଦେବ ସୂକ୍ତ ଦୁଇଟି କହିଦେବ, ସେମାନେ କର୍ମଶେଷ କରି ସ୍ୱର୍ଗକୁ ଗମନ କଲେ ଯଜ୍ଞାବଶିଷ୍ଟ ଧନ ତୁମ୍ଭଙ୍କୁ ପ୍ରଦାନ କରିବେ । ନାଭାଗ ପିତାଙ୍କ ଆଦେଶ ପାଳନ କରିଥିଲେ ଏବଂ ଅଙ୍ଗିରା ପ୍ରଭୃତି ମୁନିମାନେ ଯଜ୍ଞାବଶିଷ୍ଟ ଧନ ତାହାଙ୍କୁ ପ୍ରଦାନ କରି ସ୍ୱର୍ଗକୁ ଗମନ କରିଥିଲେ ।୪,୫।

ନାଭାଗ ଏହି ଧନ ଗ୍ରହଣ କରିବାକୁ ଉଦ୍ୟତ ହୁଅନ୍ତେ ଉତ୍ତର ଦିଗରୁ ଗୋଟିଏ କୃଷ୍ଣବର୍ଣ୍ଣ ପୁରୁଷ ଉପସ୍ଥିତ ହୋଇ କହିଲା, ଏହି ବାସ୍ତୁଗତ ଧନ ମୋର । ୬ ।

ତହିଁର ଉତ୍ତରରେ ନାଭାଗ କହିଲେ, "ଋଷିମାନେ ଏ ଧନ ମୋତେ ପ୍ରଦାନ କରିଅଛନ୍ତି ।" ସେହି ପୁରୁଷ କହିଲେ, ଏ ଧନ ମୋର କି ତୁମ୍ଭର ତାହା ତୁମ୍ଭର ପିତାଙ୍କୁ ଯାଇଁ ପ୍ରଶ୍ନ କର ? ।୭।

ପିତା କହିଲେ, "ଦକ୍ଷ ଯଜ୍ଞରେ ଯେଉଁ ବସ୍ତୁମାନ ଯଜ୍ଞ ଭୂମିରେ ଥିଲା ଋଷିମାନେ ତାହାକୁ ରୁଦ୍ରଙ୍କର ପାଇବା ଭାଗ ବୋଲି ନିର୍ଦ୍ଦେଶ କରିଥିଲେ, ସେହିଧନ ରୁଦ୍ରଙ୍କର ପାଇବାଯୋଗ୍ୟ । ୮ ।

ବୋଲଇ ମୋର ଧନ ନେଇ
ପଳାଇ ଯାଉ କାହିଁ ପାଇଁ
ସେ ବୋଲେ ନ ଜାଣଇଁ କିଛି
ପିତା ବଚନେ ନେଇଅଛି

ପୁରୁଷ ବୋଲେ ତୁ ପଚ୍ଛର
ପିତାକୁ, ଏ ଧନ କାହାର
ତହୁଁ ନାଭାଗ ବେଗେ ଗଲା
ସକଳ ପିତାକୁ କହିଲା

ପିତା ବୋଲଇ ସତ୍ୟ ଏହା
ପୂର୍ବେ ଋଷିଏ କଲେ ଯାହା
ଯଜ୍ଞର ଶେଷ ପାତ୍ର ଆଦି
ରୁଦ୍ରଙ୍କ ଭାଗ ବୋଲି ବିଧି

ନାଭାଗସ୍ତଂ ପ୍ରଣମ୍ୟାହ ତବେଶ କିଲ ବାସ୍ତୁକମ୍ ।
ଇତ୍ୟାହ ମେ ପିତା ବ୍ରହ୍ମନ୍ ଶିରସା ତ୍ୱାଂ ପ୍ରସାଦୟେ । ୯ ।
ଯତ୍ ତେ ପିତାବଦଦ୍ଧର୍ମ୍ମଂ ତ୍ୱଞ୍ଚ ସତ୍ୟଂ ପ୍ରଭାଷସେ ।
ଦଦାମି ତେ ମନ୍ତ୍ରଦୃଶୋ ଜ୍ଞାନଂ ବ୍ରହ୍ମ ସନାତନମ୍ । ୧୦ ।
ଗୃହାଣ ଦ୍ରବିଣଂ ଦତ୍ତଂ ମତ୍ସତ୍ରପରିଶେଷିତମ୍ ।
ଇତ୍ୟୁକ୍ତ୍ୱାନ୍ତର୍ହିତୋ ରୁଦ୍ରୋ ଭଗବାନ୍ ଧର୍ମ୍ମବତ୍ସଳଃ । ୧୧ ।
ଯ ଏତତ୍ ସଂସ୍ମରେତ୍ ପ୍ରାତଃ ସାୟଞ୍ଚ ସୁସମାହିତଃ ।
କବିର୍ଭବତି ମନ୍ତ୍ରଜ୍ଞୋ ଗତିଞ୍ଚୈବ ତଥାତ୍ମନଃ । ୧୨ ।
ନାଭାଗାଦମ୍ବରୀଷୋଽଭୂନ୍ମହାଭାଗବତଃ କୃତୀ ।
ନାସ୍ପୃଶଦ୍‌ବ୍ରହ୍ମଶାପୋଽପି ଯଂ ନ ପ୍ରତିହତଃ କ୍ୱଚିତ୍ । ୧୩ ।

---

ନାଭାଗ ଫେରିଆସି ରୁଦ୍ରଦେବଙ୍କୁ ପ୍ରଣାମ କରି କହିଲେ, "ହେ ଈଶ୍ୱର ! ଯଜ୍ଞ ଭୂମିସ୍ଥ ସମସ୍ତ ଧନ ଆପଣଙ୍କର । ଏହା ପିତା କହିଅଛନ୍ତି, ଅତଏବ ଆପଣଙ୍କ ନିକଟରେ ମୁଁ ନତମସ୍ତକ ହୋଇ ଆପଣଙ୍କର ତୁଷ୍ଟି ବିଧାନ କରିବାକୁ ଇଚ୍ଛାକରେ । ୯ ।

ନାଭାଗଙ୍କର ବିନମ୍ର ଓ ସତ୍ୟ ବଚନରେ ତୁଷ୍ଟ ହୋଇ ରୁଦ୍ରଦେବ କହିଲେ, ତୁମ୍ଭର ପିତା ଧର୍ମବାକ୍ୟ କହିଅଛନ୍ତି; ତୁମ୍ଭେ ସତ୍ୟ କହିଅଛ, ତେଣୁ ମନ୍ତ୍ରଦ୍ରଷ୍ଟା ତୁମ୍ଭଙ୍କୁ ମୁଁ ଜ୍ଞାନରୂ ସନାତନ ବ୍ରହ୍ମ ପ୍ରଦାନ କରୁଅଛି । ତୁମ୍ଭେ ଏହି ଯଜ୍ଞାବଶିଷ୍ଟ ଧନ ଗ୍ରହଣ କର । ଏହା ମୁଁ ତୁମ୍ଭଙ୍କୁ ଦେଲି, ଏହାକହି ରୁଦ୍ର ଅନ୍ତର୍ହିତ ହେଲେ । ୧୦, ୧୧ ।

ଯେଉଁ ବ୍ୟକ୍ତି ପ୍ରାତଃ ଓ ସନ୍ଧ୍ୟାକାଳରେ ସମାହିତ ହୋଇ ଏହା ସ୍ମରଣ କରିବ ସେ ବିଦ୍ୱାନ ଓ ମନ୍ତ୍ରଜ୍ଞ ହୋଇ ସଦ୍‌ଗତି ଲଭି କରିବ । ୧୩ ।

ଏହି ନାଭାଗଙ୍କର ପୁତ୍ର ମହା ଭାଗବତ ତତ୍ତ୍ୱବିତ୍ ଅମ୍ବରୀଷ, ତାହାଙ୍କ ନିକଟରେ ବ୍ରହ୍ମଶାପ ସୁଦ୍ଧା ପ୍ରତିହତ ଅର୍ଥାତ୍ ବ୍ରହ୍ମଶାପ ତାହାଙ୍କୁ ସ୍ପର୍ଶ କରି ପାରିନାହିଁ । ୧୩ ।

---

| | | |
|---|---|---|
| ନାଭାଗ ତହୁଁ ବେଗେ ଗଲା | ବୋଇଲେ ସବେ ଘେନ ଯାଅ | ଅନେକ କାଳ ରାଜ୍ୟ କଲା |
| ରୁଦ୍ରେ ସକଳ ସମର୍ପିଲା | ଆବର ବ୍ରହ୍ମଜ୍ଞାନ ପାଅ | ଅନ୍ତେ ସେ ଗୋବିନ୍ଦେ ମିଶିଲା ।୯-୧୩ |
| ପିତା ପୁତ୍ରର ସତ୍ୟ ଜାଣି | ଏମନ୍ତେ ନାଭାଗ ସେ ରାଜା | |
| ରୁଦ୍ର ବୋଲନ୍ତି ସାଧୁ ବାଣୀ | ସୁଖେ ପାଳିଲା ଜନ ପ୍ରଜା | |

ଶ୍ରୀ ରାଜୋବାଚ

ଭଗବନ୍ ଶ୍ରୋତୁମିଚ୍ଛାମି ରାଜର୍ଷେସ୍ତସ୍ୟ ଧୀମତଃ ।
ନ ପ୍ରାଭୂଦ୍‌ଯତ୍ର ନିର୍ମୁକ୍ତୋ ବ୍ରହ୍ମଦଣ୍ଡୋ ଦୁରତ୍ୟୟଃ । ୧୪ ।

ଶ୍ରୀ ଶୁକ ଉବାଚ—ଅମ୍ବରୀଷୋ ମହାଭାଗଃ ସପ୍ତଦ୍ୱୀପବତୀଂ ମହୀମ୍ ।
ଅବ୍ୟୟାଞ୍ଚ ଶ୍ରିୟଂ ଲବ୍ଧ୍ୱା ବିଭବଞ୍ଚାତୁଲଂ ଭୁବି । ୧୫ ।
ମେନେଽତିଦୁର୍ଲ୍ଲଭଂ ପୁଂସାଂ ସର୍ବଂ ତତ୍ ସ୍ୱପ୍ନସଂସ୍ତୁତମ୍ ।
ବିଦ୍ୱାନ୍ ବିଭବନିର୍ବାଣଂ ତମୋ ବିଶତି ଯତ୍ ପୁମାନ୍ । ୧୬ ।
ବାସୁଦେବେ ଭଗବତି ତଦ୍ଭକ୍ତେଷୁ ଚ ସାଧୁଷୁ ।
ପ୍ରାପ୍ତୋ ଭାବଂ ପରଂ ବିଶ୍ୱଂ ଯେନେଦଂ ଲୋଷ୍ଟ୍ରବତ୍ ସ୍ମୃତମ୍ ।୧୭।

---

ରାଜା ପରୀକ୍ଷିତ କହିଲେ :—

ହେ ଭଗବନ୍ ! ଯାହାଙ୍କ ପ୍ରତି ଦୁରତିକ୍ରମଣୀୟ ବ୍ରହ୍ମଶାପ ପ୍ରଯୁକ୍ତ ହୋଇ ମଧ୍ୟ ତାଙ୍କୁ ଦଣ୍ଡିତ କରିପାରି ନ ଥିଲା ସେହି ରାଜର୍ଷି ଅମ୍ବରୀଷଙ୍କ ବୃତ୍ତାନ୍ତ ମୁଁ ଶ୍ରବଣ କରିବାକୁ ଇଚ୍ଛା କରେ । ୧୪ ।

ଶ୍ରୀ ଶୁକଦେବ କହିଲେ :—

ମହାଭାଗ ଅମ୍ବରୀଷ ଏହି ସପ୍ତଦ୍ୱୀପା ପୃଥିବୀ ଅଚଳାଲକ୍ଷ୍ମୀ ଓ ଭୂତଳରେ ଅତୁଳ ସମ୍ପଦ ଲାଭ କରିଥିଲେ । ୧୫ ।

ଏମାନ ପୁରୁଷ ପକ୍ଷରେ ଅତ୍ୟନ୍ତ ଦୁର୍ଲ୍ଲଭ ହେଲେ ମଧ୍ୟ ସେ ଏମାନଙ୍କୁ ସ୍ୱପ୍ନ ତୁଲ୍ୟ ଅବସ୍ତୁ ମନେ କରିଥିଲେ କାରଣ ବିଦ୍ୱାନ ବ୍ୟକ୍ତି ମଧ୍ୟ ବିଭବରେ ବା ବିଭବ ନାଶରେ ମୋହଗ୍ରସ୍ତ ହୋଇଥାଏ । ୧୬ ।

ରାଜର୍ଷି ଅମ୍ବରୀଷ ଭଗବାନ୍ ବାସୁଦେବଙ୍କଠାରେ ଏବଂ ତାହାଙ୍କର ଭକ୍ତ ସାଧୁଜନମାନଙ୍କଠାରେ ପରମ ଭକ୍ତିମାନ୍ ଥିବାରୁ ଏହି ବିଶ୍ୱ ତାହାଙ୍କ ନିକଟରେ ଲୋଷ୍ଟ୍ରବତ୍ ତୁଚ୍ଛ ବୋଧ ହୋଇଥିଲା । ୧୭ ।

---

ନାଭାଗ ପୁତ୍ର ଅମ୍ବରୀଷ
ସେ ରାଜା ବିଷ୍ଣୁର ବିଶ୍ୱାସ
ବ୍ରାହ୍ମଣ ଶାପ ନ ଲାଗିଲା
ତା ଶୁଣି ଅଭିମନ୍ୟୁ ବଳା
ବୋଲେ, କେମନ୍ତେ ଏହା ହେଲା
ମୋତେ ତ ସନ୍ଦେହ ଲାଗିଲା
ସେ ବ୍ରହ୍ମ-ଦଣ୍ଡ ବଜ୍ର ଘୋର
କେମନ୍ତେ ନହିଁ ହେଲା ପାର
କିବା ତାହାର ତପ ବଳ
ତରିଲା ବ୍ରହ୍ମ ଶାପାନଳ
ଏ କଥା କହ ମୁନି ମୋତେ
ସଂଶୟ ଲାଗିଲାଟି ଚିତ୍ତେ ।୧୪।

ଏମନ୍ତେ ରାଜା ପ୍ରଶ୍ନ ଶୁଣି
ଶୁକ କହନ୍ତି ମୃଦୁବାଣୀ
ଶୁଣ ରାଜନ ଏକଚିତ୍ତେ
ଯେ ପ୍ରଶ୍ନ ବଂଶାନୁଚରିତେ
ନାଭାଗ ସୁତ ଅମ୍ବରୀଷ
ଯେମନ୍ତେ ବିଷ୍ଣୁର ବିଶ୍ୱାସ
ବ୍ରାହ୍ମଣ ଶାପ ନ ଲାଗିଲା
ଅନ୍ତେ ସେ ଗୋବିନ୍ଦେ ପଶିଲା
ସେ ସପ୍ତଦ୍ୱୀପେ ଏକ ରାଜା
ସୁଖେ ପାଳଇ ଜନ ପ୍ରଜା
ଅସଂଖ୍ୟ ସମ୍ପଦ ତାହାର
ବିଭବ କେ କରେ ଗୋଚର ।

ସପତଦ୍ୱୀପେ ରାଜାପଣେ,
ପୂଜା ସେ ପାଏ ସର୍ବଜନେ
ଶରୀର ସୁଖକୁ ନ ଲେଖେ
ସମ୍ପଦ ସ୍ୱପ୍ନ ପ୍ରାୟେ ଦେଖେ
ଯେ ପ୍ରାଣୀ ସମ୍ପଦ ଇଚ୍ଛନ୍ତି
ଅନ୍ତେ ସେନରକେ ପଡ଼ନ୍ତି ।୧୫,୧୬
ଏମନ୍ତ ନିଷ୍ଟେ ଜାଣି ମନେ
ହରି ଭକତ ସେବା ଧ୍ୟାନେ
ବିଷ୍ଣୁ ଭକତ ଯେତେ ଜନ
ତାହାଙ୍କ ପାଦେ ତାର ମନ
ସାଧୁଙ୍କ ପାଦେ ନିତ୍ୟେ ସେବେ
ସଂସାର ଅନିତ୍ୟ ଭାବେ, ।୧୭।

ସ ବୈ ମନଃ କୃଷ୍ଣପଦାରବିନ୍ଦୟୋର୍ବଚାଂସି ବୈକୁଣ୍ଠଗୁଣାନୁବର୍ଣ୍ଣନେ ।
କରୌ ହରେର୍ମନ୍ଦିରମାର୍ଜ୍ଜନାଦିଷୁ ଶ୍ରୁତିଂ ଚକାରାଚ୍ୟୁତସତ୍କଥୋଦୟେ ।୧୮।
ମୁକୁନ୍ଦଲିଙ୍ଗାଳୟଦର୍ଶନେ ଦୃଶୌ ତଦ୍ଭୃତ୍ୟଗାତ୍ରସ୍ପର୍ଶେଽଙ୍ଗସଙ୍ଗମମ୍ ।
ଘ୍ରାଣଞ୍ଚ ତତ୍ପାଦସରୋଜସୌରଭେ ଶ୍ରୀମତ୍ତୁଳସ୍ୟା ରସନାଂ ତଦର୍ପିତେ ।୧୯।
ପାଦୌ ହରେଃ କ୍ଷେତ୍ରପଦାନୁସର୍ପଣେ ଶିରୋ ହୃଷୀକେଶପଦାଭିବନ୍ଦନେ ।
କାମଞ୍ଚ ଦାସ୍ୟେ ନ ତୁ କାମକାମ୍ୟୟା ଯଥୋତ୍ତମଶ୍ଳୋକଜନାଶ୍ରୟା ରତିଃ ।୨୦।
ଏବଂ ସଦା କର୍ମକଳାପମାତ୍ମନଃ ପରେଽଧିଯଜ୍ଞେ ଭଗବତ୍ୟଧୋକ୍ଷଜେ ।
ସର୍ବାତ୍ମଭାବଂ ବିଦଧନ୍ମହୀମିମାଂ ତନ୍ନିଷ୍ଠବିପ୍ରାଭିହିତଃ ଶଶାସ ହ । ୨୧ ।

---

ସେ ଶ୍ରୀକୃଷ୍ଣଙ୍କର ପାଦପଦ୍ମରେ ଚିତ୍ତ ସମର୍ପଣ କରିଥିଲେ, ବୈକୁଣ୍ଠ ଓ ବୈକୁଣ୍ଠନାଥଙ୍କର ଗୁଣ ବର୍ଣ୍ଣନାରେ ବାକ୍ୟ ନିୟୋଗ କରିଥିଲେ ଏବଂ ହରିମନ୍ଦିରାଦି ମାର୍ଜ୍ଜନ କାର୍ଯ୍ୟରେ କରଯୁଗଳ ନିୟୋଗ କରିଥିଲେ ଏବଂ ଅଚ୍ୟୁତଙ୍କ କଥା ଶ୍ରବଣରେ ଶ୍ରବଣେନ୍ଦ୍ରିୟ ନିୟୋଗ କରିଥିଲେ । ୧୮ ।

ନୟନଦ୍ୱୟକୁ ଭଗବାନ୍ ମୁକୁନ୍ଦଙ୍କର ମୂର୍ତ୍ତି ଓ ତାହାଙ୍କର ମନ୍ଦିର ଦର୍ଶନରେ ନିଯୁକ୍ତ କରିଥିଲେ ଏବଂ ଭଗବଦ୍ ଭକ୍ତମାନଙ୍କୁ ଆଲିଙ୍ଗନ ଦ୍ୱାରା ଭଗବାନଙ୍କର ଅଙ୍ଗସ୍ପର୍ଶ କରିଥିଲେ ଏବଂ ଘ୍ରାଣେନ୍ଦ୍ରିୟକୁ ଭଗବାନ୍ଙ୍କ ପାଦପଦ୍ମ ସଂଯୁକ୍ତ ତୁଳସୀ ସୌରଭ ଆଘ୍ରାଣରେ ନିୟୋଜିତ କରିଥିଲେ ଏବଂ ରସନାଦ୍ୱାରା ଭଗବାନଙ୍କ ନିକଟରେ ନିବେଦିତ ଅନ୍ନାଦି ଆସ୍ୱାଦନ କରୁଥିଲେ । ୧୯ ।

ତାହାଙ୍କର ପଦଦ୍ୱୟ ଶ୍ରୀହରି କ୍ଷେତ୍ରକୁ ଗମନ କରିବାରେ ଏବଂ ମସ୍ତକ ଭଗବାନଙ୍କ ପାଦ ବନ୍ଦନା କରିବାରେ ନିଯୁକ୍ତ ଥିଲା, ତାହାଙ୍କର କାମନା ଥିଲା ଭଗବାନଙ୍କଠାରେ ଦାସ୍ୟ ଭାବ ମାତ୍ର, ମାଳା ଚନ୍ଦନାଦି ତାହାଙ୍କର ଅଭିଳଷିତ ନ ଥିଲା । ଭକ୍ତ ଜନମାନଙ୍କଠାରେ ନିଷ୍କାମ ରତି ନିମିତ୍ତ ସେ କର୍ମ ସାଧନ କରୁଥିଲେ । ୨୦ ।

ସେ ଏହିପରି ସର୍ବତୋଭାବରେ ଭକ୍ତିକରି ଆପଣାର ସମସ୍ତ କ୍ରିୟା କଳାପ ଭଗବାନ ଯଜ୍ଞପତି ବିଷ୍ଣୁଙ୍କଠାରେ ସମର୍ପଣ କରି ସେ ବ୍ରାହ୍ମଣମାନଙ୍କ ନିର୍ଦ୍ଦେଶ ଅନୁସାରେ ରାଜ୍ୟଶାସନ କରୁଥିଲେ । ୨୧ ।

---

ହରି ଚରଣ ଯୁଗେ ମନ
ବିଷ୍ଣୁ ଗୁଣରେ ସଦାବଦନ
ବିଷ୍ଣୁର ମନ୍ଦିର ମାର୍ଜ୍ଜନେ
କର ଯୁଗଳ ଅନୁଦିନେ
ଶ୍ରବଣ ଯୁଗ ତା ସୁକଥା
ନିତ୍ୟେ ଶୁଣଇ ବିଷ୍ଣୁଗାଥା
ଈକ୍ଷନ୍ତେ ତାହାର ନୟନ
କଲଇ ବିଷ୍ଣୁ ଦରଶନ

ଶରୀର ଚର୍ମ ତା ଯତନେ
କଲେ ବୈଷ୍ଣବ ଆଲିଙ୍ଗନେ
ହରିଚରଣ ପଦ୍ମ ଗନ୍ଧେ
ନିରତେ ନାସା ତା ଆମୋଦେ
କୃଷ୍ଣର ଚରଣ ତୁଳସୀ
ତାର ରସନା ଭେଣେ ରସି ।୧୮,୧୯
ଚରଣ ଯୁଗ କଲେ ନିତ୍ୟେ
କୃଷ୍ଣ ମନ୍ଦିର ଉପଗତେ

ନମସ୍କରଣେ ଅପ୍ରମାଦେ
ଶିର କଲଇ ତାର ସଂଧେ
ବିଷ୍ଣୁ ଭକତ ଜନ ରତି
ନିରତେ କଲେ ତାର ମତି
ଦେହ ବିଷୟ ତାର ଯେତେ
କଲଇ ହରିସେବେ ନିତ୍ୟେ
ବିପ୍ର ଦେବତା ପାଦେ ସେବେ
ପ୍ରଜା ଦେଖଇ କୃଷ୍ଣଭାବେ ।୨୦,୨୧

ଇଜେଽଶ୍ୱମେଧୈରଧିଯଜ୍ଞମୀଶ୍ୱରଂ ମହାବିଭୂତ୍ୟୋପଚିତାଙ୍ଗଦକ୍ଷିଣୈଃ ।
ତତୈର୍ବଶିଷ୍ଠାସିତଗୌତମାଦିଭିର୍ଧନ୍ୱନ୍ୟଭିସ୍ରୋତମସୌ ସରସ୍ୱତୀମ୍ । ୨୨ ।
ଯସ୍ୟ କ୍ରତୁଷୁ ଗୀର୍ବାଣୈଃ ସଦସ୍ୟା ଋତ୍ୱିଜୋ ଜନାଃ ।
ତୁଲ୍ୟରୂପାଶ୍ଚାନିମିଷା ବ୍ୟଦୃଶ୍ୟନ୍ତ ସୁବାସସଃ । ୨୩ ।
ସ୍ୱର୍ଗୋ ନ ପ୍ରାର୍ଥିତୋ ଯସ୍ୟ ମନୁଜୈରମରପ୍ରିୟଃ ।
ଶୃଣ୍ୱଦ୍ଭିରୁପଗାୟଦ୍ଭିରୁତ୍ତମଃଶ୍ଳୋକଚେଷ୍ଟିତମ୍ । ୨୪ ।
ସଂବର୍ଦ୍ଧୟନ୍ତ ଯତ୍କାମାଃ ସ୍ୱାରାଜ୍ୟ ପରିଭାବିତାଃ ।
ଦୁର୍ଲ୍ଲଭା ନାପି ସିଦ୍ଧାନାଂ ମୁକୁନ୍ଦଂ ହୃଦି ପଶ୍ୟତଃ । ୨୫ ।
ସ ଇତ୍ଥଂ ଭକ୍ତିଯୋଗେନ ତପୋଯୁକ୍ତେନ ପାର୍ଥିବଃ ।
ସ୍ୱଧର୍ମ୍ମେଣ ହରିଂ ପ୍ରୀଣନ୍ ସର୍ବାନ୍ କାମାନ୍ ଶନୈର୍ଜହୌ । ୨୬ ।

---

ରାଜା ଅମ୍ବରୀଷ ଧନ୍ୱ ଦେଶରେ ସରସ୍ୱତୀ ତଟରେ ବଶିଷ୍ଠ, ଅସିତ, ଗୌତମାଦି ମୁନିମାନଙ୍କ କର୍ତ୍ତୃକ ବିହିତ ମହା ବିଭବଯୁକ୍ତ ଅଙ୍ଗ ଓ ଦକ୍ଷିଣା ସମ୍ପନ୍ନ ବହୁ ଅଶ୍ୱମେଧଯଜ୍ଞ ଦ୍ୱାରା ଯଜ୍ଞେଶ୍ୱର ବିଷ୍ଣୁଙ୍କର ଆରାଧନା କରିଥିଲେ । ୨୨ ।

ଅମ୍ବରୀଷ ରାଜାଙ୍କର ଯଜ୍ଞରେ ଦେବତାମାନଙ୍କ ସହିତ ସଦସ୍ୟ ଓ ଋତ୍ୱିକମାନେ ତୁଲ୍ୟ ରୂପ ଅଳଙ୍କାର ଓ ବସ୍ତ୍ରାଦି ସୁଶୋଭିତ ହୋଇ ଏବଂ ନିମେଷ ରହିତ ଦୃଷ୍ଟିରେ ସଦସ୍ୟରୂପେ ଉପସ୍ଥିତ ହୋଇଥିଲେ । ୨୩ ।

ସେହି ଅମ୍ବରୀଷଙ୍କର ପ୍ରଜାମାନେ ଉତ୍ତମଶ୍ଳୋକ ଭଗବାନଙ୍କର ଚରିତ ଶ୍ରବଣ ଓ କୀର୍ତ୍ତନ କରି ଦେବ ପ୍ରିୟ ସ୍ୱର୍ଗବାସ ସୁଦ୍ଧା କାମନା କରୁ ନ ଥିଲେ ଅର୍ଥାତ୍ ସ୍ୱର୍ଗ ସୁଖ ଅପେକ୍ଷା ଭଗବତ୍ ଚରିତ ଶ୍ରବଣ ଓ କୀର୍ତ୍ତନକୁ ସେମାନେ ଅଧିକ ସୁଖକର ମଣୁଥିଲେ । ୨୪ ।

ହୃଦୟ ମଧ୍ୟରେ ସର୍ବଦା ମୁକୁନ୍ଦଙ୍କୁ ଦର୍ଶନ କରି ସିଦ୍ଧଗଣ ଦୁର୍ଲ୍ଲଭ ସୁଖ ଭୋଗ କରି ସେ ଅନ୍ୟ ଭୋଗ ବାଞ୍ଛା କରୁ ନ ଥିଲେ । ୨୫ ।

ସେହି ଅମ୍ବରୀଷ ଭକ୍ତି ଓ ତପସ୍ୟାଯୁକ୍ତ ହୋଇ ସ୍ୱଧର୍ମପାଳନ ଦ୍ୱାରା ଶ୍ରୀହରିଙ୍କର ପ୍ରୀତିସାଧନ କରି କ୍ରମଶଃ ଅନ୍ୟ ଭୋଗାଭିଳାଷ ପରିତ୍ୟାଗ କରିଥିଲେ । ୨୬ ।

---

ସକଳ ସମ୍ପଦ ପ୍ରସିଦ୍ଧି
ଭିଆଇ କରେ ଅଶ୍ୱମେଧ
ବିପ୍ର-ଚରଣ ଦାନେ ପୂଜେ
ଯେ ଅଧିଯଜ୍ଞ ବିଧି ଭଜେ
ଅସିତ ବଶିଷ୍ଠ ଗୌତମ
ସଙ୍ଗେ ଘେନି ବିପ୍ରଜନ
ବିପ୍ର ସେବନ ଅନୁମତେ
ସରସ୍ୱତୀର ଅଭିସ୍ରୋତେ

ତାହାର ଯଜ୍ଞ ସଭାମଧ୍ୟେ
ତ୍ରିଦଶେ ଅତ୍ୟନ୍ତ ଆନନ୍ଦେ
ମୁନି ବ୍ରାହ୍ମଣ ମଧ୍ୟେ ବସି
ନିତ୍ୟ ଯଜ୍ଞକୁ ପ୍ରଶଂସି
ଦେବ ମନୁଷ୍ୟ ସଭାଗତେ
ସର୍ବେ ଦିଶନ୍ତି ଏକମତେ
ଦେବେ ଯେ ସଭାମଧ୍ୟେ ଥାନ୍ତି
ସ୍ୱର୍ଗ ଗମନ ନ ବାଞ୍ଛନ୍ତି ।୨୨-୨୪।

ବିଷ୍ଣୁ କୀର୍ତ୍ତନ ସଭାମଧ୍ୟେ
ସକଳେ ଶୁଣନ୍ତି ଆନନ୍ଦେ
ସ୍ୱର୍ଗର ପ୍ରାୟେ ମହୀ ଦିଶେ
ଅଷ୍ଟମ ନିଧି ଯହିଁ ବସେ
ଏମନ୍ତ ଭକ୍ତି ଯୋଗ ବଳେ
ସେ ରାଜା ସ୍ୱରସ୍ୱତୀ କୂଳେ
ସ୍ୱଧର୍ମେ ବିଷ୍ଣୁଙ୍କୁ ତୋଷିଲା
ସର୍ବକାମନା ଉପେକ୍ଷିଲା ।୨୫, ୨୬

ଗୃହେଷୁ ଦାରେଷୁ ସୁତେଷୁ ବନ୍ଧୁଷୁ ଦ୍ୱିପୋତ୍ତମସ୍ୟନ୍ଦନବାଜିବସ୍ତୁଷୁ ।
ଅକ୍ଷଯ୍ୟରତ୍ନାଭରଣାମ୍ବରାଦିଷ୍ୱନନ୍ତକୋଷେଷ୍ୱକରୋଦସନ୍ମତମ୍ । ୨୭ ।

ତସ୍ମା ଅଦାଦ୍ଧରିଶ୍ଚକ୍ରଂ ପ୍ରତ୍ୟନୀକଭୟାବହମ୍ ।
ଏକାନ୍ତଭକ୍ତିଭାବେନ ପ୍ରୀତୋ ଭକ୍ତାଭିରକ୍ଷଣମ୍ । ୨୮ ।

ଆରିରାଧୟିଷୁଃ କୃଷ୍ଣଂ ମହିଷ୍ୟା ତୁଲ୍ୟଶୀଲୟା ।
ଯୁକ୍ତଃ ସାମ୍ବତ୍ସରଂ ବୀରୋ ଦଧାର ଦ୍ୱାଦଶୀବ୍ରତମ୍ । ୨୯ ।

ବ୍ରତାନ୍ତେ କାର୍ତ୍ତିକେ ମାସି ତ୍ରିରାତ୍ରଂ ସମୁପୋଷିତଃ ।
ସ୍ନାତଃ କଦାଚିତ୍ କାଳିନ୍ଦ୍ୟାଂ ହରିଂ ମଧୁବନେଽର୍ଚ୍ଚୟତ୍ । ୩୦ ।

ମହାଭିଷେକବିଧିନା ସର୍ବୋପସ୍କର ସମ୍ପଦା ।
ଅଭିଷିଚ୍ୟାମ୍ବରାକଳ୍ପୈର୍ଗନ୍ଧମାଲ୍ୟାର୍ହଣାଦିଭିଃ । ୩୧ ।

---

ସେ ଗୃହ, ସ୍ତ୍ରୀ, ପୁତ୍ର, ବନ୍ଧୁ, ଗଜ, ରଥ, ଅଶ୍ୱ, ଅକ୍ଷୟରତ୍ନ, ବସନ ଭୂଷଣ ଓ ଅନନ୍ତ କୋଷ, ଏ ସମସ୍ତ ଉପେକ୍ଷା କରିଥିଲେ । ୨୭ ।

ଭଗବାନ ଶ୍ରୀହରି ରାଜା ଅମ୍ବରୀଷଙ୍କର ଏକାନ୍ତ ଭକ୍ତି ଭାବରେ ପ୍ରୀତହୋଇ ଶତ୍ରୁମାନଙ୍କ ଭୟୋତ୍ପାଦକ ଏବଂ ଭକ୍ତଜନପାଳକ ଚକ୍ର ତାହାଙ୍କୁ ପ୍ରଦାନ କରିଥିଲେ । ୨୮ ।

ହେ ରାଜନ ! ସେହି ବୀର ଅମ୍ବରୀଷ ତୁଲ୍ୟ ଗୁଣଯୁକ୍ତା ମହିଷିଙ୍କ ସହିତ ମିଳିତ ହୋଇ ସମ୍ବତ୍ସର ବ୍ୟାପୀ ଦ୍ୱାଦଶୀବ୍ରତ ଧାରଣ କରି ଶ୍ରୀବିଷ୍ଣୁ ଆରାଧନା କରିଥିଲେ । ୨୯ ।

ଏକଦା ବ୍ରତୋଦ୍ୟାପନ କାଳରେ କାର୍ତ୍ତିକ ମାସରେ ତ୍ରିରାତ୍ର ଉପବାସକରି ଯମୁନାଜଳରେ ସ୍ନାନ କରି ମଧୁବନରେ ଭଗବାନ୍ ଶ୍ରୀହରିଙ୍କୁ ଅର୍ଚ୍ଚନା କରିବାକୁ ଆରମ୍ଭ କଲେ । ୩୦ ।

ସେ ମହାଭିଷେକ ବିଧି ଅନୁସାରେ ସର୍ବପ୍ରକାର ଉପକରଣ ଦ୍ୱାରା ଅଭିଷେକ କରି ବସନଭୂଷଣ

---

ଗୃହ ସମ୍ପଦ ଦାରା ସୁତ
ଜ୍ଞାତି ବାନ୍ଧବ ଇଷ୍ଟ ମିତ୍ର
ହସ୍ତୀ ସ୍ୟନ୍ଦନ ବାଜୀ ଧନ
ଇଚ୍ଛା ନ କରେ ତାର ମନ । ୨୭ ।
ଥିରଚିତ୍ତେ ଗୋବିନ୍ଦ ଚରଣେ
ମନ ଲଗାଇଲେ ଅନୁକ୍ଷଣେ
ତାହାର ଶୁଦ୍ଧ ଚିତ୍ତ ଜାଣି
ଚକ୍ରକୁ ଦେଇ ଚକ୍ରପାଣି

ବୋଇଲେ ଅମ୍ବରୀଷ ମେଳେ
ତୁ ଚକ୍ର ଥିବୁ ସର୍ବ କାଳେ
ଏହାକୁ ରଖ ନିରନ୍ତରେ
ଯେମନ୍ତେ ସର୍ବଦୁଃଖୁଁ ତରେ । ୨୮
ସେ ମୁଣି ଏକାଦଶୀ ବ୍ରତେ
ଉପାସେ ପତ୍ନୀର ସମେତେ
କାର୍ତ୍ତିକ ଶୁକ୍ଳପକ୍ଷେ ହରି
ପୂଜିଲା ଉପବାସ କରି । ୨୯ ।

ପ୍ରଭାତ କାଳେ ମଧୁବନେ
କାଳନ୍ଦୀ କୂଳେ ଏକମନେ
ଆନନ୍ଦେ ପତ୍ନୀର ସମେତ
ବିଷ୍ଣୁ ପୂଜିଲା ଦୃଢବ୍ରତେ । ୩୦ ।
ଦ୍ରବ୍ୟ ସମ୍ଭାର ଅନେକରେ
ପୂଜିଲା ମହା ଅଭିଷେକେ
ଉତ୍ତମ ବସ୍ତ୍ର ଅଳଙ୍କାର
ସୁଗନ୍ଧ ମାଲ୍ୟ ଉପହାର

ତଦ୍ଗତାନ୍ତରଭାବେନ ପୂଜୟାମାସ କେଶବମ୍ ।
ବ୍ରାହ୍ମଣାଂଶ୍ଚ ମହାଭାଗାନ୍ ସିଦ୍ଧାର୍ଥାନପି ଭକ୍ତିତଃ । ୩୨ ।
ଗବାଂ ରୁକ୍ମବିଷାଣୀନାଂ ରୂପ୍ୟାଙ୍ଘ୍ରୀଣାଂ ସୁବାସସାମ୍ ।
ପୟଃଶୀଳବୟୋରୂପବତ୍ସୋପସ୍କରସମ୍ପଦାମ୍ । ୩୩ ।
ପ୍ରାହିଣୋତ୍ ସାଧୁବିପ୍ରେଭ୍ୟୋ ଗୃହେଷୁ ନ୍ୟର୍ବୁଦାନି ଷଟ୍ ।
ଭୋଜୟିତ୍ୱା ଦ୍ୱିଜାନଗ୍ରେ ସ୍ୱାଦ୍ୱନ୍ନଂ ଗୁଣବତ୍ତମମ୍ । ୩୪ ।
ଲବ୍ଧକାମୈରନୁଜ୍ଞାତଃ ପାରଣାୟୋପଚକ୍ରମେ ।
ତସ୍ୟ ତର୍ହ୍ୟତିଥିଃ ସାକ୍ଷାଦ୍ଦୁର୍ବାସା ଭଗବାନଭୂତ୍ । ୩୫ ।
ତମାନର୍ଚ୍ଚାତିଥିଂ ଭୂପଃ ପ୍ରତ୍ୟୁତ୍ଥାନାସନାର୍ହଣୈଃ ।
ଯଯାଚେଽଭ୍ୟବହାରାୟ ପାଦମୂଳମୁପାଗତଃ । ୩୬ ।

---

ଗନ୍ଧ ମାଲ୍ୟାଦି ଦ୍ୱାରା ଏକାଗ୍ର ଚିତ୍ତରେ ଭଗବାନ୍ କେଶବଙ୍କୁ ପୂଜା କରିଥିଲେ; ଏବଂ ମହା ଭାଗ୍ୟବାନ୍ ସିଦ୍ଧ ଓ ବ୍ରାହ୍ମଣମାନଙ୍କୁ ଅର୍ଚ୍ଚନା କରିଥିଲେ । ୩୧, ୩୨ ।

ତଦନନ୍ତର ରାଜା ନିଜ ଗୃହରେ ଉତ୍ତମ ଗୁଣଯୁକ୍ତ ସୁସ୍ୱାଦୁ ଅନ୍ନାଦି ବ୍ରାହ୍ମଣମାନଙ୍କୁ ଭୋଜନ କରାଇ ସୁବର୍ଣ୍ଣାଳଙ୍କାର ଖଚିତ ବିଶିଷ୍ଟ ରୌପ୍ୟାଦି, ଆଭରଣ ଯୁକ୍ତ ଖୁର ବିଶିଷ୍ଟ ଛଅକୋଟି ଗାଈ, ସାଧୁ ଓ ବିପ୍ରମାନଙ୍କୁ ଦାନ କରିଥିଲେ । ୩୩, ୩୪ ।

ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦାନ କଲାପରେ ସେମାନଙ୍କ ତୁଷ୍ଟି ବିଧାନ କରି ସେମାନଙ୍କ ଅନୁମତି ନେଇ ରାଜା ଅମ୍ବରୀଷ ପାରଣ କରିବା ନିମିତ୍ତ ଯାଉଅଛନ୍ତି, ଏମନ୍ତ ସମୟରେ ମହର୍ଷି ଦୁର୍ବାସା ଅତିଥିରୂପେ ଉପସ୍ଥିତ ହେଲେ । ୩୫ ।

ଅମ୍ବରୀଷ ତତ୍କ୍ଷଣାତ୍ ଆସନରୁ ଉଠି ପାଦ୍ୟାଦିଦ୍ୱାରା ଅତିଥିଙ୍କର ଅର୍ଚ୍ଚନା କରି କୃତାଞ୍ଜଳି ପୂର୍ବକରେ ତାହାଙ୍କର ଚରଣ ସମୀପରେ ଦଣ୍ଡାୟମାନ ହୋଇ ଭୋଜନ ନିମିତ୍ତ ପ୍ରାର୍ଥନା କଲେ । ୩୬ ।

---

ସଙ୍ଗତେ ଘେନି ନିଜ ନାରୀ
ଏକାନ୍ତ ଭାବେ ପୂଜାକରି
ଉତ୍ତମ ବ୍ରାହ୍ମଣ ବସାଇ
ସୁନ୍ଦର ଧେନୁମାନ ଦେଇ
ଧେନୁଙ୍କୁ କରି ଅଳଙ୍କାର
ସୁବର୍ଣ୍ଣ ଶୃଙ୍ଗ ରୂପା ଖୁର
ପୃଷ୍ଠ ପାଛୁଣେ ତାମ୍ର କାଂସ୍ୟେ
ବସ୍ତ୍ରରେ ମଣ୍ଡିଲେ ହରଷେ
ସୁଶୀଳ ବତ୍ସା ପୟସ୍ୱିନୀ
ମଣ୍ଡିଲେ ଅଳଙ୍କାର ଘେନି

ବିପ୍ର ବସାଇ ବାକ୍ୟ କଲେ
ଷଡ଼ ଅର୍ବୁଦ ଧେନୁ ଦେଲେ
ସୁସ୍ୱାଦୁ ଅନ୍ନ ଚଡ଼ରସେ
ବିପ୍ରଙ୍କୁ ଭୁଞ୍ଜାଇ ହରଷେ
ବିପ୍ରଙ୍କ ପାଦଯୁଗ ଲାଗି
ପାରଣା ଅର୍ଥେ ଆଜ୍ଞା ମାଗି
ଉଦ୍ୟମ କଲେ ନରପତି
ଏମନ୍ତେ ମିଳିଲେ ଅତିଥି
ଦୁର୍ବାସା ଶଙ୍କରଙ୍କ ଅଂଶେ
ତାହାଙ୍କୁ ଦେଖି ଜନତ୍ରାସେ । ୩୧-୩୫

ସେ ମୁନି ଦେଖି ନୃପମଣି
ଆସନ ପାଦାସନ ପାଣି
ପୂଜିଲେ ଅତିଥି ସ୍ୱଭାବେ
ଆନନ୍ଦେ ଅତି ଗଉରବେ
ତାହାଙ୍କ ପାଦତଳେ ପଡ଼ି
ରାଜା ବୋଲଇ କର ଯୋଡ଼ି
ହେ ମୁନି ! ପାରଣା ମୋହର
ମୋହର ଘରେ ଭିକ୍ଷାକର
ତକ୍ଷଣେ ଅମ୍ବରୀଷ ବୋଲେ
ମୁନି ମଧ୍ୟାହ୍ନ କର୍ମେ ଗଲେ

ପ୍ରତନନ୍ଦ୍ୟ ସ ତାଂ ଯାଚଞ୍ଚାଂ କର୍ତ୍ତୁମାବଶ୍ୟକଂ ଗତଃ ।
ନିମମଜ୍ଜ ବୃହଦ୍ଧ୍ୟାୟନ୍ କାଳନ୍ଦୀସଲିଲେ ଶୁଭେ । ୩୭ ।
ମୁହୂର୍ତ୍ତାର୍ଦ୍ଧାବଶିଷ୍ଟାୟାଂ ଦ୍ୱାଦଶ୍ୟାଂ ପାରଣଂ ପ୍ରତ ।
ଚିନ୍ତୟାମାସ ଧର୍ମଜ୍ଞୋ ଦ୍ୱିଜୈସ୍ତଦ୍ଧର୍ମସଙ୍କଟେ । ୩୮ ।
ବ୍ରାହ୍ମଣାତିକ୍ରମେ ଦୋଷୋ ଦ୍ୱାଦଶ୍ୟାଂ ଯଦପାରଣେ ।
ଯତ୍କୃତ୍ୱା ସାଧୁ ମେ ଭୂୟାଦଧର୍ମୋ ବା ନ ମାଂ ସ୍ପୃଶେତ୍ ।୩୯।
ଅମ୍ଭସା କେବଳେନାଥ କରିଷ୍ୟେ ବ୍ରତପାରଣମ୍ ।
ଆହୁରବ୍‌ଭକ୍ଷଣଂ ବିପ୍ରା ହ୍ୟଶିତଂ ନାଶିତଞ୍ଚ ତତ୍ । ୪୦ ।
ଇତ୍ୟପଃ ପ୍ରାଶ୍ୟ ରାଜର୍ଷିଶ୍ଚିନ୍ତୟନ୍ ମନସାଚ୍ୟୁତମ୍ ।
ପ୍ରତ୍ୟାଚଷ୍ଟ କୁରୁଶ୍ରେଷ୍ଠ ଦ୍ୱିଜାଗମନମେବ ସଃ । ୪୧ ।

---

ମହୀପତି ବ୍ୟକ୍ତିଙ୍କର ପ୍ରାର୍ଥନା ପୂରଣ କରି ମହର୍ଷି ଦୁର୍ବାସା ମଧ୍ୟାହ୍ନ କୃତ୍ୟ ସମାପନ ନିମିତ୍ତ ବ୍ରହ୍ମଧ୍ୟାନ ପୂର୍ବକ ପବିତ୍ର କାଳନ୍ଦୀ ଜଳରେ ନିମଗ୍ନ ହେଲେ । ୩୭ ।

ଦ୍ୱାଦଶୀର ଅର୍ଦ୍ଧ ମୁହୂର୍ତ୍ତ ମାତ୍ର ଅବଶିଷ୍ଟ ଥିଲା । ଏଥି ମଧ୍ୟରେ ଦ୍ୱାଦଶୀ ପାରଣା ନ କଲେ ବ୍ରତ ଭଙ୍ଗ ହେବ । ଏଣେ ବ୍ରାହ୍ମଣଙ୍କୁ ଭୋଜନ ନ ଦେଇ ନିଜେ ଭୋଜନ କଲେ ଅପରାଧ ହେବ । ଏହିପରି ଉଭୟ ସଙ୍କଟରେ ପଡ଼ି ଧାର୍ମିକ ରାଜା, ବ୍ରାହ୍ମଣମାନଙ୍କ ସହିତ ଆଲୋଚନା କରୁଥିଲେ । ୩୮ ।

ବ୍ରାହ୍ମଣଙ୍କୁ ଭୋଜନ ନ କରାଇ ନିଜେ ଭୋଜନ କଲେ ଦୋଷ, ଏଣେ ଦ୍ୱାଦଶୀ ପାରଣ ଯଥା ସମୟରେ ନ କଲେ ଦୋଷ, ଏ ବିଷୟ ଚିନ୍ତା କରି ତାହାଙ୍କର କିପରି ଧର୍ମ ରକ୍ଷା ହେବ ସେ ବିଷୟରେ ଉପଦେଶ ମାଗିଥିଲେ । ୩୯ ।

ବିଚାର କରି ସ୍ଥିର କଲେ ଯେ ବେଦଜ୍ଞ ବ୍ରାହ୍ମଣମାନେ କେବଳ ଜଳପାନ ମାତ୍ରକୁ ଭୋଜନ ଏବଂ ଅଭୋଜନ ଉଭୟ ପ୍ରକାର କଳ୍ପନା କରିଥାଆନ୍ତି । ୪୦ ।

ହେ କୁରୁଶ୍ରେଷ୍ଠ ! ରାଜର୍ଷି ଅମ୍ବରୀଷ ଏହିପରି ବିଚାର କରି ଜଳପାନ କଲେ ଏବଂ ହୃଦୟରେ ଶ୍ରୀହରିଙ୍କୁ ଧ୍ୟାନ କରି ଦୁର୍ବାସାଙ୍କର ଆଗମନ ପ୍ରତୀକ୍ଷା କରୁଥିଲେ । ୪୧ ।

---

ଆନନ୍ଦ ମନେ ଧ୍ୟାନ କରି
କାଳନ୍ଦୀ ଜଳେ ମୋଦଭରି
ସେ ଜଳେ ସ୍ନାନ ସନ୍ଧ୍ୟା କଲେ
ଆସନ ବସି ନଦୀ କୂଳେ
ଏବେ ହୋ ଶୁଣ ନୃପମଣି
ରାଜା ବିଚାରେ ବିପ୍ର ଘେନି
ପାରଣା ହୋଇଲା ଉଚ୍ଛୁର
ଅତିଥି ନଇଲା ମୋହର

କେମନ୍ତେ କରିବି ଭୋଜନ
ଅବଜ୍ଞା କରି ମହାଜନ
ଅର୍ଦ୍ଧ ମୁହୂର୍ତ୍ତେ ଅଛି ବେଳ
ଯଥାର୍ଥ ପାରଣର କାଳ
ଉଚ୍ଛୁର ପାରଣାର ବେଳା
ମୋତେତ ସଙ୍କଟ ଲାଗିଲା
ଯେ କର୍ମ କଲେ ସାଧୁ ବାଣୀ
ଲୋକେ ବୋଲିବେ ମୋତେ ପୁଣି

ଅଧର୍ମ ନ ଲାଗିବ ମୋତେ
ପାରଣା କରିବି କେମନ୍ତେ
ଜଳ ଗଣ୍ଡୂଷ କରି ପାନ
ଅତିଥି କରାଇ ଭୋଜନ
ପଛେ ମୁଁ କରିବି ଆହାର
ଏତେ ବିଚାରି ନୃପବର
ଜଳ ପାରଣା ଅପାରଣ
ଏ ଆଦି ନିଗମ ବଚନ

ଦୁର୍ବାସା ଯମୁନାକୂଳାତ୍ କୃତାବଶ୍ୟକ ଆଗତଃ ।
ରାଜ୍ଞାଭିନନ୍ଦିତସ୍ତସ୍ୟ ବୁବୁଧେ ଚେଷ୍ଟିତଂ ଧିୟା । ୪୨ ।
ମନ୍ୟୁନା ପ୍ରଚଲଦ୍‌ଗାତ୍ରୋ ଭ୍ରୂକୁଟୀକୁଟିଳାନନଃ ।
ବୁଭୁକ୍ଷିତଶ୍ଚ ସୁତରାଂ କୃତାଞ୍ଜଳିମଭାଷତଃ । ୪୩ ।
ଅହୋ ଅସ୍ୟ ନୃଶଂସସ୍ୟ ଶ୍ରିୟୋନ୍ମତ୍ତସ୍ୟ ପଶ୍ୟତ ।
ଧର୍ମ୍ମବ୍ୟତିକ୍ରମଂ ବିଷ୍ଣୋରଭକ୍ତସ୍ୟେଶମାନିନଃ । ୪୪ ।
ଯୋ ମାମତିଥିମାୟାତମାତିଥ୍ୟେନ ନିମନ୍ତ୍ର୍ୟ ଚ ।
ଅଦତ୍ତ୍ୱା ଭୁକ୍ତବାଂସ୍ତସ୍ୟ ସଦ୍ୟସ୍ତେ ଦର୍ଶୟେ ଫଳମ୍ । ୪୫ ।

---

ମଧ୍ୟାହ୍ନ କୃତ୍ୟ ସମାପନ କରି ଯମୁନା କୂଳରୁ ଦୁର୍ବାସା ଫେରିଆସନ୍ତେ ରାଜା ତାହାଙ୍କୁ ଆଦରରେ ଅଭ୍ୟର୍ଥନା କଲେ । ମାତ୍ର ମୁନି ଜ୍ଞାନ ନେତ୍ରରେ ରାଜାଙ୍କର ଜଳପାନ ବିଷୟରେ ଅବଗତ ହେଲେ । ୪୨ ।

ଅତ୍ୟନ୍ତ କ୍ଷୁଧାର୍ତ୍ତ ହେବାରୁ କ୍ରୋଧ କମ୍ପିତ ଦେହ ଏବଂ ଭ୍ରୂକୁଟି ଦ୍ୱାରା ଭୀଷଣ ଦୁର୍ବାସା ମୁନି କୃତାଞ୍ଜଳି ପୂର୍ବରେ ଦଣ୍ଡାୟମାନ ରାଜାଙ୍କୁ କହିଲେ । ୪୩ ।

ଶ୍ରୀ ଦୁର୍ବାସା କହିଲେ :—

ବିଷ୍ଣୁଙ୍କଠାରେ ଅଭକ୍ତ ଏବଂ ନିଜକୁ ଈଶ୍ୱର ବୋଲି ଅଭିମାନକାରୀ ଐଶ୍ୱର୍ଯ୍ୟ ମଦ ମତ୍ତ ଏହି ନିର୍ଦ୍ଦୟ ଅମ୍ବରୀଷର ଅଧର୍ମାଚରଣ ଦେଖ । ୪୪ ।

ଏ ମୁଁ ଅତିଥିରୂପେ ଆଗତ ମୋତେ ଆତିଥ୍ୟ ନିମନ୍ତ୍ରଣ କରି ମୋତେ ଭୋଜନ ନ କରାଇ ସ୍ୱୟଂ ଭୋଜନ କଲା, ମୁଁ ବର୍ତ୍ତମାନ ତାହାର ପ୍ରତିଫଳ ଦେବି । ୪୫ ।

---

ବିପ୍ରର ବ୍ରାହ୍ମଣଙ୍କ ବୁଦ୍ଧିରେ
ଜଳ ଗଣ୍ଡୂଷ ପାନ କଲେ
ତକ୍ଷଣେ ଜଳ ପାନ କରି
ଭକ୍ତେ ସୁମରି ନରହରି
ଦୁର୍ବାସା ଆଗମନ ରହି
ରାଜା ମନରେ ତ୍ରାସପାଇ । ୩୬-୪୨
ଦୁର୍ବାସା ଯମୁନାର କୂଳେ
ସ୍ୱକର୍ମ୍ମ ସାରି ସ୍ୱାହ୍ନକାଳେ
ମିଳିଲେ ଅମ୍ବରୀଷ ପାଶେ
ପାରଣା କରିବାର ଆଶେ
ନୃପତି କରି ବହୁ ମାନ୍ୟ
ବୋଲଇ କରିବା ବିଧାନ
ଏମନ୍ତେ ଅମ୍ବରୀଷ ବାଣୀ
ଦୁର୍ବାସା ବହୁ ମାନ୍ୟ ଶୁଣି

ସ୍ୱଭାବେ ସର୍ବଜ୍ଞ ତାପସ
ଜାଣିଲେ କଲା ଏ ପାରଣ
ରାଜାର ବଦନକୁ ଚାହିଁ
ବୋଲନ୍ତି କୋପଭର ହୋଇ । ୪୩
ତୁ ଅନାଦର କଲୁ ମୋତେ
ଜଳ ଭକ୍ଷିଲୁ ଯେ ଗୁପତେ
ଅତିଥି କଲୁ ଅବହେଳା
ଭୁଞ୍ଜିଲୁ ପାରଣାର ବେଳା
ତୁ ଯେ ଅବଜ୍ଞା କଲୁ ମୋତେ
ଉଚ୍ଛିଷ୍ଟ ଭକ୍ଷିବି କେମନ୍ତେ
ତୁ ମୋତେ କଲୁ ଅବହେଳ
ଭୁଞ୍ଜ ତୁ ଅଧର୍ମ୍ମର ଫଳ
ଏମନ୍ତ ବୋଲି କୋପଭରେ
ଜଟା ଉପାଡ଼ି ବେଳ କରେ

ଭ୍ରୂକୁଟୀ କୁଟିଳ ଲୋଚନ
ରାଜାଙ୍କୁ ବୋଲନ୍ତି ବଚନ
ଦେଖ ଏ ନୃପତିର ଗତି
ଉନ୍ମାଦ ହୋଇ ମୂଢ଼ମତି
ଧର୍ମ୍ମ ବର୍ଜିତ ବିଷ୍ଣୁ ଭକ୍ତେ
ବୋଲେ ମୁଁ ଈଶ୍ୱର ସାକ୍ଷାତେ
ଅତିଥିମତେ ପୂଜା କରି
ପାରଣା ଅର୍ଥେ ନିମନ୍ତ୍ରି
ଭିକ୍ଷା ନ ଦେଇ ଆଗ ମୋତେ
ପାରଣା କଲା ଏ ଗୁପତେ
ମୋତେ ଯେ କଲା ଅବହେଳ
ଭୁଞ୍ଜୁ ଏ ଅଧର୍ମ୍ମର ଫଳ । ୪୪, ୪୫

ଏବ ବ୍ରୁବାଣ ଉତ୍କୃତ୍ୟ ଜଟାଂ ରୋଷପ୍ରଦୀପିତଃ ।
ତୟା ସ ନିର୍ମ୍ମମେ ତସ୍ମୈ କୃତ୍ୟାଂ କାଳାନଳୋପମାମ୍ ।୪୬।
ତାମାପତନ୍ତୀଂ ଜ୍ୱଳତୀମସିହସ୍ତାଂ ପଦା ଭୁବମ୍ ।
ବେପୟନ୍ତୀଂ ସମୁଦ୍ବୀକ୍ଷ୍ୟ ନ ଚଚାଲ ପଦା ନୃପଃ । ୪୭ ।
ପ୍ରାଗ୍ଦିଷ୍ଟଂ ଭୃତ୍ୟରକ୍ଷାୟାଂ ପୁରୁଷେଣ ମହାତ୍ମନା ।
ଦଦାହ କୃତ୍ୟାଂ ତାଂ ଚକ୍ରଂ କ୍ରୁଦ୍ଧାହିମିବ ପାବକଃ । ୪୮ ।
ତଦଭିଦ୍ରବଦୁଦ୍ବୀକ୍ଷ୍ୟ ସ୍ୱପ୍ରୟାସଞ୍ଚ ନିଷ୍ଫଳମ୍ ।
ଦୁର୍ବ୍ବାସା ଦୁଦ୍ରୁବେ ଭୀତୋ ଦିକ୍ଷୁ ପ୍ରାଣପରୀପ୍ସୟା ।୪୯।

---

ଅତ୍ୟନ୍ତ କ୍ରୁଦ୍ଧ ଦୁର୍ବାସା ଏହିପରି କହୁଁ କହୁଁ ଜଟା ଉତ୍ପାଟନ କରି ଅମ୍ବରୀଷରେ ବିନାଶ ନିମିତ୍ତ କାଳାଗ୍ନି ତୁଲ୍ୟ ଅନଳ ଶିଖା ସୃଷ୍ଟି କରିଥିଲେ । ୪୬ ।

ଅତ୍ୟନ୍ତ ଜ୍ୱଳନଶାଳିନୀ, ଖଡ୍ଗହସ୍ତ, ମୂର୍ତ୍ତି ପଦାଘାତରେ ପୃଥିବୀ କମ୍ପିତ କରି ଦୃଶ୍ୟମାନ ହେଲେହେଁ ରାଜା ଅମ୍ବରୀଷ ପଦେ ମାତ୍ର ବିଚଳିତ ନ ହୋଇ ନିର୍ଭର ଭାବରେ ସେଠାରେ ଦଣ୍ଡାୟମାନ ହୋଇ ରହିଲେ । ୪୭ ।

ଭକ୍ତ ରକ୍ଷା ନିମିତ୍ତ ପରମ ପୁରୁଷ ବିଷ୍ଣୁଙ୍କର ଆଦିଷ୍ଟ ଚକ୍ର ଦାବାନଳ ଯେପରି କ୍ରୂର ସର୍ପକୁ ଦଗ୍ଧ କରେ ସେହିପରି ସେହି ମୂର୍ତ୍ତିକୁ ଦଗ୍ଧ କଲା । ୪୮ ।

ଏହି ଚକ୍ର ନିଜ ଆଡ଼କୁ ଆଗମନ କରୁଅଛି ଦେଖି ଏବଂ ନିଜର ଚେଷ୍ଟା ବିନଷ୍ଟ ହୋଇଅଛି ଜାଣିପାରି ଦୁର୍ବାସା ମୁନି ଚତୁର୍ଦ୍ଦିଗରେ ଧାବିତ ହେଲେ । ୪୯ ।

ପ୍ରଜ୍ୱଳିତ ଦାବାଗ୍ନି ସର୍ପକୁ ଦଗ୍ଧ କରିବାକୁ ଯେପରି ଧାବିତ ହୁଏ, ବିଷ୍ଣୁଚକ୍ର ଦୁର୍ବାସାରେ

---

ଜଟାକୁ ଧରି ଅଙ୍ଗ ଦେଲେ
ଅନଳ ହୁଅ ବୋଲି ବୋଇଲେ
ତକ୍ଷଣେ ହୁଂକାର କରନ୍ତ
ଉଠିଲା କୃତ୍ୟା ଅନଳ
ତେଜେ ଆଚ୍ଛାଦେ ଦଶଦିଶ
ସଘନ ବହେ ଅଶ୍ୱାସ
ଧୂମ ପୂରିତ ଶୂନ୍ୟ ମଧ୍ୟେ
ବେଗେ ଧାଇଁଲା ଘୋର ନାଦେ
ପ୍ରଳୟ ଅଗ୍ନିଙ୍କ ପ୍ରାୟେ ହୋଇ
ମିଳିଲା ରାଜା ଆଗେ ଯାଇ

ଜ୍ୱଳନ୍ତା ଖଡ୍ଗ କରେ ଧରି
ମିଳିଲା ଘୋର ନାଦ କରି
ଭୂମି କମ୍ପଇ ପାଦଘାତେ
ପର୍ବତ ଉଡ଼େ ଶ୍ୱାସ ବାତେ
ଦେଖି ତାହାର ତେଜକଳା
ରାଜା ଚରଣ ନ ଘୁଞ୍ଚିଲା
ତାର ବଦନ ରାଜା ଚାହିଁ
ମନେ ଚଳିଲା ହରିରାହି ।୪୬,୪୭
ତକ୍ଷଣେ ବିଷ୍ଣୁ ଚକ୍ର ଆସି
କୋଟିଏ ସୂର୍ଯ୍ୟ ପ୍ରାୟେ ଦିଶି

କୃତ୍ୟା ଅନଳ ଉପରେ
ପଡ଼ିଲା ମହାନାଦ ଭରେ
ତକ୍ଷଣେ ଅନଳ ଲିଭିଲା
ଦଶ ଆକାଶ ପ୍ରକାଶିଲା ।୪୮।
ସୁଦର୍ଶନ ତେଜ ଦେଖି
ଦୁର୍ବାସା ଭୟେ ବୁଜି ଆଖି
ନୟନେ ଦେଇ ଦେନିକର
ଭୟେ କମ୍ପଇ ଥରହର
ସମ୍ମୁଖେ ରହି ନ ପାରିଲା
ଜୀବନ ଭୟେ ପଳାଇଲା

ତମନ୍ୱଧାବଦ୍ଭଗବଦ୍ରଥାଙ୍ଗଂ ଦାବାଗ୍ନିରୁଦ୍ଧୂତଶିଖୋ ଯଥାହିମ୍ ।
ତଥାନୁଷକ୍ତଂ ମୁନିରୀକ୍ଷମାଣୋ ଗୁହାଂ ବିବକ୍ଷୁଃ ପ୍ରସସାର ମେରୋଃ ।୫୦।
ଦିଶୋ ନଭଃ କ୍ଷ୍ମାଂ ବିବରାନ୍ ସମୁଦ୍ରାନ୍ ଲୋକାନ୍ ସପାଲାଂସ୍ତ୍ରିଦିବଂ ଗତଃ ସଃ ।
ଯତୋ ଯତୋ ଧାବତି ତତ୍ର ତତ୍ର ସୁଦର୍ଶନଂ ଦୁଷ୍ପ୍ରସହଂ ଦଦର୍ଶ । ୫୧ ।
ଅଲବ୍‌ଧନାଥଃ ସ ଯଦା କୁତଶ୍ଚିତ୍ ସଂତ୍ରସ୍ତଚେତୋଽରଣମେଷମାଣଃ ।
ଦେବଂ ବିରିଞ୍ଚଂ ସମଗାଦ୍‌ବିଧାତସ୍ତ୍ରାହ୍ୟାତ୍ମଯୋନେଽଜିତତେଜସୋ ମାମ୍ ।୫୨।

ଶ୍ରୀ ବ୍ରହ୍ମୋବାଚ

ସ୍ଥାନଂ ମଦୀୟଂ ସହବିଶ୍ୱମେତତ୍ କ୍ରୀଡ଼ାବସାନେ ଦ୍ୱିପରାର୍ଦ୍ଧସଂଜ୍ଞେ ।
ଭ୍ରୂଭଙ୍ଗମାତ୍ରେଣ ହି ସଂଦିଧକ୍ଷୋଃ କାଳାତ୍ମନୋ ଯସ୍ୟ ତିରୋଽଭବିଷ୍ୟତ୍ ।୫୩।

---

ପଶ୍ଚାତ୍ ଦିଗରେ ସେହିପରି ଧାବିତ ହେଲା । ଦୁର୍ବାସା ପଛ ଆଡ଼େ ଧାବିତ ଏହି ଚକ୍ରକୁ ଦର୍ଶନ କରି ସୁମେରୁ ପର୍ବତର ଗହ୍ୱର ମଧ୍ୟରେ ପ୍ରବେଶ କରିବାକୁ ଧାବିତ ହେଲେ । ୫୦ ।

ଦିକ୍ ସମୂହ ଆକାଶ, ପୃଥିବୀ, ବିବର ସମୁଦ୍ର ଲୋକପାଳଗଣ ସ୍ୱର୍ଗଧାମ ଯେଉଁଠାକୁ ଗମନ କଲେ ସେହି ଚକ୍ର ସେଠାରେ ଦୁର୍ବାସା ଦେଖିବାକୁ ପାଇଲେ ।୫୧।

ସେହି ଦୁର୍ବାସା ଯେତେବେଳେ କୌଣସି ସ୍ଥାନରେ ଆଶ୍ରୟ ନ ପାଇଲେ, ସେତେବେଳେ ଭୟ ବିହ୍ୱଳ ଚିତ୍ତରେ ଭଗବାନ୍ ବ୍ରହ୍ମାଙ୍କ ନିକଟକୁ ଗମନ କଲେ ଏବଂ କହିଲେ— ହେ ଆତ୍ମଯୋନେ ! ହେ ବିଧାତଃ ! ଅମିତ ତେଜା ବିଷ୍ଣୁ ଚକ୍ରରୁ ମୋତେ ରକ୍ଷାକର ।୫୨।

ଶ୍ରୀ ବ୍ରହ୍ମା କହିଲେ :—

ଦ୍ୱିପରାର୍ଦ୍ଧ ସଂଜ୍ଞକ କ୍ରୀଡ଼ାକାଳ ଅବସାନ ହୁଅନ୍ତେ କାଳରୂପୀ ବିଷ୍ଣୁ ସମ୍ପ୍ରଦାୟ ଦଗ୍‌ଧ କରିବାକୁ ଇଚ୍ଛା କଲେ ଭ୍ରୂଭଙ୍ଗ ମାତ୍ରେ ବ୍ରହ୍ମାଣ୍ଡ ସମେତ ମୋର ଏହି ବ୍ରହ୍ମଲୋକ ସୁଦ୍ଧା ତିରୋହିତ ହୋଇପାରେ । ୫୩ ।

---

ତାର ଭଙ୍ଗି କି ଦେଖି ପଛେ
ଚକ୍ରହିଁ ଧାଇଁଲା ପ୍ରତ୍ୟକ୍ଷେ
ମଣ୍ଡୁକ ଦେଖି ସର୍ପ ଯେହ୍ନେ
ଧାମଇ ଗର୍ଜ୍ଜିତ ବଦନେ
ଦୁର୍ବାସା ଦଶଦିଶ ଚାହିଁ
ଭୟେ ନ ପାରଇ ପଳାଇ
ପଶିଲା ମେରୁ ଗୁହା ମଧ୍ୟେ
ସୁଦରଶନ ପଛେ ଖେଦେ ।୪୯,୫୦
ଦଶ ଆକାଶ ଭୂମିଗତେ
ବିବର ସମୁଦ୍ରେ ଲୁଚନ୍ତେ
ଦିଗପାଳଙ୍କ ଗୃହେ ଲୁଚେ
ଚକ୍ରକୁ ଦେଖେ ପଛେ ପଛେ

ଯହିଁ ଯହିଁକି ଧାଏ ମୁନି ବେଗେ
ସୁଦରଶନ ପଛେ ଲାଗେ
ସୁଦରଶନ ତେଜ ଦେଖି
କେହି ନ ପାରେ ତାକୁ ରଖି
ରକ୍ଷଣେ ସ୍ଥାନ ନ ପାଇଲା
ସତ୍ୟ ଲୋକକୁ ପଳାଇଲା
ଶୁନ୍ୟେ ପଳାନ୍ତେ ମନ ଦୁଃଖେ
ଭୟେ ପଶିଲା ବ୍ରହ୍ମଲୋକେ
ବ୍ରହ୍ମାର ସମୀପେ ମିଳିଲା
ଶରଣ ସମ୍ଭାଳ ବୋଇଲା
ଡାକଇ ପଶିଲି ଶରଣ
ବିଧାତା ରଖ ମୋର ପ୍ରାଣ ।୫୧,୫୨

ଏମନ୍ତେ ମୁନି ବାକ୍ୟ ଶୁଣି
ଉତ୍ତେ କହନ୍ତି କୁଶ-ପାଣି
କାଳ ସ୍ୱରୂପୀ ଯେ ଈଶ୍ୱର
ଭ୍ରୂଭଙ୍ଗ ମାତ୍ରେ ଯା ସଂହାର
ମୁଁ ବ୍ରହ୍ମା ଈଶ୍ୱର ସହିତେ
ଭୃଗୁ ଦକ୍ଷାଦି ମୁନି ଯେତେ
ପ୍ରଜା ଈଶ୍ୱର ଭୂତେଶ୍ୱର
ଦେବ ସହିତେ ସୁରେଶ୍ୱର

ଅହଂ ଭବୋ ଦକ୍ଷଭୃଗୁପ୍ରଧାନାଃ ପ୍ରଜେଶଭୂତେଶସୁରେଶମୁଖ୍ୟାଃ ।
ସର୍ବେ ବୟଂ ଯନ୍ନିୟମଂ ପ୍ରପନ୍ନା ମୂର୍ଦ୍ଧ୍ନ୍ୟର୍ପିତଂ ଲୋକହିତଂ ବହାମଃ ।୫୪ ।
ପ୍ରତ୍ୟାଖ୍ୟାତୋ ବିରଞ୍ଚେନ ବିଷ୍ଣୁଚକ୍ରୋପତାପିତଃ ।
ଦୁର୍ବାସାଃ ଶରଣଂ ଯାତଃ ଶର୍ବଂ କୈଳାସବାସିନମ୍ । ୫୫ ।

ଶ୍ରୀ ଶଙ୍କର ଉବାଚ

ବୟଂ ନ ତାତ ପ୍ରଭବାମ ଭୂମ୍ନି ଯସ୍ମିନ୍ ପରେଽନ୍ୟେଽପ୍ୟଜଜୀବକୋଶାଃ ।
ଭବନ୍ତି କାଳେ ନ ଭବନ୍ତି ହୀଦୃଶାଃ ସହସ୍ରଶୋ ଯତ୍ର ବୟଂ ଭ୍ରମାମ । ୫୬ ।
ଅହଂ ସନତ୍କୁମାରଶ୍ଚ ନାରଦୋ ଭଗବାନଜଃ ।
କପିଳୋଽପାନ୍ତରତମୋ ଦେବଳୋ ଧର୍ମ୍ମ ଆସୁରିଃ । ୫୭ ।

---

ମୁଁ (ବ୍ରହ୍ମା) ଶିବ, ଦକ୍ଷ, ଭୃଗୁ ପ୍ରମୁଖ ପ୍ରଜାପତି, ଭୂତପତି ଏବଂ ଦେବପତି, ସମସ୍ତେ ଶରଣାଗତ ହୋଇ ଯାହାଙ୍କର ଆଜ୍ଞା ବା ନିୟମ ମସ୍ତକରେ ବହନ କରି ପାଳନ କରୁଅଛୁଁ ।୫୪।

ବିଷ୍ଣୁଚକ୍ର ଦ୍ୱାରା ସନ୍ତପ୍ତ ଦୁର୍ବାସା ବ୍ରହ୍ମାଙ୍କ କର୍ତ୍ତୃକ ପ୍ରତ୍ୟାଖ୍ୟାତ ହୋଇ କୈଳାସବାସୀ ଶଙ୍କରଙ୍କର ଶରଣାଗତ ହେଲେ ।୫୫।

ଶ୍ରୀ ଶଙ୍କର କହିଲେ :—

ହେ ବତ୍ସ, ଯେଉଁ ମହାନ୍ ପରମେଶ୍ୱର ବ୍ରହ୍ମାଦିରୂପ ଜୀବ ଜଗତ୍ ଓ ତାଙ୍କର ଉପାଧିଭୂତ ବ୍ରହ୍ମାଣ୍ଡ ମାନ ଏବଂ ଦୃଶ୍ୟମାନ ଅପରାପର ପଦାର୍ଥ ସମୂହର ଉତ୍ପତ୍ତିସ୍ଥଳ ଓ ଯାହାଙ୍କଠାରେ ବିଲୟ ପ୍ରାପ୍ତ ହୁଏ, ଆମ୍ଭେମାନେ ସହସ୍ର ସହସ୍ର ବାର ଯାହାଙ୍କ ବିଷୟରେ ଭ୍ରାନ୍ତ ଧାରଣା ପୋଷଣ କରିଅଛୁଁ, ସେହି ଭଗବାନଙ୍କ ଶକ୍ତି ନିକଟରେ ଆମ୍ଭମାନଙ୍କ କ୍ଷମତା ଚଳିବ ନାହିଁ ।୫୬।

ମୁଁ (ଶିବ) ସନତ୍‌କୁମାର, ନାରଦ, ଭଗବାନ୍ ବ୍ରହ୍ମା, ଜ୍ଞାନଶ୍ରେଷ୍ଠ କପିଳ, ଦେବଳ, ଧର୍ମ, ଆସୁରି,

---

ଯେ ହରି ଆଜ୍ଞା ଶିରେ ଧରି
ଯେ ଯା ବିଷୟେ ଅଧିକାରୀ
ତାଙ୍କ ସଂସାର ଲୋକ ହିତେ
ତା ରସୁ ରଖିବୁ କେମନ୍ତେ ?
ଏମନ୍ତ ବିଧାତା ବଚନ
ଶୁଣି ଦୁର୍ବାସା ଛନଛନ
ତହୁଁ ଚଳିଲା ମନ ଦୁଃଖେ
ବେଗେ ପଶିଲା ଶିବଲୋକେ

ଶଙ୍କର ଚରଣେ ପଡ଼ିଲା
ଶରଣ ସମ୍ଭାଳ ବୋଇଲା ।୫୩-୫୫
ଦୁର୍ବାସା ବାକ୍ୟ ଶୁଣି ହର
ସମ୍ଭ୍ରମେ ବୋଲନ୍ତି ଉତ୍ତର
ଶୁଣ ଦୁର୍ବାସା ତୋତେ କହୁ
ଆମ୍ଭେ ଯାହାର ଆଜ୍ଞା ବହୁ
ବ୍ରହ୍ମାଣ୍ଡ ପାଳନ ପ୍ରକାଶେ
ଯେବା ବିଷୟ ଜୀବ କୋଷେ

କାଳର ବଶେ ଦୃଶ୍ୟାଦୃଶ୍ୟ
ଭ୍ରମନ୍ତି ସେ ଯୋନି ଅଶେଷ
ତାହାଙ୍କ ମଧ୍ୟେ ଆମ୍ଭେ ଭ୍ରମି
ଗତ ଆଗତେ ପଥଶ୍ରମୀ ।୫୬।
ମୋ ସଙ୍ଗେ ବ୍ରହ୍ମାର କୁମାର
ନାରଦ ଆଦି ମୁନିବର
କପିଳ ଦେବଳ ଅସୁରି
ଧୌମ୍ୟ ମରୀଚ ଆଦି କରି

ମରୀଚିପ୍ରମୁଖାଶ୍ଚାନ୍ୟେ ସିଦ୍ଧେଶାଃ ପାରଦର୍ଶିନଃ ।
ବିଦାମ ନ ବୟଂ ସର୍ବେ ଯନ୍ମାୟାଂ ମାୟୟାବୃତାଃ । ୫୮ ।
ତସ୍ୟ ବିଶ୍ୱେଶ୍ୱରସ୍ୟେଦଂ ଶସ୍ତ୍ରଂ ଦୁର୍ବିଷହଂ ହି ନଃ ।
ତମେବ ଶରଣଂ ଯାହି ହରିସ୍ତେ ଶଂ ବିଧାସ୍ୟତି । ୫୯ ।
ତତୋ ନିରାଶୋ ଦୁର୍ବାସାଃ ପଦଂ ଭଗବତୋ ଯଯୌ ।
ବୈକୁଣ୍ଠାଖ୍ୟଂ ଯଦଧ୍ୟାସ୍ତେ ଶ୍ରୀନିବାସଃ ଶ୍ରିୟା ସହ । ୬୦ ।
ସନ୍ଦହ୍ୟମାନୋଽଜିତଶସ୍ତ୍ରବହ୍ନିନା ତତ୍ ପାଦମୂଲେ ପତିତଃ ସବେପଥୁଃ ।
ଆହାଚ୍ୟୁତାନନ୍ତ ସଦୀପ୍ସିତ ପ୍ରଭୋ କୃତାଗସଂ ମାବ ହି ବିଶ୍ୱଭାବନ । ୬୧ ।

---

ମରୀଚି ପ୍ରମୁଖ ଅନ୍ୟାନ୍ୟ ପରତତ୍ତ୍ୱ ଦର୍ଶୀ ସିଦ୍ଧେଶ୍ୱରମାନେ— ଆମ୍ଭେମାନେ ସମସ୍ତେ ମାୟାଦ୍ୱାରା ଆବୃତ ହୋଇ ସେହି ଭଗବାନଙ୍କର ମାୟା ଅବଗତ ନୋହୁଁ । ୫୭, ୫୮ ।

ଏ ଚକ୍ର ସେହି ବିଶ୍ୱେଶ୍ୱର ବିଷ୍ଣୁଙ୍କର ସୁଦର୍ଶନ ଚକ୍ର, ଆମ୍ଭେମାନେ ଏ ଚକ୍ରକୁ ଜୟ କରି ନ ପାରୁ । ତୁମ୍ଭେ ସେହି ଭଗବାନ୍ ବିଷ୍ଣୁଙ୍କର ଶରଣାପନ୍ନ ହୁଅ । ସେ ଏକମାତ୍ର ତୁମ୍ଭର ମଙ୍ଗଳ ବିଧାନ କରିବେ । ୫୯ ।

ଦୁର୍ବାସା ସେଠାରୁ ନିରାଶ ହୋଇ ଲକ୍ଷ୍ମୀକାନ୍ତ ଓ ଲକ୍ଷ୍ମୀଙ୍କର ନିତ୍ୟଧାମ ବୈକୁଣ୍ଠ ପୁରୀକୁ ଗମନ କରିଥିଲେ । ୬୦ ।



ଦୁର୍ବାସାଙ୍କର ଭଗବାନଙ୍କୁ ସ୍ତୁତି

ବିଷ୍ଣୁଚକ୍ରାଗ୍ନି ପରିତପ୍ତ କମ୍ପିତ କଳେବର ଦୁର୍ବାସା ଭଗବାନଙ୍କ ଚରଣରେ ନିପତିତ ହୋଇ କହିଲେ— "ହେ ଅଚ୍ୟୁତ, ହେ ଅନନ୍ତ, ହେ ସାଧୁ ସଜ୍ଜନ ଅଭିଳଷିତ, ହେ ପ୍ରଭୋ, ହେ ବିଶ୍ୱଭାବନ, ଅପରାଧକାରୀ ମୋତେ କ୍ଷମା କରନ୍ତୁ, ମୋତେ ରକ୍ଷା କରନ୍ତୁ ।୬୧।"

---

ଯେ ଅନ୍ୟ ସିଦ୍ଧ ମୁନିଜନ.
ବେଦାନ୍ତ ପାର ଦରଶନ
ଜାଣି ନ ପାରେ ଯାର ମାୟା
ନିରତେ ଭ୍ରମାଏ ବିଷୟା
ସେ ବିଷ୍ଣୁ ଚକ୍ର ନିବାରଣ.
ସମର୍ଥ ଅଛି କେ ଶରଣେ

ତୁ ଏବେ ଚଳ ବିଷ୍ଣୁପୁର
ହରି ଚରଣ ଆଶ୍ରା କର
ସେ ତୋତେ ରଖିବେ ଶରଣ
ଅନ୍ୟଥା ନାହିଁ ପରିତ୍ରାଣ ।୫୭-୫୯
ଦୁର୍ବାସା ମହେଶ ବଚନେ
ପଶିଲା ବିଷ୍ଣୁର ଭୁବନେ

ଲକ୍ଷ୍ମୀ ସହିତେ ଯହିଁ ହରି
ବସନ୍ତି ଶୃଙ୍ଗାରମ୍ଭ କରି ।୬୦।
ବିଷ୍ଣୁର ଚକ୍ର ତେଜ ଭରେ
ଘର୍ମ୍ମେ ଭୂଷିତ କଳେବରେ
ଦୁର୍ବାସା ଶୋକ ଗଦ ଗଦେ
ପଡିଲା ବିଷ୍ଣୁ ପଦ୍ମପାଦେ

ଅଜାନତା ତେ ପରମାନୁଭାବଂ କୃତଂ ମୟାଘଂ ଭଗବତଃ ପ୍ରିୟାଣାମ୍ ।
ବିଧେହି ତସ୍ୟାପଚିତିଂ ବିଧାତର୍ମୁଚ୍ୟେତ ଯନ୍ନାମ୍ନ୍ୟୁଦିତେ ନାରକୋଽପି ।୬୨।

ଶ୍ରୀ ଭଗବାନୁବାଚ

ଅହଂ ଭକ୍ତପରାଧୀନୋ ହ୍ୟସ୍ୱତନ୍ତ୍ର ଇବ ଦ୍ୱିଜ ।
ସାଧୁଭିର୍ଗ୍ରସ୍ତହୃଦୟୋ ଭକ୍ତୈର୍ଭକ୍ତଜନପ୍ରିୟଃ । ୬୩ ।
ନାହମାତ୍ମାନମାଶାସେ ମଦ୍ଭକ୍ତୈଃ ସାଧୁଭିର୍ବିନା ।
ଶ୍ରିୟଂ ଚାତ୍ୟନ୍ତିକୀଂ ବ୍ରହ୍ମନ୍ ଯେଷାଂ ଗତିରହଂ ପରା । ୬୪ ।
ଯେ ଦାରାଗାରପୁତ୍ରାପ୍ତପ୍ରାଣାନ୍ ବିତ୍ତମିମଂ ପରମ୍ ।
ହିତ୍ୱା ମାଂ ଶରଣଂ ଯାତାଃ କଥଂ ତାଂସ୍ତ୍ୟକ୍ତୁମୁତ୍ସହେ । ୬୫ ।

---

ହେ ବିଧାତଃ ! ମୁଁ ଆପଣଙ୍କର ପରମାନୁଭୂତ ନ ଜାଣିପାରି ଆପଣଙ୍କ ଭକ୍ତ ପ୍ରତି ପାପାଚରଣ କରିଅଛି, ମୋତେ ଏହି ପାପରୁ ମୁକ୍ତି ପ୍ରଦାନ କରନ୍ତୁ । ନରକର ଜୀବସୁଦ୍ଧା ଆପଣଙ୍କ ନାମକୀର୍ତ୍ତନ କରି ମୁକ୍ତିଲାଭ କରୁଛି ( ମୋର କ'ଣ ମୁକ୍ତି ହେବନାହିଁ ? ) ।୬୨।

ଶ୍ରୀ ଭଗବାନ କହିଲେ :—

ହେ ବ୍ରାହ୍ମଣ ! ମୁଁ ଭକ୍ତାଧୀନ । ମୋର ସ୍ୱାଧୀନତା ନାହିଁ । ଭକ୍ତମାନେ ମୋର ପ୍ରିୟ । ସାଧୁ ଭକ୍ତମାନଙ୍କ କର୍ତ୍ତୃକ ମୋର ହୃଦୟ ଆକୃଷ୍ଟ ।୬୩।

ହେ ବ୍ରାହ୍ମଣ ! ଭକ୍ତ ମୋର ଏକମାତ୍ର ଅବଲମ୍ବନ । ମୋର ସାଧୁଭକ୍ତଗଣଙ୍କ ବ୍ୟତୀତ ମୁଁ ନିଜକୁ ଏବଂ ମୋର ଐକାନ୍ତିକ ସମ୍ପଦ ସ୍ୱରୂପିଣୀ ଲକ୍ଷ୍ମୀଦେବୀଙ୍କୁ ସୁଦ୍ଧା ମୁଁ ସ୍ପୃହା କରେ ନାହିଁ ।୬୪।

ଯେଉଁ ଜୀବମାନେ ସ୍ତ୍ରୀ, ପୁତ୍ର, ଗୃହ, ଆତ୍ମୀୟ, ସ୍ୱଜନ, ପ୍ରାଣ, ବିତ୍ତ ସମସ୍ତ ପରିତ୍ୟାଗ କରି ମୋତେ ଶ୍ରେଷ୍ଠଜ୍ଞାନ କରି ଆଶ୍ରୟ କରିଅଛନ୍ତି, ମୁଁ ସେମାନଙ୍କୁ କପରି ପରିତ୍ୟାଗ କରିବି ? ।୬୫।

---

କାତରେ କମ୍ପଇ ଶରୀର
ଡାକଇ ପ୍ରଭୁ ! ରକ୍ଷାକର
ହେ ନାଥ ଅନନ୍ତ ଅଚ୍ୟୁତ !
ତୁ ସାଧୁଜନଙ୍କର ନାଥ
ମୁଁ ତୋର ଅପରାଧ କରି
ଶରଣ ଗଲି ରଖ ହରି !
ମୁଁ ତୋର ମହିମା ନ ଜାଣେ
ସଙ୍କଟେ ପଡ଼ିଲି ମୁଁ ତେଣେ
ତୋର ସେବକେ ଅପରାଧ
କଲି ମୁଁ ରଖ ହେ ଗୋବିନ୍ଦ !
ତୋର ଭକତ ତୋର ଲେକ
ମୋତେ ଏବେ କେତେ ଜଣ ରଖ ।୬୧,୬୨

ଦୁର୍ବାସା ମୁଖ ଶୁଣି ହରି
କହିଲେ ଅତି ପ୍ରମୋଦ ଭରି
ଶ୍ରୀ ଭଗବାନୁବାଚ—
ମୁଁ ଯେ ଭକତ ପରାଧୀନ
ମୋ ତହୁଁ ଭକ୍ତ ନୋହେ ଭିନ୍ନ
ଭକ୍ତର ଅଧୀନ ମୁଁ ହୋଇ
ସେବକ ପ୍ରାୟେ ପଡ଼ିଛି ଥାଇ
ସାଧୁଙ୍କ ହୃଦେ ମୁଁ ବସଇ
ତାଙ୍କ ଭକତ ଭବ ବହି
ଭକ୍ତଟି ମୋହର ଶରୀର
ଅଳପ ନାହିଁ ଅଭ୍ୟନ୍ତର
ଭକ୍ତ ନିମନ୍ତେ ଦେହ ବହି
ସଂସାରେ ନାନା ରୂପ ହୋଇ

ଅତ୍ୟନ୍ତ ପ୍ରିୟ ମୋର ଭକ୍ତ
ମୁଁ ଭକ୍ତଜନଙ୍କର ହିତ
ଏ କଥା ମୁନିଙ୍କ ସଙ୍ଗମେ
ଜାଣନ୍ତି ଆଗମ ନିଗମେ
ଏ କଥା ପରଂପରା ବିଧି
ବେଦ ପୁରାଣ ମାର୍ଗେ ସିଦ୍ଧି
ଯେ ପଶେ ମୋହର ଶରଣେ
ସମ୍ପଦ ତୁଚ୍ଛ ପ୍ରାୟେ ମଣେ
ଦାରା ମନ୍ଦିର ସୁତ ଧନ
କେବେହେଁ ନ କଲେ ତା ମନ
ଯେ ପ୍ରାଣ ଛାଡ଼େ ମୋର ହିତେ
ମୁଁ ତାଙ୍କୁ ଛାଡ଼ିବି କେମନ୍ତେ ।୬୩-୬୫

ମୟି ନିର୍ବଦ୍ଧହୃଦୟାଃ ସାଧବଃ ସମଦର୍ଶନାଃ ।
ବଶେ କୁର୍ବନ୍ତି ମାଂ ଭକ୍ତ୍ୟା ସତ୍ସ୍ତ୍ରିୟଃ ସତ୍ପତିଂ ଯଥା ।୬୬।
ମତ୍ସେବୟା ପ୍ରତୀତଂ ତେ ସାଲୋକ୍ୟାଦିଚତୁଷ୍ଟୟମ୍ ।
ନେଚ୍ଛନ୍ତି ସେବୟା ପୂର୍ଣ୍ଣାଃ କୁତୋଽନ୍ୟତ୍ କାଳବିପ୍ଲୁତମ୍ ।୬୭।
ସାଧବୋ ହୃଦୟଂ ମହ୍ୟଂ ସାଧୂନାଂ ହୃଦୟନ୍ତ୍ୱହମ୍ ।
ମଦନ୍ୟତ୍ତେ ନ ଜାନନ୍ତି ନାହଂ ତେଭ୍ୟୋ ମନାଗପି ।୬୮।
ଉପାୟଂ କଥୟିଷ୍ୟାମି ତବ ବିପ୍ର ଶୃଣୁଷ୍ୱ ତତ୍ ।
ଅୟଂ ହ୍ୟାତ୍ମାଭିଚାରସ୍ତେ ଯତସ୍ତଂ ଯାହି ମା ଚିରମ୍ ।
ସାଧୁଷୁ ପ୍ରହିତଂ ତେଜଃ ପ୍ରହର୍ତ୍ତୁଃ କୁରୁତେଽଶିବମ୍ ।୬୯।

---

ସାଧ୍ୱୀ ସ୍ତ୍ରୀ ସାଧୁପତିଙ୍କୁ ବାଧ୍ୟ କଲାପରି ଭକ୍ତ ମୋଠାରେ ଚିତ୍ତ ସମର୍ପଣ କରି ସର୍ବତ୍ର ସମଦୃଷ୍ଟି ସମ୍ପନ୍ନ ହୋଇ ମୋତେ ବାଧ୍ୟ କରିଥାଏ ।୬୬।

ମୋର ଭକ୍ତମାନେ ମୋର ସେବାକରି ଆନନ୍ଦ ଲାଭ କରନ୍ତି । ସେମାନେ ମୋର ସେବାଦ୍ୱାରା ସାଲୋକ୍ୟାଦି ଚତୁର୍ବିଧ ମୁକ୍ତି ପ୍ରାପ୍ତହୋଇ ସୁଦ୍ଧା ତାହା ଗ୍ରହଣ କରନ୍ତି ନାହିଁ । କାଳଦ୍ୱାରା ଯେଉଁ ଧନାଦି କ୍ଷୟ ପ୍ରାପ୍ତ ହୋଇଥାଏ, ସେ କଥା କ'ଣ କହିବ ? ।୬୭।

ସାଧୁମାନେ ମୋର ହୃଦୟ ସ୍ୱରୂପ ଏବଂ ମୁଁ ସେମାନଙ୍କର ହୃଦୟ ସ୍ୱରୂପ, ସେମାନେ ମୋ ଭିନ୍ନ ଅନ୍ୟ କିଛି ଜାଣନ୍ତି ନାହିଁ । ମୁଁ ମଧ୍ୟ ସେମାନଙ୍କ ସଙ୍ଗ ପରିତ୍ୟାଗ କରି କ୍ଷଣେମାତ୍ର ରହି ନ ପାରେ ।୬୮।

ତୁମ୍ଭର ଏ ଯେଉଁ ବିପଦ ଘଟିଛି ତାହା ତୁମ୍ଭର ନିଜର ହିଂସାର ପରିଣାମ, ସେହି ଅମ୍ବରୀଷଠାରୁ ଏ ଚକ୍ର ଆସିଅଛି । ତୁମ୍ଭେ ଶୀଘ୍ର ସେହି ଅମ୍ବରୀଷ ନିକଟ ଯାଅ । ସାଧୁମାନଙ୍କ ପ୍ରତି ଅନ୍ୟାୟ ଆଚରଣ କଲେ ଅନ୍ୟାୟ ଆଚରଣକାରୀ ନିଜର ଅମଙ୍ଗଳ କରିଥାଏ ।୬୯।

---

ମୋର ବିଷୟେ ଚିତ୍ତ ସ୍ଥାପେ
ମୋତେ ଦେଖନ୍ତି ଆତ୍ମାରୂପେ
ମୁଁ ତାଙ୍କୁ ଦିଶେ ସର୍ବରୂପେ
ହୃଦୟେ ଥାଇ ଅବିରତେ
ଭକ୍ତରେ ମୋତେ ବଶ କରି
ନିଜ ପୁରୁଷ ଯେସନେ ନାରୀ ।୬୬।

ମୋର ଚରଣ ନିତ୍ୟ ଚିନ୍ତି
ଚତୁର୍ଦ୍ଧା ମୁକ୍ତି ନ ବାଞ୍ଛନ୍ତି
ଜନ୍ମ ମରଣ ତାପ ନାହିଁ
ସ୍ଥିତି ସଂହାର ଆଉ କାହିଁ
ମୋର ହୃଦୟ ଭକ୍ତ ଜନ
ମୁହିଁ ଯେ ତାହାଙ୍କ ଜୀବନ

ମୋ ଚିତ୍ତୁ ନ ଜାଣନ୍ତି ଆନ
ମୁହିଁ ତାହାଙ୍କର ଅଧୀନ ।୬୭,୬୮
ଏବେ ମୋ ଭକ୍ତ ଅପରାଧେ
ସୁଦରଶନ ତୋତେ ବାଧେ
ଯେ ମୋର ଭକ୍ତଙ୍କୁ ପୀଡ଼ନ୍ତି
ମୋ ଚକ୍ରତେଜ ସେ ସହନ୍ତି ।୬୯

ତପୋ ବିଦ୍ୟା ଚ ବିପ୍ରାଣାଂ ନିଃଶ୍ରେୟସକରେ ଉଭେ ।
ତେ ଏବ ଦୁର୍ବିନୀତସ୍ୟ କଳ୍ପେତେ କର୍ତ୍ତୁରନ୍ୟଥା । ୭୦ ।

ବ୍ରହ୍ମଂସ୍ତଦ୍ଗଚ୍ଛ ଭଦ୍ରଂ ତେ ନାଭାଗତନୟଂ ନୃପମ୍ ।
କ୍ଷମାପୟ ମହାଭାଗଂ ତତଃ ଶାନ୍ତିର୍ଭବିଷ୍ୟତି । ୭୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେଽମ୍ବରୀଷଚରିତେ
ଚତୁର୍ଥୋଽଧ୍ୟାୟଃ ।

---

ବ୍ରାହ୍ମଣମାନଙ୍କର ତପୋବିଦ୍ୟା ମଙ୍ଗଳ ବିଧାୟକ ହୁଏ, ମାତ୍ର ତୁମ୍ଭର ତପ ବିଦ୍ୟା ଦୁର୍ବିନୀତ ଏବଂ ଅମଙ୍ଗଳ ବିଧାୟକ ହୋଇଅଛି ।୭୦।

ହେ ବ୍ରାହ୍ମଣ ! ତୁମ୍ଭର ମଙ୍ଗଳ ହେଉ ! ତୁମ୍ଭେ ସେହି ମହାଭାଗ ନାଭାଗତନୟ ଅମ୍ବରୀଷ ନିକଟକୁ ଗମନ କରି ତାହାଙ୍କୁ ପ୍ରସନ୍ନ କର, ତୁମ୍ଭର ଶାନ୍ତି ହେବ ।୭୧।

---

ବିପ୍ରେ ଯେ ତପ ବିଦ୍ୟା ବଳେ
ଶ୍ରେୟ କରନ୍ତି ଏ ଶମ୍ଭୁଳେ
ସେ ଯେବେ ଭକ୍ତଙ୍କୁ ପୀଡ଼ନ୍ତି
ଅଭୟ ଲୋକ ନ ଲଭନ୍ତି ।୭୦।
ଏ ବେଳେ ତୁ ଯାଅ ବେଗ ହୋଇ
ନାଭାଗ ପୁତ୍ର ଅଛି ଯହିଁ

ତାର ଶରଣ ପଶ ଏବେ
ମୋଚନ୍ତି ନିସ୍ତରିବୁ ଯେବେ ।୭୧
ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ଗୋବିନ୍ଦ ଆଜ୍ଞା ପରମାଣେ
ଦୁର୍ବାସା ଗଲେ ତତକ୍ଷଣେ

ହରି ଭକ୍ତଙ୍କର ମହିମା
କେ କହି ପାରେ ଗୁଣସୀମା
ଭକ୍ତ ଚରଣ ସେବା ଫଳେ
ପ୍ରସନ୍ନ ହୋନ୍ତି ହରି ଭଲେ
ସୁଜନେ ନିତ୍ୟ ହରିପାଦେ
ତରିବ ବିଷମ ପ୍ରମାଦେ ॥



## ପଞ୍ଚମୋଽଧ୍ୟାୟଃ

ପଞ୍ଚମେ ବିଷ୍ଣୁଚକ୍ରନ୍ତୁ ପ୍ରସାଦ୍ୟ ପ୍ରାଣସଙ୍କଟାତ୍ ।
ଦୁର୍ବାସା ରକ୍ଷିତସ୍ତେନ ଯଥା ତଦ୍‌ବୃତ୍ତମୀର୍ଯ୍ୟତେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ଏବଂ ଭଗବତାଦିଷ୍ଟୋ ଦୁର୍ବାସାଶ୍ଚକ୍ରତାପିତଃ ।
ଅମ୍ବରୀଷମୁପାବୃତ୍ୟ ତତ୍ପାଦୌ ଦୁଃଖିତୋଽଗ୍ରହୀତ୍ । ୧ ।
ତସ୍ୟ ସୋଦ୍ୟମମାବୀକ୍ଷ୍ୟ ପାଦସ୍ପର୍ଶବିଲଜ୍ଜିତଃ ।
ଅସ୍ତାବୀତ୍ ତଦ୍ଧରେରସ୍ତ୍ରଂ କୃପୟା ପୀଡ଼ିତୋ ଭୃଶମ୍ । ୨ ।

ଅମ୍ବରୀଷ ଉବାଚ

ତ୍ୱମଗ୍ନିର୍ଭଗବାନ୍ ସୂର୍ଯ୍ୟସ୍ତ୍ୱଂ ସୋମୋ ଜ୍ୟୋତିଷାଂପତିଃ ।
ତ୍ୱମାପସ୍ତ୍ୱଂ କ୍ଷିତିର୍ବ୍ୟୋମ ବାୟୁର୍ମାତ୍ରେନ୍ଦ୍ରିୟାଣି ଚ । ୩ ।

---

## ଅମ୍ବରୀଷ ଉପାଖ୍ୟାନ

ପଞ୍ଚମ ଅଧ୍ୟାୟରେ ମହାମନା ଅମ୍ବରୀଷ ବିଷ୍ଣୁଙ୍କର ସୁଦର୍ଶନ ଚକ୍ରରେ ଭୀତତ୍ରସ୍ତ ଦୁର୍ବାସାଙ୍କୁ ରକ୍ଷା କରିବା ବିଷୟ ବର୍ଣ୍ଣନା କରାଯାଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ଦୁର୍ବାସା ବିଷ୍ଣୁଚକ୍ରଦ୍ୱାରା ତାପିତ ହୋଇ ବିଷ୍ଣୁଙ୍କ ଆଦେଶ ପାଳନ କରି ଅତ୍ୟନ୍ତ ଦୁଃଖିତହୋଇ ଅମ୍ବରୀଷଙ୍କ ନିକଟକୁ ଗମନ କରି ତାହାଙ୍କର ଚରଣ ଦ୍ୱୟ ଧାରଣ କରିଥିଲେ ।୧।

ଦୁର୍ବାସାଙ୍କର ଏପରି ଚେଷ୍ଟା (ଅର୍ଥାତ୍ ପାଦ ଧରିବାର ଚେଷ୍ଟା ଦେଖି) ଅମ୍ବରୀଷ ଅତ୍ୟନ୍ତ ଲଜ୍ଜିତ ହୋଇ ଅତ୍ୟନ୍ତ ଦୟାର୍ଦ୍ର ଭାବରେ ବିଷ୍ଣୁଙ୍କର ସେହି ସୁଦର୍ଶନ ଚକ୍ରକୁ ସ୍ତବ କଲେ ।୨।

ଶ୍ରୀ ଅମ୍ବରୀଷ କହିଲେ :—

ତୁମ୍ଭେ ଅଗ୍ନି, ତୁମ୍ଭେ ଭଗବାନ ସୂର୍ଯ୍ୟ, ତୁମ୍ଭେ ନକ୍ଷତ୍ରମାନଙ୍କର ଅଧିପତି ଚନ୍ଦ୍ର, ତୁମ୍ଭେ ଜଳ, କ୍ଷିତି, ଆକାଶ, ବାୟୁ, ଏବଂ ତନ୍ମାତ୍ରଯୁକ୍ତ ଇନ୍ଦ୍ରିୟ ସମୂହ ।୩।

---

ଚକ୍ରରୁ ଦୁର୍ବାସା ରକ୍ଷଣ, ପଞ୍ଚମ ଅଧ୍ୟାୟ ବର୍ଣ୍ଣନ ॥

ଶ୍ରୀ ଶୁକ ଉବାଚ—
ଏମନ୍ତେ ବିଷ୍ଣୁର ବଚନେ
ଦୁର୍ବାସା ଗଲେ ତୋଷମନେ
ତକ୍ଷଣେ ଅମ୍ବରୀଷ ପାଦେ
ପଡ଼ିଲା ଜୀବନ ପ୍ରମାଦେ
ଚରଣ ତଳେ ତାଙ୍କୁ ଦେଖି
ସମ୍ଭ୍ରମେ ଆସନ ଉପେକ୍ଷି
ବିପ୍ର ଜୀବନ ରକ୍ଷା ଅର୍ଥେ
କର ଅଞ୍ଜଳି ଦେଇ ମାଥେ
ସୁଦରଶନ ମୁଖ ଚାହିଁ
ଡାକଇ କରି ତ୍ରାହି ତ୍ରାହି ।୧,୨।

ଅମ୍ବରୀଷ ଉବାଚ—
ହେ ଚକ୍ର ! ତୋ ମହିମା ଯେତେ
କେ ମୁଖେ କହିପାରେ କେତେ
ତୁ ଅଗ୍ନି ତୁ ଆଦିତ୍ୟ ସୋମ
ସର୍ବ ଜ୍ୟୋତିଙ୍କ ସୂକ୍ଷ୍ମ ଧାମ
ତୁ ଆପ କ୍ଷିତି ବାୟୁ ରୂପୀ
ବ୍ୟୋମ ପ୍ରକାଶେ ସର୍ବବ୍ୟାପୀ
ତୁ ତନମାତ୍ର ଇନ୍ଦ୍ରିଗଣ
ବିରାଜ ପୁରୁଷ କାରଣ । ୩।

ସୁଦର୍ଶନ ନମସ୍ତୁଭ୍ୟଂ ସହସ୍ରାରାଚ୍ୟୁତପ୍ରିୟ ।
ସର୍ବାସ୍ତ୍ରଘାତନ୍ ବିପ୍ରାୟ ସ୍ୱସ୍ତି ଭୂୟା ଇଡ଼ସ୍ପତେ । ୪ ।
ତ୍ୱଂ ଧର୍ମସ୍ତ୍ୱମୃତଂ ସତ୍ୟଂ ତ୍ୱଂ ଯଜ୍ଞୋଽଖିଳଯଜ୍ଞଭୁକ୍ ।
ତ୍ୱଂ ଲୋକପାଳଃ ସର୍ବାତ୍ମା ତ୍ୱଂ ତେଜଃ ପୌରୁଷଂ ପରମ୍ । ୫ ।
ନମଃ ସୁନାଭାଖିଳଧର୍ମସେତବେ ହ୍ୟଧର୍ମଶୀଳାସୁରଧୂମକେତବେ ।
ତ୍ରୈଲୋକ୍ୟଗୋପାୟ ବିଶୁଦ୍ଧବର୍ଚ୍ଚସେ ମନୋଜବାୟାଦ୍ଭୁତକର୍ମଣେ ଗୃଣେ ।୬।
ତ୍ୱତେଜସା ଧର୍ମମୟେନ ସଂହୃତଂ ତମଃପ୍ରକାଶଶ୍ଚ ଦୃଶୋ ମହାତ୍ମନାମ୍ ।
ଦୁରତ୍ୟୟସ୍ତେ ମହିମା ଗିରାଂ ପତେ ତ୍ୱଦ୍ରୂପମେତତ୍ ସଦସତ୍ପରାବରମ୍ । ୭ ।
ଯଦା ବିସୃଷ୍ଟସ୍ତ୍ୱମନଞ୍ଜନେନ ବୈ ବଳଂ ପ୍ରବିଷ୍ଟୋଽଜିତ ଦୈତ୍ୟଦାନବମ୍ ।
ବାହୂଦରୋର୍ବଙ୍ଘ୍ରିଶିରୋଧରାଣି ବୃଶ୍ଚନ୍ନଜସ୍ରଂ ପ୍ରଧନେ ବିରାଜସେ । ୮ ।

---

ହେ ସୁଦର୍ଶନ ! ତୁମ୍ଭଙ୍କୁ ମୋର ନମସ୍କାର ! ହେ ସହସ୍ରାର ! ହେ ଅଚ୍ୟୁତ ପ୍ରିୟ ! ହେ ସର୍ବାସ୍ତ୍ର ଘାତନ୍ ! ହେ ପୃଥିବୀପତେ ! ତୁମ୍ଭେ ବ୍ରାହ୍ମଣ ପ୍ରତି ପ୍ରସନ୍ନ ହୁଅ, ଏହାଙ୍କର ମଙ୍ଗଳ ହେଉ । ।୪।

ତୁମ୍ଭେ ଧର୍ମ, ତୁମ୍ଭେ ଋତ, ତୁମ୍ଭେ ସତ୍ୟ, ତୁମ୍ଭେ ଯଜ୍ଞ, ତୁମ୍ଭେ ଯଜ୍ଞଭୋକ୍ତା, ତୁମ୍ଭେ ଲୋକପାଳ, ତୁମ୍ଭେ ସର୍ବାତ୍ମା, ତୁମ୍ଭେ ପୁରୁଷଙ୍କର ପରମ ତେଜ ।୫।

ହେ ଚକ୍ର ! ତୁମ୍ଭେ ଅଖିଳ ଧର୍ମର ସେତୁ ସ୍ୱରୂପ, ଅଧର୍ମଶୀଳ ଅସୁରମାନଙ୍କର ବିନାଶକ, ତୁମ୍ଭେ ତ୍ରିଭୁବନ ପାଳକ, ତୁମ୍ଭେ ଅତ୍ୟୁଜ୍ଜ୍ୱଳ ତେଜ ସମ୍ପନ୍ନ, ମନତୁଲ୍ୟ ଦ୍ରୁତଗାମୀ, ଏବଂ ଅଦ୍ଭୁତ କର୍ମଶାଳୀ; ତୁମ୍ଭର ସ୍ତବ କରିବାକୁ କେହି ସମର୍ଥ ନୁହନ୍ତି, ଅମ୍ଭେମାନେ ସମସ୍ତେ ତୁମ୍ଭଙ୍କୁ ନମସ୍କାର କରୁଅଛୁଁ ।୬।

ହେ ଗୀଷ୍ପତେ ! ତୁମ୍ଭର ଧର୍ମମୟ ତେଜ ଦ୍ୱାରା ଅନ୍ଧକାର ବିନଷ୍ଟ ହୁଏ । ଏବଂ ତୁମ୍ଭର ତେଜଦ୍ୱାରା ସୂର୍ଯ୍ୟାଦି ପ୍ରକାଶିତ ହୁଅନ୍ତି, ତୁମ୍ଭର ମହିମା ଦୁରତିକ୍ରମଣୀୟ, ଏହି ସତ୍ ଅସତ୍ ଏବଂ ପରାପର ସମସ୍ତ ପଦାର୍ଥ ତୁମ୍ଭର ସ୍ୱରୂପ ।୭।

ହେ ଅଜିତ ! ଶ୍ରୀହରି ଯେତେବେଳେ ତୁମ୍ଭଙ୍କୁ ନିକ୍ଷେପ କରନ୍ତି, ସେତେବେଳେ ଦୈତ୍ୟଦାନବ ବଳ ମଧ୍ୟରେ ପ୍ରବେଶ କରି ସେମାନଙ୍କର ବାହୁ, ଉଦର, ଊରୁ, କର ଚରଣ ଛେଦନ କରି ଯୁଦ୍ଧ କ୍ଷେତ୍ରରେ ତୁମ୍ଭେ ବିରାଜିତ ଥାଅ ।୮।

---

ହେ ଚକ୍ର ! ତୋତେ ନମସ୍କାର
ସ୍ତବେ ତୁ ସହସ୍ର ଅର
ବିଷ୍ଣୁର ନିଜ ପ୍ରିୟ ତୁହି
ତୋ ସ୍ତବ ନ ଜାଣନ୍ତି କେହି
ସକଳ ଶସ୍ତ୍ର ତେଜ ହରୁ
ତୋର ମହିମା ମହାତେଜରୁ
ତୁ ଲୋକପାଳ ସର୍ବ ଆତ୍ମା
ତୁ ତେଜ ପୁରୁଷ ମହାତ୍ମା

ତୁ ସର୍ବ ଧର୍ମ କର୍ମ ହେତୁ
ଅଧର୍ମ କୁଳ ଧୂମକେତୁ
ତ୍ରୈଲୋକ୍ୟପାଳ ଶୁଦ୍ଧ-ଚେତା
ମନଠୁଁ ବେଗ ବଳବନ୍ତ ।୪-୬
ତୋହର ନିଜ ତେଜ ଦ୍ୱାରେ
ସଂସାର ଘୋର ତମ ନାଶେ
ଶ୍ରୁତି ତୋ ମହିମା ନ ଜାଣେ
କେବଳ ପ୍ରକାଶ ପ୍ରମାଣେ

ସଦ ଅସଦ ରୂପ ତୋର
ବ୍ରହ୍ମା ଶିବଙ୍କୁ ଅଗୋଚର ।୭।
ଦାନବ ବଳେ ନରହରି
ତୋତେ ପେଶନ୍ତି ବେଗ କରି
ତୁ ଦୈତ୍ୟ ବଳମଧ୍ୟେ ପଶି
ସକଳ ନିଜ ତେଜେ ଧ୍ୱଂସି
ଅସୁର ରଣେ ତୋର ତେଜ
ଦେଖି କମ୍ପଇ ଦ୍ୱିଜରାଜ ।୮।

ସ ତ୍ୱଂ ଜଗତ୍ତ୍ରାଣ ଖଳପ୍ରହାଣୟେ ନିରୂପିତଃ ସର୍ବସହୋ ଗଦାଭୃତା ।
ବିପ୍ରସ୍ୟ ଚାସ୍ମତ୍‌କୁଳଦୈବହେତବେ ବିଧେହି ଭଦ୍ରଂ ତଦନୁଗ୍ରହୋ ହି ନଃ ।୯।
ଯଦ୍ୟସ୍ତି ଦତ୍ତମିଷ୍ଟଂ ବା ସ୍ୱଧର୍ମୋ ବା ସ୍ୱନୁଷ୍ଠିତଃ ।
କୁଳଂ ନୋ ବିପ୍ରଦୈବଞ୍ଚେଦ୍ ଦ୍ୱିଜୋ ଭବତୁ ବିଜ୍ୱରଃ । ୧୦ ।
ଯଦି ନୋ ଭଗବାନ୍ ପ୍ରୀତ ଏକଃ ସର୍ବଗୁଣାଶ୍ରୟଃ ।
ସର୍ବଭୂତାତ୍ମଭାବେନ ଦ୍ୱିଜୋ ଭବତୁ ବିଜ୍ୱରଃ । ୧୧ ।
ଶ୍ରୀ ଶୁକ ଉବାଚ—ଇତି ସଂସ୍ତୁବତୋ ରାଜ୍ଞୋ ବିଷ୍ଣୁଚକ୍ରଂ ସୁଦର୍ଶନମ୍ ।
ଅଶାମ୍ୟତ୍ ସର୍ବତୋ ବିପ୍ରଂ ପ୍ରଦହଦ୍‌ରାଜଯାଚ୍ଞୟା । ୧୨ ।
ସ ମୁକ୍ତୋଽସ୍ତ୍ରାଗ୍ନିତାପେନ ଦୁର୍ବାସାଃ ସ୍ୱସ୍ତିମାଂସ୍ତତଃ ।
ପ୍ରଶଶଂସ ତମୁର୍ବୀଶଂ ଯୁଞ୍ଜାନଃ ପରମାଶିଷଃ । ୧୩ ।

---

ହେ ଜଗତର ତ୍ରାଣ କାରକ ! ତୁମ୍ଭେ ସର୍ବସହ ଅର୍ଥାତ୍ ସମସ୍ତ ସହ୍ୟ କରିପାର । ଖଳମାନଙ୍କ ଦମନ ନିମିତ୍ତ ଭଗବାନ୍ ତୁମ୍ଭଙ୍କୁ ନିକ୍ଷେପ କରନ୍ତି, ସୁତରାଂ ଆମ୍ଭମାନଙ୍କର କୁଳର ମଙ୍ଗଳ ନିମିତ୍ତ ତୁମ୍ଭେ ଏ ବ୍ରାହ୍ମଣର ମଙ୍ଗଳ ବିଧାନ କର । ଏହାଙ୍କର ମଙ୍ଗଳ ବିଧାନ ଦ୍ୱାରା ଆମ୍ଭମାନଙ୍କର ହିତ ସାଧିତ ହେବ ।୯।

ଯଦି ଆମ୍ଭେ ଯଜ୍ଞଦାନ ପ୍ରଭୃତି ସତ୍ କାର୍ଯ୍ୟ କରିଥାଉଁ, ଏବଂ ସ୍ୱଧର୍ମପରାୟଣ ହୋଇ ଓ ବ୍ରାହ୍ମଣ ପରାୟଣ ହୋଇ ସତ୍ କୁଳରେ ଥାଉଁ ତେବେ ଏ ବ୍ରାହ୍ମଣ କ୍ଲେଶରୁ ମୁକ୍ତିଲାଭ କରନ୍ତୁ ।୧୦।

ସର୍ବଗୁଣର ଆଶ୍ରୟ ସ୍ୱରୂପ ଅଦ୍ୱିତୀୟ ଭଗବାନ୍ ସର୍ବଭୂତ ହିତକର ଧର୍ମ ଦ୍ୱାରା ଯଦି ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ଥାନ୍ତି ତେବେ ସେହି ପୁଣ୍ୟବଳରେ ଏହି ବ୍ରାହ୍ମଣ ଦୁଃଖ ରହିତ ହେଉନ୍ତୁ ।୧୧।

ଶ୍ରୀ ଶୁକଦେବ କହିଲେ :—

ରାଜା ଅମ୍ବରୀଷ ଏହିପରି ସ୍ତବ କରନ୍ତେ ସର୍ବଦା ଦହନ କରିବାକୁ ଉଦ୍ୟତ ବିଷ୍ଣୁଚକ୍ର ସୁଦର୍ଶନ ଶାନ୍ତ ହେଲେ ।୧୨।

ସୁଦର୍ଶନ ଚକ୍ରର ଉତ୍ତାପରୁ ବିମୁକ୍ତ ଦୁର୍ବାସା ଋଷି ନିରାପଦ ହୋଇ ରାଜାଙ୍କୁ ଆଶୀର୍ବାଦ ଓ ପ୍ରଶଂସା କରିଥିଲେ ।୧୩।

---

ଏଣୁ ଜଗତତ୍ରାଣ ଅର୍ଥେ
ଖଳ ବିନାଶେ ଧରି ହସ୍ତେ
ତୋ ବଳେ ବଳୀ ଗଦାଧର
ତୁ ଏବେ ମୋତେ ହିତକର
ଏ ବିପ୍ର କୁଳଦେବ ମୋର
ଏହା ଜୀବନ ରକ୍ଷା କର । ୯ ।
ମୁଁ ଯେବେ ଦାନ ଯଜ୍ଞ କରି
ସ୍ୱଧର୍ମ ମାର୍ଗକୁ ଆଚରି
ବ୍ରାହ୍ମଣ ଚରଣ କମଳେ
ଯେବେ ସେବିନ ମୋର କୁଳେ
ଯେବେ ତୋହର ପ୍ରୀତି ମୋତେ
ମୁଁ ଯେବେ ଦେଖେ ସର୍ବଭୂତେ
ଏ ଧର୍ମେ ଯେବେ ମୋର ଆସ୍ଥା
ଦ୍ୱିଜର ହେଉ ପ୍ରାଣରକ୍ଷା ।୧୦,୧୧
ଶ୍ରୀ ଶୁକଉବାଚ—
ଏମନ୍ତ ଶୁଣି ତା ବଚନ
ବିଷ୍ଣୁର ଚକ୍ର ସୁଦର୍ଶନ
ତକ୍ଷଣେ ନିଶାକର ପ୍ରାୟେ
ଶୀତଳ ଲାଗେ ବିପ୍ର ଦେହେ
ଦୁର୍ବାସା ଜୀବନ ପାଇଲା
ସନ୍ତୋଷେ ଚକ୍ରକୁ ସ୍ତୁତିଲା
ଚକ୍ରକୁ ନମସ୍କାର କରି
ବୋଲେ ନୃପତି କରଧରି ।୧୨,୧୩

ଶ୍ରୀ ଦୁର୍ବାସା ଉବାଚ

ଅହୋ ଅନନ୍ତଦାସାନାଂ ମହତ୍ତ୍ୱଂ ଦୃଷ୍ଟମଦ୍ୟ ମେ ।
କୃତାଗସେଽପି ଯଦ୍ରାଜନ୍ ମଙ୍ଗଳାନି ସମୀହସେ ।୧୪।
ଦୁଷ୍କରଃ କୋ ନୁ ସାଧୂନାଂ ଦୁସ୍ତ୍ୟଜୋ ବା ମହାତ୍ମନାମ୍ ।
ଯୈଃ ସଂଗୃହୀତୋ ଭଗବାନ୍ ସାତ୍ୱତାମୃଷଭୋ ହରିଃ ।୧୫।
ଯନ୍ନାମଶ୍ରୁତିମାତ୍ରେଣ ପୁମାନ୍ ଭବତି ନିର୍ମ୍ମଳଃ ।
ତସ୍ୟ ତୀର୍ଥପଦଃ କିମ୍ୱା ଦାସାନାମବଶିଷ୍ୟତେ ।୧୬।
ରାଜନ୍ନନୁଗୃହୀତୋଽହଂ ତ୍ୱୟାତିକରୁଣାତ୍ମନା ।
ମଦଘଂ ପୃଷ୍ଠତଃ କୃତ୍ୱା ପ୍ରାଣା ଯନ୍ମେଽଭିରକ୍ଷିତାଃ ।୧୭।
ରାଜା ତମକୃତାହାରଃ ପ୍ରତ୍ୟାଗମନକାଙ୍କ୍ଷୟା ।
ଚରଣାବୁପସଂଗୃହ୍ୟ ପ୍ରସାଦ୍ୟ ସମଭୋଜୟତ୍ ।୧୮।

ଶ୍ରୀ ଦୁର୍ବାସା କହିଲେ :—

ହେ ରାଜନ୍ ! ହରିଭକ୍ତର ଯେ ଅତି ଅପୂର୍ବ ମହତ୍ତ୍ୱ ତାହା ଆଜି ମୁଁ ପ୍ରତ୍ୟକ୍ଷ ଦେଖିଲି । କାରଣ ମୁଁ ଅତ୍ୟନ୍ତ ଅପରାଧୀ ହେଲେ ମଧ୍ୟ ତୁମ୍ଭେ ମୋର ମଙ୍ଗଳ ଚିନ୍ତା କରୁଅଛ ।୧୪।

ଯେଉଁମାନେ ଭକ୍ତ ପାଳକମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ ଶ୍ରୀହରିଙ୍କୁ ଭକ୍ତିଦ୍ୱାରା ବଶୀଭୂତ କରିଅଛନ୍ତି, ସେହି ସାଧୁ ସଜ୍ଜନମାନଙ୍କ ପକ୍ଷରେ ଦୁଷ୍କର ବା ଦୁସ୍ତ୍ୟଜ୍ୟ କିଛି ନାହିଁ ।୧୫।

ଯାହାଙ୍କ ନାମ ଶ୍ରବଣମାତ୍ରେ ଜୀବ ନିଷ୍ପାପ ହୁଏ, ସେହି ପୁଣ୍ୟ ଶ୍ଳୋକ ଭଗବଦ୍‌ଭକ୍ତ ପକ୍ଷରେ କିଛି ମାତ୍ର ଅପ୍ରାପ୍ୟ ରହେନାହିଁ ।୧୬।

ଆପଣ ମୋ ପ୍ରତି ଯଥାର୍ଥ ଅନୁଗ୍ରହ ପ୍ରକାଶ କରିଅଛନ୍ତି କାରଣ ଆପଣ ମୋର ଅପରାଧ ଗ୍ରହଣ ନ କରି ମୋର ପ୍ରାଣ ରକ୍ଷା କରିଅଛନ୍ତି ।୧୭।

ଶ୍ରୀ ଶୁକଦେବ କହିଲେ :—

ଅନନ୍ତର ଦୁର୍ବାସାଙ୍କର ପ୍ରତ୍ୟାଗମନ ଆଶାରେ ଅନ୍ଧରୀଷ ରାଜା ଅନ୍ୟତ୍ର ଆହାର ନ କରି ଗମନୋଦ୍ୟତ ଦୁର୍ବାସାଙ୍କ ଚରଣଧାରଣ ପୂର୍ବକ ତାଙ୍କୁ ପ୍ରସନ୍ନ କରାଇ ଭୋଜନ କରାଇଥିଲେ ।୧୮।

ଦୁର୍ବାସା ଉବାଚ —
ଦେଖି ଅନନ୍ତ ଦାସଙ୍କର
ମହା ମହିମା ଅଗୋଚର
ଅପରାଧ କଲେହେଁ ସନ୍ତ
ବିଷ୍ଣୁଙ୍କୁ ସର୍ବେ ଦେବେ ଚିନ୍ତ
ସାଧୁଙ୍କ ଅବା ନ ଉପେକ୍ଷେ
ହରିସକଳଦେବେ ଦେଖେ ।୧୪,୧୫
ଯାହାର ନାମ ଶ୍ରୁତିମାତ୍ରେ
ଦୁରିତ ନ ରହଇ ଗାତ୍ରେ
ସେ ତୀର୍ଥ-ପଦ ଦାସ ଯେତେ
ଦୁଃଖ ନାଶନ୍ତି ଏ ଜଗତେ
ଯେଣୁ ରଖିଲ ମୋ ଜୀବନ
ତୋରମହିମାଧନ୍ୟଧନ୍ୟ ।୧୬,୧୭
ଏମନ୍ତେ ବିପ୍ରମୁଖୁଁ ଶୁଣି
କଂସେ ଭୋଜ୍ୟ ଦେଇ ବେଳ ଘାଣି
ବୋଲେ ଦୁର୍ବାସା ମୁଖ ରଖି
ହେ ବିପ୍ର ! ମୋତେ କର ଛାଡ଼ି

ସୋଽଶିତ୍ୱାଦୃତମନୀତମାତଥ୍ୟଂ ସାର୍ବକାମିକମ୍ ।
ତୃପ୍ତାତ୍ମା ନୃପତିଂ ପ୍ରାହ ଭୁଜ୍ୟତାମିତି ସାଦରମ୍ । ୧୯ ।
ପ୍ରୀତୋଽସ୍ମ୍ୟନୁଗୃହୀତୋଽସ୍ମି ତବ ଭାଗବତସ୍ୟ ବୈ ।
ଦର୍ଶନସ୍ପର୍ଶନାଲାପୈରାତିଥ୍ୟେନାତ୍ମମେଧସା । ୨୦ ।
କର୍ମାବଦାତମେତତ୍ତେ ଗାୟନ୍ତି ସ୍ୱଃସ୍ତ୍ରିୟୋ ମୁହୁଃ ।
କୀର୍ତ୍ତିଂ ପରମପୁଣ୍ୟାଞ୍ଚ କୀର୍ତ୍ତୟିଷ୍ୟତି ଭୂରିୟମ୍ । ୨୧ ।

ଶ୍ରୀ ଶୁକ ଉବାଚ

ଏବଂ ସଂକୀର୍ତ୍ତ୍ୟ ରାଜାନଂ ଦୁର୍ବାସାଃ ପରିତୋଷିତଃ ।
ଯଯୌ ବିହାୟସାମନ୍ତ୍ର୍ୟ ବ୍ରହ୍ମଲୋକମହୈତୁକମ୍ । ୨୨ ।
ସମ୍ବତ୍ସରୋଽତ୍ୟଗାତ୍ତାବଦ୍‌ଯାବତା ନାଗତୋ ଗତଃ ।
ମୁନିସ୍ତଦ୍ଦର୍ଶନାକାଙ୍କ୍ଷୋ ରାଜାବ୍ଭକ୍ଷୋ ବଭୂବ ହ । ୨୩ ।

---

ଦୁର୍ବାସା ଅତ୍ୟନ୍ତ ଆଦର ପାଇ ଓ ସର୍ବକାମନା ପୂର୍ବକ ଆତିଥ୍ୟରେ ପରିତୃପ୍ତ ହୋଇ "ଆପଣ ଭୋଜନ କରନ୍ତୁ" ବୋଲି ରାଜାଙ୍କୁ ଅନୁମତି ପ୍ରଦାନ କରିଥିଲେ ।୧୯।

ଦୁର୍ବାସା କହିଲେ :—

ମୁଁ ଆପଣଙ୍କର ତୁଲ୍ୟ ଭଗବଦ୍ ଭକ୍ତଙ୍କ ଦର୍ଶନ, ସ୍ପର୍ଶନ, ଆଳାପରେ ଏବଂ ଆତ୍ମଶକ୍ତି ବୃଦ୍ଧିକ ରକ ଆତିଥ୍ୟରେ ପ୍ରୀତ ଓ ଅନୁଗୃହୀତ ହୋଇଅଛି ।୨୦।

ହେ ରାଜନ୍ ! ଆପଣଙ୍କର ଏହି ପବିତ୍ର କର୍ମ ଦେବାଙ୍ଗନାମାନେ ଗାନ କରିବେ ଏବଂ ପୃଥିବୀସ୍ଥ ମାନବମାନେ ଏହି ପରମ ପୁଣ୍ୟମୟୀ କୀର୍ତ୍ତି କୀର୍ତ୍ତନ କରିବେ ।୨୧।

ଶ୍ରୀ ଶୁକଦେବ କହିଲେ :—

ଏହିପରି କୀର୍ତ୍ତନ କରି ପରିତୁଷ୍ଟ ହୋଇ ଦୁର୍ବାସା ଋଷି ରାଜା ଅମ୍ବରୀଷଙ୍କୁ ସମ୍ଭାଷଣ କରି ପବନ ବ୍ରହ୍ମଲୋକକୁ ଗମନ କରିଥିଲେ । ୨୨ ।

ବ୍ରହ୍ମଲୋକକୁ ମୁନି ଦୁର୍ବାସା ଯାଇ ବର୍ଷକ ମଧ୍ୟରେ ଫେରି ନ ଥିଲେ, ସେହି ବର୍ଷକ ପର୍ଯ୍ୟନ୍ତ ରାଜା ଅମ୍ବରୀଷ ତାହାଙ୍କ ଦର୍ଶନାଭିଳାଷରେ ରହି ଜଳମାତ୍ର ଆହାର କରିଥିଲେ ।୨୩।

---

ତୁ ଯେ ଅତିଥି ମୋର କୁଳେ
ମିଳିଲୁ ପାରଣାର ବେଳେ
ପାରିଯା ଭୟେ ମୁଁ ଗୁପତେ
ଅପ୍ରାଧ କଲି ଦୁଷ୍ଟ ଚିତ୍ତେ
ସେ ଅପରାଧ ମୋ ନ ଧର
ପାରଣା ମୋର ଘରେ କର

ଏମନ୍ତ ରାଜାର ବଚନେ
ପାରଣା କଲେ ତୋଷ ମନେ
କଲ୍ୟାଣ କରି ଅମ୍ବରୀଷେ
ଅନେକ ମନର ସନ୍ତୋଷେ
ତକ୍ଷଣେ ଶୂନ୍ୟ ମାର୍ଗେ ଗଲେ
ବ୍ରହ୍ମାର ଭୁବନେ ମିଳିଲେ

କହିଲେ ଅମ୍ବରୀଷ ବାଣୀ
ବ୍ରହ୍ମା ସନ୍ତୋଷ ତାହା ଶୁଣି
ରାଜାକୁ କଲେ ଧନ୍ୟ ଧନ୍ୟ
ଏବେ ତୁ ଶୁଣ ହୋ ରାଜନ !
ସେ ଅମ୍ବରୀଷ ଦଣ୍ଡଧାରୀ
ପୁତ୍ରଙ୍କୁ ରାଜ୍ୟ ରାଜା କରି

ଗତେଽଥ ଦୁର୍ବାସସି ସୋଽମ୍ବରୀଷୋ ଦ୍ୱିଜୋପଯୋଗାତିପବିତ୍ରମାହରତ୍ ।
ଋଷେର୍ବିମୋକ୍ଷଂ ବ୍ୟସନଞ୍ଚ ବୀକ୍ଷ୍ୟ ମେନେ ସ୍ୱବୀର୍ଯ୍ୟଞ୍ଚ ପରାନୁଭାବମ୍ । ୨୪ ।
ଏବଂ ବିଧାନେକଗୁଣଃ ସ ରାଜା ପରାତ୍ମନି ବ୍ରହ୍ମଣି ବାସୁଦେବେ ।
କ୍ରିୟାକଲାପୈଃ ସମୁବାହ ଭକ୍ତିଂ ଯୟା ବିରିଞ୍ଚ୍ୟାନ୍ନିରୟାଂଶ୍ଚକାର । ୨୫ ।
ଅଥାମ୍ବରୀଷସ୍ତନୟେଷୁ ରାଜ୍ୟଂ ସମାନଶୀଳେଷୁ ବିସୃଜ୍ୟ ଧୀରଃ ।
ବନଂ ବିବେଶାତ୍ମନି ବାସୁଦେବେ ମନୋ ଦଧଦ୍ଧ୍ୱସ୍ତଗୁଣପ୍ରବାହଃ । ୨୬ ।
ଇତ୍ୟେତତ୍ ପୁଣ୍ୟମାଖ୍ୟାନମମ୍ବରୀଷସ୍ୟ ଭୂପତେଃ ।
ସଙ୍କୀର୍ତ୍ତୟନ୍ନନୁଧ୍ୟାୟନ୍ ଭକ୍ତୋ ଭଗବତୋ ଭବେତ୍ । ୨୭ ।
ଅମ୍ବରୀଷସ୍ୟ ଚରିତଂ ଯେ ଶୃଣ୍ୱନ୍ତି ମହାତ୍ମନଃ ।
ମୁକ୍ତିଂ ପ୍ରୟାନ୍ତି ତେ ସର୍ବେ ଭକ୍ତ୍ୟା ବିଷ୍ଣୋଃ ପ୍ରସାଦତଃ । ୨୮ ।
ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ନବମସ୍କନ୍ଧେଽମ୍ବରୀଷୋପାଖ୍ୟାନଂ
ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନାମ ପଞ୍ଚମୋଽଧ୍ୟାୟଃ ।

---

ଦୁର୍ବାସା ଗମନ କରନ୍ତେ ରାଜା ଅମ୍ବରୀଷ ଅତି ପବିତ୍ର ଭୋଜ୍ୟଦ୍ରବ୍ୟ ଆହାର କରିଥିଲେ, ଦୁର୍ବାସଙ୍କର ବିପଦ ଓ ପରିତ୍ରାଣ ବିଷୟ ଭାବି ନିଜର ଧୈର୍ଯ୍ୟାଦି ରୂପ ବୀର୍ଯ୍ୟ ଭଗବାନଙ୍କର କୃପା ଏହା ମନେ ଚିନ୍ତା କରିଥିଲେ । ୨୪ ।

ଏହିପରି ବହୁଗୁଣ ବିଶିଷ୍ଟ ରାଜା ଅମ୍ବରୀଷ ବିବିଧ କାର୍ଯ୍ୟ କଳାପ ଦ୍ୱାରା ପରମାତ୍ମା ଭଗବାନ୍ ବାସୁଦେବଙ୍କୁ ଯେପରି ଭକ୍ତି କରିଥିଲେ ସେ ଭକ୍ତି ନିକଟରେ ବ୍ରହ୍ମାଦି ପଦପ୍ରାପ୍ତି ମଧ୍ୟ ନଗଣ୍ୟ । ୨୫ ।

ଶ୍ରୀ ଶୁକଦେବ କହିଲେ :—

ତଦନନ୍ତର ଧୀରାଗ୍ରଗଣ୍ୟ ଅମ୍ବରୀଷ ନିଜ ତୁଲ୍ୟ ଗୁଣଶୀଳ ପୁତ୍ରମାନଙ୍କ ଉପରେ ରାଜ୍ୟଭାର ଅର୍ପଣ କରି ବାସୁଦେବଙ୍କଠାରେ ଚିତ୍ତସମର୍ପଣ କରି ଗୁଣ କ୍ଷୋଭ ବିରହିତ ହୋଇ ବନ ମଧ୍ୟରେ ପ୍ରବେଶ କରିଥିଲେ । ୨୬ ।

ରାଜା ଅମ୍ବରୀଷଙ୍କର ଏହି ପବିତ୍ର ଚରିତ କୀର୍ତ୍ତନ ଏବଂ ସ୍ମରଣ କଲେ ମନୁଷ୍ୟ ଭଗବଦ୍‌ଭକ୍ତି ସମ୍ପନ୍ନ ହୁଏ । ୨୭ ।

ଯେଉଁ ମହାତ୍ମାମାନେ ଭକ୍ତି ପୂର୍ବକ ରାଜା ଅମ୍ବରୀଷଙ୍କର ଚରିତ୍ର ଶ୍ରବଣ କରିବେ ସେମାନେ ସମସ୍ତେ ବିଷ୍ଣୁଙ୍କର ଅନୁଗ୍ରହ ଯୋଗୁଁ ମୁକ୍ତିଲାଭ କରିବେ । ୨୮ ।

---

ହରି ଚରଣେ ମନ ଦେଇ
ସେ ଭୂପ ବନେ ପଶେ ଯାଇଁ
ପ୍ରାଣ ଛାଡ଼ିଲେ ତପବଳେ
ପଶିଲେ ବିଷ୍ଣୁ ମଣ୍ଡଳେ । ୨୮, ୨୬

ଅମ୍ବରୀଷର ଯେ ଆଖ୍ୟାନ
ଯେ କରେ ଶ୍ରବଣ କୀର୍ତ୍ତନ
ହରିଚରଣ ମନେ ଚିନ୍ତି
ଅନ୍ତେ ସେ ଗୋବିନ୍ଦେ ପଶନ୍ତି । ୨୭, ୨୮

ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ଅମୃତ ରସମୟ ବାଣୀ
ଭକତ ମହିମା ବଖାଣି ।

## ଷଷ୍ଠୋଽଧ୍ୟାୟଃ

ଷଷ୍ଠାରମ୍ଭେଽମ୍ବରୀଷସ୍ୟ ବଂଶମୁକ୍ତ୍ୱା ତତଃ ପରମ୍ ।
ଷଷ୍ଠାଦ୍ୟଷ୍ଟଭିରଧ୍ୟାୟୈରିକ୍ଷ୍ୱାକୋର୍ବଂଶ ଉଚ୍ୟତେ ॥
ତତ୍ର ଷଷ୍ଠେ ଶଶାଦାଦର୍ମାନ୍ଧାତ୍ରନ୍ତା ନିରୂପ୍ୟତେ ।
ପ୍ରସଙ୍ଗାତ୍ ସୌଭରେରାଖ୍ୟା ମାନ୍ଧାତୃତନୟାପତେଃ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ — ବିରୂପଃ କେତୁମାନ୍ ଶମ୍ଭୁରମ୍ବରୀଷସୁତାସ୍ତ୍ରୟଃ ।
ବିରୂପାତ୍ ପୃଷଦଶ୍ୱୋଽଭୂତ୍ ତତ୍ପୁତ୍ରସ୍ତୁ ରଥୀତରଃ । ୧ ।
ରଥୀତରସ୍ୟାପ୍ରଜସ୍ୟ ଭାର୍ଯ୍ୟାୟାଂ ତନ୍ତବେଽର୍ଥିତଃ ।
ଅଙ୍ଗିରା ଜନୟାମାସ ବ୍ରହ୍ମବର୍ଚ୍ଚସ୍ୱିନଃ ସୁତାନ୍ । ୨ ।
ଏତେ କ୍ଷେତ୍ରପ୍ରସୂତା ବୈ ପୁନସ୍ତ୍ୱାଙ୍ଗିରସାଃ ସ୍ମୃତାଃ ।
ରଥୀତରାଣାଂ ପ୍ରବରାଃ କ୍ଷେତ୍ରୋପେତା ଦ୍ୱିଜାତୟଃ । ୩ ।

---

### ଅମ୍ବରୀଷବଂଶ, ଇକ୍ଷ୍ୱାକୁବଂଶ, ଶଶାଦଠାରୁ ମାନ୍ଧାତା, ସୌଭରି ଚରିତ

ଷଷ୍ଠ ଅଧ୍ୟାୟରେ ଶଶରାଜାଙ୍କଠାରୁ ମାନ୍ଧାତାଙ୍କ ଜନ୍ମ ପ୍ରଭୃତି ବର୍ଣ୍ଣନା କରି ପ୍ରସଙ୍ଗକ୍ରମରେ ମାନ୍ଧାତାଙ୍କର ପଚାଶତ କନ୍ୟାମାନଙ୍କର ମହର୍ଷି ସୌଭରିଙ୍କୁ ବରଣ କରିବା ବିଷୟ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀ ଶୁକଦେବ କହିଲେ :—

ହେ ନୃପତି ! ବିରୂପ, କେତୁମାନ୍ ଓ ଶମ୍ଭୁ ଏ ତିନିଜଣ ଅମ୍ବରୀଷଙ୍କ ପୁତ୍ର, ବିରୂପଙ୍କର ପୁତ୍ର ପୃଷଦଶ୍ୱ, ଏବଂ ପୃଷଦଶ୍ୱଙ୍କ ପୁତ୍ର ରଥୀତର ।୧।

ରଥୀତରଙ୍କର ନିଜ ଔରସରୁ ସନ୍ତାନ ନ ଥିଲେ, ମହର୍ଷି ଅଙ୍ଗିରା ତାଙ୍କ ପ୍ରାର୍ଥନା ପୂରଣକରି ରଥୀତରଙ୍କ ସ୍ତ୍ରୀ ଗର୍ଭରେ ବ୍ରହ୍ମତେଜଃ ସମ୍ପନ୍ନ କେତୋଟି ପୁତ୍ର ଉତ୍ପାଦନ କରିଥିଲେ ।୨।

ଏହି ପୁତ୍ରମାନେ ରଥୀତରଙ୍କ କ୍ଷେତ୍ରରେ ଅଙ୍ଗୀରସଙ୍କ ଔରସରେ ଜନ୍ମିଥିବାରୁ ଅଙ୍ଗୀରସ ବୋଲି ବିଖ୍ୟାତ ହେଲେ; ଏମାନେ କ୍ଷତ୍ରିୟ ଗୋତ୍ରାନ୍ୱିତ ବ୍ରାହ୍ମଣ, ତେଣୁ ଏମାନେ ଅନ୍ୟ ଅପେକ୍ଷା ଶ୍ରେଷ୍ଠ ।୩।

---

ଷଷ୍ଠରେ ଶଶାଦ ମାନ୍ଧାତା, ସୌଭରି ଆଦିଙ୍କର କଥା ॥

ଶ୍ରୀ ଶୁକ ଉବାଚ—
ଏବେ ହୋ ଶୁଣ ନରନାଥ
କହିବା ବଂଶାନୁଚରିତ
ସେ ଅମ୍ବରୀଷ ପୁତ୍ର ତିନି
ବିରୂପ ଶମ୍ଭୁ କେତୁ ଘେନି
ରୂପେ ଦଶନ୍ତି ଅନୁପମ
ଅଶେଷ ଗୁଣେ ଗୁଣଧାମ

ପୃଷଦଶ୍ୱ ବିରୂପ ପୁତ୍ର
ରଥୀତର ସେ ତା'ର ସୁତ ।୧।
ସେ ରଥୀତର ଅପୁତ୍ରିକ
ଉପାୟ କଲା ସେ ଅନେକ
କେବେହେଁ ପୁତ୍ର ତା ନୋହିଲା
ଅଙ୍ଗିରା ଛୁଇଁଲେ ବରିଲା
ବୋଇଲା ମୋର ପତ୍ନୀଗର୍ଭେ
ସନ୍ତତି କର ତୁମ୍ଭେ ଭାବେ

କ୍ଷେତ୍ରେ ସେ ପୁତ୍ର ହେଉ ମୋର
ଅପୁତ୍ର ଦୁଃଖ ପର କର
ଏମନ୍ତ ରାଜାର ବଚନେ
ଅଙ୍ଗିରା କରି ଗର୍ଭାଧାନେ
ଶତ କୁମର ବ୍ରହ୍ମତେଜେ
ଜନ୍ମିଲେ ଅଙ୍ଗିରାର ବୀର୍ଯ୍ୟେ
ସେ ପୁଣି ଅଙ୍ଗିର ହୋଇଲେ
କ୍ଷତ୍ରିୟ କ୍ଷେତ୍ରେ ଉପୁଜିଲେ ।୨,୩

କ୍ଷୁବତସ୍ତୁ ମନୋର୍ଜଜ୍ଞେ ଇକ୍ଷ୍ୱାକୁର୍ଘ୍ରାଣତଃ ସୁତଃ ।
ତସ୍ୟ ପୁତ୍ରଶତଜ୍ୟେଷ୍ଠା ବିକୁକ୍ଷିନିମିଦଣ୍ଡକାଃ । ୪ ।
ତେଷାଂ ପୁରସ୍ତାଦଭବନ୍ନାର୍ଯ୍ୟାବର୍ତ୍ତେ ନୃପା ନୃପ ।
ପଞ୍ଚବିଂଶତିଃ ପଶ୍ଚାଚ୍ଚ ତ୍ରୟୋ ମଧ୍ୟେଽପରେଽନ୍ୟତଃ । ୫ ।
ସ ଏକଦାଷ୍ଟକାଶ୍ରାଦ୍ଧେ ଇକ୍ଷ୍ୱାକୁଃ ସୁତମାଦିଶତ୍ ।
ମାଂସମାନୀୟତାଂ ମେଧ୍ୟଂ ବିକୁକ୍ଷେ ଗଚ୍ଛ ମାଚିରମ୍ । ୬ ।
ତଥେତି ସ ବନଂ ଗତ୍ୱା ମୃଗାନ୍ ହତ୍ୱା କ୍ରିୟାର୍ହଣାନ୍ ।
ଶ୍ରାନ୍ତୋ ବୁଭୁକ୍ଷିତୋ ବୀରଃ ଶଶଞ୍ଚାଦଦପସ୍ମୃତଃ । ୭ ।

---

ଛିଙ୍କିବା ସମୟରେ ମନୁଙ୍କ ନାସିକାବାଟେ ଇକ୍ଷ୍ୱାକୁ ନାମକ ପୁତ୍ରଜାତ ହୋଇଥିଲେ; ସେହି ଇକ୍ଷ୍ୱାକୁଙ୍କର ଏକଶତ ସନ୍ତାନ, ସେମାନଙ୍କ ମଧ୍ୟରେ ବିକୁକ୍ଷି, ନିମି ଓ ଦଣ୍ଡକ ଶ୍ରେଷ୍ଠ ।୪।

ସେହି ଶହେ ପୁତ୍ରଙ୍କ ମଧ୍ୟରୁ ପଚିଶଜଣ ଆର୍ଯ୍ୟାବର୍ତ୍ତର ପୂର୍ବଭାଗ, ଓ ପଚିଶଜଣ ଆର୍ଯ୍ୟାବର୍ତ୍ତର ପଶ୍ଚିମଭାଗ, ତିନିଜଣ ମଧ୍ୟଭାଗ,ଅନ୍ୟମାନେ ଦକ୍ଷିଣ ଓ ଉତ୍ତର ଭାଗରେ ରାଜା ହୋଇଥିଲେ ।୫। *

ଥରେ ଇକ୍ଷ୍ୱାକୁ ଅଷ୍ଟକାଶ୍ରାଦ୍ଧରେ ପୁତ୍ର ବିକୁକ୍ଷିଙ୍କୁ ଆଦେଶ ଦେଲେ ହେ ବିକୁକ୍ଷି ! ମେଧ୍ୟ ମାଂସ ଶୀଘ୍ର ଆଣ, ଯାଅ ବିଳମ୍ବ କରନାହିଁ ।୬।

ବିକୁକ୍ଷି 'ତାହାହିଁ କରୁଛି' ବୋଲି କହି ତତ୍‌କ୍ଷଣାତ୍ ବନକୁ ଯାଇଁ ଶ୍ରାଦ୍ଧଯୋଗ୍ୟ ବହୁ ପଶୁବଧ କଲେ, ମାତ୍ର ନିଜେ ଶ୍ରାନ୍ତ ଓ କ୍ଷୁଧାର୍ତ୍ତ ହୋଇ ଶ୍ରାଦ୍ଧ ବିଷୟ ଭୁଲିଯାଇଁ ଗୋଟିଏ ଶଶକବଧ କରିଥିଲେ ।୭।

---

ପୁଣି ମନୁର ଘ୍ରାଣୁଁ ଜାତ
ଇକ୍ଷ୍ୱାକୁ ନାମେ ହୋଏ ସୁତ
ସେ ଇକ୍ଷ୍ୱାକୁର ବଂଶ ଯେତେ
କହିବା ଶୁଣ ଏକ ଚିତ୍ତେ
ହୋଇଲେ ଶତେକ କୁମର
ତାହାଙ୍କ ମଧ୍ୟେ ବଂଶଧର
ବିକୁକ୍ଷି ନିମି ଦଣ୍ଡ ନାମ
ଅତି ପ୍ରତାପ ଗୁଣ ଗ୍ରାମ । ୪ ।

ଏ ତିନି ପୁତ୍ର ଆଦି ଯେତେ
ରାଜା ହୋଇଲେ ଏ ଜଗତେ
ପୂର୍ବେ ପଚିଶ ତାର ପୁତ୍ରେ
ରାଜା ହୋଇଲେ ଆର୍ଯ୍ୟାବର୍ତ୍ତେ
ପଶ୍ଚିମେ ତାର ପଚିଶଂଶେ
ଜ୍ୟେଷ୍ଠ ତିନିହେଁ ମଧ୍ୟଦେଶେ
ଅପରେ ଦକ୍ଷିଣ ଉତ୍ତର
ଏବେ ହୋ ଶୁଣ ନୃପବର । ୫।

ଇକ୍ଷ୍ୱାକୁ ପିତୃଶ୍ରାଦ୍ଧ ଦିନେ
ବିକୁକ୍ଷି ରାଇ ସନ୍ନିଧାନେ
ହୋଇଲା ବନ ପଶୁଗଣ
ମୋ ପିତୃଶ୍ରାଦ୍ଧ ଅର୍ଥେ ଆଣ
ତକ୍ଷଣେ ପିତୃ ଆଜ୍ଞା ଶିରେ
ଘେନି ପଶିଲା ବନ ଘୋରେ
ଶବରଗଣେ ତୁଲେ ଗଲା
ଅନେକ ପଶୁ ବଧକଲା

---

* ହିମାଳୟ ଓ ବିନ୍ଧ୍ୟପର୍ବତର ମଧ୍ୟବର୍ତ୍ତୀ ସ୍ଥାନ ଯାହାର ପୂର୍ବ ଓ ପଶ୍ଚିମ ଦିଗରେ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ତାହାକୁ ଆର୍ଯ୍ୟାବର୍ତ୍ତ ବୋଲିପାଏ । ଏଥିମଧ୍ୟରୁ ଗୋଟିଏ ଗୋଟିଏ ମଣ୍ଡଳରେ ପଚିଶ ଜଣ ରାଜା ହୋଇଥିଲେ ।

ଶେଷଂ ନିବେଦୟାମାସ ପିତ୍ରେ ତେନ ଚ ତଦ୍‌ଗୁରୁଃ ।
ଚୋଦିତଃ ପ୍ରୋକ୍ଷଣାୟାହ ଦୁଷ୍ଟମେତଦକର୍ମ୍ମକମ୍ । ୮ ।
ଜ୍ଞାତ୍ୱା ପୁତ୍ରସ୍ୟ ତତ୍କର୍ମ୍ମ ଗୁରୁଣାଭିହିତଂ ନୃପଃ ।
ଦେଶାନ୍ନିଃସାରୟାମାସ ସୁତଂ ତ୍ୟକ୍ତବିଧିଂ ରୁଷା । ୯ ।
ସ ତୁ ବିପ୍ରେଣ ସଂବାଦଂ ଜ୍ଞାପକେନ ସମାଚରନ୍ ।
ତ୍ୟକ୍ତ୍ୱା କଳେବରଂ ଯୋଗୀ ସ ତେନାବାପ ଯତ୍ପରମ୍ ।୧୦।
ପିତର୍ଯ୍ୟୁପରତେଽଭ୍ୟେତ୍ୟ ବିକୁକ୍ଷିଃ ପୃଥିବୀମିମାମ୍ ।
ଶାସଦୀଜେ ହରିଂ ଯଜ୍ଞୈଃ ଶଶାଦ ଇତି ବିଶ୍ରୁତଃ ।୧୧।

---

ଅବଶିଷ୍ଟ ମାଂସ ଆଣି ପିତାଙ୍କ ନିକଟରେ ଦେଲେ, ଇକ୍ଷ୍ୱାକୁ ସେହି ମାଂସକୁ ଶ୍ରାଦ୍ଧରେ ପ୍ରୋକ୍ଷଣ କରିବାକୁ ଗୁରୁ ବଶିଷ୍ଠଙ୍କୁ କହନ୍ତେ ସେ କହିଲେ "ଏ ମାଂସ ଦୂଷିତ ହୋଇଅଛି" ।୮।

ଗୁରୁଙ୍କଠାରୁ ପୁତ୍ରର ମନ୍ଦକର୍ମ ଜାଣିପାରି କ୍ରୁଦ୍ଧ ହୋଇ ବିଧିନାଶକ ( ତ୍ୟକ୍ତବିଧି ) ପୁତ୍ରକୁ ସେ ଦେଶରୁ ବହିଷ୍କରଣ କରି ଦେଇଥିଲେ ।୯।

ତଦନନ୍ତର ଇକ୍ଷ୍ୱାକୁ ବଶିଷ୍ଠଙ୍କ ସହିତ ଆତ୍ମଜ୍ଞାନ ବିଷୟକ ଆଲୋଚନାରେ ପ୍ରବୃତ୍ତ ହେଲେ, ଅବଶେଷରେ ରାଜ୍ୟ ସୁଖ ଭୋଗରୁ ବିରତ ହୋଇ ଯୋଗୀ ହେଲେ; ଯୋଗଦ୍ୱାରା ଶରୀର ତ୍ୟାଗକରି ପରମତତ୍ତ୍ୱ ପ୍ରାପ୍ତ ହୋଇଥିଲେ ।୧୦।

ପିତାଙ୍କ ମୃତ୍ୟୁ ହୁଅନ୍ତେ ବିକୁକ୍ଷି ସ୍ୱଦେଶକୁ ଫେରିଆସି ରାଜ୍ୟଶାସନ କଲେ, ସେ ଶଶାଦ ନାମରେ ଅଭିହିତ ହୋଇଥିଲେ ଏବଂ ବହୁ ଯଜ୍ଞଦ୍ୱାରା ହରିଙ୍କୁ ସନ୍ତୋଷ କରିଥିଲେ ।୧୧।

---

ଶ୍ରାଦ୍ଧକୁ ଯୋଗ୍ୟ ଯେତେ ମାଂସ
ତାହାଙ୍କ ମଧ୍ୟେ ଏକ ଶଶ
ଅରଣ୍ୟେ ପଥଶ୍ରମ ପାଇ
କ୍ଷୁଧିତେ ଚଳି ନ ପାରଇ
ଶଶା ଗୋଟିକ ମାତ୍ର ପୋଡ଼ି
ଆଗ ଭକ୍ଷିଲା ଧର୍ମ୍ମ ଛାଡ଼ି
ଶେଷ ଯେତେକ ପଶୁ ଥିଲା
ପିତା ସମୀପେ ନେଇ ଦେଲା
ସେ ପୁଣ ବଶିଷ୍ଠଙ୍କୁ ଆଣି
ଆନନ୍ଦେ ବୋଲେ ନୃପମଣି
ଏ ପଶୁ ମାଂସେ ଶ୍ରାଦ୍ଧ କର
ଏମନ୍ତେ ଶୁଣି ତା' ଉତ୍ତର

ବଶିଷ୍ଠ ରାଜା ବାକ୍ୟ ଶୁଣି
ସେ କଥା ଯୋଗବଳେ ଜାଣି
ବୋଇଲେ ରାଜାମୁଖ ଚାହିଁ
ପ୍ରୋକ୍ଷଣ ଯୋଗ୍ୟ ଏ ନୁହଇ
ଦେବତା ପିତୃଅର୍ଥେ ମାଂସ
କେମନ୍ତେ ଦେବ ଅବଶେଷ
ତୋର କୁମର କ୍ଷୁଧା ଅର୍ଥେ
ଶଶକ ଭକ୍ଷିଲା ବନେତେ
ବନେ ଭକ୍ଷିଲା ଅଗ୍ରଭାଗ
ଏମାଂସଶ୍ରାଦ୍ଧେନୋହେଯୋଗ୍ୟ ୬-୮
ଏମନ୍ତେ ଗୁରୁବାକ୍ୟ ଶୁଣି
କୋପେ ବୋଲଇ ନୃପମଣି

ଏ ପୁତ୍ର ପାପିଷ୍ଠ ପାମର
ଏହାକୁ ରାଜ୍ୟୁ ଦୂର କର
ତକ୍ଷଣେ ରାଜାର ବଚନେ
ପୁରୁଁ ବାହାର କଲେ ଜନେ
ସେ ପୁଣ ଶମ୍ଭୁଙ୍କ ଚରଣେ
ସେବା କରଇ ଅନୁକ୍ଷଣେ
ପିତାର ଅନ୍ତେ ରାଜା ହେଲା
ଶଶାଦ ନାମ ସେ ପାଇଲା
ଶଶାଦ ପୁତ୍ର ପୁରଞ୍ଜୟ
ଦ୍ୱିତୀୟ ନାମ ଇନ୍ଦ୍ରବାହ
ଏବେ ସେ କାର ଧର୍ମ୍ମ କଲା
କକୁତ୍ସ୍ଥ ନାମ ସେ ବହିଲା

ପୁରଞ୍ଜୟସ୍ତସ୍ୟ ସୁତ ଇନ୍ଦ୍ରବାହ ଇତୀରିତଃ ।
କକୁତ୍‌ସ୍ଥ ଇତ ଚାପ୍ୟୁକ୍ତଃ ଶୃଣୁ ନାମାନି କର୍ମଭିଃ । ୧୨ ।
କୃତାନ୍ତ ଆସୀତ୍ ସମରୋ ଦେବାନାଂ ସହ ଦାନବୈଃ ।
ପାର୍ଷ୍ଣିଗ୍ରାହୋବୃତୋ ବୀରୋ ଦେବୈର୍ଦୈତ୍ୟପରାଜିତୈଃ ।୧୩।
ବଚନାଦେବଦେବସ୍ୟ ବିଷ୍ଣୋର୍ବିଶ୍ୱାତ୍ମନଃ ପ୍ରଭୋଃ ।
ବାହନତ୍ୱେ ବୃତସ୍ତସ୍ୟ ବଭୂବେନ୍ଦ୍ରୋ ମହାବୃଷଃ । ୧୪ ।
ସ ସନ୍ନଦ୍ଧୋ ଧନୁର୍ଦ୍ଦିବ୍ୟମାଦାୟ ବିଶିଖାନ୍ ଶିତାନ୍ ।
ସ୍ତୂୟମାନସ୍ତମାରୁହ୍ୟ ଯୁଯୁତ୍ସୁଃ କକୁଦି ସ୍ଥିତଃ । ୧୫ ।

---

ତାହାଙ୍କର ପୁତ୍ର ପୁରଞ୍ଜୟ; ନିଜର କର୍ମଦ୍ୱାରା ସେ ଇନ୍ଦ୍ରବାହ ଓ କକୁତ୍‌ସ୍ଥ ନାମରେ ଖ୍ୟାତ ହୋଇଥିଲେ । ସେ ବୃତ୍ତାନ୍ତ ଶ୍ରବଣ କର ।୧୨।

ପୂର୍ବକାଳରେ ଦାନବମାନଙ୍କ ସହିତ ଦେବତାମାନଙ୍କ ବିଶ୍ୱ ସଂହାରକାରୀ ସମର ହୋଇଥିଲା, ସେହି ଯୁଦ୍ଧରେ ଦେବତାମାନଙ୍କ ଦୈତ୍ୟଙ୍କ ପରାଜିତ ହୋଇ ଦେବତାମାନଙ୍କ ସାହାଯ୍ୟ ନିମିତ୍ତ ପୁରଞ୍ଜୟଙ୍କୁ ବରଣ କରିଥିଲେ ।୧୩।

ପୁରଞ୍ଜୟ କହିଲେ 'ଇନ୍ଦ୍ର ଯଦି ମୋର ବାହନ ହେବେ ତେବେ ମୁଁ ଦୈତ୍ୟମାନଙ୍କୁ ପରାଜୟ କରିବି ।' ଇନ୍ଦ୍ର ଏହିପରି ବାହନ ହେବାକୁ ପ୍ରଥମେ ଲଜ୍ଜାବୋଧ କରିଥିଲେ । ପରେ ଦେବ ଦେବ ବିଷ୍ଣୁଙ୍କ ବାକ୍ୟରେ ସ୍ୱୀକୃତ ହୋଇ ମହାବୃଷଭ ରୂପେ ପୁରଞ୍ଜୟଙ୍କ ବାହନ ହୋଇଥିଲେ ।୧୪।

ତେଣିକିର ବର୍ମ ପରିଧାନ କରି ବାଣ ଓ ଦିବ୍ୟଧନୁ ଘେନି ଯୁଦ୍ଧ କରିବା ଇଚ୍ଛାରେ ବୃଷଭର କକୁଦଉପରେ ଉପବେଶନ କଲେ ଓ ଦେବତାମାନେ ତାଙ୍କୁ ସ୍ତବ କରିବାକୁ ଲାଗିଲେ ।୧୫।
( ଇନ୍ଦ୍ର ତାଙ୍କର ବାହନ ହେବାରୁ ନାମ ହେଲା ଇନ୍ଦ୍ରବାହନ ) ।

---

ଏମନ୍ତ ଶୁକ ବାକ୍ୟ ଶୁଣି
ବୋଲେ ପରୀକ୍ଷି ନୃପମଣି
କକୁତ୍‌ସ୍ଥ ନାମ ତା କେମନ୍ତେ
ଏକଥା କହ ମୁନି ମୋତେ ।୧୦-୧୨

ଶ୍ରୀ ଶୁକ ଉବାଚ—

ଦେବ ଦାନବ ସତ୍ୟଯୁଗେ
ଯୁଦ୍ଧ ଆରମ୍ଭ କଲେ ରଙ୍ଗେ
ପୁରୁକୁ ପୁଚ୍ଛିଲେ ଦେବତେ
ସଂଗ୍ରାମେ ଜିଣିବୁଁ କେମନ୍ତେ

ବୋଲଇ ଅଙ୍ଗିରା କୁମର
ବିକୁକ୍ଷି ଯୋଦ୍ଧାପଣେ ବର
ତାର ନ ସହେ ଶତ୍ରୁଗଣେ
ବେଗେ ମରିବେ ଘୋରରଣେ
ଶୁଣି ବିବୁଧ ତୋଷ ହୋଇ
ବିକୁକ୍ଷି ନିମନ୍ତିଲେ ଯାଇ
ବିକୁକ୍ଷି ଦେବ ବାକ୍ୟ ଶୁଣି ।୧୩।
କପୋଳେ ଦେଇ ଦକ୍ଷପାଣି
ବୋଲଇ ଇନ୍ଦ୍ରକନ୍ଧେ ବସି
ସଂଗ୍ରାମ କରିବି ସାହସି

ନୋହିଲେ ଯୁଦ୍ଧ ନାହିଁ ମୋର
ଏମନ୍ତ ଶୁଣି ତା ଉତ୍ତର
'ହେଉ' ବୋଇଲେ ସୁରଗଣେ
ଇନ୍ଦ୍ର ମିଳିଲ ତତକ୍ଷଣେ
ସଂଗ୍ରାମେ ବୃଷରୂପ ହୋଇ
ବିକୁକ୍ଷି ତା କନ୍ଧେ ଆରୋହି ।୧୪
ସ୍ତୁତି କରନ୍ତି ଦେବଗଣେ
ବିକୁକ୍ଷି ମିଳି ଘୋର ରଣେ
ଅଜସ୍ର ସେହ୍ଲା ଦେହେ ଭିଡ଼ି
ଧନୁ ନାରାଚ ହସ୍ତେ ଧରି

ତେଜସାପ୍ୟାୟିତୋ ବିଷ୍ଣୋଃ ପୁରୁଷସ୍ୟ ମହାତ୍ମନଃ ।
ପ୍ରତୀଚ୍ୟାଂ ଦିଶି ଦୈତ୍ୟାନାଂ ନ୍ୟରୁଣତ୍ ତ୍ରିଦଶୈଃ ପୁରମ୍ ।୧୬ ।
ତୈସ୍ତସ୍ୟ ଚାଭୂତ୍ ପ୍ରଧନଂ ତୁମୂଳଂ ଲୋମହର୍ଷଣମ୍ ।
ଯମାୟ ଭଲ୍ଲୈରନୟଦ୍ଦୈତ୍ୟାନ୍ ଯେଽଭିଯଯୁର୍ମୃଧେ । ୧୭ ।
ତସ୍ୟେଷୁପାତାଭିମୁଖଂ ଯୁଗାନ୍ତାଗ୍ନିମିବୋଲ୍ବଣମ୍ ।
ବିସୃଜ୍ୟ ଦୁଦ୍ରୁବୁର୍ଦୈତ୍ୟା ହନ୍ୟମାନାଃ ସ୍ୱମାଲୟମ୍ ।୧୮।
ଜିତ୍ୱା ପୁରଂ ଧନଂ ସର୍ବଂ ସଶ୍ରୀକଂ ବଜ୍ରପାଣୟେ ।
ପ୍ରତ୍ୟଯଚ୍ଛତ୍ ସ ରାଜର୍ଷିରିତି ନାମଭିରାହୃତଃ । ୧୯ ।
ପୁରଞ୍ଜୟସ୍ୟ ପୁତ୍ରୋଽଭୂଦନେନାସ୍ତତ୍ସୁତଃ ପୃଥୁଃ ।
ବିଶ୍ୱଗନ୍ଧିସ୍ତତଶ୍ଚନ୍ଦ୍ରୋ ଯୁବନାଶ୍ୱସ୍ତୁ ତତ୍ସୁତଃ । ୨୦ ।

---

ପୁରଞ୍ଜୟ ପରମ ପୁରୁଷ ବିଷ୍ଣୁଙ୍କ ତେଜରେ ତେଜସ୍ୱୀନ୍ ହୋଇ ଦେବଗଣଙ୍କ ସହିତ ପଶ୍ଚିମ-ଦିଗକୁ ଗମନ କରି ଦୈତ୍ୟପୁରୀ ଅବରୋଧ କରିଥିଲେ ।୧୬।

ତଦନନ୍ତର ଅସୁରମାନଙ୍କ ସହିତ ତାଙ୍କର ତୁମୁଳ ରୋମହର୍ଷଣକାରୀ ସଂଗ୍ରାମ ହୋଇଥିଲା । ଯେଉଁ ଦୈତ୍ୟମାନେ ଯୁଦ୍ଧରେ ତାଙ୍କ ସମ୍ମୁଖୀନ ହେଲେ ସେମାନଙ୍କୁ ଭଲ୍ଲଦ୍ୱାରା ସେ ଯମ ଭୁବନକୁ ପ୍ରେରଣ କରିଥିଲେ ।୧୭।

ଦୈତ୍ୟମାନେ ଏହାପରେ ପ୍ରହୃତ ହୋଇ ଅତଏବ ପ୍ରଳୟକାଳୀନ ଅଗ୍ନି ତୁଲ୍ୟ ତାହାଙ୍କର ବାଣରୁ ନିଷ୍କୃତି ଲଭିବା ନିମିତ୍ତ ନିଜଶ୍ରୁହ ପାତାଳପୁରୀକୁ ଗମନ କରିଥିଲେ ।୧୮।

ରାଜର୍ଷି ପୁରଞ୍ଜୟ ସ୍ତ୍ରୀମାନଙ୍କ ସହିତ ଧନରତ୍ନ ଓ ଦୈତ୍ୟପୁରୀ ଜୟକରି ବଜ୍ରଧର ଇନ୍ଦ୍ରଙ୍କୁ ପ୍ରଦାନ କରିଥିଲେ, ଏହାପରି କର୍ମଦ୍ୱାରା ପୁରଞ୍ଜୟ ଇନ୍ଦ୍ରବାହନ ଓ କକୁତ୍ସ୍ଥ ଇତ୍ୟାଦି ନାମରେ ଅଭିହିତ ହେଲେ ॥

ପୁରଞ୍ଜୟଙ୍କର ପୁତ୍ର ଅନେନା, ତାଙ୍କର ପୁତ୍ର ପୃଥୁ । ପୃଥୁଙ୍କର ପୁତ୍ର ବିଶ୍ୱଗନ୍ଧ ତାହାଙ୍କର ପୁତ୍ର ଚନ୍ଦ୍ର, ତାହାଙ୍କର ପୁତ୍ର ଯୁବନାଶ୍ୱ ।୨୦।

---

ନିର୍ଭୟେ ଇନ୍ଦ୍ର କନ୍ଧେ ରହି
ତକ୍ଷଣେ ବିଷ୍ଣୁ ତେଜ ପାଇ
ପଶ୍ଚିମ ଦିଗେ ବେଗେ ଗଲା
ଅସୁର ଭୁବନେ ମିଳିଲା
ଭୁଞ୍ଜିଲା ଦେବ ସେନା ସାଥେ
ପବନ ନ ବହଇ ପଥେ ।୧୫,୧୬
ଦେବ ଦାନବ ଘୋର ରଣ
ହୋଇଲା ଲୋମହରଷଣ

ଅସୁରେ ନାନା ଶସ୍ତ୍ର ଧରି
ରହିଲେ ସମର ଆବୋରି
ବିକୁଷି ବାଣ ଅଗ୍ନି ପ୍ରାୟେ
ପଡ଼ିଲା ଅସୁରଙ୍କ ଦେହେ
ସମରେ ରହି ନ ପାରିଲେ
ପଳାଇ ନିଜପୁରେ ଗଲେ ।୧୭,୧୮
ଅସୁର ବଳ ରଣେ ଜିଣି
ସମରେ ଧନ ରତ୍ନ ଆଣି

ଇନ୍ଦ୍ରକୁ ଦେଇ ସର୍ବ ଧନ
ତୋଷିଲା ବିବୁଧଙ୍କ ମନ
ଇନ୍ଦ୍ରାଦି ଦେବେ ବିଷ୍ଣୁ ବୋଲେ
କକୁତ୍ସ୍ଥନାମ ତାକୁ ଦେଲେ ।୧୯
ଅନେନା ପୁରଞ୍ଜୟ ସୁତ
ପୃଥୁ ତାହାର ତନୁଜାତ
ତାର ତନୟ ବିଶ୍ୱଗନ୍ଧ
ତା ପୁତ୍ର ଚନ୍ଦ୍ର ନାମେ ସିଦ୍ଧ

ଶ୍ରାବସ୍ତସ୍ତତ୍ସୁତୋ ଯେନ ଶ୍ରାବସ୍ତୀ ନିର୍ମ୍ମମେ ପୁରୀ ।
ବୃହଦଶ୍ୱସ୍ତୁ ଶ୍ରାବସ୍ତିସ୍ତତଃ କୁବଳୟାଶ୍ୱକଃ । ୨୧ ।
ଯଃ ପ୍ରିୟାର୍ଥମୁତଙ୍କସ୍ୟ ଧୁନ୍ଧୁନାମାସୁରଂ ବଲୀ ।
ସୁତାନାମେକବିଂଶତ୍ୟା ସହସ୍ରୈରହନଦ୍‌ବୃତଃ ।୨୨।
ଧୁନ୍ଧୁମାର ଇତ ଖ୍ୟାତସ୍ତତ୍ସୁତାସ୍ତେ ଚ ଜଜ୍ୱଲୁଃ ।
ଧୁନ୍ଧୋର୍ମୁଖାଗ୍ନିନା ସର୍ବେ ତ୍ରୟ ଏବାବଶେଷିତାଃ ।୨୩।
ଦୃଢ଼ାଶ୍ୱଃ କପିଲାଶ୍ୱଶ୍ଚ ଭଦ୍ରାଶ୍ୱ ଇତ ଭାରତ ।
ଦୃଢ଼ାଶ୍ୱପୁତ୍ରୋ ହର୍ଯ୍ୟଶ୍ୱୋ ନିକୁମ୍ଭସ୍ତତ୍ସୁତଃ ସ୍ମୃତଃ ।୨୪।
ବହୁଳାଶ୍ୱୋ ନିକୁମ୍ଭସ୍ୟ କୃଶାଶ୍ୱୋଽଥାସ୍ୟ ସେନଜିତ୍ ।
ଯୁବନାଶ୍ୱୋଽଭବତ୍ ତସ୍ୟ ସୋଽନପତ୍ୟୋ ବନଂ ଗତଃ ।୨୫।

---

ଯୁବନାଶ୍ୱଙ୍କର ପୁତ୍ର ଶ୍ରାବସ୍ତ । ସେ ଶ୍ରାବସ୍ତୀପୁରୀ ନିର୍ମାଣ କରିଥିଲେ । ଶ୍ରାବସ୍ତୀଙ୍କର ପୁତ୍ର ବୃହଦଶ୍ୱ ଏବଂ ବୃହଦଶ୍ୱଙ୍କର ପୁତ୍ର କୁବଳୟାଶ୍ୱ ।୨୧।

ଏହି ମହାବଳଶାଳୀ କୁବଳାଶ୍ୱ ଉତଙ୍କ ଋଷିଙ୍କର ପ୍ରିୟକାର୍ଯ୍ୟ ସମ୍ପାଦନ ନିମିତ୍ତ ଆପଣାର ଏକବିଂଶତ ପୁତ୍ରଙ୍କ ସହିତ ଧୁନ୍ଧୁ ନାମକ ଅସୁରକୁ ବଧ କରିଥିଲେ ।୨୨।

ଏହି କାର୍ଯ୍ୟ କରିବାରୁ ଧୁନ୍ଧୁମାର ନାମରେ ସେ ବିଖ୍ୟାତ ହୋଇଥିଲେ । ତାହାଙ୍କର ପୁତ୍ରମାନେ ଧୁନ୍ଧୁଙ୍କର ମୁଖାଗ୍ନି ଦ୍ୱାରା ଭସ୍ମସାତ୍ ହୋଇଥିଲେ, କେବଳ ଦୃଢାଶ୍ୱ, କପିଳାଶ୍ୱ ଓ ଭଦ୍ରାଶ୍ୱ ଏହି ତିନିଜଣ ଅବଶିଷ୍ଟ ଥିଲେ । ଦୃଢାଶ୍ୱଙ୍କର ପୁତ୍ର ହର୍ଯ୍ୟଶ୍ୱ ଏବଂ ହର୍ଯ୍ୟଶ୍ୱଙ୍କର ପୁତ୍ର ନିକୁମ୍ଭ । ୨୩, ୨୪ ।

ନିକୁମ୍ଭଙ୍କର ପୁତ୍ର ବହୁଳାଶ୍ୱ, ତାହାଙ୍କର ପୁତ୍ର କୃଶାଶ୍ୱ, କୃଶାଶ୍ୱଙ୍କର ପୁତ୍ର ସେନଜିତ୍, ତାହାଙ୍କର ପୁତ୍ର ଯୁବନାଶ୍ୱ, ସେ ନିଃସନ୍ତାନ ହୋଇ ବନକୁ ଗମନ କରିଥିଲେ ।୨୫।

---

ତା ସୁତ ଯୁବନାଶ୍ୱ ନାମ
ଶ୍ରାବସ୍ତ ତାହାର ନନ୍ଦନ
ଶ୍ରାବସ୍ତୀପୁର ଯେ ନିର୍ମାଇ
ସପ୍ତଦ୍ୱୀପେ ରାଜା ହୋଇ
ତାର କୁମର ବୃହଦଶ୍ୱ
ତା ସନ୍ତତ କୁବଳୟାଶ୍ୱ ।୨୦, ୨୧
ସେ ରାଜା ଉତଙ୍କ ବିଶ୍ୱାସ
ଧୁନ୍ଧୁର ଯୁଦ୍ଧେ କଲ ନାଶ

ସମସ୍ତେ ହେଲେ ଭସ୍ମୀଭୂତ
ରହିଲେ ମାତ୍ର ତନି ସୁତ
ଦୃଢାଶ୍ୱ କପିଳାଶ୍ୱ ବେନି
ଭଦ୍ରାଶ୍ୱ ସହିତ ସେ ତନି
ହର୍ଯ୍ୟଶ୍ୱ ଦୃଢାଶ୍ୱର ସୁତ
ତା ତନୁ ନିକୁମ୍ଭ ସମ୍ଭୂତ ।୨୨, ୨୪
ନିକୁମ୍ଭଠାରୁ ଯେ ଜନମ
ତାହାର ବହୁଳାଶ୍ୱ ନାମ

କୃଶାଶ୍ୱ ନାମେ ତାର ସୁତ
ତାର ତନୟ ସେନଜିତ
ତା ସୁତ ଯୁବନାଶ୍ୱ ନାମ
କେବେହେଁ ନ ହେଲ ସନ୍ତାନ ।୨୫

ଭାର୍ଯ୍ୟାଶତେନ ନିର୍ବିଣ୍ଣ ଋଷୟୋଽସ୍ୟ କୃପାଳବଃ ।
ଇଷ୍ଟିଂ ସ୍ମ ବର୍ତ୍ତୟାଞ୍ଚକ୍ରୁରୈନ୍ଦ୍ରୀଂ ତେ ସୁସମାହିତାଃ ।୨୬।
ରାଜା ତଦ୍ୟଜ୍ଞସଦନଂ ପ୍ରବିଷ୍ଟୋ ନିଶି ତର୍ଷିତଃ ।
ଦୃଷ୍ଟ୍ୱା ଶୟାନାନ୍ ବିପ୍ରାଂସ୍ତାନ୍ ପପୌ ମନ୍ତ୍ରଜଳଂ ସ୍ୱୟମ୍ ।୨୭।
ଉତ୍ଥିତାସ୍ତେ ନିଶାମ୍ୟାଥ ବ୍ୟୁଦକଂ କଳସଂ ପ୍ରଭୋ ।
ପପ୍ରଚ୍ଛୁଃ କସ୍ୟ କର୍ମ୍ମେଦଂ ପୀତଂ ପୁଂସବନଂ ଜଳମ୍ ।୨୮।
ରାଜ୍ଞା ପୀତଂ ବିଦିତ୍ୱା ବୈ ଈଶ୍ୱରପ୍ରହିତେନ ତେ ।
ଈଶ୍ୱରାୟ ନମଶ୍ଚକ୍ରୁରହୋ ଦୈବବଳଂ ବଳମ୍ ।୨୯।

---

ଶତ ଭାର୍ଯ୍ୟାଙ୍କ ସହିତ ଯୁବନାଶ୍ୱ ବନ ମଧ୍ୟରେ ବିଷଣ୍ଣ ଭାବରେ ରହିଥିଲେ । ବନବାସୀ ଋଷିମାନେ ତାହାଙ୍କୁ ଦେଖି ତାହାଙ୍କ ପ୍ରତି ଦୟା ପରବଶ ହୋଇ ସନ୍ତାନ ଉତ୍ପାଦନ ନିମିତ୍ତ ଇନ୍ଦ୍ରଦୈବତ ଯଜ୍ଞ କରିଥିଲେ ।୨୬।

ହେ ରାଜନ୍ । ଯଜ୍ଞ ଆରମ୍ଭ ହେବା ପରେ ଦିନେ ନିଶାକାଳରେ ଯୁବନାଶ୍ୱ ତୃଷିତ ହୋଇ ଜଳପାନ ନିମିତ୍ତ ଯଜ୍ଞ ସ୍ଥଳରେ ପ୍ରବେଶ କରି ଋତ୍ୱିକ ବ୍ରାହ୍ମଣମାନଙ୍କୁ ନିଦ୍ରିତ ଦେଖି କଳସୀରେ ଥିବା ମନ୍ତ୍ରପୂତ ଜଳପାନ କରିଥିଲେ ।୨୭।

ବ୍ରାହ୍ମଣମାନେ ନିଦ୍ରାରୁ ଉଠି କଳସ ଜଳଶୂନ୍ୟ ଦେଖି ଏପରି କର୍ମ କିଏ କଲା, କେଉଁ ବ୍ୟକ୍ତି ଏ ପୁତ୍ରୋତ୍ପାଦନ ନିମିତ୍ତ ମନ୍ତ୍ରିତ ଜଳପାନ କଲା ।୨୮।

ବ୍ରାହ୍ମଣମାନେ ଜାଣିପାରିଲେ ଯେ ଦୈବ କର୍ତ୍ତୃକ ପ୍ରେରିତ ହୋଇ ରାଜା ନିଜେ ଏ ଜଳପାନ କରିଅଛନ୍ତି । ସେତେବେଳେ ସେ କହିଲେ ଦୈବ ବଳହିଁ ଯଥାର୍ଥ ବଳ, ପୁରୁଷ ବଳ କିଛି ନୁହେଁ । ଏହା କହି ଈଶ୍ୱରଙ୍କୁ ନମସ୍କାର କଲେ ।୨୯।

---

ଅପୁତ୍ର ପଣେ ଦୁଃଖ ମନେ
ପତ୍ନୀ ସମେତ ଗଲେ ବନେ
ଶତେକ ପତ୍ନୀ ତାର ଥିଲେ
ଋଷିଙ୍କ ଆଶ୍ରମେ ମିଳିଲେ
ଦେଖି ଶତେକ ତାର ନାରୀ
ମୁନି ସକଳେ ଦୟା କରି
ରାଜାର ପୁତ୍ର ଜନ୍ମ ଅର୍ଥେ
ଯଜ୍ଞ କରାଇଲେ ସମସ୍ତେ ।୨୬।
ସକଳ ତୀର୍ଥ ଜଳପୂରି
ଗର୍ଭର ଅର୍ଥେ ଘଟ ଭରି

ଯଜ୍ଞର ଶାଳେ ଘଟ ଥୋଇ
ସକଳେ ନିଦ୍ରାଗତେ ଶୋଇ
ଏମନ୍ତେ ରାଜା ଯଜ୍ଞଶାଳେ
ଅତି ତୃଷିତ ଅନ୍ତରାଳେ
ସହି ନ ପାରି ରାତ୍ର ଅନ୍ତେ
ଜଳ କଳସ ଘେନି ହସ୍ତେ
ଦେଖିଲେ ସକଳେ ଅଜ୍ଞାନ
ତୃଷିତେ କଲେ ଜଳ ପାନ ।୨୭।
ଏମନ୍ତେ ପାହିଲା ରଜନୀ
ନିଦ୍ରା ତେଜିଲେ ସର୍ବ ମୁନି

ଉଦୟ କାଳେ ମନ୍ତ୍ର ସ୍ୱରେ
କୁମ୍ଭ ତୋଳିଲେ ବେଦୀକରେ
ଦେଖିଲେ କୁମ୍ଭେ ଜଳ ନାହିଁ
ଚକିତେ ଚଉଦିଗେ ଚାହିଁ
ବୋଲନ୍ତି ପାଇ ମନେ ଭ୍ରମ
କେ ପ୍ରାଣୀ କଲା ଏହେ କର୍ମ
ମନ୍ତ୍ରିତ ପୁଂସବନ ବାରି
କେ ପାନ କଲା ତୃଷା ଭରି
ତକ୍ଷଣେ ବେନି କର ଯୋଡ଼ି
ମୁନିଙ୍କ ପାଦତଳେ ପଡ଼ି

ତତଃ କାଳ ଉପାବୃତ୍ତେ କୁକ୍ଷିଂ ନିର୍ଭିଦ୍ୟ ଦକ୍ଷିଣମ୍ ।
ଯୁବନାଶ୍ୱସ୍ୟ ତନୟଶ୍ଚକ୍ରବର୍ତ୍ତୀ ଜଜାନ ହ । ୩୦ ।
କଂ ଧାସ୍ୟତି କୁମାରୋଽୟଂ ସ୍ତନ୍ୟଂ ରୋରୂୟତେ ଭୃଶମ୍ ।
ମାନ୍ଧାତା ବତ୍ସ ମାରୋଦୀରିତୀନ୍ଦ୍ରୋ ଦେଶିନୀମଦାତ୍ ।୩୧।
ନ ମମାର ପିତା ତସ୍ୟ ବିପ୍ରଦେବପ୍ରସାଦତଃ ।
ଯୁବନାଶ୍ୱୋଽଥ ତତ୍ରୈବ ତପସା ସିଦ୍ଧିମନ୍ୱଗାତ୍ ।୩୨।

ଅନନ୍ତର ଯଥା ସମୟ ଉପସ୍ଥିତ ହେବାରୁ ଯୁବନାଶ୍ୱଙ୍କର ଦକ୍ଷିଣ କୁକ୍ଷି ଭେଦକରି ଚକ୍ରବର୍ତ୍ତୀ ଲକ୍ଷଣ ଯୁକ୍ତ ଗୋଟିଏ ପୁତ୍ରଜାତ ହେଲା ।୩୦।

ଏହି କୁମାର ସ୍ତନ୍ୟପାନ ନିମିତ୍ତ ଅତ୍ୟନ୍ତ ରୋଦନ କଲା, ଋଷିମାନେ ଦୁଃଖ କରନ୍ତେ ଇନ୍ଦ୍ର ଆସି ଉପସ୍ଥିତ ହେଲେ ଏବଂ କହିଲେ ହେ ବତ୍ସ ! ରୋଦନ କରନାହିଁ, ମୋଠାରୁ ପାନ କର ( ମାଂ ଧାତା ) ଏହା କହି ତର୍ଜ୍ଜନୀ ଅଙ୍ଗୁଳି ବାଳକର ମୁଖରେ ପ୍ରଦାନ କରିଥିଲେ । ମାଂ ଧାତା ତେଣୁ ବାଳକର ନାମ ମାନ୍ଧାତା ହେଲା ।୩୧।

ଦେବତା ଓ ବ୍ରାହ୍ମଣମାନଙ୍କ ଅନୁଗ୍ରହରୁ ଯୁବନାଶ୍ୱ ମରି ନ ଥିଲେ । ସେହିଠାରେ ତପସ୍ୟା ଦ୍ୱାରା ସିଦ୍ଧିଲାଭ କରିଥିଲେ ।୩୨।


ମାନ୍ଧାତାଙ୍କ ଜନ୍ମ

ରାଜା ବୋଇଲା ମୁଁ ଅଜ୍ଞାନେ
ତୃଷା ତୋଷିଲି ଜଳପାନେ
ଶୁଣି ବ୍ରାହ୍ମଣେ କୋପବହି
ବୋଇଲେ ବସ୍ତୁ ମାୟା ଏହି
ପ୍ରାଣୀ ଯେ ଦଇବ ଅଧୀନ
ମାୟାର ବଳେ ହରେ ଜ୍ଞାନ
ବୋଇଲେ ରାଜା ମୁଖ ଚାହିଁ
ଗର୍ଭ ଧଇଲୁ ଏବେ ତୁହି
ଏବେ ତୋ ଜୀବନ ସମ୍ଭାଳ
ଏମନ୍ତେ ଗଲା କେତେ କାଳ

ସେ ପୁତ୍ର ଜନମର କାଳେ
ରାଜା ଉଦର ବାହୁବଳେ
ଦକ୍ଷିଣ କୁକ୍ଷି ବିଦାରିଲା
ତକ୍ଷଣେ ଭୂମିରେ ପଡ଼ିଲା ।୨୮,୩୦
ରାଜା ନ ମଲା ପୁଣ୍ୟବଳେ
ଦେଖନ୍ତି ଉତ୍ତର ସକଳେ
ପୁତ୍ର ରୋଦଇ କ୍ଷୀର ଅର୍ଥେ
ତା ଦେଖି ଇନ୍ଦ୍ର ଦୟା ଚିତ୍ତେ
ବୋଲଇ ବିପ୍ରଙ୍କୁ ସେ ଚାହିଁ
ରାଜାର ସ୍ତନ ଯୁଗ ନାହିଁ

ପୁତ୍ର ଲୋଡ଼ଇ ତାର କ୍ଷୀର
ଏମନ୍ତ ବୋଲି ନିଜ କର—
ଅଙ୍ଗୁଳି ତାର ତୁଣ୍ଡେ ଦେଲା
ତକ୍ଷଣେ କ୍ଷୁଧା ତୋଷ ହେଲା
ଇନ୍ଦ୍ର ବୋଲଇ ତାକୁ ଚାହିଁ
ତୋହର ହୋଇଲି ମୁଁ ଧାଇ
ତୁ ଯେ ହୋଇବୁ ଚକ୍ରବର୍ତ୍ତୀ
ଏଣୁ ତୋ ନାମ ମାନ୍ଧାତା ।୩୧,୩୨

ତ୍ରସଦ୍ଦସ୍ୟୁରିତୀନ୍ଦ୍ରୋଽଙ୍ଗ ବିଦଧେ ନାମ ଯସ୍ୟ ବୈ ।
ଯସ୍ମାତ୍ ତ୍ରସନ୍ତି ହ୍ୟୁଦ୍‌ବିଗ୍ନା ଦସ୍ୟବୋ ରାବଣାଦୟଃ । ୩୩ ।
ଯୌବନାଶ୍ୱୋଽଥ ମାନ୍ଧାତା ଚକ୍ରବର୍ତ୍ତ୍ୟବନୀଂ ପ୍ରଭୁଃ ।
ସପ୍ତଦ୍ୱୀପବତୀମେକଃ ଶଶାସାଚ୍ୟୁତତେଜସା । ୩୪ ।
ଈଜେ ଚ ଯଜ୍ଞଂ କ୍ରତୁଭିରାତ୍ମବିଦ୍ ଭୂରିଦକ୍ଷିଣୈଃ ।
ସର୍ବଦେବମୟଂ ଦେବଂ ସର୍ବାତ୍ମକମତୀନ୍ଦ୍ରିୟମ୍ । ୩୫ ।
ଦ୍ରବ୍ୟଂ ମନ୍ତ୍ରୋ ବିଧିର୍ଯଜ୍ଞୋ ଯଜମାନସ୍ତଥର୍ତ୍ୱିଜଃ ।
ଧର୍ମୋ ଦେଶଶ୍ଚ କାଳଶ୍ଚ ସର୍ବମେତଦ୍‌ଯଦାତ୍ମକମ୍ । ୩୬ ।
ଯାବତ୍ ସୂର୍ଯ୍ୟ ଉଦେତି ସ୍ମ ଯାବଚ୍ଚ ପ୍ରତିତିଷ୍ଠତି ।
ତତ୍ ସର୍ବଂ ଯୌବନାଶ୍ୱସ୍ୟ ମାନ୍ଧାତୁଃ କ୍ଷେତ୍ରମୁଚ୍ୟତେ ।୩୭।

---

ଇନ୍ଦ୍ର ଏହାଙ୍କ ନାମ ତ୍ରସଦସ୍ୟୁ ଦେଇଥିଲେ କାରଣ ରାବଣାଦି ଦସ୍ୟୁମାନେ ଏହାଙ୍କଠାରୁ ତ୍ରାସ ବା ଭୟପ୍ରାପ୍ତ ହୋଇଥିଲେ ।୩୩।

ଯୁବନାଶ୍ୱଙ୍କର ପୁତ୍ର ମାନଧାତା ସମସ୍ତ ମଣ୍ଡଳର ଅଧୀଶ୍ୱର ବା ଚକ୍ରବର୍ତ୍ତୀ ଏବଂ ସମର୍ଥଶାଳୀ ହୋଇ ଏକାକୀ ସପ୍ତଦ୍ୱୀପା ମହୀ ଶାସନ କରୁଥିଲେ ।୩୪।

ସେ ଅମୃତତ୍ତ୍ୱବିତ୍, ପ୍ରଚୁର ଦକ୍ଷିଣାଯୁକ୍ତ ଯଜ୍ଞ ଓ କ୍ରତୁଦ୍ୱାରା ଦ୍ରବ୍ୟ, ମନ୍ତ୍ର, ବିଧି, ଯଜମାନ, ଋତ୍ୱିକ, ଧର୍ମ, ଦେଶ ଓ କାଳ ଏହି ସମସ୍ତ ପ୍ରକାର ସର୍ବଦେବମୟ ସର୍ବାତ୍ମକ, ଅତୀନ୍ଦ୍ରିୟ ଦେବଙ୍କର ଅର୍ଚ୍ଚନା କରୁଥିଲେ । ୩୫, ୩୬ ।

ଯେତେଦୂର ପର୍ଯ୍ୟନ୍ତ ସୂର୍ଯ୍ୟ ଉଦିତ ହୁଅନ୍ତି ଏବଂ ଯେତେ ଦୂରେ ଅସ୍ତ ହୁଅନ୍ତି ସେ ସମୁଦାୟ ଯୁବନାଶ୍ୱଙ୍କର ପୁତ୍ର ମାନ୍ଧାତାଙ୍କର ରାଜ୍ୟ ବୋଲି ବିଖ୍ୟାତ ହୋଇଥିଲା ।୩୭।

---

ସେ ପୁଣି ଚକ୍ରବର୍ତ୍ତୀ ହୋଇ
ପାଳଇ ସପ୍ତଦ୍ୱୀପା ମହୀ
ତାହାର ତେଜେ ଦସ୍ୟୁଗଣ
ଭୟେ ପଳାନ୍ତି ଛାଡ଼ି ରଣ
ଏଣୁ ସେ ନିଜ ତେଜ ଧାମ
ପାଇଲା ତ୍ରସଦସ୍ୟୁ ନାମ
ରାବଣ ଆଦି ଦସ୍ୟୁ ଯେତେ
ତ୍ରାସନ୍ତି ବସିଲେ ସେ ରଥେ

ଏମନ୍ତେ ଇନ୍ଦ୍ର ନାମ ଦେଲା
ଅନେକ କାଳ ରାଜ୍ୟ କଲା
ତା ଶତ୍ରୁ ନାହିଁ ଏ ଜଗତେ
ବଢ଼ିଲା ବହୁତ ତେଜବନ୍ତେ ।୩୩, ୩୪
ଅନେକ ମତେ ଯଜ୍ଞ କଲା
ଦକ୍ଷିଣା ବହୁଳରେ ଦେଲା
ଯେ ହରି ସର୍ବ ଦେବମୟେ
ତେତେ ନମନ୍ତି ଯାର ପାୟେ

ସେ ହରି ଯଜ୍ଞେ ତୋଷ କରି
ପୁଣେ ପାଳିଲା ବସୁନ୍ଧରୀ ।୩୫, ୩୬
ସୂର୍ଯ୍ୟର ତେଜ ଯେତେ ଦୂର
ଯହିଁ ବା ସୂର୍ଯ୍ୟର ସଞ୍ଚାର
ମାନ୍ଧାତା ତେତେଦୂର ରାଜା
ସର୍ବେ କରନ୍ତି ତାକୁ ପୂଜା ।୩୭।

ଶଶବିନ୍ଦୋର୍ଦୁହିତରି ବିନ୍ଦୁମତ୍ୟାମଧାନ୍ନୃପଃ ।
ପୁରୁକୁତ୍ସମମ୍ବରୀଷଂ ମୁଚୁକୁନ୍ଦଞ୍ଚ ଯୋଗିନମ୍ ।
ତେଷାଂ ସ୍ୱସାରଃ ପଞ୍ଚାଶତ୍ ସୌଭରିଂବବ୍ରିରେ ପତିମ୍ ।୩୮।
ଯମୁନାନ୍ତର୍ଜଳେ ମଗ୍ନସ୍ତପ୍ୟମାନଃ ପରଂ ତପଃ ।
ନିର୍ବୃତିଂ ମୀନରାଜସ୍ୟ ଦୃଷ୍ଟ୍ୱା ମୈଥୁନଧର୍ମିଣଃ ।୩୯।

---

ରାଜା ମାନ୍ଧାତା ଶଶବିନ୍ଦୁଙ୍କର କନ୍ୟା ଇନ୍ଦୁମତୀଙ୍କ ଗର୍ଭରେ ପୁରୁକୁତ୍ସ, ଅମ୍ବରୀଷ, ପରମଯୋଗୀ ମୁଚକୁନ୍ଦ ନାମକ ତିନୋଟି ପୁତ୍ର ଉତ୍ପାଦନ କରିଥିଲେ । ସେମାନଙ୍କର ପଚାଶଟି ଭଗ୍ନୀ, ସେମାନେ ସମସ୍ତେ ସୌଭରି ଋଷିଙ୍କୁ ପତିରୂପରେ ବରଣ କରିଥିଲେ ।୩୮।

ଯମୁନା ଜଳରେ ନିମଗ୍ନ ହୋଇ ତପସ୍ୟା କରୁ କରୁ ମୈଥୁନ ପରାୟଣ ମତ୍ସ୍ୟ ରାଜଙ୍କର ସୁଖଦର୍ଶନ ଏବଂ ତାହାଙ୍କଠାରେ ଅତ୍ୟନ୍ତ ସ୍ପୃହାଯୁକ୍ତ ହୋଇ ବ୍ରାହ୍ମଣ ସୌଭରି ମାନ୍ଧାତାଙ୍କର ନିକଟରୁ ତାହାଙ୍କର

---

ସେ ପୁଣ ଶଶ-ବିନ୍ଦୁ ପୁରେ
କନ୍ୟା ଲଭିଲେ ସ୍ୱୟମ୍ବରେ
ସେ କନ୍ୟା ଇନ୍ଦୁମତୀ ନାମ
ରୂପରେ ସେହୁ ଅନୁପମ
ତାହାର ଗର୍ଭେ ପୁତ୍ର ତିନି
ଜନ୍ମିଲେ ବଂଶ ତେଜ ଘେନି
ପୁରୁକୁତ୍ସ ଯେ ଅମ୍ବରୀଷ
ଏ ଆଉ ମୁଚୁକୁନ୍ଦ ଶେଷ
ଏ ଅନନ୍ତ ପଚାଶ ଦୁହିତା
ଉତ୍ପନ୍ନ କଲେ ମାନଧାତା
ସେ କନ୍ୟାଗଣ ବିଭାକାଳେ
ସୌଭରି ଋଷି ଯୋଗବଳେ
ବିବାହ କଲେ କନ୍ୟାଗଣ
ସେ କଥା ଏକମନେ ଶୁଣ ।୩୮।
ସୌଭରି ଋଷି କେତେଦିନେ
କାଳିନ୍ଦୀ କୂଳେ ଯୋଗଧ୍ୟାନେ
ତପ କରନ୍ତି ଦୃଢ଼ ହେଲେ
ଏମନ୍ତେ କେତେ କାଳ ଅନ୍ତେ
ସମାଧି ଭାଙ୍ଗିଲା ତହିଁକାଳେ
ଦୃଷ୍ଟିରେ ଚାହିଁଲେ ନଦୀଜଳେ
ଦେଖିଲେ ମୀନଗଣ ମଧ୍ୟେ
ସ୍ନେହେତ ଖେଳଇ ଆନନ୍ଦେ
ବାଳକମାନେ ତା ଶରୀରେ
କ୍ରୀଡ଼ନ୍ତି ପୁଚ୍ଛ ପୃଷ୍ଠ ଶିରେ
ଏମନ୍ତେ ମୀନ ହେଳେ ହେଳେ
ଖେଳନ୍ତି ମୁନି ନିରେଖିଲେ
ସୌଭରି ମୁନି ତାକୁ ଚାହିଁ
ନିଜମନେ ଚିନ୍ତେ ବସିରହି
ଦେଖ ଏ ସ୍ନେହେତର ଭାଗ୍ୟ
କୁଟୁମ୍ବ ମଧ୍ୟେ ସୁଖ ଭୋଗ
ମୁଁ ଏବେ କରି ଗୃହାଶ୍ରମ
ସାଧିବି ଯଥା କୁଳଧର୍ମ
ଏତେ ବିଚାରି ତପ ଛାଡ଼ି
ଗୃହ କରିବେ ଚିତ୍ତବଳି
ମାଗେ ଚଳନ୍ତି ସେ ବିଚାରି
ବିବାହ ଅର୍ଥେ ବ୍ରହ୍ମଋଷି
ଗୃହସ୍ଥ ନୋହିଲା ସେ ଭଲେ
ଦାର ପରିଗ୍ରହ ନ କଲେ
ଏବେ ବିଚାରି ଦୃଢଭାବରେ
ମିଳିଲେ ନୃପତି ଅଗ୍ରତେ
ମୁନି ଆଗମ ରାଜା ଦେଖି
ଉଠିଲେ ଆସନ ଉପେକ୍ଷି
ଅତିଥିମତେ ପୂଜା କଲେ
ଆସନେ ନେଇ ବସାଇଲେ
ଅନେକ ଗଉରବ କରି
ତା ଦେଖି ମୁନି ସନ୍ତୋଷରେ
ବୋଲନ୍ତି ରାଜା ମୁଖ ଚାହିଁ
ବିଭା କରାଅ ତୁମ୍ଭେ ବୁଝି
ଗୃହେ କଳିଲା ମୋର ମନ
କନ୍ୟାଏ ଦିଅ ମୋତେ ଦାନ
ମୋହର ସନ୍ତତି ହୋଇଲେ
ସ୍ୱଧର୍ମ ରଖିବୁ ତୁ ଭଲେ
ଏମନ୍ତେ ମୁନିମୁଖୁ ଶୁଣି
ରାଜା ବିଚାରେ ମନେ ଗୁଣି

ଜାତସ୍ପୃହୋ ନୃପଂ ବିପ୍ରଃ କନ୍ୟାମେକାମଯାଚତ ।
ସୋଽପ୍ୟାହ ଗୃହ୍ୟତାଂ ବ୍ରହ୍ମନ୍ କାମଂ କନ୍ୟା ସ୍ୱୟମ୍ବରେ ।୪୦।
ସ ବିଚିନ୍ତ୍ୟାପ୍ରିୟଂ ସ୍ତ୍ରୀଣାଂ ଜରଠୋଽହମସମ୍ମତଃ ।
ବଲୀପଲିତ ଏଜତ୍କ ଇତ୍ୟହଂ ପ୍ରତ୍ୟୁଦାହୃତଃ । ୪୧ ।
ସାଧୟିଷ୍ୟେ ତଥାତ୍ମାନଂ ସୁରସ୍ତ୍ରୀଣାମଭୀପ୍ସିତମ୍ ।
କିଂ ପୁନର୍ମନୁଜେନ୍ଦ୍ରାଣାମିତି ବ୍ୟବସିତଃ ପ୍ରଭୁଃ ।୪୨।

---

ଗୋଟିଏ କନ୍ୟା ପ୍ରାର୍ଥନା କରିଥିଲେ । ମାନ୍ଧାତା କହିଲେ, ହେ ବ୍ରାହ୍ମଣ ! ଆପଣ ସ୍ୱୟମ୍ବର ବିଧାନରେ କନ୍ୟା ଗ୍ରହଣ କରନ୍ତୁ ।୩୯, ୪୦।

ତହିଁ ସୌଭରି ଚିନ୍ତାକଲେ ମୁଁ ବୃଦ୍ଧ, ଶିଥିଳଚର୍ମ, ପକ୍ୱକେଶ, ମୋର ମସ୍ତକ ସତତ କମ୍ପମାନ, ସୁତରାଂ ମୋତେ ସ୍ତ୍ରୀମାନେ ଅପ୍ରିୟ ମନେ କରି ସ୍ୱୟମ୍ବର ଛଳରେ ରାଜା ପ୍ରତ୍ୟାଖ୍ୟାନ କଲେ । ସୁତରାଂ ମୋତେ ନିଜର ଦେହକୁ ଏପରି ପ୍ରସ୍ତୁତ କରିବାକୁ ହେବ ଯେ ରାଜସ୍ତ୍ରୀ କାହିଁକି ଦେବ ସ୍ତ୍ରୀମାନେ ମଧ୍ୟ ମୋତେ ପତିରୂପେ ବରଣ କରିବାକୁ ଆଗ୍ରହ କରିବେ । ଏହା କହି ଯୋଗ ପ୍ରଭାବଶାଳୀ ସୌଭରି ସେହିପରି କରିବାକୁ କୃତ ନିଶ୍ଚୟ ହେଲେ ।୪୧, ୪୨।

---

ଏ ଅତି ବୃଦ୍ଧ ଜର ଜର
ଜାତେ କମ୍ପଇ ତା ଶରୀର
ବୃଦ୍ଧଙ୍କ ମଧ୍ୟେ ଅତି ବୃଦ୍ଧ
ସ୍ପୃହା କରନ୍ତେ କଲେ ଶଧ

ମୋର ଦୁହିତା ବଡ଼ ସୁଖୀ
ଏହାକୁ ଦେଲେ ହେବ ଦୁଃଖୀ
ନ ଦେଲେ ମୋର ଭଲ ନାହିଁ
ଏତେ ବିଚାରି ମୁନି ଥିହିଁ

ବୋଲଇ ଶିରେ କର ଦେଇ
ହେ ମୁନି ! କହୁଁ ତୋର ତହିଁ
କନ୍ୟା ମୋହର ସ୍ୱୟମ୍ବର
ଅନ୍ତଃପୁରକୁ ବିଜେକର

ଯେ କନ୍ୟା ତୁମ୍ଭଙ୍କୁ ବରିବ
ସୁମନେ କରି ପ୍ରିୟ ଭବ
ସେ କନ୍ୟା ନିଶ୍ଚେ ଦେବି ମୁହିଁ
ଏମନ୍ତେ ରାଜା ବାକ୍ୟପାଇ ।୩୯,୪୦

ମୁନି ଉଠିଲେ ତୋଷ ହୋଇ
ତକ୍ଷଣେ ଅନ୍ତଃପୁରେ ଯାଇ
ଦ୍ୱାରପାଳକୁ ରାଜା କହି
ବୋଇଲା ଘେନି ଯାଅ ତୁହି
ଯେ କନ୍ୟା ବରିବ ଏ ବର
ଦେବଇଁ ସତ୍ୟ ଏ ମୋହର
ଦ୍ୱାରପାଳର ହସ୍ତ ଧରି
ମୁନିର ମିଳିଲେ ସତ୍ୱରି
ମିଳିଲେ କନ୍ୟାଙ୍କ ମନ୍ଦିରେ
ମାୟା ମୋହନ କଳେବରେ
ରୂପେ କନ୍ଦର୍ପ ତେଜ ଗଞ୍ଜି
ଜଗତମୋହନ ତେଜ ପୁଞ୍ଜି
କନ୍ୟାଙ୍କୁ ଦେଖି ଦ୍ୱାରପାଳ
ଅଞ୍ଜଳି ନମିଲା କପାଳ
ବୋଲଇ କନ୍ୟାଙ୍କ ଅନାଇଁ
ମୁଁ ତୁମ୍ଭ ପିତା ଆଜ୍ଞା ପାଇ
ସଙ୍ଗତେ ଆଣିଅଛି ବର
ଯାହାର ଇଚ୍ଛା ତୁମ୍ଭେ ବର

ଏକ କନ୍ୟାକୁ ଦେବେ ଦାନ
ବହୁତ ନାହିଁ ପ୍ରୟୋଜନ
ତା ରୂପ କନ୍ୟାମାନେ ଚାହିଁ
ନୟନ ପିଞ୍ଛୁ ନ ଚଳଇ
ସର୍ବେ ଇଚ୍ଛନ୍ତି ତାଙ୍କ ସଙ୍ଗ
ଆନନ୍ଦେ ଯେସନେ ତେଙ୍ଗ
ଏକ ଆରକେ ଆଗ ହୋଇ
ବୋଲନ୍ତି ମୋର ବର ଏହି
ମୁହିଁ ବରିବ ଆଗେ ବର
ନିଶ୍ଚୟ ବର ଏ ମୋହର
ଏମନ୍ତେ ଏକୁ ଆରେ ବାଦେ
ମୁନିଙ୍କି ବରିଲେ ଆନନ୍ଦେ
ତକ୍ଷଣେ ଦ୍ୱାରପାଳ ଗଲା
ନୃପତି ଆଗେ ଜଣାଇଲା
ବୋଲଇ ବିଧାତାର ମାୟା
କେ ଆନ କରେ ପ୍ରଭୁ ଏହା
ଦଇବ ବଳ ଆକର୍ଷଣେ
ସର୍ବେ ବରିଲେ ବରପଣେ

ମୁନଃ ପ୍ରବେଶିତଃ କ୍ଷତ୍ତ୍ରା କନ୍ୟାନ୍ତଃପୁରମୃଦ୍ଧିମତ୍ ।
ବୃତଃ ସ ରାଜକନ୍ୟାଭିରେକଃ ପଞ୍ଚାଶତା ବରଃ ।୪୩।
ତାସାଂ କଳିରଭୂଦ୍ଭୂୟାଂସ୍ତଦର୍ଥେଽପୋହ୍ୟ ସୌହୃଦମ୍ ।
ମମାନୁରୂପୋ ନାୟଂ ବ ଇତି ତଦ୍ଗତଚେତସାମ୍ ।୪୪।
ସ ବହ୍ୱୃଚସ୍ତାଭିରପାରଣୀୟତପଃଶ୍ରିୟାନର୍ଘ୍ୟପରିଚ୍ଛଦେଷୁ ।
ଗୃହେଷୁ ନାନୋପବନାମଳାମ୍ଭଃସରଃସୁ ସୌଗନ୍ଧିକକାନନେଷୁ ।୪୫।
ମହାର୍ହଶଯ୍ୟାସନବସ୍ତ୍ରଭୂଷଣସ୍ନାନାନୁଲେପାଭ୍ୟବହାରମାଲ୍ୟକୈଃ ।
ସ୍ୱଲଙ୍କୃତସ୍ତ୍ରୀପୁରୁଷେଷୁ ନିତ୍ୟଦା ରେମେଽନୁଗାୟଦ୍ଦ୍ୱିଜଭୃଙ୍ଗବନ୍ଦିଷୁ ।୪୬।



ରାଜକନ୍ୟାମାନଙ୍କର ସୌଭରଙ୍କୁ ପତିରୂପରେ ବରଣ

ଏଣେକ ରାଜପୁରରେ ପ୍ରତିହାରୀ ସୌଭରି ମୁନିଙ୍କୁ ରାଜକନ୍ୟାମାନଙ୍କର ସମୃଦ୍ଧି ସମ୍ପନ୍ନ ଅନ୍ତଃପୁରକୁ ଘେନିଗଲା । ମୁନିଙ୍କୁ ଦେଖି ପଚାଶ ଯାକ ରାଜକନ୍ୟା ତାହାଙ୍କୁ ସ୍ୱାମୀ ପଦରେ ବରଣ କଲେ ॥

ସୌଭରି ଋଷିଙ୍କୁ ସ୍ୱାମୀରୂପେ ପାଇବା ନିମିତ୍ତ ରାଜକନ୍ୟାମାନଙ୍କ ମଧ୍ୟରେ କଳହ ଉପସ୍ଥିତ ହେଲା । ପ୍ରତ୍ୟେକ କହିଲେ ଏ ମୋର ଅନୁରୂପ ସ୍ୱାମୀ, ତୋର ନୁହେଁ, ଏହିପରି କଳହ କଲେ ।୪୪।

ମନ୍ତ୍ରଶକ୍ତି ସମ୍ପନ୍ନ ସୌଭରି ଋଷି ଅପାର ତପଃ ବଳରେ ରଚିତ ଅମୂଲ୍ୟ ପରିଚ୍ଛଦ ଯୁକ୍ତ ନାନା ଉପବନ ସ୍ୱଚ୍ଛଜଳ ପୂର୍ଣ୍ଣ ସରୋବର ସୁଗନ୍ଧ ପୁଷ୍ପଯୁକ୍ତ ଉଦ୍ୟାନ, ଶବ୍ଦାୟମାନ ପକ୍ଷୀ ଓ ଭ୍ରମରଗୁଞ୍ଜ ନାଦିତ ସୁନ୍ଦର କାନନ, ସୁନ୍ଦରରୂପରେ ଅଳଙ୍କୃତ ଦାସଦାସୀ ଶୋଭିତ ଗୃହ ମହାମୂଲ୍ୟ ଶଯ୍ୟା, ଆସନ, ବସ୍ତ୍ର, ଆଭରଣ, ସ୍ନାନ ଓ ଅନୁଲେପନ ଆଦିଦ୍ୱାରା ରଞ୍ଜିତ ହୋଇ ରାଜକନ୍ୟାମାନଙ୍କ ସହିତ ବିହାର କଲେ ।୪୫, ୪୬।

ଶୁଣି ଏହାଙ୍କ ମୁଖୁଁ ବାଣୀ
ସମ୍ଭ୍ରମ ହୋଇ ନୃପମଣି
ଆନନ୍ଦେ କନ୍ୟା ଦାନ ଦେଲା
ଅନେକ ଯଉତୁକ ଦେଲା ।୪୧-୪୪।

ପଞ୍ଚାଶ କନ୍ୟା ବର କରି
ପୁରୁଁ ବାହାର ସଉଭରି
ସମ୍ପଦ ଶିଖି ଯୋଗବଳେ
ଗୃହସ୍ଥ ଆଶ୍ରମେ କଣ୍ଟଳେ

ନାନା ପ୍ରକାରେ ଭୋଗ କଲେ
ଅନେକ ପୁତ୍ର ଜାତ ହୁଲେ

ଯଦ୍‌ଗାର୍ହସ୍ଥ୍ୟନ୍ତୁ ସଂବୀକ୍ଷ୍ୟ ସପ୍ତଦ୍ୱୀପବତୀପତିଃ ।
ବିସ୍ମିତଃ ସ୍ତମ୍ଭମଜହାତ୍ ସାର୍ବଭୌମଶ୍ରିୟାନ୍ୱିତମ୍ । ୪୭ ।
ଏବଂ ଗୃହେଷ୍ୱଭିରତୋ ବିଷୟାନ୍ ବିବିଧୈଃ ସୁଖୈଃ ।
ସେବମାନୋ ନ ଚାତୁଷ୍ୟଦାଜ୍ୟସ୍ତୋକୈ ରିବାନଳଃ । ୪୮ ।
ସ କଦାଚିଦୁପାସୀନ ଆତ୍ମାପହ୍ନବମାତ୍ମନଃ ।
ଦଦର୍ଶ ବହ୍‌ବୃଚାଚାର୍ଯ୍ୟୋ ମୀନସଙ୍ଗସମୁତ୍‌ଥିତମ୍ । ୪୯ ।
ଅହୋ ଇମଂ ପଶ୍ୟତ ମେ ବିନାଶଂ ତପସ୍ୱିନଃ ସଚ୍ଚରିତବ୍ରତସ୍ୟ ।
ଅନ୍ତର୍ଜଳେ ବାରିଚରପ୍ରସଙ୍ଗାତ୍ ପ୍ରଚ୍ୟାବିତଂ ବ୍ରହ୍ମ ଚିରଂ ଧୃତଂ ଯତ୍ ।୫୦।
ସଙ୍ଗଂ ତ୍ୟଜେତ ମିଥୁନବ୍ରତିନାଂ ମୁମୁକ୍ଷୁଃ ସର୍ବାତ୍ମନା ନ ବିସୃଜେଦ୍‌ବହିରିନ୍ଦ୍ରିୟାଣି ।
ଏକଶ୍ଚରନ୍ ରହସି ଚିତ୍ତମନନ୍ତ ଈଶେ ଯୁଞ୍ଜୀତ ତଦ୍‌ବ୍ରତିଷୁ ସାଧୁଷୁ ଚେତ୍ ପ୍ରସଙ୍ଗଃ ।୫୧।

---

ହେ ରାଜନ୍ ! ସୌଭରିଙ୍କର ଗାର୍ହସ୍ଥ୍ୟ ଧର୍ମ ଦର୍ଶନ କରି ସପ୍ତଦ୍ୱୀପା ପୃଥିବୀର ଅଧୀଶ୍ୱର ରାଜା ମାନ୍ଧାତା ବିସ୍ମିତ ହୋଇଥିଲେ ଏବଂ ନିଜେ ଯେ ରାଜା ବୋଲି ଗର୍ବ କରୁଥିଲେ ତାହା ପରିତ୍ୟାଗ କଲେ ।୪୭।

ସୌଭରି ଋଷି ଏହିପରି ଗୃହାଶ୍ରମରେ ଅଭିରତ ହୋଇ ବିବିଧ ସୁଖଭୋଗ କରୁଥିଲେ ମଧ୍ୟ ଘୃତବିନ୍ଦୁ ଦ୍ୱାରା ଯେପରି ଅଗ୍ନିର ତୃପ୍ତି ହୁଏନାହିଁ ସେହିପରି କୌଣସି ପ୍ରକାରେ ତାହାଙ୍କର ତୃପ୍ତି ହେଉନାହିଁ ।୪୮।

ଏକଦା ବହ୍ୱୃଚ ଶାସ୍ତ୍ରଜ୍ଞ ସୌଭରି ଧ୍ୟାନ ନିର୍ଜନରେ ଉପବିଷ୍ଟ ହୋଇ ଜାଣିପାରିଲେ ଯେ ମତ୍ସ୍ୟ ସହିତ ବାସରେ ରହି ତାହାଙ୍କର ଆତ୍ମପତନର ନିଦାନ ସ୍ୱରୂପ ତପହାନି ଘଟିଅଛି ।୪୯।

ମୁଁ ତପସ୍ୱୀ, ସଦାଚରଣ ପରାୟଣ, ମୋର ଅଧଃପତନ ଘଟିଅଛି । ମୁଁ ଦୀର୍ଘକାଳ ଯାବତ ଯେଉଁ ବ୍ରହ୍ମତେଜ ଲାଭ କରିଥିଲି ତାହା ଜଳଚର ମତ୍ସ୍ୟମାନଙ୍କ ସଂସର୍ଗରେ ବିନଷ୍ଟ ହୋଇଅଛି ।୫୦।

ମୁକ୍ତିକାମୀ ବ୍ୟକ୍ତି ଦାମ୍ପତ୍ୟ ଧର୍ମଯୁକ୍ତ ବ୍ୟକ୍ତିର ସଙ୍ଗ ସର୍ବାନ୍ତଃ କରଣରେ ପରିତ୍ୟାଗ କରିବ । ଇନ୍ଦ୍ରିୟମାନେ ଯେପରି ବିଷୟାସକ୍ତ ନ ହୁଅନ୍ତି ତାହା କରିବ । ନିର୍ଜନରେ ରହି ଅନନ୍ତ ଶକ୍ତି ପରମେଶ୍ୱରଙ୍କଠାରେ ଚିତ୍ତ ସମର୍ପଣ କରିବ । ସଙ୍ଗ କରିବାର ହେଲେ ସାଧୁବ୍ୟକ୍ତି ସଙ୍ଗ କରିବ ।୫୧।

---

| | | |
|---|---|---|
| ଯେ ଭୋଗ କଲେଁ ତାଙ୍କ ମନେ | ନିଜ କପୋଳେ କର ମାରି | ଜଳକୁ ଯାଇଁ ମୀନ ବଶେ |
| ତପଶେଷମିଳେ ସନ୍ନିଧାନେ ।୪୭-୪୮ | ତାପେ ବୋଲଇ ସଉଭରି | ଜ୍ଞାନ ହାରିଲି ସଙ୍ଗଦୋଷେ |
| ଏମନ୍ତେ କେତେ କାଳ ଗଲା | ଦଇବ ବଳ ଦେଖ ମୋତେ, | ଏକ ମୁଁ ଭଜିଲି ଅନେକ |
| ଋଷି ବିରାଗ ମନେ ଉପୁଜିଲା | ତପ ମୁଁ କଲି ମୋକ୍ଷ ଅର୍ଥେ | ଅନ୍ତେ ମୁଁ ହେବି ନରକ |

ଏକସ୍ତପସ୍ୱ୍ୟହମଥାପ୍ୟମ୍ଭସି ମତ୍ସ୍ୟସଙ୍ଗାତ୍ ପଞ୍ଚାଶଦାସମୁତ ପଞ୍ଚସହସ୍ରସର୍ଗଃ ।
ନାନ୍ତଂ ବ୍ରଜାମ୍ୟୁଭୟକୃତ୍ୟ ମନୋରଥାନାଂ ମାୟାଗୁଣୈର୍ହୃତମତିର୍ବିଷୟେଽର୍ଥଭାବଃ ।୫୨

ଏବଂ ବସନ୍ ଗୃହେ କାଲଂ ବିରକ୍ତୋ ନ୍ୟାସମାସ୍ଥିତଃ ।
ବନଂ ଜଗାମାନୁୟୟୁସ୍ତତ୍ପତ୍ନ୍ୟଃ ପତିଦେବତାଃ । ୫୩ ।
ତତ୍ର ତପ୍ତ୍ୱା ତପସ୍ତୀବ୍ରମାତ୍ମଦର୍ଶନମାତ୍ମବାନ୍ ।
ସହୈବାଗ୍ନିଭିରାତ୍ମାନଂ ୟୁୟୋଜ ପରମାତ୍ମନି । ୫୪ ।
ତାଃ ସ୍ୱପତ୍ୟୁର୍ମହାରାଜ ନିରୀକ୍ଷ୍ୟାଧ୍ୟାତ୍ମିକୀଂ ଗତିମ୍ ।
ଅନ୍ୱୀୟୁସ୍ତତ୍ପ୍ରଭାବେନ ଶାନ୍ତମଗ୍ନିମିବାର୍ଚ୍ଚିଷଃ । ୫୫ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ସୌଭର୍ୟୁପାଖ୍ୟାନଂ
ନାମ ଷଷ୍ଠୋଽଧ୍ୟାୟଃ ।

---

ମୁଁ ଜଳ ମଧ୍ୟରେ ଗୋଟିଏ ତପସ୍ୱୀ ଥିଲି । ମତ୍ସ୍ୟ ସଂସର୍ଗ ହେତୁ ପଚାଶତ ଭାର୍ଯ୍ୟା ସହିତ ସମ୍ବନ୍ଧ ଘଟିବାରୁ ପଚାଶଟି ହେଲି । ପ୍ରତ୍ୟେକର ଶତ ପୁତ୍ର ହେବାରୁ ପାଞ୍ଚସହସ୍ର ସଂଖ୍ୟକ ହୋଇଅଛି । ଐହିକ ଓ ପାରତ୍ରିକ ସୁଖ କଳ୍ପନା ବିଷୟରେ ଆକାଙ୍କ୍ଷାର ଅନ୍ତ ନାହିଁ । ମାୟା ଗୁଣରେ ମୋ ବୁଦ୍ଧି ନଷ୍ଟ ହୋଇଅଛି ।୫୨।

କିଛିକାଳ ଗୃହରେ ବାସ କରି ବିଷୟ ବିରକ୍ତ ସୌଭରି ସର୍ବପ୍ରକାର ସଙ୍ଗ ତ୍ୟାଗ ପୂର୍ବକ ବନକୁ ଗମନ କରିଥିଲେ ଏବଂ ପତିପରାୟଣା ପତ୍ନୀମାନେ ତାହାଙ୍କୁ ଅନୁଗମନ କରିଥିଲେ ।୫୩।

ସେହି ବନ ମଧ୍ୟରେ ଆତ୍ମତତ୍ତ୍ୱଜ୍ଞ ମୁନି ଆତ୍ମ ସାକ୍ଷାତ୍ ଲାଭ କରିବା ନିମିତ୍ତ କଠୋର ତପସ୍ୟା କରି ଅଗ୍ନି ସହିତ ଆତ୍ମାକୁ ପରମାତ୍ମାରେ ସଂଯୋଗ କରିଥିଲେ ।୫୪।

ହେ ମହାରାଜ ! ଯେପରି ଅଗ୍ନିଶିଖା ନିର୍ବାଣପ୍ରାପ୍ତ ଅଗ୍ନି ସଙ୍ଗରେ ମିଳିତ ହୁଏ ସେହିପରି ସୌଭରି ପତ୍ନୀଗଣ ଆପଣା ଆପଣା ପତିର ବ୍ରହ୍ମରେ ଆଧ୍ୟାତ୍ମିକ ଗତି ଦେଖି ଅର୍ଥାତ୍ ପରଂବ୍ରହ୍ମରେ ଲୀନ ହେବାର ଦେଖି ପତିଙ୍କ ସହିତ ନିର୍ବାଣ ପ୍ରାପ୍ତ ହୋଇଥିଲେ ।୫୫।

---

ଏମନ୍ତେ ବିପ୍ର ଏକାନ୍ତେ
ତପୋବଣ ପଶିଲେ ବନନ୍ତେ
ପତ୍ନୀ ସମେତେ ତପ ଦାହି
ଅନ୍ତେ ଲଭିଲେ ବ୍ରହ୍ମଠାଇଁ ।୪୯,୫୦

ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
କହିଲି ଆତ୍ମହିତ ବାଣୀ
ଏଣେ ଭକତ ପରମାଣି

ସଂସାର ଅନ୍ଧକୂପେ ଥାଇ
ଏ ବିନୁ ଆନଗତି ନାହିଁ ।



# ସପ୍ତମୋଽଧ୍ୟାୟଃ

ମାନ୍ଧାତୁରନ୍ୱୟଃ ପ୍ରୋକ୍ତଃ ସପ୍ତମେ ଯତ୍ର ଗୀୟତେ ।
ପୁରୁକୁତ୍ସସ୍ୟ ଚାଖ୍ୟାନଂ ହରିଶ୍ଚନ୍ଦ୍ରସ୍ୟ ଚୋତ୍ତମମ୍ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ

ମାନ୍ଧାତୁଃ ପୁତ୍ରପ୍ରବରୋ ଯୋଽମ୍ବରୀଷଃ ପ୍ରକୀର୍ତ୍ତିତଃ ।
ପିତାମହେନ ପ୍ରବୃତୋ ଯୌବନାଶ୍ୱସ୍ତୁ ତତ୍ସୁତଃ ।
ହାରୀତସ୍ତସ୍ୟ ପୁତ୍ରୋଽଭୂନ୍ମାନ୍ଧାତୃପ୍ରବରା ଇମେ । ୧ ।
ନର୍ମ୍ମଦା ଭ୍ରାତୃଭିର୍ଦତ୍ତା ପୁରୁକୁତ୍ସାୟ ଯୋରଗୈଃ ।
ତୟା ରସାତଳଂ ନୀତୋ ଭୁଜଗେନ୍ଦ୍ରପ୍ରଯୁକ୍ତୟା । ୨ ।

---

## ହରିଶ୍ଚନ୍ଦ୍ର ଉପାଖ୍ୟାନ

ସପ୍ତମ ଅଧ୍ୟାୟରେ ମାନ୍ଧାତାଙ୍କର ପୁତ୍ରମାନଙ୍କର ଏବଂ ପୁରୁକୁତ୍ସଙ୍କର ଆଖ୍ୟାନ ଏବଂ ଦାନବୀର ହରିଶ୍ଚନ୍ଦ୍ରଙ୍କର ଆଖ୍ୟାୟିକା ବର୍ଣ୍ଣିତ ହୋଇଅଛି ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ମାନ୍ଧାତାଙ୍କର ପୁତ୍ରମାନଙ୍କର ମଧ୍ୟରେ ଅମ୍ବରୀଷ ସର୍ବଶ୍ରେଷ୍ଠ ବୋଲି ବିଖ୍ୟାତ ହୋଇଥିଲେ । ସେ ପିତାମହ ଯୁବନାଶ୍ୱ ତାହାଙ୍କୁ ପୁତ୍ରରୂପେ ସ୍ୱୀକାର କରିଥିଲେ । ତାହାଙ୍କର ପୁତ୍ର ହାରୀତ, ଅମ୍ବରୀଷ, ଯୁବନାଶ୍ୱ, ଏହି ତିନିଜଣ ମାନ୍ଧାତାଙ୍କର ଗୋତ୍ରରେ ପ୍ରଧାନ ପୁରୁଷ ।୧।

ଭ୍ରାତା ନାଗଗଣ ସେମାନଙ୍କର ଭଗିନୀ ନର୍ମଦାଙ୍କୁ ପୁରୁକୁତ୍ସଙ୍କ ସହିତ ବିବାହ କରାଇଥିଲେ । ନାଗଗଣଙ୍କ ପ୍ରେରଣାରେ ନର୍ମଦା ପୁରୁକୁତ୍ସଙ୍କୁ ରସାତଳକୁ ଘେନି ଯାଇଥିଲେ ।୨।

---

ମାନ୍ଧାତା ବଂଶର ବର୍ଣ୍ଣନ, ପୁରୁକୁତ୍ସର ଉପାଖ୍ୟାନ ।
ହରିଶ୍ଚନ୍ଦ୍ରର ଯେ ଚରିତ, ସପ୍ତମ ଅଧ୍ୟାରେ ବର୍ଣ୍ଣିତ ॥

ଶ୍ରୀ ଶୁକ ଉବାଚ—

ଏବେ ହେ ଶୁଣ ଭୂ ନରେଶ
ମାନ୍ଧାତା ପୁତ୍ର ଅମ୍ବରୀଷ
ପିତାମହଙ୍କୁ ସେବା କରି
ସେ ଫଳେ ସୁପୁତ୍ର ଲଭିଲ
ତା ସୁତ ଯୁବନାଶ୍ୱ ହୋଇ
ପାଳଇ ସପ୍ତଦ୍ୱୀପା ମହୀ
ହାରୀତ ତାହାର କୁମର
ମାନ୍ଧାତା ବଂଶେ ଏ ପ୍ରବର । ୧ ।
ନାଗେନ୍ଦ୍ର ବାକ୍ୟେ ନାଗପୁରେ
ଗନ୍ଧର୍ବ ବଳକୁ ହାରନ୍ତେ
ଧରଣୀ ପୃଷ୍ଠୁ ରୁଦ୍ରକାଳେ
ପୁରୁକୁତ୍ସକୁ ଘେନି ଗଲେ
ସକଳ ଭ୍ରାତୃଗଣ ଥାଇ
ନର୍ମ୍ମଦା କନ୍ୟା ତାକୁ ଦେଇ
ପାତାଳ ପୁରେ ଘେନିଗଲେ
ଗନ୍ଧର୍ବବଳେ ଯୁଝାଇଲେ
ସେ ପୁଣି ବିଷ୍ଣୁ ତେଜେ ବଳୀ
ଗନ୍ଧର୍ବ ବଳ ନାଶକରି
ମିଳି ସକଳ ନାଗବୃନ୍ଦେ
ସନ୍ତୋଷେ ବର ତାକୁ ଦେଲେ
ଯେ ପ୍ରାଣୀ ଶୟନର କାଳେ
ନର୍ମ୍ମଦା ନାମ ତିନି ବେଳେ

ଗନ୍ଧର୍ବାନବଧୀତ୍ତନ୍ତ୍ର ବଧ୍ୟାନ୍ ବୈ ବିଷ୍ଣୁଶକ୍ତିଧୃକ୍ ।
ନାଗାଲ୍ଲବ୍ଧବରଃ ସର୍ପାଦଭୟଂ ସ୍ମରତାମିଦମ୍ । ୩ ।
ତ୍ରସଦସ୍ୟୁଃ ପୌରୁକୁତ୍ସୋ ଯୋଽନରଣ୍ୟସ୍ୟ ଦେହକୃତ୍ ।
ହର୍ଯ୍ୟଶ୍ୱସ୍ତତ୍ସୁତସ୍ତସ୍ମାତ୍ ପ୍ରାରୁଣୋଽଥ ତ୍ରିବନ୍ଧନଃ । ୪ ।
ତସ୍ୟ ସତ୍ୟବ୍ରତଃ ପୁତ୍ରସ୍ତ୍ରିଶଙ୍କୁରିତି ବିଶ୍ରୁତଃ ।
ପ୍ରାପ୍ତଶ୍ଚାଣ୍ଡାଳତାଂ ଶାପାଦ୍ଗୁରୋଃ କୌଶିକତେଜସା । ୫ ।
ସଶରୀରୋ ଗତଃ ସ୍ୱର୍ଗମଦ୍ୟାପି ଦିବି ଦୃଶ୍ୟତେ ।
ପାତିତୋଽବାକ୍ଶିରା ଦେବୈସ୍ତେନୈବ ସ୍ତମ୍ଭିତୋ ବଲାତ୍ ।୬।

---

ସେହି ରସାତଳରେ ବିଷ୍ଣୁ ତେଜ ଦ୍ୱାରା ଅତ୍ୟନ୍ତ ବର୍ଦ୍ଧିତ ହୋଇ ପୁରୁକୁତ୍ସ ବଧଯୋଗ୍ୟ ଗନ୍ଧର୍ବ-ମାନଙ୍କୁ ବଧ କରିଥିଲେ । ତହିଁରେ ସନ୍ତୁଷ୍ଟ ହୋଇ ନାଗରାଜ ତାହାଙ୍କୁ ବର ପ୍ରଦାନ କରିଥିଲେ ଯେ ଯେଉଁମାନେ ଏ ବୃତ୍ତାନ୍ତ ଶ୍ରବଣ କରିବେ ସେମାନେ ସର୍ପ ଭୟରୁ ମୁକ୍ତ ହେବେ ।୩।

ପୁରୁକୁତ୍ସଙ୍କର ପୁତ୍ର ତ୍ରସଦସ୍ୟୁ, ତ୍ରସଦସ୍ୟୁଙ୍କର ପୁତ୍ର ଅନରଣ୍ୟ, ଅନରଣ୍ୟଙ୍କର ପୁତ୍ର ହର୍ଯ୍ୟଶ୍ୱ, ତାହାଙ୍କର ପୁତ୍ର ପ୍ରାରୁଣ, ପ୍ରାରୁଣଙ୍କର ପୁତ୍ର ତ୍ରିବନ୍ଧନ ।୪।

ତ୍ରିବନ୍ଧନଙ୍କର ପୁତ୍ର ସତ୍ୟବ୍ରତ, ସେ ତ୍ରିଶଙ୍କୁ ନାମରେ ବିଖ୍ୟାତ ହୋଇଥିଲେ । ପିତାଙ୍କ ଅଭିଶାପରେ ସେ ଚଣ୍ଡାଳତ୍ୱ ପ୍ରାପ୍ତ ହୋଇଥିଲେ ମାତ୍ର ବିଶ୍ୱାମିତ୍ରଙ୍କ ଅନୁଗ୍ରହରୁ ସଶରୀରରେ ସ୍ୱର୍ଗକୁ ଗମନ କରିଥିଲେ । ସେ ଅଦ୍ୟାପି ଆକାଶସ୍ଥ ହୋଇ ରହିଅଛନ୍ତି । ଦେବତାମାନେ ତାହାଙ୍କୁ ଅଧୋମସ୍ତକ କରି ସ୍ୱର୍ଗରୁ ପକାଇ ଦିଅନ୍ତେ ବିଶ୍ୱାମିତ୍ର ତାହାଙ୍କୁ ନିଜ ପ୍ରଭାବରେ ଅନ୍ତରୀକ୍ଷରେ ରକ୍ଷା କରିଥିଲେ । ୫,୬

---

ରାତ୍ରି ଦିବସେ ସନ୍ଧ୍ୟା ସ୍ମରେ
ସର୍ପ ଭୟରୁ ସେ ନିସ୍ତରେ ।୨,୩
ଏବେ ହେ। ପୁରୁକୁତ୍ସ ବଂଶେ
କହିବା ଶୁଣ ତୋ ବିଶ୍ୱାସେ
ସର୍ବ ସମ୍ପଦ ଗୁଣଗ୍ରାମ
ତା ସୁତ ତ୍ରସଦସ୍ୟୁନାମ
ସେ ବିଷ୍ଣୁ ତେଜେ ଅନର୍ଗଳା
ସେ ଅନରଣ୍ୟ ଜାତ କଲା
ହର୍ଯ୍ୟଶ୍ୱ ତାହାର ନନ୍ଦନ
ତହୁଁ ପ୍ରାରୁଣ ତ୍ରିବନ୍ଧନ

ତାର ତନୟ ସତ୍ୟବ୍ରତ
ତ୍ରିଶଙ୍କୁ ନାମେ ଯେ ବିଦିତ
ପିତାର ଶାପ ସେହୁ ଘେନି
ଲଭିଲା ଚଣ୍ଡାଳର ଯୋନି
ବଶିଷ୍ଠ ଶାପ ମହା ଘୋର
କୌଶିକ ତେଜେ ହୋଇ ପାର
ଶରୀର ଘେନି ସ୍ୱର୍ଗ ଗଲା
ଉତ୍ତର ଆକାଶେ ପଶିଲା
ଜଗତେ ରହିଲା ତା ଯଶ
ଅଦ୍ୟାପି ରାତ୍ରି ହୁଏ ଦୃଶ୍ୟ

ଦେବେ ତାହାକୁ କୋପ କଲେ
ଭୂମିରେ ପଡ଼ ତୁ ବୋଇଲେ
ତକ୍ଷଣେ ଅଧୋମୁଖ ହୋଇ
ପଡ଼ନ୍ତେ କଉଶିକ ଋଷି
ସ୍ତମ୍ଭନ କଲେ ବେଦମନ୍ତ୍ରେ
ପୁଣ ବସିଲା ନିଜଯନ୍ତ୍ରେ ।୪-୬।

ତ୍ରିଶଙ୍କବୋ ହରିଶ୍ଚନ୍ଦ୍ରୋ ବିଶ୍ୱାମିତ୍ରବଶିଷ୍ଠୟୋଃ ।
ଯନ୍ନିମିତ୍ତମଭୂଦ୍‌ଯୁଦ୍ଧଂ ପକ୍ଷିଣୋର୍ବହୁବାର୍ଷିକମ୍ । ୭ ।
ସୋଽନପତ୍ୟୋ ବିଷଣ୍ଣାତ୍ମା ନାରଦସ୍ୟୋପଦେଶତଃ ।
ବରୁଣଂ ଶରଣଂ ଯାତଃ ପୁତ୍ରୋ ମେ ଜାୟତାଂ ପ୍ରଭୋ । ୮ ।
ଯଦି ବୀରୋ ମହାରାଜ ତେନୈବ ତ୍ୱାଂ ଯଜେ ଇତି ।
ତଥେତି ବରୁଣେନାସ୍ୟ ପୁତ୍ରୋ ଜାତସ୍ତୁ ରୋହିତଃ । ୯ ।

ତ୍ରିଶଙ୍କୁଙ୍କର ପୁତ୍ର ହରିଶ୍ଚନ୍ଦ୍ର । ହରିଶ୍ଚନ୍ଦ୍ରଙ୍କ ନିମିତ୍ତ ପରସ୍ପରଙ୍କର ଅଭିଶାପରେ ବିଶ୍ୱାମିତ୍ର ଓ ବଶିଷ୍ଠ ପକ୍ଷୀତ୍ୱ ପ୍ରାପ୍ତ ହୋଇ ପରସ୍ପର ସହିତ ବହୁବର୍ଷ ଯାଏ ଯୁଦ୍ଧ କରିଥିଲେ ।୭।

ହରିଶ୍ଚନ୍ଦ୍ର ସନ୍ତାନହୀନ ଅବସ୍ଥାରେ ଅତି ବିଷଣ୍ଣ ମନରେ ଥିଲେ ତଦନନ୍ତର ନାରଦଙ୍କର ଉପଦେଶାନୁସାରେ ବରୁଣଙ୍କର ଶରଣାପନ୍ନ ହୋଇ ପ୍ରାର୍ଥନା କଲେ, ପ୍ରଭୋ ! ମୋର ଗୋଟିଏ ପୁତ୍ର ହେଉ । ଯଦି ମୋର ବୀରପୁତ୍ର ଉତ୍ପନ୍ନ ହୁଏ ତେବେ ତାହା ଦ୍ୱାରା ଆପଣଙ୍କର ଉଦ୍ଦେଶ୍ୟରେ ଯଜ୍ଞ କରିବି ।୮।



ଅର୍ଦ୍ଧ ଆକାଶରେ ତ୍ରିଶଙ୍କୁ

ବରୁଣ 'ତଥାସ୍ତୁ' ବୋଲି ବର ପ୍ରଦାନ କଲେ । ରାଜାଙ୍କର ରୋହିତ ବୋଲି ପୁତ୍ରଜାତ ହେଲା । ବରୁଣ ଆସି କହିଲେ ହେ ରାଜନ୍ ! ତୁମର ପୁତ୍ର ହେଲା, ବର୍ତ୍ତମାନ ଯଜ୍ଞ କର ।୯।

ତାହାର ସୁତ ହରିଶ୍ଚନ୍ଦ୍ର
ସପତଦ୍ୱୀପେ ସେ ନରେନ୍ଦ୍ର
ତାହାର ଅର୍ଥେ ଅନ୍ୟୋଅନ୍ୟ
ବଶିଷ୍ଠ ବିଶ୍ୱାମିତ୍ର ଦେନ
ବହୁ ବରଷ ଯୁଦ୍ଧ କଲେ
ପକ୍ଷିଙ୍କ ପ୍ରାୟେ ରୂପ ହେଲେ ।୭।
ସେ ପୁଣି ଅପୁତ୍ରିକ ହୋଇ
ନାରଦ ମୁନିଙ୍କି ଅଣାଇ
ସନ୍ତତି ଅର୍ଥେ ପ୍ରଶ୍ନ କଲା
ବଦନେ ତ୍ରିଶଙ୍କୁର ବଳା

ନାରଦ ମୁନି ସେ ପ୍ରସ୍ତାବେ
କହିଲେ ଆମ୍ଭ ପ୍ରିୟ ଭାବେ
ତୁ ଯାଇ ବରୁଣ ଚରଣେ
ବିଶ୍ୱାସେ ପଶ ଯା ଶରଣେ
ସେ ତୋତେ ପ୍ରସନ୍ନ ହୋଇଲେ
ସନ୍ତତି ଲଭିବୁ ତୁ ଭଲେ
ଏମନ୍ତେ ନାରଦ ବଚନେ
ମିଳିଲା ବରୁଣ ଭୁବନେ
ସନ୍ତତି ଅର୍ଥେ ଜଣାଇଲା
ତୋଷେ ବରୁଣ ବର ଦେଲା

ପୁତ୍ର ମେଧ ଯଜ୍ଞ କର
ତା ଶୁଣି ବୋଲେ ନୃପବର
ଦେନିଅ ବର ଉଆଇଲେ
ଯଜ୍ଞ ମୁଁ କରିବଇଁ ଭଲେ ।୮।
ବରୁଣ ବର ଦେଲ ହେତୁ
ରୋହିତ ସୁତ ଜାତ ହନ୍ତୁ
ବରୁଣ ବୋଲେ ଯଜ୍ଞ କର
ଜନ୍ମିଲା ତୋହର କୁମର ।୯।

ଜାତଃ ସୁତୋ ହ୍ୟନେନାଙ୍ଗ ମାଂ ଯଜସ୍ୱେତି ସୋଽବ୍ରବୀତ୍ ।
ଯଦା ପଶୁର୍ନିର୍ଦ୍ଦଶଃ ସ୍ୟାଦଥ ମେଧ୍ୟୋ ଭବେଦିତି । ୧୦ ।
ନିର୍ଦ୍ଦଶେ ଚ ସ ଆଗତ୍ୟ ଯଜସ୍ୱେତ୍ୟାହ ସୋଽବ୍ରବୀତ୍ ।
ଦନ୍ତାଃ ପଶୋର୍ଯଜ୍ଜାୟେରନ୍ନଥ ମେଧ୍ୟୋ ଭବେଦିତି । ୧୧ ।
ଦନ୍ତା ଜାତା ଯଜସ୍ୱେତି ସ ପ୍ରତ୍ୟାହାଥ ସୋଽବ୍ରବୀତ୍ ।
ଯଦା ପତନ୍ତ୍ୟସ୍ୟ ଦନ୍ତା ଅଥ ମେଧ୍ୟୋ ଭବେଦିତି । ୧୨ ।
ପଶୋର୍ନିପତିତା ଦନ୍ତା ଯଜସ୍ୱେତ୍ୟାହ ସୋଽବ୍ରବୀତ୍ ।
ଯଦା ପଶୋଃ ପୁନର୍ଦ୍ଦନ୍ତା ଜାୟନ୍ତେଽଥ ପଶୁଃ ଶୁଚିଃ । ୧୩ ।
ପୁନର୍ଜାତା ଯଜସ୍ୱେତି ସ ପ୍ରତ୍ୟାହାଥ ସୋଽବ୍ରବୀତ୍ ।
ସାନ୍ନାହିକୋ ଯଦା ରାଜନ୍ ରାଜନ୍ୟୋଽଥ ପଶୁଃ ଶୁଚିଃ । ୧୪ ।

---

ହରିଶ୍ଚନ୍ଦ୍ର କହିଲେ, ଯେତେବେଳେ ସେ ଦଶଦିନରୁ ଅଧିକ ନୁହେଁ ସେତେବେଳେ ସେ ଅପବିତ୍ର। ଦଶଦିନ ଅତୀତ ହେଲା, ବରୁଣ ଆସି କହିଲେ ମୋର ଯଜ୍ଞ କର । ୧୦, ୧୧ ।

ରାଜା କହିଲେ, ଏହାର ଦାନ୍ତ ପଡ଼ିଲେ ଯଜ୍ଞ କରିବି । ଦାନ୍ତ ପଡ଼ିଲା, ବରୁଣ ପୁନର୍ବାର ଆସି କହିଲେ ଏହାର ଦାନ୍ତ ପଡ଼ିଲାଣି ଯଜ୍ଞ କର । ୧୨ ।

ରାଜା କହିଲେ, ଦାନ୍ତ ଉଠୁ, ସେତେବେଳେ ସେ ପବିତ୍ର ହେବ । ଦାନ୍ତ ଉଠିଲା ପରେ ବରୁଣ ଆସି କହିଲେ ବର୍ତ୍ତମାନ ଦାନ୍ତ ଉଠିଲାଣି ଯଜ୍ଞ କର । ୧୩ ।

ହରିଶ୍ଚନ୍ଦ୍ର କହିଲେ, ହେ ବରୁଣଦେବ ! ଯେତେବେଳେ କ୍ଷତ୍ରିୟ ପଶୁ ଅର୍ଥାତ୍ ବଳିଯୋଗ୍ୟ କ୍ଷତ୍ରିୟ କବଚ ଧାରଣ କରି ଯୁଦ୍ଧ ଯୋଗ୍ୟ ହେବ ସେତେବେଳେ ସେ ପବିତ୍ର ହେବ । ପୁତ୍ର ସ୍ନେହରେ ହରିଶ୍ଚନ୍ଦ୍ର

---

ନିର୍ଦ୍ଦନ୍ତ-ପଶୁ ଅପସ୍ମାର
ଦନ୍ତ ଉଗମ ନାହିଁ ତ ର
ଦନ୍ତ ନ ଥିଲେ ଯଜ୍ଞ ନାହିଁ
ଏମନ୍ତେ ଦିନା କେତେ ରହି
ତୁଣ୍ଡେ ଜନ୍ମିଲା ତା ଦଶନ
ସେତିକୁ ବୋଲଇ ବରୁଣ
ଦନ୍ତ ହୋଇଲାତ ଏହାର
ଏ ମାଂସେ ମହାଯଜ୍ଞ କର
ଏମନ୍ତ ଦେବ ମୁଖୁଁ ଶୁଣି
ସେ ହରିଶ୍ଚନ୍ଦ୍ର ମନ ଗୁଣି

ଦନ୍ତ ସମ୍ପୂର୍ଣ୍ଣ ପଶୁ ଶୁଚି
ବରୁଣ ତାହା ଦେଖି ଘୁଞ୍ଚି
ପୁଣି କେତେହେଁ ଦିନ ଗଲା
ସମ୍ପୂର୍ଣ୍ଣ ଦନ୍ତ ଉପୁଜିଲା
ଏବେ କି ବଚନ ତୋହର
ବରୁଣ ବୋଲେ ଯଜ୍ଞ କର
ବରୁଣ ଗୃହୁଁ ରାଜା କହେ
ପ୍ରଥମ ଦନ୍ତ ଶୁଦ୍ଧ ନୁହେ
ଏ ଦନ୍ତ ପଡ଼ି ଯେବେ ଉଠେ
ତେବେ ସେ ଯଜ୍ଞ ପଶୁ ଘଟେ

ତହିଁ ଯେ କଳ୍ପ କାଳ ଅନ୍ତେ
ତୁଣ୍ଡୁ ପଡ଼ିଲେ ସବୁ ଦନ୍ତେ
ପୁଣି ଉଠିଲେ ଏକକାଳେ
ବରୁଣ ରାଜା ଗୃହୁଁ ବୋଲେ
ଦନ୍ତ ହୋଇଲା ପୁନର୍ବାର
ହେ ରାଜା ! ଏବେ ଯଜ୍ଞ କର
ତା ଶୁଣି ବୋଲେ ନୃପମଣି
ଏ ନୋହେ କୁଳଧର୍ମ୍ମ ବାଣୀ
କ୍ଷତ୍ରିୟ ବଂଶେ ହୋଇ ଜାତ
ଯାବତ ନୋହେ ସମରଥ

ଇତ ପୁତ୍ରାନୁରାଗେଣ ସ୍ନେହଯନ୍ତ୍ରିତଚେତସା ।
କାଳଂ ବଞ୍ଚୟତା ତଂ ତମୁକ୍ତୋ ଦେବସ୍ତମୈକ୍ଷତ । ୧୫ ।
ରୋହିତସ୍ତଦଭିଜ୍ଞାୟ ପିତୁଃ କର୍ମ୍ମ ଚକୀର୍ଷିତମ୍ ।
ପ୍ରାଣପ୍ରେପ୍ସୁର୍ଧନୁଷ୍ପାଣିରରଣ୍ୟଂ ପ୍ରତ୍ୟପଦ୍ୟତ । ୧୬ ।
ପିତରଂ ବରୁଣଗ୍ରସ୍ତଂ ଶ୍ରୁତ୍ୱା ଜାତମହୋଦରମ୍ ।
ରୋହିତୋ ଗ୍ରାମମେୟାୟ ତମିନ୍ଦ୍ରଃ ପ୍ରତ୍ୟଷେଧତ । ୧୭ ।
ଭୂମେଃ ପର୍ଯ୍ୟଟନଂ ପୁଣ୍ୟଂ ତୀର୍ଥକ୍ଷେତ୍ରନିଷେବଣୈଃ ।
ରୋହିତାୟାଦିଶଚ୍ଛକ୍ରଃ ସୋଽପ୍ୟରଣ୍ୟେଽବସତ୍ସମାମ୍ ।୧୮।

---

ଏହିପରି କାଳକ୍ଷେପଣ କରି ଯେଉଁ ସମୟ ନିର୍ଦ୍ଦେଶ କଲେ ବରୁଣ ଦେବ ସେହି ସମୟକୁ ଅପେକ୍ଷା କରୁଥାନ୍ତି ।୧୪, ୧୫।

ରୋହିତ ପିତାଙ୍କର ଅଭିପ୍ରାୟ ଅର୍ଥାତ୍ ନିଜର ଶରୀର ଦ୍ୱାରା ବରୁଣଙ୍କର ଯଜ୍ଞ କରିବାର ଇଚ୍ଛା ଜାଣିପାରି ଏବଂ ନିଜର ପ୍ରାଣରକ୍ଷା କରିବାକୁ ଇଚ୍ଛୁକ ହୋଇ ଧନୁର୍ଦ୍ଧାରଣକରିଅରଣ୍ୟକୁ ଗମନ କଲେ ॥

ରୋହିତ ପିତା ବରୁଣଗ୍ରସ୍ତ ଏବଂ ସ୍ଫୀତୋଦର ହୋଇଥିବାର ଶ୍ରବଣ କରି ଗ୍ରାମକୁ ଫେରି ଆସିବାକୁ ଇଚ୍ଛା କରୁଥିବାବେଳେ ଇନ୍ଦ୍ର ତାହାଙ୍କୁ ନିଷେଧ କଲେ ।୧୭।

ଇନ୍ଦ୍ର ରୋହିତଙ୍କୁ ନାନାତୀର୍ଥ ପର୍ଯ୍ୟଟନ ଦ୍ୱାରା ଭୂଲୋକରେ ପୁଣ୍ୟକର୍ମ କରିବାର ଉପଦେଶ ପ୍ରଦାନ କରିଥିଲେ ଏବଂ ତଦନୁସାରେ ରୋହିତ ବର୍ଷେକାଳ ଅରଣ୍ୟ ମଧ୍ୟରେ ବାସ କରିଥିଲେ ।୧୮।

---

ତାବତ ମାଂସ ଶୁଦ୍ଧ ନୋହି
ଏମନ୍ତ ବୋଲେ ପୁତ୍ର ସ୍ନେହି
ଯଜ୍ଞ ସେ କାଳ ବଞ୍ଚାଇଲ
ତା ଶୁଣି ପୁତ୍ର ଭୟ କଲ
ସ୍ୱେ ପ୍ରାଣ ରକ୍ଷା ଅର୍ଥେ ଭଲେ
ଏମନ୍ତେ ସରସ୍ୱତୀ କୂଳେ
ନାରାଚ ଧନୁ ଘେନି ହସ୍ତେ
ପଶିଲ ଗହନ ବନସ୍ତେ ।୧୦-୧୫
ବନେ ବୁଲନ୍ତେ ଧର୍ମ୍ମେ ପୁଣି
ଶୁଣିଲ ଅନ୍ତରୀକ୍ଷ ବାଣୀ
ବରୁଣ ପିତା ବନ୍ଦୀ କଲ
ଯାବତ ଯଜ୍ଞ ନ ପାଇଲ
ତେଣୁ ଉଦର ରୋଗ ଜାତ
ବରୁଣ ପାଶେ ହୋଇ ଗ୍ରସ୍ତ
ଶୁଣି ରୋହିତ କୋପାନଳେ
ଗ୍ରାମକୁ ଆସିବାର ବେଳେ
ଇନ୍ଦ୍ର ମିଳିଲ ବେଗେ ପଥେ,
ବୋଲଇ ରୋହିତ ଅଗ୍ରତେ
ଯଜ୍ଞ ନ କଲ ତୋର ତାତ
କୋପେ ବରୁଣ କଲ ଗ୍ରସ୍ତ
ତୋତେ ଗ୍ରାସିବ କୋପ ବହି
ଏବେ ଅରଣ୍ୟେ ଥାଅ ରହି
ଧର୍ମ୍ମକୁ ଯେବେ ତୋର ମନ
ଧରଣୀ କରି ପର୍ଯ୍ୟଟନ
ଅନେକ ପୁଣ୍ୟ ତୀର୍ଥ କରି
ଧର୍ମ୍ମେ ବିଶ୍ୱାସ ଯେବେ ତୋରି
ଏମନ୍ତେ ଇନ୍ଦ୍ରର ବଚନେ
ରୋହିତତୀର୍ଥକରେବନେ ।୧୬,୧୭
ପୁଣି ଗ୍ରାମକୁ ଇଚ୍ଛା କରେ
ସେ ଇନ୍ଦ୍ର ପଥେ ବିଘ୍ନ କରେ
ଏକ ଦ୍ୱିତୀୟ ତ୍ରି ଚତୁର୍ଥେ
ପଞ୍ଚମ ବର୍ଷେ ତାଙ୍କୁ ପଥେ
ବୃଦ୍ଧ ବ୍ରାହ୍ମଣ ରୂପ ଧରି
ଇନ୍ଦ୍ର ଯେ ତାହାଙ୍କୁ ନିବାରି ।୧୮

ଏବଂ ଦ୍ୱିତୀୟେ ତୃତୀୟେ ଚତୁର୍ଥେ ପଞ୍ଚମେ ତଥା ।
ଅଭ୍ୟେତ୍ୟାଭ୍ୟେତ୍ୟ ସ୍ଥବରୋବପ୍ରୋ ଭୂତ୍ୱାହ ବୃତ୍ରହା । ୧୯ ।
ଷଷ୍ଠଂ ସମ୍ୱତ୍ସରଂ ତତ୍ର ଚରିତ୍ୱା ରୋହିତଃ ପୁରୀମ୍ ।
ଉପବ୍ରଜନ୍ନଜୀଗର୍ତ୍ତାଦକ୍ରୀଣାନ୍ମଧ୍ୟମଂ ସୁତମ୍ ।
ଶୁନଃଶେଫଂ ପଶୁଂ ପିତ୍ରେ ପ୍ରଦାୟ ସମବନ୍ଦତ ।୨୦।
ତତଃ ପୁରୁଷମେଧେନ ହରିଶ୍ଚନ୍ଦ୍ରୋ ମହାଯଶାଃ ।
ମୁକ୍ତୋଦରୋଽଯଜଦ୍ଦେବାନ୍ ବରୁଣାଦୀନ୍ ମହତ୍‌କଥଃ ।୨୧।
ବିଶ୍ୱାମିତ୍ରୋଽଭବତ୍ତସ୍ମିନ୍ ହୋତା ଚାଧ୍ୱର୍ଯ୍ୟୁରାତ୍ମବାନ୍ ।
ଜମଦଗ୍ନିରଭୂଦ୍‌ବ୍ରହ୍ମା ବଶିଷ୍ଠୋଽୟାସ୍ୟସାମଗଃ । ୨୨ ।

---

ଏହାପରେ ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ ବର୍ଷମାନଙ୍କରେ ରୋହିତ ପିତାଙ୍କୁ ଦେଖିବାକୁ ଆସନ୍ତେ ଇନ୍ଦ୍ର ବୃଦ୍ଧ ବ୍ରାହ୍ମଣ ବେଶରେ ଉପସ୍ଥିତ ହୋଇ ତାହାଙ୍କୁ ନିଷେଧ କରିଥିଲେ ।୧୯।

ରୋହିତ ଷଷ୍ଠ ସମ୍ୱତ୍ସର ଯାଏ ବନ ମଧ୍ୟରେ ବିଚରଣ କରି ଗୃହକୁ ଆସିବା ସମୟରେ ଅଜୀଗର୍ତ୍ତଙ୍କର ମଧ୍ୟମ ପୁତ୍ର ଶୁନଃଶେଫଙ୍କୁ କିଣି କରି ଆଣିଥିଲେ ଏବଂ ତାହାଙ୍କୁ ପଶୁରୂପେ ପିତାଙ୍କୁ ଯଜ୍ଞ ନିମିତ୍ତ ସମର୍ପଣ କରି ପିତାଙ୍କୁ ବନ୍ଦନା କରିଥିଲେ ।୨୦।

ତଦନନ୍ତର ମହାଯଶସ୍ୱୀ ହରିଶ୍ଚନ୍ଦ୍ର ନରମେଧ ଯଜ୍ଞ ଦ୍ୱାରା ବରୁଣାଦି ଦେବଗଣଙ୍କୁ ସନ୍ତୁଷ୍ଟ କରି ବରୁଣ ଦେବଙ୍କ କୃପାରୁ ଜଳୋଦର ପୀଡ଼ାରୁ ରକ୍ଷା ପାଇଥିଲେ ।୨୧।

ଏହି ଯଜ୍ଞରେ ବିଶ୍ୱାମିତ୍ର ହୋତା, ଆତ୍ମଜ୍ଞାନୀ ଜମଦଗ୍ନି ଅଧ୍ୱର୍ଯ୍ୟୁ, ବଶିଷ୍ଠ, ବ୍ରହ୍ମା ଏବଂ ଅୟାସ୍ୟ ମୁନି ଉଦ୍‌ଗାତା ହୋଇଥିଲେ ।୨୨।

---

ଷଡ଼ ବରଷ ବନେ ଥିଲ
ଅନେକ ତୀର୍ଥ ସେ ଭ୍ରମିଲ
ସପ୍ତ ବରଷେ ନିଜ ଗ୍ରାମେ
ମିଳିଲ ଯାଇ ତୀର୍ଥ କ୍ରମେ
ଶୁଣିଲ ଅଜୀଗର୍ତ୍ତ ମୁନି
ବିକିବା ଅର୍ଥେ ପୁତ୍ର ଘେନି
ତାହାଙ୍କ ପାଶେ ସେ ମିଳିଲ
ମଧ୍ୟମ ପୁତ୍ରକୁ କିଣିଲ
ସେ ପୁତ୍ର ଶୁନଃଶେଫ ନାମ
ସକଳ ଗୁଣେ ଗୁଣଧାମ

ପିତାର ଅଗ୍ରେ ନେଇ ଦେଲା
ତା ଦେଖି ବରୁଣ ଗଲା ।୧୯,୨୦
ସେ ହରିଶ୍ଚନ୍ଦ୍ର ଆପି ପୁରେ
ଯଜ୍ଞ ଆରମ୍ଭିଲ ସମ୍ଭାରେ
ପୁରୁଷମେଧ ଯଜ୍ଞ ମତେ
ବିପ୍ରଙ୍କୁ ପୂଜି ବେଦ ପଥେ
ଆଗ୍ନୀଧ୍ର ବିଶ୍ୱାମିତ୍ରେ କରି
ଜମଦଗ୍ନିଙ୍କି ବ୍ରହ୍ମା ବରି
ବଶିଷ୍ଠ ସୋମପାନେ ବରି
ସମିଧ ହୋତା ତାଙ୍କୁ କରି

ବରୁଣ ଅର୍ଥେ ଯଜ୍ଞ କଲା
ସକଳ ଦେବଙ୍କୁ ତୋଷିଲା
ସନ୍ତୋଷ ହୋଇ ସୁରନାଥ
ଦେଲ ସୁବର୍ଣ୍ଣମୟ ରଥ
ଶୁନଃଶେଫର କଥା ଯେତେ
ସଙ୍କେତ କହିବା ଅଗ୍ରତେ ।୨୧,୨୨

ତସ୍ମୈ ତୁଷ୍ଟୋ ଦଦାବିନ୍ଦ୍ରଃ ଶାତକୌମ୍ଭମୟଂ ରଥମ୍ ।
ଶୁନଃଶେଫସ୍ୟ ମାହାତ୍ମ୍ୟମୁପରିଷ୍ଟାତ୍ ପ୍ରଚକ୍ଷ୍ୟତେ । ୨୩ ।
ସତ୍ୟଂ ସାରଂ ଧୃତିଂ ଦୃଷ୍ଟ୍ୱା ସଭାର୍ଯ୍ୟସ୍ୟ ଚ ଭୂପତେଃ ।
ବିଶ୍ୱାମିତ୍ରୋ ଭୃଶଂ ପ୍ରୀତୋ ଦଦାବବିହତାଂ ଗତିମ୍ । ୨୪ ।
ମନଃ ପୃଥିବ୍ୟାଂ ତାମଦ୍ଭିସ୍ତେଜସାପୋଽନିଲେନ ତତ୍ ।
ଖେ ବାୟୁଂ ଧାରୟଂସ୍ତଚ୍ଚ ଭୂତାଦୌ ତଂ ମହାତ୍ମନି । ୨୫ ।
ତସ୍ମିନ୍ ଜ୍ଞାନକଳାଂ ଧ୍ୟାତ୍ୱା ତୟାଜ୍ଞାନଂ ବିନିର୍ଦହନ୍ ।
ହିତ୍ୱା ତାଂ ସ୍ୱେନ ଭାବେନ ନିର୍ବାଣସୁଖସଂବିଦା ।
ଅନିର୍ଦେଶ୍ୟାପ୍ରତର୍କ୍ୟେଣ ତସ୍ଥୌ ବିଧ୍ୱସ୍ତବନ୍ଧନଃ । ୨୭ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ହରିଶ୍ଚନ୍ଦ୍ରୋପାଖ୍ୟାନଂ ନାମ ସପ୍ତମୋଽଧ୍ୟାୟଃ ।

---

ଇନ୍ଦ୍ର ହରିଶ୍ଚନ୍ଦ୍ରଙ୍କ ପ୍ରତି ସନ୍ତୁଷ୍ଟ ହୋଇ ତାହାଙ୍କୁ ସୁବର୍ଣ୍ଣମୟ ରଥ ପ୍ରଦାନ କରିଥିଲେ । ଶୁନଃଶେଫଙ୍କର ମହାତ୍ମ୍ୟ ପରେ ବର୍ଣ୍ଣନା କରିବ ।୨୩।

ବିଶ୍ୱାମିତ୍ର ମୁନି ସସ୍ତ୍ରୀକ ହରିଶ୍ଚନ୍ଦ୍ରଙ୍କର ସତ୍ୟ, ସାମର୍ଥ୍ୟ, ଧୈର୍ଯ୍ୟ ଦର୍ଶନ କରି ଅତ୍ୟନ୍ତ ପ୍ରୀତ-ହୋଇ ତାହାଙ୍କୁ ପରମଜ୍ଞାନ ପ୍ରଦାନ କରିଥିଲେ ।୨୪।

ମନହିଁ ସଂସାରର ମୂଳ ତେଣୁ ରାଜା ମନକୁ ପୃଥିବୀରେ ଧାରଣ କରିଥିଲେ । ବେଦରେ ମନକୁ ଅନ୍ନମୟ ବୋଲି କୁହାଯାଇଅଛି । ଅନ୍ନ ଶବ୍ଦଦ୍ୱାରା ପୃଥିବୀ ମଧ୍ୟ ବୁଝାଏ, ତେଣୁ ସେ ଚିନ୍ତା କଲେ ମନ ପୃଥିବୀ ଭିନ୍ନ ଆଉ କିଛି ନୁହେଁ । ସେହିପରି ଜଳକୁ ତେଜରେ ପୃଥିବୀକୁ ଜଳରେ ଏକୀଭୂତ କରିଥିଲେ ଅର୍ଥାତ୍ ପୃଥିବୀ ଜଳରୁ ଉତ୍ପନ୍ନ, ଜଳଭିନ୍ନ ତାହା ଅନ୍ୟ କିଛି ନୁହେଁ । ସେ ଏହିପରି ଧାରଣା କରିଥିଲେ, ତେଜକୁ ବାୟୁରେ, ବାୟୁକୁ ଆକାଶରେ, ଆକାଶକୁ ଅହଙ୍କାର ତତ୍ତ୍ୱରେ, ଅହଙ୍କାର ତତ୍ତ୍ୱକୁ ମହତତ୍ତ୍ୱରେ ବିଲୀନ କରିଥିଲେ ।୨୫।

ଏହି ଜ୍ଞାନାଂଶକୁ ବିଶ୍ୱଆକାରରେ ଧ୍ୟାନକରି ତଦ୍ୱାରା ଆତ୍ମା ଆବରକ ଅଜ୍ଞାନକୁ ଦଗ୍ଧକରିଥିଲେ, ପରେ ନିର୍ବାଣ ସୁଖାନୁଭୂତ ତ୍ୟାଗକରି ମୁକ୍ତ ବନ୍ଧନହୋଇ ଅନିର୍ଦ୍ଦେଶ୍ୟ ଅପ୍ରତର୍କ୍ୟ ସ୍ୱରୂପରେ ଅବସ୍ଥାନକରିଥିଲେ ॥

---

ଏମନ୍ତେ ମହାଯଜ୍ଞ ପ୍ରାନ୍ତେ
ଦକ୍ଷିଣା ଦେଲେ ବିଧି ମତେ
ବିଶ୍ୱାମିତ୍ରଙ୍କୁ ଭୂମି ଦେଲେ
ସୁବର୍ଣ୍ଣ ରଥେ ବିଜେ କଲେ
ରାଜାର ସତ୍ୟ ଗୁଣ ଗୁହି
ସନ୍ତୋଷ ବିଶ୍ୱାମିତ୍ର ହୋଇ
ବିଷ୍ଣୁଙ୍କ ଗତି ଶୂନ୍ୟ ପଥେ
ଇନ୍ଦ୍ର ଜନଙ୍କୁ ଘେନି ସାଥେ

ଯେ ସ୍ଥାନେ ମନ ତାର ଠରେ
ଇଚ୍ଛାଏ ଭ୍ରମଇ ଅମରେ
ତାର ଭକତି ଭାବ ଘେନି
ସନ୍ତୋଷେ ବିଶ୍ୱାମିତ୍ର ମୁନି
ପରମ ଜ୍ଞାନ ତାକୁ ଦେଲେ
ଆକାଶେ ଥାଅ ତୁ ବୋଇଲେ
ଆକାଶେ ଥାଅ ଦେବ ପ୍ରାୟେ
ଅନ୍ତେ ପଶିବୁ ବିଷ୍ଣୁ ଦେହେ ।୨୩, ୨୬

ବୋଲଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ନବମସ୍କନ୍ଧ ବିଷ୍ଣୁବାଣୀ
ମୁକ୍ତହେବେ ନର ଏହା ଶୁଣି ॥



## ଅଷ୍ଟମୋଽଧ୍ୟାୟଃ

ଅଷ୍ଟମେ ରୋହିତସ୍ୟୋକ୍ତୋ ବଂଶୋ ଯତ୍ରାଭବନ୍ନୃପଃ ।
ସଗର କପିଲାକ୍ଷେପାନ୍ନିର୍ଦଗ୍ଧାଃ ଯସ୍ୟ ସୂନବଃ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ହରିତୋ ରୋହିତସୁତଶ୍ଚମ୍ପସ୍ତସ୍ମାଦ୍ୱିନିର୍ମିତା ।
ଚମ୍ପାପୁରୀ ସୁଦେବୋଽତୋ ବିଜୟୋ ଯସ୍ୟଚାତ୍ମଜଃ ।୧।
ଭରୁକସ୍ତତ୍ସୁତସ୍ତସ୍ମାଦ୍ୱୃକସ୍ତସ୍ୟାପି ବାହୁକଃ ।
ସୋଽରିଭିର୍ହୃତଭୂ ରାଜା ସଭାର୍ଯ୍ୟୋ ବନମାବିଶତ୍ । ୨ ।
ବୃଦ୍ଧଂ ତଂ ପଞ୍ଚତାଂ ପ୍ରାପ୍ତଂ ମହିଷ୍ୟନୁମରିଷ୍ୟତୀ ।
ଔର୍ବେଣ ଜାନତାତ୍ମାନଂ ପ୍ରଜାବନ୍ତଂ ନିବାରିତା । ୩ ।

---

### ସଗରରାଜ ଉପାଖ୍ୟାନ

ଅଷ୍ଟମ ଅଧ୍ୟାୟରେ ରୋହିତଙ୍କର ଚରିତ ଏବଂ ସଗର ପୁତ୍ରମାନଙ୍କର ମହର୍ଷି କପିଳଙ୍କର କ୍ରୋଧାଗ୍ନିରେ ଦଗ୍‌ଧ ହେବା ବିଷୟ ବର୍ଣ୍ଣିତ ହୋଇଅଛି । ০ ।

ଶ୍ରୀ ଶୁକଦେବ କହିଲେ :—

ରୋହିତଙ୍କର ପୁତ୍ର ହରିତ, ହରିତଙ୍କର ପୁତ୍ର ଚମ୍ପ, ଏହି ଚମ୍ପ, ଚମ୍ପା ନାମ୍ନୀ ନଗରୀ ନିର୍ମାଣ କରିଥିଲେ । ଚମ୍ପଙ୍କର ପୁତ୍ର ସୁଦେବ, ସୁଦେବଙ୍କର ପୁତ୍ର ବିଜୟ ।୧।

ବିଜୟଙ୍କର ପୁତ୍ର ଭରୁକ, ଭରୁକଙ୍କର ପୁତ୍ର ବୃକ, ବୃକଙ୍କର ପୁତ୍ର ବାହୁକ, ବାହୁକଙ୍କର ରାଜ୍ୟ ଶତ୍ରୁମାନେ ଅପହରଣ କରି ନେବାରୁ ସେ ଭାର୍ଯ୍ୟାଙ୍କ ସହିତ ବନ ମଧ୍ୟରେ ପ୍ରବେଶ କରିଥିଲେ ।୨।

ବୃଦ୍ଧରାଜା ବାହୁକ ପରଲୋକ ଗମନ କରନ୍ତେ ତାହାଙ୍କର ରାଣୀ ସହଗାମିନୀ ହେବାକୁ ଉଦ୍‌ଯୋଗ କରନ୍ତେ ଔର୍ବ ଋଷି ତାହାଙ୍କର ଗର୍ଭାବସ୍ଥା ବିଷୟ ଜାଣିପାରି ତାହାଙ୍କୁ ସହମରଣରୁ ନିବୃତ୍ତ କରାଇଥିଲେ ।୩।

---

ରୋହିତ ବଂଶରେ ସଗର,　　ଷଷ୍ଟୀ ସହସ୍ର ଯା କୁମର ।
କପିଳ-ଶାପେ ହେଲେ ଦଗ୍‌ଧ,　　ଅଷ୍ଟମ ଅଧ୍ୟାୟ ସମ୍ବାଦ ॥

ଶ୍ରୀ ଶୁକ ଉବାଚ—

ରୋହିତ ସୁତ ଯେ ହରିତ
ଚମ୍ପ ତାହାର ତନୁ ଜାତ
ଗ୍ରାମ ବସାଇ ନିଜ ନାମେ
ରହିଲ ଚମ୍ପାପୁରୀ ଧାମେ
ସୁଦେବ ତାର ସୁତ ହୁଏ
ବିଜୟ ତାହାର ତନୟେ ।୧।
ଭରୁକ ତାହାର ସନ୍ତତି
ବୃକ ତାହାର ପୁତ୍ର ହୋନ୍ତି

ବାହୁକ ତାହାର ନନ୍ଦନ
ତା କଥା ଶୁଣ ହୋ ସୁଜନ ।
ଶତ୍ରୁ ପୀଡ଼ିତ ବୃଦ୍ଧ ପଣେ
ଗଲେ ପଶିଲା ଘୋରବନେ ।୨।
ପତ୍ନୀ ସହିତେ ପଳାଇଲା
ଔର୍ବଙ୍କ ଆଶ୍ରମେ ମିଳିଲା
ନମିଲା ମୁନିଙ୍କ ଚରଣେ
ବୃଦ୍ଧ ଶରୀରେ ଘୋରବନେ

ସ୍ୱଭାବେ ଛାଡ଼ିଲା ଜୀବନ
ମୁନି ତା ଦେଖି ଦୁଃଖ ମନ
ତାର କାମିନୀ ଶୋକ ମନେ
ପଶନ୍ତେ ଯାଇ ହୁତାଶନେ
ମୁନି ଜାଣିଲେ ତାର ଗର୍ଭ
ଉଦରେ ସପ୍ତମାସ ଗର୍ଭ
ବୋଇଲେ ଅନଳେ ନ ପଶ
ହୋଇବ ଏ ରାଜାର ବଂଶ । ୩ ।

ଆଜ୍ଞାୟାସ୍ୟୈ ସପତ୍ନୀଭିର୍ଗରୋ ଦତ୍ତୋଽନ୍ଧସା ସହ ।
ସହ ତେନୈବ ସଞ୍ଜାତଃ ସଗରାଖ୍ୟୋ ମହାଯଶାଃ ।
ସଗରଶ୍ଚକ୍ରବର୍ତ୍ତ୍ୟାସୀତ୍ ସାଗରୋ ଯତ୍ସୁତୈଃ କୃତଃ । ୪ ।
ଯସ୍ତାଳଜଙ୍ଘାନ୍ ଯବନାନ୍ ଶକାନ୍ ହୈହୟବର୍ବ୍ବରାନ୍ ।
ନାବଧୀଦ୍ଗୁରୁବାକ୍ୟେନ ଚକ୍ରେ ବିକୃତବେଶିନଃ । ୫ ।
ମୁଣ୍ଡାନ୍ ଶ୍ମଶ୍ରୁଧରାନ୍ କାଂଶ୍ଚିନ୍ମୁକ୍ତକେଶାର୍ଦ୍ଧମୁଣ୍ଡିତାନ୍ ।
ଅନନ୍ତର୍ବାସସଃ କାଂଶ୍ଚିଦବହିର୍ବାସସୋଽପରାନ୍ । ୬ ।

---

ମହର୍ଷୀଙ୍କର ଗର୍ଭାବସ୍ଥା ଶୁଣି ଜାଣିପାରି ତାହାଙ୍କର ସପତ୍ନୀମାନେ ତାହାଙ୍କୁ ବିଷ ପ୍ରଦାନ କଲେ । ବିଷପାନ କରି ପୁତ୍ର ପ୍ରସବ ହେବାରୁ ପୁତ୍ରର ନାମ ହେଲା ସଗର । ସେ ଅତ୍ୟନ୍ତ ଯଶସ୍ୱୀ ସମ୍ରାଟ ଥିଲେ । ତାହାଙ୍କର ପୁତ୍ର ସାଗର ନିର୍ମାଣ କରିଥିଲେ ।୪।

ସଗର ରାଜା ଗୁରୁ ବାକ୍ୟାନୁସାରେ ତାଳଜଙ୍ଘ, ଯବନ, ଶକ, ହୈହୟ, ବର୍ବର ଜାତି ମାନଙ୍କୁ ପ୍ରାଣରେ ବଧ ନ କରି ସେମାନଙ୍କୁ ବିକୃତାଙ୍ଗ କରିଥିଲେ ।୫।

କୌଣସି କୌଣସି ଜାତିଙ୍କୁ ମୁଣ୍ଡିତ ମସ୍ତକ ଓ ଶ୍ମଶ୍ରୁଧାରୀ କୌଣସି କୌଣସି ଜାତିଙ୍କୁ ମୁକ୍ତକେଶ ଓ ଅର୍ଦ୍ଧମୁଣ୍ଡିତ, କୌଣସି କୌଣସି ଜାତିଙ୍କୁ ଅନ୍ତର୍ବାସ ବିହୀନ, କୌଣସି କୌଣସି ଜାତିଙ୍କୁ ବହିର୍ବାସ ବିହୀନ ଅର୍ଥାତ୍ କୌପୀନ ଧାରୀ କରିଥିଲେ ।୬।

---

ମୁନି ବଚନେ ସେ ଅବଳା
ଅନଳକୁଣ୍ଡେ ନ ପଶିଲା
ଶୁଣ ରାଜନ ମନ ଦେଇ
ତା ଗର୍ଭ କଥା ତୋତେ କହି
ସେ ଗର୍ଭ ସମ୍ଭରଣ କାଳେ
ସପତ୍ନୀ ସାତ ପାଞ୍ଚ ମେଳେ
ଗରଳ ଦେଲେ ଅନ୍ନ ସଙ୍ଗେ
ବିଷ ନ ଲାଗେ ତାର ଅଙ୍ଗେ
ଗର୍ଭ ରଖିଲେ ଜଗନ୍ନାଥ
ଏବେ ହେ। ଶୁଣ ସାବହିତ ।
ସେ ଗର୍ଭ ପ୍ରସବର କାଳେ
ମୁନି ସକଳେ କୁତୁହଳେ
ବୋଇଲେ ଗରଳ ସଙ୍ଗତେ
ଜନମ ହୋଇଲା ଯେ ଏଥେ

ଗରଳ ସଙ୍ଗେ ଜନ୍ମ ଯେଣୁ
ସଗର ନାମ ହେଉ ତେଣୁ
ଏମନ୍ତେ ମୁନିଙ୍କ ସମ୍ମତେ
ସଗର ରାଜା ହେଲା ଦେତେ
ହେଲକୁ ହେଲ ଅତି ତେଜା
ହୋଇଲା ଚକ୍ରବର୍ତ୍ତୀ ରାଜା
ତାର ତନୁଜେ ବାହୁବଳେ
ସାଗର କଲେ ମହୀତଳେ
ପିତା ଶତ୍ରୁଙ୍କୁ ଯୁଦ୍ଧେ ଜିଣି
ସ୍ୱଦେହେ ବନ୍ଦି କଲେ ଆଣି ।୪।
ଯେତେ ତାହାର ରିପୁଗ୍ରାମ
ଶୁଣ ହେ। ତାହାଙ୍କର ନାମ
ତାଳଜଙ୍ଘ ଯବନ ଶକ
ହୈହୟ ବର୍ବର ଯେତେକ

ଗୁରୁଙ୍କ ବାକ୍ୟେ ନ ମାରିଲା
ଶୁଣ ଯାହାଙ୍କୁ ଯାହା କଲା ।୫।
ମୁଣ୍ଡିତ କେଶ କାର କରି
କାହାକୁ କଲା ଶ୍ମଶ୍ରୁଧାରୀ
କାହାର କଲା ମୁକ୍ତ କେଶ
ଅର୍ଦ୍ଧ ମୁଣ୍ଡିତ କାର କେଶ
କାହାର ବସନ ହରିର
ବିକୃତ ବେଶ ତାଙ୍କୁ କରି
ଏମନ୍ତ କରି ତାଙ୍କୁ ବେଶ
ଛାଡ଼ିଣ ଦେଲା ତାଙ୍କୁ ଦେଶ ।୬।

ସୋଽଶ୍ୱମେଧୈରଯଜତ ସର୍ବବେଦସୁରାତ୍ମକମ୍ ।
ଔର୍ବୋପଦିଷ୍ଟଯୋଗେନ ହରିମାତ୍ମାନମୀଶ୍ୱରମ୍ ।
ତସ୍ୟୋତ୍ସୃଷ୍ଟଂ ପଶୁଂ ଯଜ୍ଞେ ଜହାରାଶ୍ୱଂ ପୁରନ୍ଦରଃ ।୭।
ସୁମତ୍ୟାସ୍ତନୟା ଦୃପ୍ତାଃ ପିତୁରାଦେଶକାରିଣଃ ।
ହୟମନ୍ୱେଷମାଣାସ୍ତେ ସମନ୍ତାନ୍ନ୍ୟଖନନ୍ମହୀମ୍ ।୮।
ପ୍ରାଗୁଦୀଚ୍ୟାଂ ଦିଶି ହୟଂ ଦଦୃଶୁଃ କପିଳାନ୍ତିକେ ।
ଏଷ ବାଜିହରଶ୍ଚୌର ଆସ୍ତେ ମୀଳିତଲୋଚନଃ ।୯।
ହନ୍ୟତାଂ ହନ୍ୟତାଂ ପାପ ଇତି ଷଷ୍ଟିସହସ୍ରିଣଃ ।
ଉଦାୟୁଧା ଅଭିୟୟୁରୁନ୍ମିମେଷ ତଦା ମୁନିଃ ।୧୦।

---

ସେହି ସଗର ରାଜା ଔର୍ବଙ୍କର ଉପଦେଶ ଅନୁସାରେ ଶାସ୍ତ୍ରୀୟ ବିଧିରେ ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରି ସର୍ବବେଦମୟ ଭଗବାନ୍ ଶ୍ରୀହରିଙ୍କୁ ଅର୍ଚ୍ଚନା କରିଥିଲେ । ଏହି ଯଜ୍ଞର ଉତ୍ସୃଷ୍ଟ ଅଶ୍ୱକୁ ଇନ୍ଦ୍ର ଅପହରଣ କରିଥିଲେ । ୭ ।

ପିତାଙ୍କ ଆଦେଶରେ ସଗର ରାଜାଙ୍କର ସୁମତି ନାମ୍ନୀ ପତ୍ନୀ ଗର୍ଭରୁ ଜାତ ପୁତ୍ରମାନେ ଗର୍ବିତ ହୋଇ ଯଜ୍ଞାଶ୍ୱ ଅନ୍ୱେଷଣ କରିବା ଲାଗି ପୃଥିବୀର ସର୍ବତ୍ର ଖନନ କରିଥିଲେ ।୮।

ପୂର୍ବ ଉତ୍ତର ଦିଗରେ ଭଗବାନ୍ କପିଳଙ୍କ ନିକଟରେ ସେହି ଅଶ୍ୱକୁ ଦେଖି ଏହି ବ୍ୟକ୍ତି ଚୋର ଆଖି ବୁଜି ବସିଅଛି ଏହି ପାପାତ୍ମାକୁ ବଧ କର, ଏହାପରି କହୁ କହୁ ଷାଠିଏ ସହସ୍ର ସଗର ପୁତ୍ର ଅସ୍ତ୍ରଧାରଣ କରି କପିଳ ମୁନିଙ୍କ ନିକଟରେ ଉପସ୍ଥିତ ହେଲେ । ମୁନି ତହୁଁ ଆଖି ମେଲି ସେମାନଙ୍କୁ ଚାହିଁଲେ । ୯, ୧୦ ।

---

ସେ ପୁଣି ସର୍ଖି ନାନା ବିଧି
କଲିଲ ଶତ ଅଶ୍ୱମେଧି
ଔର୍ବ ମୁନିଙ୍କି ହୋତା କରି
ଯଜ୍ଞେ ପୂଜିଲ ନରହରି
ଉତ୍ତମ ଅଶ୍ୱ ପଶୁ କଲ
ସେ ଅଶ୍ୱ ଇନ୍ଦ୍ର ଅପହରିଲ । ୭ ।
ଷାଠିଏ ସହସ୍ର କୁମର
ତାଙ୍କ ତରଇ ସୁନାସୀର
କାହିଁଇ ନରବେ କେମନ୍ତେ
ଏମନ୍ତେ ବଳ ସେ ନୃପତେ

କପିଳ ମୁନି ପାଦ ତଳେ
ଅଶ୍ୱ ବାନ୍ଧିଲ ରାତ୍ରିକାଳେ
ଅଶ୍ୱ ନ ଦେଖି ଯଜ୍ଞଦ୍ୱାରେ
ସକଳେ ପଶିଲେ ବିବରେ
ଖୋଳନ୍ତି ନଖେ ଭୂମି ଖଣ୍ଡ
ଭିଯନ୍ତି ବସୁମତୀ ଭୁଣ୍ଡ
ଉତ୍ତର ଦିଗେ ଖୋଳିଗଲେ
କପିଳ ଆଶ୍ରମେ ମିଳିଲେ
ଦେଖିଲେ ମୁନିଙ୍କ ଆଶ୍ରମ
ସେ ଅଶ୍ୱ ଅଛଇ ବନ୍ଧନେ

କପିଳ ମୁନି ମୁଖ ଚାହିଁ
ବୋଲନ୍ତି ଅଶ୍ୱ ଚୋର ଏହି
ସମସ୍ତେ ଏକ ମୁଖ ହୋଇ
ଏହାଙ୍କୁ ରଖି ନ ଯୋଗାଇ
ଆମ୍ଭଙ୍କୁ ଦେଖି ଚକ୍ଷୁ ବୁଜେ
ଅମ୍ଭଙ୍କୁ ଦମ୍ଭ ପ୍ରାୟେ ବୁଝେ ।୮।
ଏମନ୍ତେ ଘୋର ନାଦ କରି
ଧାଇଁଲେ କରେ ଶସ୍ତ୍ର ଧରି
ଭୂମି କମ୍ପଇ ତାଙ୍କ ପାଦେ
ଧ୍ୟାନ ଭାଙ୍ଗିଲ ଘୋର ନାଦେ

ସ୍ୱଶରୀରାଗ୍ନିନା ତାବନ୍ମହେନ୍ଦ୍ରହୃତଚେତସଃ ।
ମହଦ୍ବ୍ୟତକ୍ରମହତା ଭସ୍ମସାଦଭବନ୍ କ୍ଷଣାତ୍ । ୧୧ ।

ନ ସାଧୁବାଦୋ ମୁନିକୋପଭର୍ଜିତା ନୃପେନ୍ଦ୍ରପୁତ୍ରା ଇତି ସତ୍ତ୍ୱଧାମନି ।
କଥଂ ତମୋ ରୋଷମୟଂ ବିଭାବ୍ୟତେ ଜଗତ୍ପବିତ୍ରାତ୍ମନି ଖେ ରଜୋ ଭୁବଃ ।୧୨।

ଯସ୍ୟେରିତା ସାଂଖ୍ୟମୟୀ ଦୃଢ଼େହ ନୌର୍ଯ୍ୟା ମୁମୁକ୍ଷୁସ୍ତରତେ ଦୁରତ୍ୟୟମ୍ ।
ଭବାର୍ଣ୍ଣବଂ ମୃତ୍ୟୁପଥଂ ବିପଶ୍ଚିତଃ ପରାତ୍ମଭୂତସ୍ୟ କଥଂ ପୃଥଙ୍ମତିଃ । ୧୩ ।

ଯୋଽସମଞ୍ଜସ ଇତ୍ୟୁକ୍ତଃ ସ କେଶିନ୍ୟା ନୃପାତ୍ମଜଃ ।
ତସ୍ୟ ପୁତ୍ରୋଽଂଶୁମାନ୍ନାମ ପିତାମହହିତେ ରତଃ । ୧୪ ।

---

ଇନ୍ଦ୍ରଙ୍କ କର୍ତ୍ତୃକ ବିମୋହିତ ଚିତ୍ତ ସଗର ତନୟମାନେ ମହର୍ଷି କପିଳଙ୍କ ପ୍ରତି ଏପରି ଅତ୍ୟାଚାର କରିବାକୁ ଉଦ୍ୟତ ହୋଇଥିବାରୁ କପିଳଙ୍କର ନିଜ ଶରୀର ଜାତ ଅଗ୍ନି ଦ୍ୱାରା ସେମାନେ ତତ୍କ୍ଷଣାତ୍ ଭସ୍ମୀଭୂତ ହୋଇଥିଲେ ॥

କେହି କେହି କହନ୍ତି କପିଳଙ୍କର କ୍ରୋଧାନଳରେ ରାଜପୁତ୍ରମାନେ ଦଗ୍ଧ ହୋଇଅଛନ୍ତି ଏହା ସତ୍ୟ ନୁହେଁ କାରଣ ପୃଥିବୀର ଧୂଳି ଯେପରି ଆକାଶରେ ରହି ନ ପାରେ ସେହିପରି ଜଗତ୍ ପବିତ୍ରକାରୀ ଶୁଦ୍ଧ ସତ୍ତ୍ୱ ମୂର୍ତ୍ତି କପିଳ ମୁନିଙ୍କଠାରେ କ୍ରୋଧମୟ ତମ କିପରି ରହିପାରେ । ୧୨ ।



କପିଳଙ୍କ କର୍ତ୍ତୃକ ସଗର ପୁତ୍ରମାନଙ୍କର ଧ୍ୱଂସ

ଏହି ସଂସାରରେ ଭଗବାନ୍ କପିଳଦେବଙ୍କର ସାଙ୍ଖ୍ୟ ସ୍ୱରୂପା ତରଣୀ ସୁଦୃଢ ଭାବରେ ବିଦ୍ୟମାନ । ଯେଉଁ ସାଙ୍ଖ୍ୟ ସ୍ୱରୂପା ନୌକା ଦ୍ୱାରା ମୁମୁକ୍ଷୁ ବ୍ୟକ୍ତି ଅନାୟାସରେ ଦୁସ୍ତର ମୃତ୍ୟୁପଥ ସ୍ୱରୂପ ଭବସାଗର ପାର ହୋଇଥାଏ ସେହି ପରମାତ୍ମ ସ୍ୱରୂପ ବିଜ୍ଞ କପିଳଦେବଙ୍କର ଶତ୍ରୁ ଓ ମିତ୍ର ଏପରି ଭିନ୍ନ ଭାବ ଥାଇ ନ ପାରେ ।୧୩।

କେଶିନୀ ଗର୍ଭଜାତ ସଗରଙ୍କ ତନୟ ଅସମଞ୍ଜସ ନାମରେ କଥିତ ହୋଇଥିଲେ । ଅସମଞ୍ଜସଙ୍କର ପୁତ୍ର ଅଂଶୁମାନ ପିତାମହଙ୍କ ହିତ ସାଧନରେ ରତ ହୋଇଥିଲେ ।୧୪।

---

ରହିଥିଲେ ଉନ୍ମୀଳି ଲୋଚନେ
ଜନକ ଉଠିଲା ନୟନେ
ମହତ ଅତିକ୍ରମ ଦୋଷେ
ଜଳିଲେ ଅଗ୍ନି ମହାରୋଷେ

ଦେଖନ୍ତି ସ୍ୱର୍ଗେ ଦେବଗଣେ
ଭସ୍ମ ହୋଇଲେ ତତକ୍ଷଣେ ।୧୧,୧୩
ଷାଠୀ ସହସ୍ର ଏକବାର
ମରିଲେ ସଗର କୁମର

କେଶିନୀ ଗର୍ଭେ ଏକସୁତ
ଅସମଞ୍ଜସ ନାମେ ଖ୍ୟାତ
ତାର କୁମର ଅଂଶୁମାନ
ସକଳ ଗୁଣେ ଗୁଣ ଧାମ

ଅସମଞ୍ଜସ ଆତ୍ମାନଂ ଦର୍ଶୟନ୍ନସମଞ୍ଜସମ୍ ।
ଜାତସ୍ମରଃ ପୁରା ସଙ୍ଗାଦ୍ୟୋଗୀ ଯୋଗାଦ୍ବିଚ୍ୟୁତଃ ।୧୫।
ଆଚରନ୍ ଗର୍ହିତଂ ଲୋକେ ଜ୍ଞାତୀନାଂ କର୍ମ୍ମ ବିପ୍ରିୟମ୍ ।
ସରଯ୍ୱାଂ କ୍ରୀଡ଼ତୋ ବାଲାନ୍ ପ୍ରାସ୍ୟଦୁଦ୍‌ବେଜୟନ୍ ଜନମ୍ ।୧୬।
ଏବଂ ବୃତ୍ତଃ ପରିତ୍ୟକ୍ତଃ ପିତ୍ରା ସ୍ନେହମପୋହ୍ୟ ବୈ ।
ଯୋଗୈଶ୍ୱର୍ଯ୍ୟେଣ ବାଲାଂସ୍ତାନ୍ ଦର୍ଶୟିତ୍ୱା ତତୋ ଯଯୌ ।୧୭।
ଅଯୋଧ୍ୟାବାସିନଃ ସର୍ବ୍ବେ ବାଲକାନ୍ ପୁନରାଗତାନ୍ ।
ଦୃଷ୍ଟ୍ୱା ବିସିସ୍ମିରେ ରାଜନ୍ ରାଜା ଚାପ୍ୟନ୍ୱତପ୍ୟତ ।୧୮।
ଅଂଶୁମାଂଶ୍ଚୋଦିତୋ ରାଜ୍ଞା ତୁରଗାନ୍ୱେଷଣେ ଯଯୌ ।
ପିତୃବ୍ୟଖାତାନୁପଥଂ ଭସ୍ମାନ୍ତି ଦଦୃଶେ ହୟମ୍ ।୧୯।

---

ପୂର୍ବ୍ବ ଜନ୍ମରେ ଅସମଞ୍ଜସ ଜଣେ ଯୋଗୀ ଥିଲେ । ମାତ୍ର ସଙ୍ଗ ଦୋଷ ହେତୁ ଯୋଗଭ୍ରଷ୍ଟ ହୋଇ ମାନବ ଜନ୍ମ ଗ୍ରହଣ କରିଥିଲେ । ସେ ଜାତିସ୍ମର ଥିଲେ, କିନ୍ତୁ ନିଜକୁ ପ୍ରକୃତରେ ଅସମଞ୍ଜସ ବୋଲି ପ୍ରକାଶ କରି ଗର୍ହିତ ଓ ଜ୍ଞାତିମାନଙ୍କର ଅପ୍ରିୟ କାର୍ଯ୍ୟ କରି ଲୋକଙ୍କର ଉଦ୍‌ବେଗ ଜନ୍ମାଇଥିଲେ ଏବଂ କ୍ରୀଡ଼ାକାରୀ ବାଳକମାନଙ୍କୁ ସରଯୂ ନଦୀରେ ନିକ୍ଷେପ କରିଥିଲେ ।୧୫, ୧୬।

ପିତା ସଗର ଏପରି ଚରିତ୍ର ବିଶିଷ୍ଟ ଅସମଞ୍ଜସଙ୍କଠାରୁ ସ୍ନେହ ପରିତ୍ୟାଗ କରିଥିଲେ । ସେ ଯୋଗୈଶ୍ୱର୍ଯ୍ୟ ପ୍ରଭାବରେ ଏହି ବାଳକମାନଙ୍କୁ ପୁନର୍ବାର ଆଣି ସମସ୍ତଙ୍କୁ ଦେଖାଇଥିଲେ ।୧୭।

ଅଯୋଧ୍ୟାବାସୀମାନେ ଅସମଞ୍ଜସଙ୍କ କର୍ତ୍ତୃକ ନିହତ ପରେ ପୁନରାଗତ ନିଜ ନିଜର ବାଳକମାନଙ୍କୁ ଦେଖି ବିସ୍ମିତ ହୋଇଥିଲେ ଏବଂ ରାଜା ମଧ୍ୟ ଅନୁତାପ କରିଥିଲେ ।୧୮।

ଅଂଶୁମାନ ପିତାମହ ସଗରଙ୍କର ଆଦେଶରେ ଅଶ୍ୱ ଅନ୍ୱେଷଣାର୍ଥ ଗମନ କରିଥିଲେ । ସେ ପିତୃବ୍ୟମାନଙ୍କର ଖନିତ ପଥରେ ଗମନ କରି ଭସ୍ମରାଶି ନିକଟରେ ଅଶ୍ୱ ଦେଖିଥିଲେ ।୧୯।

---

ସେ ଥାଇ ପିତାମହ ହତେ
ମଞ୍ଜ ବଚନ କାଟେ୍ମ କଟେ୍ୟ ।୧୪
ଅସମଞ୍ଜସ ଯାର ନାମ
କରେ ନିନ୍ଦିତ ଆଚରଣ
ସେ ପୂର୍ବ୍ବଜନ୍ମେ ଯୋଗୀ ଥିଲା
ସଙ୍ଗ ଦୋଷରୁ ଭ୍ରଷ୍ଟ ହେଲା
ଏଣୁ ନିନ୍ଦିତ କର୍ମ୍ମ କରେ
ଜ୍ଞାତିଙ୍କ ଅପ୍ରିୟ ଆଚରେ
ଶିଶୁମାନଙ୍କୁ ଧରି ବଳେ
ବୁଡ଼ାଏ ସରଯୂ ଜଳରେ

ତାହାର ଦେଖି ମନ୍ଦପଣ
ଅଯୋଧ୍ୟାବାସୀ ପ୍ରଜାଗଣ
ସଗରେ ଜଣାଇଲେ ଯାଇ
ଅତି ଦୁଃଖିତ ରାଜା ହୋଇ
ଘରୁ ବାହାର କରି ଦେଲା
ଯେଣୁ ସେ ପ୍ରଜାଙ୍କୁ ପୀଡ଼ିଲା
ସେ ପୁଣି ଯୋଗବଳ କଲା
ମୃତ ବାଳକମାନ ଦେଲା
ବାଳକ ପାଇ ତୋଷମନେ
ଅଯୋଧ୍ୟାବାସୀ ପ୍ରଜାଜନେ

ବିସ୍ମିତ ହୋଇଲେ ସକଳେ
ଅସମଞ୍ଜସ ଯୋଗବଳେ
ତାର ଅଦ୍ଭୁତ କର୍ମ ଦେଖି
ସଗରହେଲେମହାଦୁଃଖୀ ।୧୫-୧୮
ଏବେ ହୋ ଶୁଣ ନରନାଥ
ସେ ଅଂଶୁମାନର ଚରିତ
ସଗର ତାର ମୁଖ ଚାହିଁ
ବୋଲଇ ଅଶ୍ୱ ଆଣ ଯାଇଁ
ଏମନ୍ତେ ପିତାମହ ବାକ୍ୟେ
ସେ ଅଂଶୁମାନ ଗଲା ଏକେ

ତଦାସୀନଂ ମୁନିଂ ବୀକ୍ଷ୍ୟ କପିଳାଖ୍ୟମଧୋକ୍ଷଜମ୍ ।
ଅସ୍ତୌତ୍ ସମାହିତମନାଃ ପ୍ରାଞ୍ଜଳିଃ ପ୍ରଣତୋ ମହାନ୍ । ୨୦ ।

ଅଂଶୁମାନୁବାଚ

ନ ପଶ୍ୟତି ତ୍ୱାଂ ପରମାତ୍ମନୋଽଜନୋ ନ ବୁଧ୍ୟତେଽଦ୍ୟାପି ସମାଧିଯୁକ୍ତିଭିଃ ।
କୁତୋଽପରେ ତସ୍ୟ ମନଃଶରୀରଧୀବିସର୍ଗସୃଷ୍ଟା ବୟମପ୍ରକାଶାଃ ।୨୧।
ଯେ ଦେହଭାଜସ୍ତ୍ରିଗୁଣପ୍ରଧାନା ଗୁଣାନ୍ ବିପଶ୍ୟନ୍ତ୍ୟୁତ ବା ତମଶ୍ଚ ।
ଯନ୍ମାୟୟା ମୋହିତଚେତସସ୍ତ୍ୱାଂ ବିଦୁଃ ସ୍ୱସଂସ୍ଥଂ ନ ବହିଃପ୍ରକାଶାଃ ।୨୨।
ତଂ ତ୍ୱାମହଂ ଜ୍ଞାନଘନଂ ସ୍ୱଭାବପ୍ରଧ୍ୱସ୍ତମାୟାଗୁଣଭେଦମୋହୈଃ ।
ସନନ୍ଦନାଦ୍ୟୈର୍ମୁନିଭିର୍ବିଭାବ୍ୟଂ କଥଂ ବିମୂଢ଼ଃ ପରିଭାବୟାମି । ୨୩ ।

---

ସେହି ମହା ମହିମ୍ନାନ ଅଂଶୁମାନ ସେଠାରେ ଉପବିଷ୍ଟ ବିଷ୍ଣୁ ଅବତାର କପିଳଙ୍କୁ ଦର୍ଶନ କରି ପ୍ରଣତ ହେଲେ ଏବଂ କୃତାଞ୍ଜଳି ପୂର୍ବକରେ ସମାହିତ ଚିତ୍ତରେ ସ୍ତବ କରିଥିଲେ ।୨୦।

ଅଂଶୁମାନ କହିଲେ :—

ହେ ଭଗବନ୍ ! ବ୍ରହ୍ମା, ଅଜ୍ଞ, କିନ୍ତୁ ଅଦ୍ୟାପି ସେ ଏଗ୍ରପର ପରମେଶ୍ୱର ରୂପେ ଆପଣଙ୍କୁ ଦେଖିପାରିନାହାନ୍ତି ବା ବୁଝିପାରିନାହାନ୍ତି କାରଣ ସମାଧିଦ୍ୱାରା ଅପରୋକ୍ଷ ଦେଖାଯାଏ ନାହିଁ ଏବଂ ଯୁକ୍ତିଦ୍ୱାରା ପରୋକ୍ଷ ବୁଝାଯାଏ ନାହିଁ । ସୁତରାଂ ବ୍ରହ୍ମାଙ୍କର ମନ, ଶରୀର, ବୁଦ୍ଧି ଓ ସତ୍ତ୍ୱାଦି ଗୁଣ ସମୂହ ଦ୍ୱାରା ସୃଷ୍ଟ ଦେବ, ତିର୍ଯ୍ୟକ୍, ମନୁଷ୍ୟଗଣ ଆପଣଙ୍କୁ ବୁଝି ନ ପାରନ୍ତି । ଆମ୍ଭେମାନେ ତ ଦେବାଦିଙ୍କ ଅପେକ୍ଷା ଅଜ୍ଞ, ଅତଏବ ଆପଣଙ୍କର ମହିମା ଅବଗତ ହେବୁ କିପରି ? । ୨୧ ।

ଯେଉଁମାନେ ଦେହଧାରୀ ଏବଂ ଆପଣଙ୍କର ମାୟାଦ୍ୱାରା ମୁଗ୍ଧ ଓ ସତ୍ତ୍ୱ, ରଜ, ତମ ତ୍ରିଗୁଣ ବୁଦ୍ଧି ପ୍ରଧାନ ତେଣୁ କେବଳ ବାହ୍ୟଜ୍ଞାନ ସମ୍ପନ୍ନ ସେମାନେ ନିଜ ହୃଦୟରେ ସମ୍ୟକ୍‌ରୂପେ ଅବସ୍ଥିତ ଆପଣଙ୍କୁ ଦେଖି ପାରନ୍ତି ନାହିଁ । ଗୁଣ ସମୂହଙ୍କୁ ଅର୍ଥାତ କେବଳ ଜାଗ୍ରତ ଓ ସ୍ୱପ୍ନାବସ୍ଥାର ବିଷୟ ସମୂହଙ୍କୁ ଦେଖନ୍ତି କିମ୍ବା କେବଳ ତମ ଦର୍ଶନ କରନ୍ତି କିନ୍ତୁ ଆପଣ ଗୁଣାତୀତ ଆପଣଙ୍କୁ ଜାଣି ପାରନ୍ତି ନାହିଁ ।୨୨।

ଆପଣ ଶୁଦ୍ଧଜ୍ଞାନ ମୂର୍ତ୍ତି ଯେଉଁମାନଙ୍କର ମାୟା ଜନିତ ଭେଦ, ମୋହ ଦୂର ହୋଇଅଛି ସେହି ସନନ୍ଦାଦି ମୁନିମାନେ ଆପଣଙ୍କୁ ଚିନ୍ତା କରି ପାରନ୍ତି, ମୁଁ ମୂଢ଼, ଆପଣଙ୍କ କିପରି ଚିନ୍ତାକରି ପାରିବି ।୨୩।

---

ନିର୍ଭିବ୍ୟ ଖାତ ପଥେ ଗଲା
ସାତାଳେ ଅଶ୍ୱକୁ ଦେଖିଲା ।୧୯।
ଦେଖିଲା କପିଳ ସମ୍ମୁଖେ
ବାନ୍ଧିଲା ଅଶ୍ୱ ଅଛି ସୁଖେ
କପିଳ ପାଦତଳେ ପଡ଼ି
ସେ ଅଂଶୁମାନ କର ଯୋଡ଼ି

ଅନେକ ସ୍ତୁତି ବାକ୍ୟ କଲା
ଚରଣ କମଳେ ପୂଜିଲା ।୨୦।
ବୋଲଇ ଶିରେ କର ଦେଇ
ହେ ନାଥ ! କର ମୋତେ ତ୍ରାହି
ଶଙ୍କର ବିରଞ୍ଚି ମହାଦେବ
ସେ କାହିଁ ଜାଣିବେ ତୋ ଭାବ

ତୁ ଜ୍ଞାନ ଘନ ମୋହ ନାଶୁ
ସଂସାର ସ୍ୱରୂପେ ପ୍ରକାଶୁ
ସନନ୍ଦ ଆଦି ମୁନି ଯେତେ
ବିଶେଷେ ସ୍ତବନ୍ତି ସେ ତୋତେ
ତୋ ରୂପ ଜୀବ ମୋକ୍ଷ ଅର୍ଥେ
ମୁଁ ତୋତେ ଜାଣିବି କେମନ୍ତେ

ପ୍ରଶାନ୍ତମାୟାଗୁଣକର୍ମ୍ମଲିଙ୍ଗମନାମରୂପଂ ସଦସଦ୍ବିମୁକ୍ତମ୍ ।
ଜ୍ଞାନୋପଦେଶାୟ ଗୃହୀତଦେହଂ ନମାମହେ ତ୍ୱାଂ ପୁରୁଷଂ ପୁରାଣମ୍ ।୨୪।
ତ୍ୱନ୍ମାୟାରଚିତେ ଲୋକେ ବସ୍ତୁବୁଦ୍ଧ୍ୟା ଗୃହାଦିଷୁ ।
ଭ୍ରମନ୍ତି କାମଲୋଭେର୍ଷାମୋହବିଭ୍ରାନ୍ତଚେତସଃ ।୨୫।
ଅଦ୍ୟ ନଃ ସର୍ବ୍ବଭୂତାତ୍ମନ୍ କାମକର୍ମ୍ମେନ୍ଦ୍ରିୟାଶୟଃ ।
ମୋହପାଶୋ ଦୃଢ଼ଶ୍ଛିନ୍ନୋ ଭଗବଂସ୍ତବ ଦର୍ଶନାତ୍ ।୨୬।
ଶ୍ରୀ ଶୁକ ଉବାଚ
ଇତ୍ଥଂ ଗୀତାନୁଭାବସ୍ତଂ ଭଗବାନ୍ କପିଲୋ ମୁନିଃ ।
ଅଂଶୁମନ୍ତମୁବାଚେଦମନୁଗ୍ରାହ୍ୟ ଧିୟା ନୃପ ।୨୭।

---

ହେ ପ୍ରଶାନ୍ତ ! ମାୟାଗୁଣ ଆପଣଙ୍କର ବଶୀଭୂତ ସୃଷ୍ଟ୍ୟାଦି କର୍ମ, ବ୍ରହ୍ମାଦିରୂପ, ଆପଣଙ୍କର ଲିଙ୍ଗ, ଆପଣ କାର୍ଯ୍ୟ କାରଣ ବିମୁକ୍ତ ତେଣୁ ନାମରୂପ ଶୂନ୍ୟ କେବଳ ଜ୍ଞାନୋପଦେଶ ନିମିତ୍ତ ଏହି ସଶରୀରମୂର୍ତ୍ତି ପ୍ରକଟିତ ହୋଇଅଛନ୍ତି । ଆପଣ ପୁରାଣ ପୁରୁଷ, ଆପଣଙ୍କୁ ମୋର ନମସ୍କାର ।୨୪।

ଆପଣଙ୍କର ମାୟା ରଚିତ କାମ, ଲୋଭ, ଈର୍ଷା, ମୋହ ପ୍ରଭୃତି ବିଷୟ ବୁଦ୍ଧି ମନୁଷ୍ୟମାନଙ୍କୁ ବିଭ୍ରମ କରାଇ ଗୃହାଦିରେ ଭ୍ରମଣ କରାଇଥାଏ ।୨୫।

ହେ ସର୍ବ୍ବଭୂତାତ୍ମା ! ହେ ଭଗବନ୍ ! ଆଜି ଆପଣଙ୍କର ଦର୍ଶନ ଲାଭ କରି ମୋର କାମ କର୍ମ ଓ ଇନ୍ଦ୍ରିୟ ଆଶ୍ରିତ ମୋହ ବନ୍ଧନ ଛିନ୍ନ ହୋଇଅଛି ।୨୬।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ ! ଅଂଶୁମାନ ଏହିପରି ଭଗବାନ କପିଳଦେବଙ୍କ ମହାତ୍ମ୍ୟ ଗାନ କରିବାରୁ ଭଗବାନ କପିଳଦେବ ଅଂଶୁମାନଙ୍କ ପ୍ରତି କୃପା ପ୍ରଦର୍ଶନ କରିଥିଲେ ।୨୭।

---

ତୋ ମାୟା ଜୀବ-ଜ୍ଞାନ ହରେ
ସଂସାରେ ବନ୍ଧ ମୁଗ୍ଧ କରେ
ଜୀବକୁ ଜ୍ଞାନ ଦେବା ଅର୍ଥେ
ତୋହର ଜନ୍ମ ଏ ଜଗତେ
ଅବିଦ୍ୟା କର୍ମ୍ମ ପଥ ଭେଦି
ତୋ ମାୟା ଗହନ ଜନିଛେ

ଜୀବନ ବନ୍ଧନ ବିଶ୍ୱାସେ
ଦାର ତନୟ ସ୍ନେହ ବାଟେ
ଏଣୁ ତୋ ଚରଣ କମଳେ
ତା ଭକ୍ତି ନ ରହେ କ୍ଷଣକେ
ଅଜ୍ଞ ନ କରିବ ମୁହିଁ
ହେ ନାଥ ! ତୋ ଚରଣ ଧ୍ୟାଇ
।୨୫,୨୬

ଶ୍ରୀ ଶୁକ ଉବାଚ—
ଏମନ୍ତ ତାର ସ୍ତୁତି ଶୁଣି
ପ୍ରସନ୍ନ ହେଲେ ଚକ୍ରପାଣି
ଅଂଶୁମାନର ମୁଖ ଚାହିଁ
ବୋଇଲେ ଅନୁଗ୍ରହ କରି

ଶ୍ରୀ ଭଗବାନୁବାଚ

ଅଶ୍ୱୋଽୟଂ ନୀୟତାଂ ବତ୍ସ ପିତାମହପଶୁସ୍ତବ ।
ଇମେ ଚ ପିତରୋ ଦଗ୍ଧା ଗଙ୍ଗାମ୍ଭୋଽର୍ହନ୍ତି ନେତରତ୍ ।୨୮।
ତଂ ପରିକ୍ରମ୍ୟ ଶିରସା ପ୍ରସାଦ୍ୟ ହୟମାନୟତ୍ ।
ସଗରସ୍ତେନ ପଶୁନା ଯଜ୍ଞଶେଷଂ ସମାପୟତ୍ । ୨୯ ।
ରାଜ୍ୟମଂଶୁମତେ ନ୍ୟସ୍ୟ ନିସ୍ପୃହୋ ମୁକ୍ତବନ୍ଧନଃ ।
ଔର୍ବୋପଦିଷ୍ଟମାର୍ଗେଣ ଲେଭେ ଗତିମନୁତ୍ତମାମ୍ । ୩୦ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ସଗରୋପାଖ୍ୟାନଂ
ନାମ ଅଷ୍ଟମୋଽଧ୍ୟାୟଃ ।

---

ଭଗବାନ୍ କପିଳଦେବ କହନ୍ତି :—

ହେ ବତ୍ସ ! ଏ ଅଶ୍ୱ ତୁମ୍ଭର ପିତାମହଙ୍କର ଯଜ୍ଞୀୟ ପଶୁ, ଏହାକୁ ନେଇଯାଅ । ତୁମ୍ଭର ପିତୃଗଣ ଦଗ୍ଧ ହୋଇଥିଲେ, ସେମାନଙ୍କର କେବଳ ଗଙ୍ଗାଜଳ ପାଇବାର ବିହିତ, ଅନ୍ୟଜଳ ନୁହେଁ ।୨୮।

ଅଂଶୁମାନ କପିଳ ମୁନିଙ୍କୁ ପ୍ରଦକ୍ଷିଣ କରି ଓ ତାହାଙ୍କୁ ପ୍ରଣାମ କରି ଓ ପ୍ରସନ୍ନ କରାଇ ଅଶ୍ୱ ଆଣିଥିଲେ । ସଗର ଏହି ଅଶ୍ୱଦ୍ୱାରା ଯଜ୍ଞାନୁଷ୍ଠାନ କରିଥିଲେ ।୨୯।

ତଦନନ୍ତର ସଗର ରାଜା ସ୍ପୃହା ଶୂନ୍ୟ ଓ ବନ୍ଧନ ମୁକ୍ତ ହୋଇ ସମସ୍ତ ରାଜ୍ୟର ଅଂଶୁମାନଙ୍କୁ ସମର୍ପଣ କରି ଔର୍ବ ଋଷିଙ୍କ ଉପଦେଶ ଅନୁସାରେ କାର୍ଯ୍ୟକାରକ ହୋଇ ପରମାଗତି ଲାଭ କରିଥିଲେ ॥

---

ଶ୍ରୀ ଭଗବାନୁବାଚ—
ହେ ପୁତ୍ର ! ଅଶ୍ୱ ନେଇ ଯାଅ
ପିତାମହର ପାଶେ ଦିଅ
ସେ ଅଶ୍ୱ ଯଜ୍ଞ ଶେଷ କରି
ମୋହ ସଂସାରୁ ଯିବ ତରି
ଏ ଯେ ତୋହର ପିତୃ କୁଳେ
ଭସ୍ମ ହୋଇଲେ କୋପାନଳେ
ଏହାଙ୍କ ମୋକ୍ଷ ଗଙ୍ଗା ଜଳେ
ଅନ୍ୟଥା ନାହିଁ ଏକାଳକେ ।୨୭,୨୮

ଏମନ୍ତ କପିଳ ବଚନେ
ସେ ଅଂଶୁମାନ ତୋଷମନେ
ତତକ୍ଷଣେ ଅଶ୍ୱକୁ ଆଣିଲ
ପିତାମହର ପାଶେ ଦେଲ
ସେ ଅଶ୍ୱ ମାଂସେ ଯଜ୍ଞ କରି
ବଷମ ସଙ୍କଟୁ ଉତ୍ତରି
ଅଂଶୁମାନକୁ ରାଜ୍ୟ ଦେଇ
କର୍ମ ବନ୍ଧନୁ ମୋକ୍ଷ ହୋଇ
ଔର୍ବ ବଚନେ ବନେ ଗଲ
ଅନ୍ତେ ସେ ଗୋବିନ୍ଦ ପାଇଲ ।୨୯-୩୦

ବୋଲଇ ଦାସ ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ସୁଜନେ ଶୁଣନ୍ତୁ ଶ୍ରବଣେ
ସେ ହରି ରସ ଅନୁଭବେ
ଅବିଦ୍ୟାବନ୍ଧୁ ପାରି ହୋଇ
ଅନ୍ତେ ପାଇବ ବ୍ରହ୍ମସ୍ଥା ।



## ନବମୋଽଧ୍ୟାୟଃ

ନବମେଽଂଶୁମତୋ ବଂଶଃ ଖଟ୍ୱାଙ୍ଗାବଧି ବର୍ଣ୍ଣ୍ୟତେ ।
ଗଙ୍ଗାଂ ଭୂତଳମାନନେ୍ୟ ଯସ୍ୟ ପୌତ୍ରୋ ଭଗୀରଥଃ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ

ଅଂଶୁମାଂଶ୍ଚ ତପସ୍ତେପେ ଗଙ୍ଗାନୟନକାମ୍ୟୟା ।
କାଳଂ ମହାନ୍ତଂ ନାଶକ୍ନୋତ୍ତତଃ କାଳେନ ସଂସ୍ଥିତଃ । ୧ ।
ଦଲୀପସ୍ତତ୍ସୁତସ୍ତଦ୍ୱଦଶକ୍ତଃ କାଳମେୟିବାନ୍ ।
ଭଗୀରଥସ୍ତସ୍ୟ ସୁତସ୍ତେପେ ସ ସୁମହତ୍ ତପଃ । ୨ ।
ଦର୍ଶୟାମାସ ତଂ ଦେବୀ ପ୍ରସନ୍ନା ବରଦାସ୍ମିତେ ।
ଇତ୍ୟୁକ୍ତଃ ସ୍ୱମଭିପ୍ରାୟଂ ଶଶଂସାବନତୋ ନୃପଃ । ୩ ।

---

### ଅଂଶୁମାନ ବଂଶ ବିବରଣ, ଭଗୀରଥଙ୍କର ଗଙ୍ଗା ଆନୟନ ଓ ସଗର ବଂଶ ଉଦ୍ଧାର

ନବମ ଅଧ୍ୟାୟରେ ଅଂଶୁମାନଙ୍କର ବଂଶ ଖଟ୍ୱାଙ୍ଗ ରାଜାଙ୍କ ପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇ ଭଗୀରଥ ଗଙ୍ଗାଙ୍କୁ ସ୍ୱର୍ଗରୁ ପୃଥିବୀକୁ ଆଣିବା ବର୍ଣ୍ଣିତ ହୋଇଅଛି ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ଗଙ୍ଗାଙ୍କୁ ଆଣିବା ନିମନ୍ତେ ଅଂଶୁମାନ ବହୁକାଳ ତପସ୍ୟା କରି ମଧ୍ୟ ଆଣି ପାରିଲେ ନାହିଁ । ପରେ କାଳବଶତଃ ମୃତ୍ୟୁ ଲଭିଲେ ।୧।

ତାହାଙ୍କର ପୁତ୍ର ଦଳୀପ ସେହିପରି ବହୁକାଳ ତପସ୍ୟା କରି ମଧ୍ୟ ଗଙ୍ଗାଙ୍କୁ ଆଣିପାରିଲେ ନାହିଁ । ତାହାଙ୍କର ମଧ୍ୟ ମୃତ୍ୟୁ ହେଲା, ଦଳୀପଙ୍କର ପୁତ୍ର ଭଗୀରଥ ଗଙ୍ଗାଙ୍କୁ ଆଣିବା ନିମନ୍ତେ ତପସ୍ୟା କଲେ ।୨।

ଗଙ୍ଗାଦେବୀ ପ୍ରସନ୍ନ ହୋଇ ଭଗୀରଥଙ୍କୁ ଦର୍ଶନ ଦେଲେ ଏବଂ କହିଲେ ମୁଁ ବରଦାନ କରିବାକୁ ଆସିଅଛି । ତୁମ୍ଭେ ବର ପ୍ରାର୍ଥନା କର । ସେତେବେଳେ ପୂର୍ବ ପୁରୁଷମାନଙ୍କ ମୋକ୍ଷ ନିମିତ୍ତ ଭଗୀରଥ ନିଜର ଅଭିପ୍ରାୟ ଜ୍ଞାପନ କରିଥିଲେ ।୩।

---

ଅଂଶୁମାନର ବଂଶ କଥା, ନବମ ଅଧ୍ୟାୟ ବ୍ୟବସ୍ଥା ॥

ଶ୍ରୀ ଶୁକ ଉବାଚ—
ଏବେ ହୋ ଶୁଣ ନୃପମଣି ।
କପିଳ ମୁଖୁଁ ବାକ୍ୟ ଶୁଣି
ସେ ଅଂଶୁମାନ ଘୋର ବନେ
ବସିଲ କଣ୍ଟକ ଆସନେ
ମନ ପବନ ସଂଯମନେ
ଫଳକାନ୍ତ ଗଙ୍ଗାର ଆଗମେ

ଅନେକ କାଳ ତପ କଲା
ସେ ବନେ ପ୍ରାଣ ଉତ୍ସର୍ଗିଲା ।୧।
ସେ ରୂପେ ଦଳୀପ ତା ସୁତ
ତାର କୁମର ଭଗୀରଥ
ସେ ତପ କଲା ଘୋରବନେ
ବସିଲା କଣ୍ଟକ ଆସନେ । ୨ ।
ତାହାର ତପ ବଳ ଭାବି
ସନ୍ତୋଷେ ମିଳିଲେ ଜାହ୍ନବୀ

ବୋଲନ୍ତି ପ୍ରସନ୍ନ ବଦନେ
ବର ତୁ ମାଗ ତୋଷମନେ
ତକ୍ଷଣେ ଶିରେ ଦେଇ କର
ବୋଲଇ ମୋ ପିତୃ ଉଦ୍ଧର
କପିଳ ଶାପେ ଦଗ୍ଧ ହୋଇ
ତାହାଙ୍କ ଅନ୍ୟଗତି ନାହିଁ । ୩ ।

କୋଽପି ଧାରୟିତା ବେଗଂ ପତନ୍ତ୍ୟା ମେ ମହୀତଳେ ।
ଅନ୍ୟଥା ଭୂତଳଂ ଭିତ୍ୱା ନୃପ ଯାସ୍ୟେ ରସାତଳମ୍ । ୪ ।
କିଞ୍ଚାହଂ ନ ଭୁବଂ ଯାସ୍ୟେ ନରା ମଯ୍ୟାମୃଜନ୍ତ୍ୟଘମ୍ ।
ମୃଜାମି ତଦଘଂ କ୍ୱାହଂ ରାଜଂସ୍ତତ୍ର ବିଚିନ୍ତ୍ୟତାମ୍ । ୫ ।

ଶ୍ରୀ ଭଗୀରଥ ଉବାଚ

ସାଧବୋ ନ୍ୟାସିନଃ ଶାନ୍ତା ବ୍ରହ୍ମିଷ୍ଠା ଲୋକପାବନାଃ ।
ହରନ୍ତ୍ୟଘଂ ତେଽଙ୍ଗସଙ୍ଗାତ୍ ତେଷ୍ୱାସ୍ତେ ହ୍ୟଘଭିଦ୍ଧରିଃ । ୬ ।
ଧାରୟିଷ୍ୟତି ତେ ବେଗଂ ରୁଦ୍ରସ୍ତ୍ୱାତ୍ମା ଶରୀରିଣାମ୍ ।
ଯସ୍ମିନ୍ନୋତମିଦଂ ପ୍ରୋତଂ ବିଶ୍ୱଂ ଶାଟୀବ ତନ୍ତୁଷୁ । ୭ ।

---

ଗଙ୍ଗା କହିଲେ :—

ହେ ରାଜନ୍ ! ମୁଁ ଯେତେବେଳେ ଭୂତଳରେ ପତିତ ହେବି ସେତେବେଳେ ମୋର ବେଗ ସମ୍ଭାଳିବ କିଏ ? ଯଦି କେହି ମୋର ବେଗଧାରଣ କରି ନ ପାରେ ତା ହେଲେ ମୁଁ ଭୂତଳ ଭେଦ କରି ରସାତଳକୁ ଗମନ କରିବି ।୪।

ମୁଁ ଭୂତଳକୁ ଇଚ୍ଛୁକ ନୁହେଁ କାରଣ ମନୁଷ୍ୟମାନେ ମୋଠାରେ ପାପ କ୍ଷାଳନ କରିବେ । ହେ ରାଜନ ! ମୁଁ ଏହି ସବୁ ପାପ କେଉଁଠାରେ ଧୋଇବି ତହିଁର ଉପାୟ ଚିନ୍ତାକର ।୫।

ଭଗୀରଥ କହିଲେ :—

ଦେବି ! ସନ୍ନ୍ୟାସୀ, ବ୍ରହ୍ମନିଷ୍ଠ, ଶାନ୍ତ, ଜଗତ୍‌ପାବନ ସାଧୁଗଣଙ୍କର ଅଙ୍ଗ ସଙ୍ଗ ଦ୍ୱାରା ଆପଣଙ୍କର ପାପ ହରଣ ହୋଇଯିବ କାରଣ ସେମାନଙ୍କ ଅନ୍ତରରେ ପାପହାରୀ ଭଗବାନ୍ ହରି ବିରାଜମାନ ଅଛନ୍ତି ।୬।

ଦେହଧାରୀମାନଙ୍କର ଆତ୍ମରୂପୀ ରୁଦ୍ରଦେବ ତୁମ୍ଭର ବେଗଧାରଣ କରିବେ । ସେହି ରୁଦ୍ରଦେବ ଏହି ବିଶ୍ୱ ସୂତ୍ରରେ ଯେପରି ଶାଢ଼ୀ ବା ବସ୍ତ୍ରପରି ଓତପ୍ରୋତ ହୋଇ ରହି ଅଛନ୍ତି ।୭।

---

ଶୁଣି ବୋଲନ୍ତି ଭଗବତୀ
କେ ସହିପାରେ ମୋର ଗତି
ଗଗନୁ ଭୂମିରେ ପଡ଼ନ୍ତେ
ଭୂମି ନାଶିବ ମୋର ଘାତେ
ପାତାଳେ ପଶିଯିବି ମୁହିଁ
ମୋତେ ଧାରଣେ କେହି ନାହିଁ ।୪
କି ଅବା ଭୂମିକି ମୁଁ ଗଲେ
ମନୁଷ୍ୟ ମୋର ଜଳେ ଭଲେ
ଧୋଇବେ ପାପ, ତାହା ମୁହିଁ
ଧୋଇବି କାହିଁ ଚିନ୍ତ ତୁହି
ବିଷ୍ଣୁର ଆଜ୍ଞା ପରମାଣ
କି ଗଲେ ନାହିଁ ପରିତ୍ରାଣ । ୫ ।

ଶ୍ରୀ ଭଗୀରଥ ଉବାଚ—

ସାଧୁ ସନ୍ନ୍ୟାସୀ ଶାନ୍ତ ଦାନ୍ତ
ବ୍ରହ୍ମିଷ୍ଠ ଶୁଚି ଦୟାବନ୍ତ
ଏହାଙ୍କ ଅଙ୍ଗ ସଙ୍ଗ ଫଳେ
ପାପ ହରଇ ଭୂମିତଳେ
ତୁମ୍ଭର ପାପ ବିନାଶନେ
କ୍ଷେମ କରୋଇବେ ସେମାନେ ।୬
ତୋ ବେଗ ହର ଅବା ସହେ
ଯେ ହରି ବିଶ୍ୱ ଆତ୍ମା ବହେ
ରୁଦ୍ରର ଦେହେ ଏ ଜଗତ
ବସନ ପ୍ରାୟେ ଓତପ୍ରୋତ
ତୋହର ବେଗ ସହିବାରେ
ତା ବିନା ଅଛି କେ ଅପରେ ।୭।

ଇତ୍ୟୁକ୍ତ୍ୱା ସ ନୃପୋ ଦେବଂ ତପସାଽତୋଷୟଚ୍ଛିବମ୍ ।
କାଳେନାଲ୍ପୀୟସା ରାଜଂସ୍ତସ୍ୟେଶଶ୍ଚାଶ୍ୱତୁଷ୍ୟତ । ୮ ।
ତଥେତି ରାଜ୍ଞାଭିହିତଂ ସର୍ବଲୋକହିତଃ ଶିବଃ ।
ଦଧାରାବହିତୋ ଗଙ୍ଗାଂ ପାଦପୂତଜଳାଂ ହରେଃ । ୯ ।
ଭଗୀରଥଃ ସ ରାଜର୍ଷିର୍ନିନ୍ୟେ ଭୁବନପାବନୀମ୍ ।
ଯତ୍ର ସ୍ୱପିତୃଣାଂ ଦେହା ଭସ୍ମୀଭୂତାଃ ସ୍ମ ଶେରତେ । ୧୦ ।
ରଥେନ ବାୟୁବେଗେନ ପ୍ରୟାନ୍ତମନୁଧାବତୀ ।
ଦେଶାନ୍ ପୁନନ୍ତୀ ନିର୍ଦଗ୍ଧାନାସିଞ୍ଚତ୍ ସଗରାତ୍ମଜାନ୍ । ୧୧ ।
ଯଜ୍ଜଳସ୍ପର୍ଶମାତ୍ରେଣ ବ୍ରହ୍ମଦଣ୍ଡହତା ଅପି ।
ସଗରାତ୍ମଜା ଦିବଂ ଜଗ୍ମୁଃ କେବଳଂ ଦେହଭସ୍ମଭିଃ । ୧୨ ।

---

ହେ ରାଜନ୍ ! ରାଜା ଭଗୀରଥ ଏହି କଥା କହି ଶିବଙ୍କୁ ତପସ୍ୟା ଦ୍ୱାରା ସନ୍ତୁଷ୍ଟ କରିଥିଲେ ଏବଂ ଦେବ ଦେବ ଶିବ ଭଗୀରଥଙ୍କ ପ୍ରତି ସହସା ତୁଷ୍ଟ ହେଲେ । ୮ ।

ସର୍ବଲୋକ ହିତକାରୀ ଶଙ୍କର 'ତଥାସ୍ତୁ' ବୋଲି ଭଗୀରଥଙ୍କର ବାକ୍ୟରେ ସ୍ୱୀକାର କରି ସଂଯତ ହୋଇ ବିଷ୍ଣୁ ପାଦ ସ୍ପର୍ଶରେ ପବିତ୍ରୀକୃତା ଗଙ୍ଗାଙ୍କୁ ମସ୍ତକରେ ଧାରଣ କରିଥିଲେ । ୯ ।

ଯେଉଁଠାରେ ନିଜର ପିତୃଗଣଙ୍କର ଦେହ ପଡ଼ିଥିଲା ସେଠାକୁ ଜଗତ୍ପାବନୀ ଗଙ୍ଗାଙ୍କୁ ଘେନିଗଲେ । ୧୦ ।

ଭଗୀରଥ ବାୟୁବେଗରେ ରଥାରୋହଣ କରି ଗମନ କଲେ ଗଙ୍ଗାଦେବୀ ପଛେ ପଛେ ଧାବମାନା ହୋଇ ଦେଶମାନ ପବିତ୍ର କରି ଯେଉଁଠାରେ ସଗର ପୁତ୍ରମାନେ ଭସ୍ମୀଭୂତ ହୋଇ ପଡ଼ିଥିଲେ ସେଠାରେ ସେମାନଙ୍କୁ ଅଭିଷିକ୍ତ କରିଥିଲେ । ୧୧ ।

ବ୍ରାହ୍ମଣମାନଙ୍କ ନିକଟରେ ଅପରାଧ କରି ଦଣ୍ଡହତ ସାଗର ତନୟଗଣ ଭସ୍ମଦେହ ହୋଇ ପଡ଼ିଥିଲେ । ଗଙ୍ଗାଙ୍କ ଜଳ ସ୍ପର୍ଶରେ ସ୍ୱର୍ଗକୁ ଗମନ କରିଥିଲେ । ୧୨ ।

---

ଗଙ୍ଗା ବୋଇଲେ ଏହି ସତ
କେବେ ତୁ ସେବ ବିଶ୍ୱନାଥ
ଏମନ୍ତେ ଗଙ୍ଗା ବାଣୀ ଶୁଣି
ଆନନ୍ଦେ ଗଲା ନୃପମଣି
ସେବିଲା ରୁଦ୍ରର ଚରଣେ
ପିତୃଙ୍କ ଉଦ୍ଧାର କାରଣେ
ସେ ଭଗୀରଥ ତପ ବଳେ
ଶିବ ସନ୍ତୋଷ ଅଳ୍ପ କାଳେ
ବୋଲନ୍ତି ଧରିବି ମୁଁ ଶିରେ
ଜଟା କଳାପ ଅଭ୍ୟନ୍ତରେ । ୮ ।

ଜାହ୍ନବୀ ଈଶ୍ୱର ବଚନେ
ତକ୍ଷଣେ ସ୍ରବିଲା ଗଗନେ
ସ୍ୱଭାବେ ବିଷ୍ଣୁ ପାଦ ଜଳ
ସୁପୁଣ୍ୟ ଶୁଭ ସୁନିର୍ମଳ
ଜଟାରେ ପୂରିଲା ଜଟାଧର
ଧାରାଏ ଭିନ୍ନିଲା ଶରୀର
ରୁଦ୍ର ଶରୀରୁ ଜଳ ରାଶି
ବହିଲା ଭୂମିତଳେ ଆସି । ୯ ।
ଯେ ଗଙ୍ଗା ଭୁବନ-ପାବନୀ
ତକ୍ଷଣେ ଭଗୀରଥ ଘେନି

ବସିଲା ବାୟୁ ବେଗ ରଥେ
ଗଙ୍ଗା ତାହାର ଅନୁପଥେ
ପବିତ୍ର କରେ ବେନି ପାଶେ
ଲଗିଲା ଯେତେ ଯେତେ ଦେଶେ
ଧରଣୀ ବିବରେ ପଶିଲା
କପିଳ ଆଶ୍ରମ ମିଳିଲା
ସଗର ସୁତେ ଯହିଁ ମିଳ
ଅନଳେ ଯାଇଥିଲେ ଜଳ
ଜଳ ପଶିଲା ତାଙ୍କ ମଧ୍ୟେ
ତକ୍ଷଣେ ପରମ ଆନନ୍ଦେ

ଭସ୍ମୀଭୂତାଙ୍ଗସଙ୍ଗେନ ସ୍ୱର୍ଯାତାଃ ସଗରାତ୍ମଜାଃ ।
କିଂ ପୁନଃ ଶ୍ରଦ୍ଧୟା ଦେବୀଂ ସେବନ୍ତେ ଯେ ଧୃତବ୍ରତାଃ ।୧୩।
ନହ୍ୟେତତ୍ ପରମାଶ୍ଚର୍ଯ୍ୟଂ ସ୍ୱର୍ଧୁନ୍ୟା ଯଦହୋଦିତମ୍ ।
ଅନନ୍ତଚରଣାମ୍ଭୋଜପ୍ରସୂତାୟା ଭବଚ୍ଛିଦଃ । ୧୪ ।
ସନ୍ନିବେଶ୍ୟ ମନୋ ଯସ୍ମିନ୍ ଶ୍ରଦ୍ଧୟା ମୁନୟୋଽମଳାଃ ।
ତ୍ରୈଗୁଣ୍ୟଂ ଦୁସ୍ତ୍ୟଜଂ ହିତ୍ୱା ସଦ୍ୟୋଯାତାସ୍ତଦାତ୍ମତାମ୍ ।୧୫।
ଶ୍ରୁତୋ ଭଗୀରଥାଜ୍ଜଜ୍ଞେ ତସ୍ୟ ନାଭୋଽପରୋଽଭବତ୍ ।
ସିନ୍ଧୁଦ୍ୱୀପସ୍ତତସ୍ତସ୍ମାଦୟୁତାୟୁସ୍ତତୋଽଭବତ୍ । ୧୬ ।
ଋତୁପର୍ଣ୍ଣୋ ନଳସଖୋ ଯୋଽଶ୍ୱବିଦ୍ୟାମୟାନ୍ନଳାତ୍ ।
ଦତ୍ତ୍ୱାକ୍ଷହୃଦୟଞ୍ଚାସ୍ମୈ ସର୍ବକାମସ୍ତୁ ତତ୍ସୁତଃ । ୧୭ ।

---

ଭସ୍ମୀଭୂତ ଅଙ୍ଗଦ୍ୱାରା ଗଙ୍ଗାଙ୍କୁ ସ୍ପର୍ଶ କରି ସ୍ୱର୍ଗ ଗମନ କରନ୍ତେ ସଗର ତନୟଗଣ ବିଧିପୂର୍ବକ ଶ୍ରଦ୍ଧା ସହକାରେ ଗଙ୍ଗାଙ୍କୁ ସେବା କରିଥିଲେ ଏବଂ ସେମାନଙ୍କ ସମ୍ବନ୍ଧ ଆଉ କ'ଣ ବକ୍ତବ୍ୟ ଅଛି ସେମାନେ ଅବଶ୍ୟ ସ୍ୱର୍ଗ ଗମନ କରନ୍ତେ ।୧୩।

ବିଷ୍ଣୁ ପାଦପଦ୍ମ ସମ୍ଭୂତା ବିଷୟ ବାସନା ବିନାଶକାରିଣୀ ସୁରଧୁନୀ ଗଙ୍ଗାଙ୍କ ସମ୍ବନ୍ଧେ ଏ ଯେଉଁ ମହାତ୍ମ୍ୟ କୀର୍ତ୍ତନ କଲି ତହିଁରେ ଆଶ୍ଚର୍ଯ୍ୟ କିଛି ନାହିଁ ।୧୪।

ନିର୍ମଳାନ୍ତଃକରଣ ମୁନିମାନେ ଶ୍ରଦ୍ଧାପୂର୍ବକ ନିବିଷ୍ଟ ଚିତ୍ତରେ ଦୁସ୍ତ୍ୟଜ, ତ୍ରିଗୁଣାତ୍ମକ ଦେହ ସମ୍ବନ୍ଧ ପରିତ୍ୟାଗ କରି ବିଷ୍ଣୁଲୋକ ପ୍ରାପ୍ତ ହୋଇଥାନ୍ତି ।୧୫।

ଭଗୀରଥଙ୍କର ପୁତ୍ର ଶ୍ରୁତ, ତାହାଙ୍କର ପୁତ୍ର ନାଭ, ନାଭଙ୍କର ପୁତ୍ର ସିନ୍ଧୁଦ୍ୱୀପ, ସିନ୍ଧୁଦ୍ୱୀପଙ୍କର ପୁତ୍ର ଅୟୁତାୟୁ, ତାହାଙ୍କର ପୁତ୍ର ଋତୁପର୍ଣ୍ଣ, ନଳ ଋତୁପର୍ଣ୍ଣଙ୍କର ପରମ ବନ୍ଧୁ ଥିଲେ ଏବଂ ଋତୁପର୍ଣ୍ଣ ନଳଙ୍କୁ ଅକ୍ଷହୃଦୟ ଅର୍ଥାତ୍ ଦ୍ୟୂତବିଦ୍ୟା ରହସ୍ୟ ପ୍ରଦାନ କରିଥିଲେ ଏବଂ ଋତୁପର୍ଣ୍ଣ ନଳଙ୍କଠାରୁ ଅଶ୍ୱବିଦ୍ୟା ଲାଭ କରିଥିଲେ । ଋତୁପର୍ଣ୍ଣଙ୍କର ପୁତ୍ର ସର୍ବକାମ ।୧୬, ୧୭।

---

ଜ୍ୟୋତି ସ୍ୱରୂପେ ସ୍ୱର୍ଗେ ଗଲେ
ଶୁନ୍ୟଦେଶନ୍ତ ଦଗପାଳେ ।୧୦-୧୨
କପିଳ ମୁନି କୋପାନଳ
ଦହିଲି ଭୁବନ ମଣ୍ଡଳ
ସେ ଜଳ ସ୍ପରଶନ ମାତ୍ରେ
କୁରିତ ନ ରହିଲ ଗାତ୍ରେ
ଅନନ୍ତ ଚରଣ ସ୍ମରଣେ
ଗଙ୍ଗା ସ୍ୱରଷେ ପାପ ନାଶେ
ଯେ ଗଙ୍ଗାଜଳେ ଦେଇ ମନ
ଭିବି କରିଲେ ମୁନିଜନ ।୧୩-୧୫

ଏବେ ହୋ ଶୁଣ ସାବଧାନ ।
ତପନ ବଂଶାନୁ ଚରିତ
ସେ ଭଗୀରଥର ତନୟେ
ସମ୍ଭବେ ଶ୍ରୁତ ନାମ ହୋଏ
ନାଭି ତାହାର ସୁତ ହୋଏ
ଅଶେଷ ଗୁଣ ଯାର ଦେହେ
ସିନ୍ଧୁଦ୍ୱୀପ ଯେ ତାର ପୁତ୍ର
ତାଠାରୁ ଅୟୁତାୟୁ ଜାତ ।୧୬।

ତା ସୁତ ଋତୁପର୍ଣ୍ଣ ଲେଖା
ନଳ ଯାହାର ପ୍ରାଣ ସଖା
ଅକ୍ଷ କ୍ରୀଡ଼ାରେ ଗରୁ ଜ୍ଞାଣ
ନଳକୁ ଶିଖାଇ ସୁଜନ
ଅଶ୍ୱ ବିଦ୍ୟାକୁ ନିତ ନେଇ
ବନେ ପଶିଲ ତପ ଧାଇ
ତାର କୁମର ସର୍ବକାମ
ସର୍ବ ବିଦ୍ୟାରେ ଗୁଣଧାମ ।୧୭।

ତତଃ ସୁଦାସସ୍ତତ୍ପୁତ୍ରୋ ମଦୟନ୍ତୀପତିର୍ନୃପଃ ।
ଆହୁର୍ମିତ୍ରସହଂ ଯଂ ବୈ କଲ୍ମାଷାଙ୍ଘ୍ରିମୁତ କ୍ୱଚିତ୍ ।
ବଶିଷ୍ଠଶାପାଦ୍ରକ୍ଷୋଽଭୂଦନପତ୍ୟଃ ସ୍ୱକର୍ମଣା । ୧୮ ।

ଶ୍ରୀ ରାଜୋବାଚ

କିଂନିମିତ୍ତୋ ଗୁରୋଃ ଶାପଃ ସୌଦାସସ୍ୟ ମହାତ୍ମନଃ ।
ଏତଦ୍‌ବେଦିତୁମିଚ୍ଛାମଃ କଥ୍ୟତାଂ ନ ରହୋ ଯଦି ।୧୯।

ଶ୍ରୀ ଶୁକ ଉବାଚ

ସୌଦାସୋ ମୃଗୟାଂ କିଞ୍ଚିଚ୍ଚରନ୍ ରକ୍ଷୋ ଜଘାନ ହ ।
ମୁମୋଚ ଭ୍ରାତରଂ ସୋଽଥ ଗତଃ ପ୍ରତିଚିକୀର୍ଷୟା । ୨୦ ।

---

ସର୍ବକାମଙ୍କର ପୁତ୍ର ସୁଦାସ, ସୁଦାସଙ୍କର ପୁତ୍ର ସୌଦାସ, ସେ ମଦୟନ୍ତୀଙ୍କର ପତି ଥିଲେ । କେହି କେହି ତାହାଙ୍କୁ ମିତ୍ରସହ ଏବଂ କେହି କେହି କଲ୍ମାଷପାଦ ବୋଲି କହିଥାନ୍ତି । ନିଜ କର୍ମ ଦୋଷରେ ଓ ବଶିଷ୍ଠଙ୍କ ଶାପରେ ସେ ସନ୍ତାନହୀନ ଓ ରାକ୍ଷସ ସ୍ୱଭାବପନ୍ନ ହୋଇଥିଲେ ।୧୮।

ଶ୍ରୀ ରାଜା ପରୀକ୍ଷିତ କହିଲେ :—

ହେ ଗୁରୋ ! ମହାତ୍ମା ସୌଦାସଙ୍କ ପ୍ରତି କି ହେତୁ ଗୁରୁ ବଶିଷ୍ଠ ଅଭିଶାପ ଦେଇଥିଲେ ତାହା ଯଦି ତାହା ଗୋପନୀୟ ନ ହେଲେ ମୋ ନିକଟରେ ପ୍ରକାଶ କରନ୍ତୁ ।୧୯।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଏକଦା ରାଜା ସୌଦାସ ମୃଗୟା କରିବାକୁ ଅରଣ୍ୟ ମଧ୍ୟରେ ପ୍ରବେଶ କରି ଗୋଟିଏ ରାକ୍ଷସକୁ ବଧ କରିଥିଲେ କିନ୍ତୁ ତାହାର ଭାଇକୁ ବଧ କରି ନ ଥିଲେ । ସେ ଭ୍ରାତୃହନ୍ତା ପ୍ରତି ପ୍ରତିହିଂସା ପୂର୍ଣ୍ଣ ହୋଇଥିଲା ।୨୦।

---

ସୁଦାସ ତାହାର ସନ୍ତତି
ତା ପୁତ୍ର ମଦୟନ୍ତୀ ପତି
ତାହାର ମିତ୍ରସହ ନାମ
କଲ୍ମାଷପଦ ପୁଣି ନାମ
ବଶିଷ୍ଠ ଗୁରୁ ଶାପ ପାଇ
ବନେ ରାକ୍ଷସ ଦେହ ବହି
ସ୍ୱକର୍ମେ ଅପୁତ୍ର ହୋଇଲା
କୋପେ ବ୍ରାହ୍ମଣୀ ଶାପଦେଲା ।୧୮।
ଏ କଥା ଶୁକ ମୁଖୁଁ ଶୁଣି
ବୋଲେ ପରୀକ୍ଷ ନୃପମଣି
ମହାତ୍ମା ସୌଦାସ କେମନ୍ତେ
ରାକ୍ଷସ ହୋଇଲା ବନସ୍ତେ

କିବା ଅନୀତି ଆଚରିଲା
ଅପୁତ୍ର କି ଗୁରୁଶାପେ ହୋଇଲା
ଏ କଥା କହ ମୁନିବର
ମୁଁ ଯେତେବେ ସେବକ ତୋହର ।୧୯।

ଶ୍ରୀ ଶୁକ ଉବାଚ —

ଶୁକ କହନ୍ତି ରାଜା ଶୁଣ
ଶୁଣ ହୋ ସାବଧାନ ହୋଇ
ସୌଦାସ ଚରିତ ଅଦ୍ଭୁତ
ଭିଆଇଲା କର୍ମର ଆୟତ୍ତ
ବନେ ରାକ୍ଷସ ବେନି ଭାଇ
ବୁଲନ୍ତି ନରମାଂସ ଖାଇ

ସୌଦାସ ରାଜା ଶସ୍ତ୍ରହସ୍ତେ
ବନେ ପଶିଲା ମୃଗ ଅର୍ଥେ
ସେ ବନେ ଥିଲେ ବେନି ଭାଇ
ରାକ୍ଷସ ବ୍ୟାଘ୍ର ରୂପ ହୋଇ
ତହୁଁ ମାଇଲା ବ୍ୟାଘ୍ର ଏକ
ତାର ଭାଇର କର୍ମ ଦେଖି
ରାକ୍ଷସ ଭାଇ ବ୍ୟାଘ୍ର ରୂପେ
ମିଳିଲା ସୌଦାସ ସମୀପେ
ବୋଲଇ ରାଜା ମୁଖ ଚାହିଁ
ତୁ ଯେ ମାଇଲୁ ମୋର ଭାଇ
ଏବେ ତୁ ନିଜପୁରେ ଚଳ
ମୁହିଁ କରିବି ପ୍ରତିଫଳ । ୨୦ ।

ସଞ୍ଜନ୍ତ୍ୟନ୍ନ୍ୟଘଂ ରାଜ୍ଞଃ ସୂଦରୂପଧରୋ ଗୃହେ ।
ଗୁରବେ ଭୋକ୍ତୁକାମାୟ ପକ୍ତ୍ୱା ନିନ୍ୟେ ନରାମିଷମ୍ । ୨୧ ।
ପରିବେକ୍ଷମାଣଂ ଭଗବାନ୍ ବିଲୋକ୍ୟାଭକ୍ଷ୍ୟମଞ୍ଜସା ।
ରାଜାନମଶପତ୍‌କ୍ରୁଦ୍ଧୋ ରକ୍ଷୋ ହ୍ୟେବଂ ଭବିଷ୍ୟସି । ୨୨ ।
ରକ୍ଷଃକୃତଂ ତଦ୍‌ବିଦିତ୍ୱା ଚକ୍ରେ ଦ୍ୱାଦଶବାର୍ଷିକମ୍ ।
ସୋଽପ୍ୟପୋଞ୍ଜଲିମାଦାୟ ଗୁରୁଂଶପ୍ତୁଂ ସମୁଦ୍ୟତଃ । ୨୩ ।

---

ସେହି ରାକ୍ଷସ ରାଜାଙ୍କର ଅନିଷ୍ଟ କରିବା ଉଦ୍ଦେଶ୍ୟରେ ପାଚକରୂପ ଧାରଣ କରି ତାହାଙ୍କ ଗୃହରେ ରହିଲା । ଦିନେ ବଶିଷ୍ଠ ଭୋଜନ କରିବା ଉଦ୍ଦେଶ୍ୟରେ ଉପସ୍ଥିତ ହୋଇଥିଲେ । ସେହି ପାଚକ ରୂପଧାରୀ ରାକ୍ଷସ ନରମାଂସ ରନ୍ଧନ କରି ବଶିଷ୍ଠଙ୍କୁ ଦେଇଥିଲା ।୨୧।

ଯୋଗ ପ୍ରଭାବଶାଳୀ ଭଗବାନ୍ ବଶିଷ୍ଠ ଅଭକ୍ଷ ନରମାଂସ ପରିବେଷଣ ହେଉଥିବାର ଦେଖି କ୍ରୁଦ୍ଧ ହୋଇ ରାଜାଙ୍କ ପ୍ରତି ଅଭିଶାପ ଦେଲେ ଯେ ତୁମ୍ଭେ ମଧ୍ୟ ଏହିପରି ନରମାଂସ ଭକ୍ଷଣ କରି ରାକ୍ଷସ ସ୍ୱଭାବପନ୍ନ ହେବ ।୨୨।

(ମାତ୍ର) ପରେ ଏହା ରାଜାଙ୍କର ଅପରାଧ ନୁହେଁ ରାକ୍ଷସ କୃତ କର୍ମ ଏବଂ ରାଜାଙ୍କୁ ଅକାରଣରେ ଅଭିଶାପ ଦେଇଅଛନ୍ତି ଏହା ଜାଣିପାରି ପାପକ୍ଷାଳନ ନିମିତ୍ତ ଦ୍ୱାଦଶବର୍ଷ ବ୍ୟାପୀ ବ୍ରତ ଆଚରଣ କରିଥିଲେ ଏବଂ ରାଜା ମଧ୍ୟ ଅକାରଣରେ ଅଭିଶପ୍ତ ହୋଇ ଗୁରୁଙ୍କୁ ଶାପ ଦେବାଲାଗି ହସ୍ତରେ ଜଳ ଗଣ୍ଡୁଷ ଧାରଣ କରିଥିଲେ ।୨୩।

---

ଏମନ୍ତେ ରାଜାଗୃହେ ଗଲା
ଶୁଣ ହେ ଅଭିମନ୍ୟୁ-ବଳା !
ଏମନ୍ତେ ଗଲା ଦିନାକେତେ
ବଶିଷ୍ଠ ନୃପତି ଅଗ୍ରତେ
ବୋଇଲେ କ୍ଷୁଧାର ଆତୁରେ
ଆମିଷ ଭକ୍ଷ ଦିଅ ମୋରେ
ବୋଲନ୍ତି ନୃପତି ଅଗ୍ରତେ
ମାଂସ ଭୋଜନ ଦିଅ ମୋତେ
ଏମନ୍ତ କହି ମୁନି ଗଲେ
ସନ୍ଧ୍ୟାର ଅର୍ଥେ ଗଙ୍ଗାଜଳେ
ବଶିଷ୍ଠ ଆଗମନ ଶୁଣି
ସୂପକାରଙ୍କୁ ସେ ଅଣାଇ
ବୋଲଇ ମାଂସ ପାକ କରି
ଭୁଞ୍ଜିବେ ବ୍ରହ୍ମାଙ୍କ କୁମର
ଶୁଣି ସୂପକାର ସମସ୍ତେ
ଆମିଷ ରାନ୍ଧିଲେ ତୁରିତେ
ଉତ୍ତମ ପଶୁଙ୍କର ମାଂସ
ଯେଣେ ବଶିଷ୍ଠ ମନ ତୋଷ
ତାହାଙ୍କ ମଧ୍ୟେ ବିପ୍ର ରୂପେ
ରାକ୍ଷସ ଥାଇ ଥିଲା ଗୋପ୍ୟେ
ସେ ନର ମାଂସ ପାକ କରି
ସୁବର୍ଣ୍ଣ ପାତ୍ରେ ତାହା ଭରି
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା
ଏମନ୍ତେ ବଶିଷ୍ଠ ଆଇଲା
ଭୋଜନେ ବସିଲେ ଆସନେ
ରାଜା ସମୀପେ ବଧି ମାନ୍ୟେ
ଏମନ୍ତ ସୂପକାର ନେଲେ
ମାଂସ ସୁବର୍ଣ୍ଣ ପାତ୍ରେ ଦେଲେ
ତକ୍ଷଣେ ମନୁଷ୍ୟର ମାଂସ
କରେ ସେ ଘେନି ଏକଗ୍ରାସ ।୨୧।
ଆଘ୍ରାଣ ନାସାରନ୍ଧ୍ରେ କଲେ
ତକ୍ଷଣେ ତଳେ ପକାଇଲେ
ରାଜାର ବଦନକୁ ଚାହିଁ
ବୋଲନ୍ତି କୋପନ୍ତର ହୋଇ
ମୋତେ ଯେ ଦେଲୁ ନରମାଂସ
ଏ ପାପେ ତୁ ହୁଅ ରାକ୍ଷସ
ଅରଣ୍ୟେ ଦ୍ୱାଦଶ ବରଷ
ଭକ୍ଷଣ କରି ନରମାଂସ
ଏମନ୍ତେ ମୁନି ବାକ୍ୟ ଶୁଣି
କୋପେ କମ୍ପିଲା ନୃପମଣି
ବୋଲେ ମୁଁ ନୋହେ ଜ୍ଞାନଭ୍ରଂଶ
କେମନ୍ତେ ଦେଲି ନରମାଂସ
ନ ଜାଣି ଶାପ ଦେଲ ଗୁରୁ
କେ ବ୍ରହ୍ମ-ଶାପ ଆନ କରୁ
ମୁଁ ଏବେ ପ୍ରତି ଶାପ ଦେବି
ଏମନ୍ତ ବୁଦ୍ଧି ଚିତ୍ତେ ଭାବି
ଜଳ ଅଞ୍ଜଳି କରେ କଲା
ବଶିଷ୍ଠ ଅଗ୍ରତେ ମିଳିଲା ।୨୨,୨୩।

ବାରିତୋ ମଦୟନ୍ତ୍ୟାପୋ ରୁଶତୀଃ ପାଦୟୋର୍ଜହୌ ।
ଦିଶଃ ଖମବନୀଂ ସର୍ବ୍ବଂ ପଶ୍ୟନ୍ ଜୀବମୟଂ ନୃପଃ । ୨୪ ।
ରାକ୍ଷସଂ ଭାବମାପନ୍ନଃ ପାଦେ କଲ୍ମାଷତାଂ ଗତଃ ।
ବ୍ୟବାୟକାଲେ ଦଦୃଶେ ବନୌକୋଦମ୍ପତୀ ଦ୍ୱିଜୌ । ୨୫ ।
କ୍ଷୁଧାର୍ତ୍ତୋ ଜଗୃହେ ବିପ୍ରଂ ତତ୍‌ପତ୍ନ୍ୟାହାକୃତାର୍ଥବତ୍ ।
ନ ଭବାନ୍ ରାକ୍ଷସଃ ସାକ୍ଷାଦିକ୍ଷ୍ୱାକୂଣାଂ ମହାରଥଃ । ୨୬ ।

---

ସେତେବେଳେ ରାଜାଙ୍କୁ ମଦୟନ୍ତୀ ନିଷେଧ କରନ୍ତେ ସେ ସେହି କ୍ରୋଧାଗ୍ନି ସ୍ୱରୂପ ଜଳକୁ ନିଜ ପାଦରେ ନିକ୍ଷେପ କରିଥିଲେ ।୨୪।

ତେଣୁ ସେ କଲ୍ମଷପାଦ ହେଲେ ଏବଂ ରାକ୍ଷସ ସ୍ୱଭାବଲେ ହୋଇ ବନ ମଧ୍ୟରେ ବିଚରଣ କରୁ କରୁ ସର୍ବତ୍ରରେ ପୃଥିବୀରେ ଆକାଶରେ ସର୍ବତ୍ର ଜୀବ ଦର୍ଶନ କଲେ ଏବଂ ଅତିକ୍ରୀଡ଼ା ସମୟରେ ପରସ୍ପର ପ୍ରତି ଆସକ୍ତ ବନବାସୀ ବ୍ରାହ୍ମଣ ଦମ୍ପତିଙ୍କୁ ଦର୍ଶନ କରିଥିଲେ ।୨୫।

କ୍ଷୁଧାର୍ତ୍ତ ହୋଇ ରାଜା ବ୍ରାହ୍ମଣଙ୍କୁ ଗ୍ରହଣ କଲେ ମାତ୍ର ବ୍ରାହ୍ମଣୀ ମନୋରଥ ପୂର୍ଣ୍ଣ ନ ହେବାରୁ ସେ କାତର ହୋଇ କହିଲ, ହେ ରାଜନ୍ ! ଆପଣ ତ ରାକ୍ଷସ ନୁହନ୍ତି, ଇକ୍ଷାକୁ ବଂଶ ରକ୍ଷକ ସାକ୍ଷାତ୍ ମହାରଥୀ ରାଜା । ୨୬ ।

---

ରାଜାର କୋପ ଦେଖି ମନେ
ପତ୍ନୀ ମିଳିଲ ସନ୍ନିଧାନେ
ତାହାର ମଦୟନ୍ତୀ ନାମ
ରୂପେ କମଳା ଗୁଣ ଧାମ
ବୋଲଇ ସ୍ୱାମିମୁଖ ଚାହିଁ
ଏ କଥା ତୋତେ ନ ଘଟଇ
ଗୁରୁଙ୍କୁ ଶିଷ୍ୟ ଶାପ ଦେଲେ
ଅଧର୍ମ୍ମ ହୋଇବଟି ଭଲେ
ଏ କଥା କେବେହେଁ ନ କର
ତାର ବଚନେ ନୃପବର
ମନ୍ତ୍ରିତ ଜଳ କୋପ ଭରେ
ସିଞ୍ଚିଲ ଆପଣା ପାଦରେ
ତକ୍ଷଣେ ଅଶିବ ହୋଇଲ
କଲ୍ମାଷପାଦ ବୋଲାଇଲ

କୋପେ ରାହିଁ ଦଶଦିଗେ
ସକଳ ମାଂସ ପ୍ରାୟେ ଦିଶେ
ତକ୍ଷଣେ ରାକ୍ଷସ ଶରୀରେ
ରାଜା ପଶିଲ ବନ ଘୋରେ
ବନେ ରାକ୍ଷସ ଦେହ ବହି
ଭ୍ରମଇ ନରମାଂସ ଖାଇ
ଏମନ୍ତେ ଗଲା କେତେ ଦିନ
ଶୁଣ ପରୀକ୍ଷିତ ରାଜନ
ବିପ୍ରର ପତି ପତ୍ନୀ ଦିନେ
ଆସନ୍ତି ଗହନ ବିପିନେ
ପତ୍ନୀ ଯେ ପିତା ଗୃହେ ଥିଲ
ଏମନ୍ତେ ଋତୁ ଉପୁଜିଲ
ସେ ବିପ୍ର ପୁଷ୍ପୋତ୍ସବ ଆଶେ
ପତ୍ନୀ ଅଣାଇ ଗୃହବାସେ

ସେ ବନେ ବିଧାତାର ବଳେ
ରାକ୍ଷସ ନିକଟେ ମିଳିଲେ ।୨୪,୨୫
ସ୍ୱଭାବେ ନିର୍ଜ୍ଜନ ବନସ୍ତ
ତାହାଙ୍କୁ କେ ହୋଇବ ଜ୍ଞାତ
ସେ ରାଜା ଭୟଙ୍କର ରୂପେ
ମିଳିଲ ତାହାଙ୍କ ସମୀପେ
ଗର୍ଜ୍ଜନ କରି ମୁଖଗତେ
ବିପ୍ରକୁ ଧରି ବେଳ ହସ୍ତେ
ଭକ୍ଷଣେ ତୁଣ୍ଡ ବିସ୍ତାରଇ
ବ୍ରାହ୍ମଣୀ ବୋଲେ ତାଙ୍କୁ ଚାହିଁ
ହେ ନୃପ ! ଅଧର୍ମ୍ମ ନ କର
ଇକ୍ଷ୍ୱାକୁ ବଂଶେ ଈଶ୍ୱର
ତୁ ନୋହୁ ରାକ୍ଷସ ଶରୀର
ପ୍ରତ୍ୟକ୍ଷେ ମଦୟନ୍ତୀ ବର

ମଦୟନ୍ତ୍ୟାଃ ପତିର୍ବୀର ନାଧର୍ମ୍ମଂ କର୍ତ୍ତୁମର୍ହସି ।
ଦେହି ମେଽପତ୍ୟକାମାୟା ଅକୃତାର୍ଥଂ ପତିଂ ଦ୍ୱିଜମ୍ । ୨୭ ।
ଦେହୋଽୟଂ ମାନୁଷୋ ରାଜନ୍ ପୁରୁଷସ୍ୟାଖିଳାର୍ଥଦଃ ।
ତସ୍ମାଦସ୍ୟ ବଧୋ ବୀର ସର୍ବାର୍ଥବଧ ଉଚ୍ୟତେ । ୨୮ ।
ଏଷ ହି ବ୍ରାହ୍ମଣୋ ବିଦ୍ୱାଂସ୍ତପଃଶୀଳଗୁଣାନ୍ୱିତଃ ।
ଆରିରାଧୟିଷୁର୍ବ୍ରହ୍ମ ମହାପୁରୁଷସଂଜ୍ଞିତମ୍ ।
ସର୍ବଭୂତାତ୍ମଭାବେନ ଭୂତେଷ୍ୱନ୍ତର୍ହିତଂ ଗୁଣୈଃ । ୨୯ ।
ସୋଽୟଂ ବ୍ରହ୍ମର୍ଷିବର୍ଯ୍ୟସ୍ତେ ରାଜର୍ଷିପ୍ରବରାଦ୍ୱିଭୋ ।
କଥମର୍ହତି ଧର୍ମ୍ମଜ୍ଞ ବଧଂ ପିତୁରିବାତ୍ମଜଃ । ୩୦ ।
କର୍ମ୍ମଣା ମନସା ବାଚା ସର୍ବଭୂତେଷୁ ସୌହୃଦମ୍ ।
ବିଦ୍ୟାବିବେକସମ୍ପନ୍ନାଃ ଶୀଳମେତଦ୍ୱିଦୁର୍ବୁଧାଃ । ୩୧ ।

---

ହେ ମହାରାଜ ! ହେ ବୀର ! ଆପଣ ମଦୟନ୍ତୀଙ୍କର ସ୍ୱାମୀ ହୋଇ ଏପରି ଅଧର୍ମାଚରଣ ଆପଣଙ୍କର ଉପଯୁକ୍ତ ନୁହେଁ । ମୁଁ ସନ୍ତାନ କାମନାରେ ମୋର ଆଶାପୂର୍ଣ୍ଣ କରିବା ଇଚ୍ଛାରେ ଏ ପର୍ଯ୍ୟନ୍ତ ରତି କାର୍ଯ୍ୟ ସମାପନ କରିନାହିଁ, ସୁତରାଂ ଆପଣ ମୋର ଏହି ବ୍ରାହ୍ମଣ ପତିଙ୍କୁ ମୁକ୍ତି ପ୍ରଦାନ କରନ୍ତୁ । ୨୭ ।

ହେ ରାଜନ୍ ! ପୁରୁଷର ଏହି ମାନବ ଦେହ ସର୍ବପ୍ରକାର ପୁରୁଷାର୍ଥ ସାଧକ, ଏହି ମାନବ ଦେହ ନାଶକୁ ସର୍ବାର୍ଥ ନାଶ ବୋଲି କୁହାଯାଇଥାଏ । ୨୮ ।

ବିଶେଷତଃ ଏ ବ୍ରାହ୍ମଣ, ତପଃଶୀଳ, ବିଦ୍ୱାନ୍, ଏ ସର୍ବଭୂତରେ ଆତ୍ମା ଏପରି ଚିନ୍ତାଦ୍ୱାରା, ଗୁଣଦ୍ୱାରା ସର୍ବଭୂତ, ଅନ୍ତର୍ନିହିତ ଭଗବାନଙ୍କର ଆରାଧନା କରିବାକୁ ଅଭିଳାଷୀ, ହେ ଭଗବନ୍ । ହେ ଧର୍ମଜ୍ଞ ଶ୍ରେଷ୍ଠ ! ପିତା କର୍ତ୍ତୃକ ପୁତ୍ର ନିହତ ହେବାର ଯୋଗ୍ୟ ନ ହେଲାପରି ଏ ବ୍ରାହ୍ମଣ ରାଜର୍ଷି ପ୍ରଧାନ ଆପଣଙ୍କର ବଧ ଯୋଗ୍ୟ ନୁହେଁ । ଯେଉଁ ବ୍ୟକ୍ତି କାୟମନୋବାକ୍ୟରେ ସର୍ବ ପ୍ରାଣୀଙ୍କଠାରେ ସୌହୃଦ୍ୟାଚରଣ କରେ ତାହାକୁହିଁ ବିଦ୍ୟାବିବେକସମ୍ପନ୍ନ ପଣ୍ଡିତମାନେ ଶୀଳ ଅର୍ଥାତ୍ ସତ୍ ସ୍ୱଭାବ ବୋଲି କହିଥାନ୍ତି । ୨୯, ୩୧ ।

---

ମୋର ସ୍ୱାମିକି ଛାଡ଼ି ଦିଅ
ପୁଷ୍ପ ଭକ୍ଷିବ ମୋର ହୋଇ
ସ୍ୱାମିର ସଙ୍ଗେ ସଙ୍ଗ କରି
ପୁତ୍ର ସନ୍ତତି ଗର୍ଭେ ଧରି
ହସ୍ତାର ହୋଇବ ମୋହର
ଦୁର୍ଲ୍ଲଭ ନର କଳେବର

ଦେବେ ବାଞ୍ଛନ୍ତି ଯାହା ଚିତ୍ତେ
ଏକର୍ମ୍ମ କରନ୍ତୁ କେମନ୍ତେ । ୨୭-୨୮
ଦେଖ ପଣ୍ଡିତ ମୋର ସ୍ୱାମୀ
ତପ ସାଧନେ ପଥଗାମୀ
ଏ ସର୍ବ ଭୂତେ ଦୟା ବହେ
ଦେବେ ବସନ୍ତି ଏହା ଦେହେ

ଏହାର ବଧେ ସୃଷ୍ଟିବଧ
ଏମନ୍ତ ଲଭିବୁ ପ୍ରମାଦ
ଏ କଥା ଯେବେ ମଣୁ ମିଛ
ତୁ ମୋତେ ଆଗକରି ଭକ୍ଷ
ମୋହର ଆଗେ ସ୍ୱାମୀ ମଲେ
ଜୀବନ ନ ଧରିବ ଭଲେ

ତସ୍ୟ ସାଧୋରପାପସ୍ୟ ଭୃଣସ୍ୟ ବ୍ରହ୍ମବାଦନଃ ।
କଥଂ ବଧଂ ଯଥା ବଭ୍ରୋର୍ମନ୍ୟତେ ସମ୍ମତୋ ଭବାନ୍ । ୩୨ ।
ଯଦ୍ୟୟଂ କ୍ରିୟତେ ଭକ୍ଷ୍ୟସ୍ତର୍ହିମାଂ ଖାଦ ପୂର୍ବତଃ ।
ନ ଜୀବିଷ୍ୟେ ବିନା ଯେନ କ୍ଷଣଞ୍ଚ ମୃତକଂ ଯଥା । ୩୩ ।
ଏବଂ କରୁଣଭାଷିଣ୍ୟା ବିଲପନ୍ତ୍ୟା ଅନାଥବତ୍ ।
ବ୍ୟାଘ୍ରଃ ପଶୁମିବାଖାଦତ୍ ସୌଦାସଃ ଶାପମୋହିତଃ । ୩୪ ।
ବ୍ରାହ୍ମଣୀ ବୀକ୍ଷ୍ୟ ଦିଧିଷୁଂ ପୁରୁଷାଦେନ ଭକ୍ଷିତମ୍ ।
ଶୋଚନ୍ତ୍ୟାତ୍ମାନମୁର୍ବୀଶମଶପତ୍ କୁପିତା ସତୀ । ୩୫ ।
ଯସ୍ମାନ୍ମେ ଭକ୍ଷିତଃ ପାପ କାମାର୍ତ୍ତାୟାଃ ପତିସ୍ତ୍ୱୟା ।
ତବାପି ମୃତ୍ୟୁରାଧାନାଦକୃତପ୍ରଜ୍ଞ ଦର୍ଶିତଃ । ୩୬ ।
ଏବଂ ମିତ୍ରସହଂ ଶପ୍ତ୍ୱା ପତିଲୋକପରାୟଣା ।
ତଦସ୍ଥୀନି ସମିଦ୍ଧେଽଗ୍ନୌ ପ୍ରାସ୍ୟ ଭର୍ତୁର୍ଗତିଂ ଗତା । ୩୭ ।

---

ଏ ନିଷ୍ପାପ, ବ୍ରହ୍ମଜ୍ଞ, ସାଧୁପୁତ୍ର, ବ୍ରାହ୍ମଣ ବଧ ଗୋବଧ ତୁଲ୍ୟ, ଆପଣଙ୍କପରି ସାଧୁଜନ ପ୍ରିୟ ବ୍ୟକ୍ତି କିପରି ଏହା ସମର୍ଥନ କରିପାରେ ।୩୨।

ଯଦ୍ୟପି ଏହି ବ୍ରାହ୍ମଣ ଆପଣଙ୍କର ଭକ୍ଷ୍ୟବୋଲି ଆପଣ ସ୍ଥିରକରନ୍ତି ତେବେ ପ୍ରଥମେ ମୋତେ ଭକ୍ଷଣ କରନ୍ତୁ; ମୁଁ ପତିଭିନ୍ନ ଶବଦେହ ଧାରଣକରି କ୍ଷଣକାଳ ସୁଦ୍ଧା ଜୀବନଧାରଣ କରି ରହିପାରିବିନାହିଁ ।୩୩।

ଶାପ ମୁଗ୍ଧ ରଜା ସୌଦାସ ଅନାଥା, କାତରସ୍ୱରବା, ରୋଦନକାରିଣୀ ବ୍ରାହ୍ମଣ ପତ୍ନୀର ବାକ୍ୟ-ପ୍ରତି କର୍ଣ୍ଣପାତ ନ କରି ବ୍ୟାଘ୍ର ପଶୁବଧ କଲାପରି ଏହି ବ୍ରାହ୍ମଣଙ୍କୁ ଭକ୍ଷଣ କରିଥିଲେ ।୩୪।

ସତୀ, ପତିପରାୟଣା ବ୍ରାହ୍ମଣୀ, ରାକ୍ଷସ,ପତିଙ୍କୁ ଭକ୍ଷଣ କରିବାର ଦେଖି ଅତ୍ୟନ୍ତ ଶୋକ କରି କ୍ରୁଦ୍ଧ କ୍ରୋଧରେ ରାଜାଙ୍କୁ ଅଭିଶାପ ଦେଇଥିଲେ ।୩୫।

ବ୍ରାହ୍ମଣୀ କହିଲେ, ରେ ପାପିଷ୍ଠ ! ତୁ ରତିକ୍ରୀଡ଼ା ସମୟରେ ଅପୂର୍ଣ୍ଣକାମ ଅବସ୍ଥାରେ ମୋର ପତିଙ୍କୁ ଭକ୍ଷଣ କଲୁ; ରେ ମୂର୍ଖ, ରତିକ୍ରୀଡ଼ା ସମୟରେ ତୋର ମୃତ୍ୟୁ ଘଟିବ ।୩୬।

ପତିପରାୟଣା ବ୍ରାହ୍ମଣୀ ରାଜାଙ୍କୁ ଏହିପରି ଅଭିଶାପ ଦେଇ ପ୍ରଜ୍ୱଳିତ ଅଗ୍ନିରେ ପତିଙ୍କର ଅସ୍ଥି-ମାନ ନିକ୍ଷେପ କରି ସେହି ଅଗ୍ନିରେ ନିଜ ଦେହ ବିସର୍ଜ୍ଜନ କରି ପତିଙ୍କର ଅନୁଗମନ କରିଥିଲେ ।୩୭।

---

ଏମନ୍ତେ ଅନେକ କହିଲା
ତାହାର ଚରଣେ ପଡ଼ିଲା
କାନ୍ଦଇ ତାର ମୁଖ ଚାହିଁ
ତତ୍‌କ୍ଷଣେ ବ୍ୟାଘ୍ର ପ୍ରାୟେ ହୋଇ
ବଶିଷ୍ଠ ଶାପେ ଜ୍ଞାନ ଗଲା
ତାଆପି ବିପ୍ରକୁ ଭକ୍ଷିଲା ।୨୯,୩୪

ସ୍ୱାମୀ ମରଣ ଚାହିଁ କୋପେ
ବ୍ରାହ୍ମଣେ ଚାହିଁ ମନ ତାପେ
ବୋଲଇ ଶୁଣ ରେ ପାମର !
ସମ୍ପଦ ନାଶିଲୁ ମୋହର
ତୋହର ପତ୍ନୀ ସଙ୍ଗକାଳେ
ପ୍ରାଣ ତୁ ଛାଡ଼ ଅଳ୍ପକାଳେ

ଏମନ୍ତେ ଶାପ ତାକୁ ଦେଇ
ପଶିଲ ଅଗ୍ନିକୁଣ୍ଡେ ଯାଇ
ତତ୍‌କ୍ଷଣେ ଜୀବନ ଛାଡ଼ିଲା
ସ୍ୱଧର୍ମ୍ମେ ଭର୍ତ୍ତାଲୋକେ ଗଲା ।୩୫-୩୭

ବର୍ଷାପୋ ଦ୍ୱାଦଶାବ୍ଦାନ୍ତେ ମୈଥୁନାୟ ସମୁଦ୍ୟତଃ ।
ବିଜ୍ଞାପ୍ୟ ବ୍ରାହ୍ମଣୀଶାପଂ ମହିଷ୍ୟା ସ ନିବାରିତଃ । ୩୮ ।
ଅତ ଊର୍ଦ୍ଧ୍ୱଂ ସ ତତ୍ୟାଜ ସ୍ତ୍ରୀସୁଖଂ କର୍ମ୍ମଣାପ୍ରଜାଃ ।
ବଶିଷ୍ଠସ୍ତଦନୁଜ୍ଞାତୋ ମଦୟନ୍ତ୍ୟାଂ ପ୍ରଜାମଧାତ୍ । ୩୯ ।
ସା ବୈ ସପ୍ତ ସମା ଗର୍ଭମବିଭ୍ରନ୍ନ ବ୍ୟଜାୟତ ।
ଜଘ୍ନେଽଶ୍ମନୋଦରଂ ତସ୍ୟାଃ ସୋଽଶ୍ମକସ୍ତେନ କଥ୍ୟତେ ।୪୦।
ଅଶ୍ମକାଦ୍‌ବାଲକୋ ଜଜ୍ଞେ ଯଃ ସ୍ତ୍ରୀଭିଃ ପରିରକ୍ଷିତଃ ।
ନାରୀକବଚ ଇତ୍ୟୁକ୍ତୋ ନିଃକ୍ଷତ୍ରେ ମୂଳକୋଽଭବତ୍ ।୪୧।

---

ଦ୍ୱାଦଶବର୍ଷ ପରେ ରାଜା ସୌଦାସ ଶାପମୁକ୍ତ ହୋଇ ନିଜ ପତ୍ନୀ ସହିତ ରତିକ୍ରୀଡ଼ା କରିବାକୁ ଉଦ୍ୟତ ହୁଅନ୍ତେ ରାଜମହିଷୀ ତାହାଙ୍କୁ ବ୍ରାହ୍ମଣୀର ଅଭିଶାପ ବିଷୟ ସ୍ମରଣ କରାଇ ନିଷେଧ କରିଥିଲେ ।୩୮

ତଦନନ୍ତର ରାଜା ସ୍ତ୍ରୀ ସହବାସ ପରିତ୍ୟାଗ କଲେ ଏବଂ ନିଜ କର୍ମଦୋଷରେ ସନ୍ତାନହୀନ ହେଲେ । ରାଜାଙ୍କର ଅନୁମତି ଅନୁସାରେ ବଶିଷ୍ଠ ରାଜମହିଷୀ ମଦୟନ୍ତୀଙ୍କର ଗର୍ଭାଧାନ କରିଥିଲେ ।୩୯

ରାଜମହିଷୀ ମଦୟନ୍ତୀ ସାତବର୍ଷ ଗର୍ଭଧାରଣ କଲେ କିନ୍ତୁ କୌଣସି ପ୍ରକାରେ ପ୍ରସବ ହେଲେନାହିଁ, ବଶିଷ୍ଠ ଆସି ତାହାଙ୍କ ଉଦରରେ ପ୍ରସ୍ତର ଦ୍ୱାରା ଆଘାତ କରନ୍ତେ ପ୍ରସବ ହେଲା, ସେହି ସନ୍ତାନ ତେଣୁ ଅଶ୍ମକ ନାମରେ ଖ୍ୟାତ ହେଲେ ।୪୦।

ଅଶ୍ମକଙ୍କର ପୁତ୍ର ବାଳକ, ସ୍ତ୍ରୀଗଣ ପରିବୃତ ହୋଇ ସେ ପରଶୁରାମଙ୍କ କୋପରୁ ରକ୍ଷା ପାଇଥିବାରୁ ତାହାଙ୍କର ନାମ ହେଲା ନାରୀକବଚ, ସମସ୍ତ କ୍ଷତ୍ରିୟ ବିନଷ୍ଟ ହୁଅନ୍ତେ ଏହି ବାଳକ କ୍ଷତ୍ରିୟବଂଶ ପୁନରୁତ୍‌ଥାନର ମୂଳ କାରଣ ହୋଇଥିଲେ, ତେଣୁ ତାହାଙ୍କର ନାମ ହେଲା ମୂଳକ ।୪୧।

---

ଏମନ୍ତେ ମୁନି ଶାପ ଶେଷ
ପୂରିଲା ଦ୍ୱାଦଶ ବରଷ
ଶାପୁଁ ମୁକତ ରାଜା ହୋଇ
ମିଳିଲା ଅନ୍ତଃପୁରେ ଯାଇ
ପତ୍ନୀ ସଙ୍ଗମ ଇଚ୍ଛେ କଲା
ତା ଦେଖି ବୋଲେ ମଦୟନ୍ତୀ
ବ୍ରାହ୍ମଣୀ ଶାପ ଦେଲା ତୋତେ
ମୋ ଅଙ୍ଗ ଛୁଇଁବୁ କେମନ୍ତେ
ସ୍ତ୍ରୀରି ମୈଥୁନ ସଙ୍ଗ ତେଜ
ଜୀବନେ ଯେବେ ଅଛି କାର୍ଯ୍ୟ ।୩୮

ଏମନ୍ତେ ତାହାର ବଚନେ
ରାଜା ବସିଲେ ଦୁଃଖ ମନେ
କେମନ୍ତେ ହୋଇବ ସନ୍ତତି
ନାନା ଉପାୟ ମନେ ଚିନ୍ତି
ବଶିଷ୍ଠ ସମୀପେ ମିଳିଲା
ମୋ ବଂଶ ରଖ ତୁ ବୋଇଲା
ଏମନ୍ତେ ରାଜାର ବଚନେ
ତାର କାମିନୀ ଗର୍ଭାଧାନେ
ବଶିଷ୍ଠ ସଙ୍ଗେ ସଙ୍ଗ କରି
ଗର୍ଭ ହୋଇଲା ତାର ନାରୀ ।୩୯।

ସେ ଗର୍ଭ ସପତ ବରଷେ
ଜନ୍ମ ନୋହିଲା ବୋଲି ରୋଷେ
ଶିଳା ପ୍ରହାର ଗର୍ଭେ କଲା
ତକ୍ଷଣେ ପୁତ୍ର ଉପୁଜିଲା
ନାମ ତା ଅଶ୍ମକ ହୋଇଲା
ଯେଣୁ ଅଶ୍ମଘାତ ବାଜିଲା ।୪୦ ।
ବାଳକ ଅଶ୍ମକ ନନ୍ଦନ
ନାରୀକବଚ ତାର ନାମ
ପରଶୁରାମ ଭୟ ହେଲା
ସୁଖେ ରଖିଲେ ସଖିକୁଳେ ।୪୧।

ତତୋ ଦଶରଥସ୍ତସ୍ମାତ୍ପୁତ୍ର ଐଡ଼ବିଡ଼ସ୍ତତଃ ।
ରାଜା ବିଶ୍ୱସହୋ ଯସ୍ୟ ଖଟ୍ୱାଙ୍ଗଶ୍ଚକ୍ରବର୍ତ୍ତ୍ୟଭୂତ୍ । ୪୨ ।
ଯୋ ଦେବୈରର୍ଥିତୋ ଦୈତ୍ୟାନବଧୀଦ୍ୟୁଧି ଦୁର୍ଜ୍ଜୟଃ ।
ମୁହୂର୍ତ୍ତମାୟୁର୍ଜ୍ଞାତ୍ୱୈତ୍ୟ ସ୍ୱପୁରଂ ସନ୍ଦଧେ ମନଃ । ୪୩ ।
ନ ମେ ବ୍ରହ୍ମକୁଳାତ୍ ପ୍ରାଣାଃ କୁଳଦୈବାନ୍ନ ଚାତ୍ମଜାଃ ।
ନ ଶ୍ରିୟୋ ନ ମହୀ ରାଜ୍ୟଂ ନ ଦାରାଶ୍ଚାତିବଲ୍ଲଭାଃ । ୪୪ ।
ନବାଲ୍ୟେଽପି ମତିର୍ମହ୍ୟମଧର୍ମ୍ମେ ରମତେ କ୍ୱଚିତ୍ ।
ନାପଶ୍ୟମୁତ୍ତମଃଶ୍ଳୋକାଦନ୍ୟତ୍ କିଞ୍ଚନ ବସ୍ତ୍ୱହମ୍ । ୪୫ ।

---

ମୂଳକଙ୍କର ପୁତ୍ର ଦଶରଥ, ଦଶରଥଙ୍କ ପୁତ୍ର ଐଡ଼ବିଡ଼, ତାହାଙ୍କର ପୁତ୍ର ରାଜା ବିଶ୍ୱସହ । ତାହାଙ୍କର ପୁତ୍ର ଚକ୍ରବର୍ତ୍ତୀ ଖଟ୍ୱାଙ୍ଗ ।୪୨।

ଯୁଦ୍ଧରେ ଅପରାଜେୟ ବୀର ଖଟ୍ୱାଙ୍ଗ ଦେବଗଣଙ୍କର ପ୍ରାର୍ଥନା ଅନୁସାରେ ଦୈତ୍ୟମାନଙ୍କୁ ବଧ କରିଥିଲେ । ଦେବତାମାନେ ସନ୍ତୁଷ୍ଟ ହୋଇ ବର ଦେବାକୁ ଇଚ୍ଛା କରନ୍ତେ ସେ କହିଲେ ମୋର ଆୟୁ ପରିମାଣ ଆଉ କେତେ କହନ୍ତୁ । ଦେବତାମାନେ କହିଲେ ଆଉ ମୁହୂର୍ତ୍ତେ ମାତ୍ର, ତହୁଁ ସେ ସ୍ୱପୁରକୁ ଆଗମନ କରି ପରମେଶ୍ୱରଙ୍କଠାରେ ମନୋନିବେଶ କଲେ ।୪୩।

ତଦନନ୍ତର ଖଟ୍ୱାଙ୍ଗ ସ୍ଥିର କଲେ ମୋର କୁଳଦେବତା ବ୍ରାହ୍ମଣଠାରୁ ମୋର ପ୍ରାଣ, ପୁତ୍ର, ଐଶ୍ୱର୍ଯ୍ୟ, ପୃଥିବୀ, ରାଜ୍ୟ, ସ୍ତ୍ରୀ ପ୍ରଭୃତି କେହିହିଁ ପ୍ରିୟ ନୁହେଁ ।୪୪।

ମୋର ମନ କଦାପି ଅଧର୍ମରେ ରତ ହୁଏ ନାହିଁ । ଉତ୍ତମ ଶ୍ଳୋକ ଭଗବାନ୍ ବିଷ୍ଣୁଙ୍କ ଛଡ଼ା ଆଉ କୌଣସି ବସ୍ତୁହିଁ ମୁଁ ଦେଖେନାହିଁ ।୪୫।

---

ତାହାର ପୁତ୍ର ଦଶରଥ
ଐଡ଼ବିଡ଼ ଯେ ତାର ସୁତ
ତାଠାରୁ ହେଲା ଭୂପତି
ଯେ ବିଶ୍ୱସହ ନରପତି
ଖଟ୍ୱାଙ୍ଗ ତାହାର କୁମର
ଯୁଦ୍ଧେ ରଖିଲା ପୁରନ୍ଦର
ସେ ମହୀତଳେ ଚକ୍ରବର୍ତ୍ତୀ
ଶୁଣ ରାଜନ ତାର ଗତି ।୪୨।
ଅସୁର ଯୁଦ୍ଧେ ଦେବଗଣେ
ତାହାକୁ ବର ଯୋଗାପଣେ

ସେ ପୁଣି ରିପୁ ଜିଣି ଯୁଦ୍ଧେ
ଯେମଣି ହେଲ ଦେବ ମଧ୍ୟେ
ଦେବେ ବୋଲନ୍ତି ରାଜା ଶୁହିଁ
ଯେ ବର ଇଚ୍ଛା ମାଗ ତୁହି
ଇନ୍ଦ୍ର ତାହାର ମୁଖ ଚାହିଁ
ବୋଲଇ ଯିବୁ ଆଉ କାହିଁ
ମୁହୂର୍ତ୍ତେ ଅଛି ତୋ ଜୀବନ
ତା ଶୁଣି ବୋଲଇ ରାଜନ
ମୋର ଏ ସ୍ୱର୍ଗେ କାର୍ଯ୍ୟ ନାହିଁ
କର୍ମ୍ମ ଭୂମିକି ଯିବି ମୁହିଁ

ଏମନ୍ତେ ଇନ୍ଦ୍ର ଆଗେ କହି
ମିଳିଲା ନିଜପୁରେ ଯାଇ ।୪୩।
ମନ ନିବେଶି ହରି ପାଦେ
ପ୍ରେମ ପୁଲକ ଗଦଗଦେ
ତତ୍କ୍ଷଣେ ତାକୁ ଜନ ପ୍ରଜା
ଭକ୍ତ ଭକତି ବୋଲେ ରାଜା
ମୁଁ ଯେ ବ୍ରହ୍ମଣ୍ୟ କୁଳେ ଜାତ
ବ୍ରାହ୍ମଣ ମୋର ଦଇବତ
ଯେବା ଅଛଇ ମୋର ଧନ
ଦାରା ତନୟ ବନ୍ଧୁ ଜନ

ତଦେବୈଃ କାମବରେ ଦତ୍ତେ ମହ୍ୟଂ ତ୍ରିଭୁବନେଶ୍ୱରୈଃ ।
ନ ବୃଣେ ତମହଂ କାମଂ ଭୂତଭାବନଭାବନଃ । ୪୬ ।
ଯେ ବିକ୍ଷିପ୍ତେନ୍ଦ୍ରିୟଧିୟୋ ଦେବାସ୍ତେ ସ୍ୱହୃଦ ସ୍ଥିତମ୍ ।
ନ ବିନ୍ଦନ୍ତି ପ୍ରିୟଂ ଶଶ୍ୱଦାତ୍ମାନଂ କିମୁତାପରେ । ୪୭ ।
ଅଥେଶମାୟାରଚିତେଷୁ ସଙ୍ଗଂ ଗୁଣେଷୁ ଗନ୍ଧର୍ବପୁରୋପମେଷୁ ।
ରୂଢ଼ଂ ପ୍ରକୃତ୍ୟାତ୍ମନି ବିଶ୍ୱକର୍ତ୍ତୁର୍ଭାବେନ ହିତ୍ୱା ତମହଂ ପ୍ରପଦ୍ୟେ । ୪୮ ।
ଇତି ବ୍ୟବସିତୋ ବୁଦ୍ଧ୍ୟା ନାରାୟଣଗୃହୀତୟା ।
ହିତ୍ୱାନ୍ୟଭାବମଜ୍ଞାନଂ ତତଃ ସ୍ୱଂ ଭାବମାସ୍ଥିତଃ । ୪୯ ।
ଯତ୍ତଦ୍ବ୍ରହ୍ମ ପରଂ ସୂକ୍ଷ୍ମମଶୂନ୍ୟଂ ଶୂନ୍ୟକଳ୍ପିତମ୍ ।
ଭଗବାନ୍ ବାସୁଦେବେତି ଯଂ ଗୃଣନ୍ତି ହି ସାତ୍ୱତାଃ । ୫୦ ।
ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ଖଟ୍ୱାଙ୍ଗଚରିତଂ ନାମ ନବମୋଽଧ୍ୟାୟଃ ।

---

ତ୍ରିଭୁବନ ଅଧୀଶ୍ୱର ଦେବଗଣ ମୋତେ ଯଥେଚ୍ଛା ବର ଗ୍ରହଣ କରିବାକୁ ଅନୁମତି ଦେଇଥିଲେ ମଧ୍ୟ ମୁଁ ଭୂତଭାବନ ଶ୍ରୀହରିଙ୍କ ଭାବାପନ୍ନ ହୋଇଥିବାରୁ କୌଣସି ବର ପ୍ରାର୍ଥନା କରିନାହିଁ ।୪୬।

ଯେଉଁମାନଙ୍କର ବୁଦ୍ଧି ଓ ଇନ୍ଦ୍ରିୟ ବିକ୍ଷିପ୍ତ ସେମାନେ ଦେବତା ହୋଇ ମଧ୍ୟ ନିରନ୍ତର ପ୍ରେମାସ୍ପଦ ନିଜର ହୃଦୟ ସ୍ଥିତ ଆତ୍ମାକୁ ଦେଖି ପାରନ୍ତିନାହିଁ, ଅନ୍ୟ କଥା ବା କଣ କହିବା ? ।୪୭।

ଅତଏବ ପରମେଶ୍ୱରଙ୍କର ମାୟା ରଚିତ ଗନ୍ଧର୍ବପୁରୀ ତୁଲ୍ୟ ଗୁଣ ସମୂହରେ ଏବଂ ସ୍ୱଭାବତଃ ଆତ୍ମାରେ ଯେଉଁ ବଦ୍ଧମୂଳ ଆସକ୍ତି ରହିଅଛି, ତାହା ପରିତ୍ୟାଗ କରି ମୁଁ ସେହି ପରମେଶ୍ୱରଙ୍କ ଆଶ୍ରୟ ନେଲି ।୪୮।

ଯାହାର ନିର୍ମଳ ବୁଦ୍ଧି ନାରାୟଣଙ୍କଠାରେ ଆବଦ୍ଧ, ସେହି ଖଟ୍ୱାଙ୍ଗ ଏପରି କୃତନିଶ୍ଚୟ ହୋଇ ଦେହାଦି ଅଭିମାନ ସ୍ୱରୂପ ଅଜ୍ଞାନ ପରିତ୍ୟାଗ କରି ପରମବ୍ରହ୍ମ ଭାବ ପ୍ରାପ୍ତ ହୋଇଥିଲେ ।୪୯।

ଯେଉଁ ଆତ୍ମା ସୂକ୍ଷ୍ମ ପରଂବ୍ରହ୍ମଙ୍କୁ ଆକାଶତୁଲ୍ୟ କଳ୍ପନା କରାଯାଇଥାଏ, କିନ୍ତୁ ତାହା ଆକାଶ ନୁହେଁ, ଭକ୍ତଗଣ ଯାହାଙ୍କୁ ଭଗବାନ୍ ବାସୁଦେବବୋଲି କୀର୍ତ୍ତନ କରନ୍ତି, ଖଟ୍ୱାଙ୍ଗ ସେହି ପ୍ରସିଦ୍ଧ ବ୍ରହ୍ମଙ୍କୁ ପ୍ରାପ୍ତ ହୋଇଥିଲେ ।୫୦।

---

ସତ୍ୟ ମୁଁ କିଛି ନ ଦେଖୁଛି
ବସ୍ତୁ ରଠରୁ ଅନ୍ୟ ନାହିଁ
ମୋ ମତେ ଧର୍ମ୍ମ ଅନ୍ତରକେ
ହରିଙ୍କି ସର୍ବ ଭୂତେ ଦେଖେ
ଯେ ତିନି ଭୁବନେ ଈଶ୍ୱର
ଇନ୍ଦ୍ର ଯେ ଦେଲେ ମୋତେ ବର
ଏ ନର ବପୁରେ ସେ ପ୍ରମାଣେ
ମୋ ଚିତ୍ତ ରହୁ ନାରାୟଣେ

ବସ୍ତୁ ର ମାୟାର ଜଗତ
ଦିଶଇ ଇନ୍ଦ୍ରଜାଲ ମତ
ଏ ମାୟା ଛାଡ଼ି ହରିପାଦେ
ମୋ ଚିତ୍ତ ରହୁ ଅପ୍ରମାଦେ
ଏମନ୍ତ କହି ନୃପବର
ତକ୍ଷଣେ ହାରିଲ ଜୀବନ ।୪୪-୪୯
ଛାଡ଼ିଣ ଗଲା ମାୟାଦେହ
ପଶିଲା ଗୋବିନ୍ଦର ଦେହେ ।୫୦।

ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ସୁଜନେ ଶୁଣ ଅବିରତି
ନିର୍ମଳ ବସ୍ତୁ ର ଚରିତ ।



## ଦଶମୋଽଧ୍ୟାୟଃ

ଦଶମେ ଶ୍ରୀମଚନ୍ଦ୍ରାଦେରବତାରଗୁଣାବଳିଃ ।
କଥ୍ୟତେ ସୂକ୍ଷ୍ମଭାବେନ ପୁନର୍ବିସ୍ତୃତସ୍ତବତଃ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ଖଟ୍ୱାଙ୍ଗାଦ୍ଦୀର୍ଘବାହୁଶ୍ଚ ରଘୁସ୍ତସ୍ମାତ୍ପୃଥୁଶ୍ରବାଃ ।
ଅଜସ୍ତତୋ ମହାରାଜସ୍ତସ୍ମାଦ୍ଦଶରଥୋଽଭବତ୍ । ୧ ।
ତସ୍ୟାପି ଭଗବାନେଷ ସାକ୍ଷାଦ୍ବ୍ରହ୍ମମୟୋ ହରିଃ ।
ଅଂଶାଂଶେନ ଚତୁର୍ଦ୍ଧାଗାତ୍ପୁତ୍ରତ୍ୱଂ ପ୍ରାର୍ଥିତଃ ସୁରୈଃ ।
ରାମଲକ୍ଷ୍ମଣଭରତଶତ୍ରୁଘ୍ନା ଇତି ସଂଜ୍ଞୟା । ୨ ।
ତସ୍ୟାନୁଚରିତଂ ରାଜନ୍ନୃଷିଭିସ୍ତତ୍ତ୍ୱଦର୍ଶିଭିଃ ।
ଶ୍ରୁତଂ ହି ବର୍ଣ୍ଣିତଂ ଭୂରି ତ୍ୱୟା ସୀତାପତେର୍ମୁହୁଃ । ୩ ।

---

### ଶ୍ରୀରାମ ଚରିତ

ଦଶମ ଅଧ୍ୟାୟରେ ଖଟ୍ୱାଙ୍ଗ ରାଜାଙ୍କ ବଂଶରେ ଶ୍ରୀ ରାମଚନ୍ଦ୍ରଙ୍କର ଜନ୍ମ, ତାଙ୍କର ଚରିତ୍ର, ଜନକଙ୍କପ୍ରସାଦ ଏବଂ ଯୁଦ୍ଧକରି ରାବଣକୁ ମାରିବା ବିଷୟ ବର୍ଣ୍ଣିତ ହୋଇଅଛି ॥ ● ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଖଟ୍ୱାଙ୍ଗଙ୍କଠାରୁ ଦୀର୍ଘବାହୁ ଜନ୍ମଗ୍ରହଣ କରିଥିଲେ । ୧ ।

ତାହାଙ୍କଠାରୁ ମହାଯଶସ୍ୱୀ ରଘୁ, ରଘୁଙ୍କଠାରୁ ଅଜ, ଅଜଙ୍କଠାରୁ ଦଶରଥ ଜନ୍ମଗ୍ରହଣ କରିଥିଲେ । ୨ ।

ହେ ରାଜନ୍ ! ସୀତାପତି ରାମଚନ୍ଦ୍ରଙ୍କର ଚରିତ ବହୁବାର ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି, ତତ୍ତ୍ୱଦର୍ଶୀ ଋଷିମାନେ ବର୍ଣ୍ଣନା କରିଅଛନ୍ତି ଏବଂ ଆପଣ ମଧ୍ୟ ତାହା ଶ୍ରବଣ କରିଅଛନ୍ତି ।୩।

---

ଶ୍ରୀରାମଚନ୍ଦ୍ରଙ୍କ ଚରିତ, ଦଶମ ଅଧ୍ୟାୟେ ବର୍ଣ୍ଣିତ ।

ଶ୍ରୀ ଶୁକ ଉବାଚ—

ଏତେ ହୋ ଶୁଣ ମହୀପତି
ଯେ ଅଟନ୍ତି ଯାହାର ସନ୍ତତି
ଏ କୁଳେ ଯେତେ ଅଧିପତି
ଶୁଣନ୍ତେ ପାପ ବିନାଶନ୍ତି
ଖଟ୍ୱାଙ୍ଗ ଦୀର୍ଘବାହୁ ନାମ
ସୁତ ହୋଇଲା ଗୁଣଧାମ

ରଘୁ ତାହାର ତନୁଜାତ
ହୋଇଲା ପୃଥୁଶ୍ରବା ସୁତ
ଅଜ ତାହାର ରାଜ୍ୟେ ଜାତ
ତାର କୁମର ଦଶରଥ ।୧।
ସେ ଦଶରଥ ଘରେ ହରି
ଜନ୍ମିଲେ ନର ଦେହ ଧରି
ଚତୁର୍ଦ୍ଧା ରୂପେ ଦେବ କାର୍ଯ୍ୟେ
ଜନ୍ମିଲେ ଦଶରଥ ରାଜ୍ୟେ

ରାମ ଲକ୍ଷ୍ମଣ ଶତ୍ରୁଘନ
ଭରତ ତୁଲେ ଚାରିଜଣ ।୨।
ସେ ରାମ ଚରିତ ତୁ ସୁଖେ
ଶୁଣିଛୁ ଋଷିଙ୍କର ମୁଖେ
ଗୁରୁ ବଚନେ ରାଜ୍ୟ ଛାଡ଼ି
ପଦ୍ମ ଚରଣେ ଭୂମି ମାଡ଼ି
ଲକ୍ଷ୍ମଣ ସୀତାର ସମେତେ
ଯେ ଦୁଃଖେ ବୁଲିଲେ ବନସ୍ତେ

ଗୁର୍ବର୍ଥେ ତ୍ୟକ୍ତରାଜ୍ୟୋ ବ୍ୟଚରଦନୁବନଂ ପଦ୍ମପଦ୍ଭ୍ୟାଂ ପ୍ରିୟାୟାଃ —
ପାଣିସ୍ପର୍ଶାକ୍ଷମାଭ୍ୟାଂ ମୃଜିତପଥରୁଜୋ ଯୋ ହରୀନ୍ଦ୍ରାନୁଜାଭ୍ୟାମ୍ ।
ବୈରୂପ୍ୟାଚ୍ଛୂର୍ପଣଖ୍ୟାଃ ପ୍ରିୟବିରହରୁଷା ରୋପିତଭ୍ରୂବିଜୃମ୍ଭ —
ତ୍ରସ୍ତାବ୍ଧିର୍ବଦ୍ଧସେତୁଃ ଖଳଦବଦହନଃ କୋଶଲେନ୍ଦ୍ରୋଽବତାନ୍ନଃ । ୪ ।

ବିଶ୍ୱାମିତ୍ରାଧ୍ୱରେ ଯେନ ମାରୀଚାଦ୍ୟା ନିଶାଚରାଃ ।
ପଶ୍ୟତୋ ଲକ୍ଷ୍ମଣସ୍ୟୈବ ହତା ନୈଋତପୁଙ୍ଗବାଃ । ୫ ।

ଯୋ ଲୋକବୀରସମିତୌ ଧନୁରୈଶମୁଗ୍ରଂ ସୀତାସ୍ୱୟମ୍ବରଗୃହେ ତ୍ରିଶତୋପନୀତମ୍ ।
ଆଦାୟ ବାଳଗଜଲୀଳ ଇବେକ୍ଷୁୟଷ୍ଟିଂ ସଜ୍ଜୀକୃତଂ ନୃପ ବିକୃଷ୍ୟ ବଭଞ୍ଜ ମଧ୍ୟେ । ୬ ।

---

ଯେଉଁ ରାମଚନ୍ଦ୍ର ପିତୃସତ୍ୟ ପାଳନ ନିମିତ୍ତ ରାଜ୍ୟସୁଖ ତ୍ୟାଗକରି ପ୍ରିୟା ସୀତାଙ୍କର କୋମଳ ହସ୍ତଦ୍ୱାରା ମଧ୍ୟ ଯେଉଁ ପଦ ସ୍ପର୍ଶ କରିବାର କ୍ଷମତା ନ ଥିଲା ସେହି ଅତି ସୁକୋମଳ ପାଦପଦ୍ମରେ ବନରେ ବିଚରଣ କରିଥିଲେ । ବାନର ରାଜ ହନୁମାନ ଓ କନିଷ୍ଠଭ୍ରାତା ଲକ୍ଷ୍ମଣ ଯାହାଙ୍କର ପଥଶ୍ରାନ୍ତି ଦୂର କରିଥିଲେ; ଯେ ସୂର୍ପଣଖାର କର୍ଣ୍ଣ ଓ ନାସିକା ଛେଦନକରି ବିରୂପ କରିବାରୁ ରାବଣ ତାହାଙ୍କର ପ୍ରିୟତମା ସୀତାଙ୍କୁ ଅପହରଣ କରିଥିଲା । ପ୍ରିୟାଙ୍କର ବିରହ ହେତୁ କ୍ରୋଧରେ ଯାହାଙ୍କର ଭ୍ରୂ ଚାଳନରେ (ବକ୍ରୀକରଣରେ) ସମୁଦ୍ର ସୁଦ୍ଧା ତ୍ରସ୍ତ ହୋଇଥିଲା, ଯେ ସେତୁବନ୍ଧନକରି କାନନରୂପ ରାବଣାଦି ଖଳଙ୍କପ୍ରତି ଦାବାନଳ ସ୍ୱରୂପ ହୋଇଥିଲେ; ସେହି କୋଶଳେନ୍ଦ୍ର ରାମଚନ୍ଦ୍ର ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।୪।

ଯେଉଁ ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କର ଯଜ୍ଞରେ ଲକ୍ଷ୍ମଣ ସମକ୍ଷରେ ମାରୀଚାଦି ପ୍ରଧାନ ପ୍ରଧାନ ରାକ୍ଷସମାନଙ୍କୁ ବଧ କରିଥିଲେ; ସେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।୫।

ଯେଉଁ ରାମଚନ୍ଦ୍ର ସୀତାଙ୍କର ସ୍ୱୟମ୍ବର ଗୃହରେ ବାଳଗଜ ତୁଲ୍ୟ ଲୀଳାକାରୀ ବୀର ପୁରୁଷମାନଙ୍କ ସଭାରେ ସୀତାଙ୍କର ସ୍ୱୟମ୍ବର ଗୃହରେ ତିନିଶତ ବାହକଙ୍କ କର୍ତ୍ତୃକ ଅନୀତ ଅତି ଉଗ୍ର ହରଧନୁରେ ଜ୍ୟା ରୋପଣକରି ଆଖୁଦଣ୍ଡ ପରି ଆକର୍ଷଣ କରି ମଧ୍ୟଦେଶରୁ ଭଗ୍ନ କରିଥିଲେ; ସେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୬ ।

---

ସୁଗ୍ରୀବ ତୁଲେ ମିତ୍ର କରି
ବିରୂପ କଲେ ସେ ଅସୁରୀ
ପ୍ରିୟା ବିୟୋଗେ କୋପ ହୋଇ
ସମୁଦ୍ରେ ସେତୁ ସେ ବନ୍ଧାଇ ।୩,୪
ପ୍ରଥମେ ବିଶ୍ୱାମିତ୍ର ସଙ୍ଗେ
ଯଜ୍ଞ ରକ୍ଷଣ ଅନୁରାଗେ

ମାରୀଚ ଆଦି ନିଶାଚରେ
ରାମେ ମିଳିଲେ ଯଜ୍ଞଠାରେ
ଲକ୍ଷ୍ମଣ ତୁଲେ ତା ସଂହାରି
ମୁନିଙ୍କ ଯଜ୍ଞ ରକ୍ଷା କରି । ୫ ।
ପୁଣି ସେ ସୀତା ସ୍ୱୟମ୍ବରେ
ମିଳିଲେ ବିଦେହ ନଗରେ

ଭାଙ୍ଗିଲେ ଈଶ୍ୱର କୋଦଣ୍ଡ
ବାଳଗଜ କି ଇକ୍ଷୁଦଣ୍ଡ ।୬।

ନିଘ୍ନାନରୂପଗୁଣଶୀଳବୟୋଽଙ୍ଗରୂପାଂ ସୀତାଭିଧାଂ ଶ୍ରିୟମୁରସ୍ୟଭିଲବ୍ଧମାନାମ୍ ।
ମାର୍ଗେ ବ୍ରଜନ୍ ଭୃଗୁପତେ ର୍ବ୍ୟନୟତ୍ ପ୍ରରୂଢ଼ଂ ଦର୍ପଂ ମହୀମକୃତ ଯସ୍ତ୍ରିରରାଜବୀଜାମ୍ ।୭।
ଯଃ ସତ୍ୟପାଶପରିବୀତପିତୁର୍ନିଦେଶଂ ସ୍ତ୍ରୈଣସ୍ୟ ଚାପି ଶିରସା ଜଗୃହେ ସଭାର୍ଯ୍ୟଃ ।
ରାଜ୍ୟଂ ଶ୍ରିୟଂ ପ୍ରଣୟିନଃ ସୁହୃଦୋ ନିବାସଂ ତ୍ୟକ୍ତ୍ୱା ଯଯୌ ବନମସୂନିବ ମୁକ୍ତସଙ୍ଗଃ ।୮।
ରକ୍ଷଃସ୍ୱସୁର୍ବ୍ୟକୃତରୂପମଶୁଦ୍ଧବୁଦ୍ଧେସ୍ତସ୍ୟାଃ ଖରତ୍ରିଶିରଦୂଷଣମୁଖ୍ୟବନ୍ଧୂନ୍ ।
ଜଘ୍ନେ ଚତୁର୍ଦ୍ଦଶସହସ୍ରମପାରଣୀୟକୋଦଣ୍ଡପାଣିରଟମାନ ଉବାସ କୃଚ୍ଛ୍ରମ୍ ।୯।

---

ଯେଉଁ ପରଶୁରାମ ପୃଥିବୀକୁ ଏକବିଂଶବାର କ୍ଷତ୍ରିୟ ଶୂନ୍ୟ କରିଥିଲେ, ତାଙ୍କର ଅନୁରୂପ ଗୁଣ ଶୀଳ ଅଙ୍ଗ ଓ ରୂପଶାଳିନୀ ବକ୍ଷସ୍ଥଳବାସିନୀ ଲକ୍ଷ୍ମୀସ୍ୱରୂପା ସୀତାଙ୍କୁ ସ୍ୱୟମ୍ବରରେ ଲାଭକରି ପଥ ମଧ୍ୟରେ ଯାଉଁ ଯାଉଁ ସେହି ପରଶୁରାମର ପ୍ରବଳ ଦର୍ପଚୂର୍ଣ୍ଣ କରିଥିଲେ ।୭।

ଯେଉଁ ରାମଚନ୍ଦ୍ର ସତ୍ୟ ପାଶରେ ଆବଦ୍ଧ ହୋଇ ସ୍ତ୍ରୈଣ ପିତାଙ୍କର ଆଦେଶ ଶିରରେ ଧାରଣ କରିଥିଲେ ଏବଂ ଯେ ଭାର୍ଯ୍ୟାଙ୍କ ସହିତ ରାଜ୍ୟଶ୍ରୀ, ପ୍ରିୟଜନ, ବନ୍ଧୁଗଣ, ବାସଭୂମି ସମସ୍ତ ପରିତ୍ୟାଗ କରି ବନଗମନ କରିଥିଲେ, ଦୁଷ୍ଟ ସ୍ୱଭାବା ରାବଣଭଗ୍ନୀ ସୂର୍ପଣଖାର ନାସିକା ଓ କର୍ଣ୍ଣଛେଦନ କରି ତାହାର ରୂପ ବିକୃତ କରିଥିଲେ ଏବଂ ତାହାର ଶ୍ରେଷ୍ଠ ବନ୍ଧୁ ଖର, ତ୍ରିଶିର ଓ ଦୂଷଣ ପ୍ରଭୃତି ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କୁ ବଧ କରିଥିଲେ ଏବଂ ଅସହ୍ୟ ଧନୁର୍ବାଣ ହସ୍ତରେ ଧରି ଅତି କଷ୍ଟରେ ବନ ମଧ୍ୟରେ ଭ୍ରମଣ କରିଥିଲେ ।୮, ୯।

---

ଅଶେଷ ରାଜପୁତ୍ର ଜିଣି
ସୀତାଙ୍କୁ ସ୍ୱୟମ୍ବରୁ ଆଣି
ଅଯୋଧ୍ୟା ନଗରେ ଆସନ୍ତେ
ପରଶୁରାମ ବନ ପଥେ
ବୋଇଲେ ରାମ ମୁଖ ଚାହିଁ
ଧନୁ ଭାଙ୍ଗିଲୁ ବଳେ ତୁହି
ମୋ ଧନୁ ବେନି କରେ ବହି
ଯୋଖିଲେ ସୀତା ମୋତେ ଦିଅ
ଏମନ୍ତେ ତାର ବାକ୍ୟ ଘୋରେ
ତା ଧନୁ ଧରି ଏକ କରେ
ତକ୍ଷଣେ ଭୃଗୁବଂଶୀ ବୋଲେ
ଜଙ୍ଘ ବସାଇ ଗୁଣ ଦେଲେ
ରାମର ଦେଖି ଘୋର କର୍ମ
ପାଦେ ନମିଲେ ପର୍ଶୁରାମ
ସୀତାଙ୍କୁ ଆଣି ନିଜ ପୁରେ
ପ୍ରବେଶ ହୋଇଲେ ସତ୍ୱରେ ।୭।
ପିତା ଯେ ପତ୍ନୀ ବଶ ହୋଇ
ଯାହା ବୋଇଲା କଇକେୟୀ
ମୋ ପୁତ୍ର ରାଜ୍ୟ ରାଜା ହେଉ
ତୋ ସୁତ ରାମ ବନେ ଯାଉ
ସେ ପୁଣି ପିତାର ବଚନେ
ତକ୍ଷଣେ ଚଳିଲେ ବିପିନେ
ବନେ ବୁଲନ୍ତି ବେନି ଭାଇ
ଜନକସୁତା ସଙ୍ଗେ ଲଇ ।୮।
ରାବଣ ଭଗ୍ନୀ ସୂର୍ପଣଖା
ମାୟାରେ ବଳେ ଦେଲା ଦେଖା
ଲକ୍ଷ୍ମଣ ହାତେ କୁଟ କଲେ
ତା ନାସା ଶ୍ରବଣ ଛେଦିଲେ
ତା ଛନେ ନିଶିଚରଗଣ
ଜର୍ଜରି କଲେ ଘୋର ରଣ
ଖର ଦୂଷଣ ଯେ ତ୍ରିଶିର
ଯୁଦ୍ଧେ ମିଳିଲେ ମହାବୀର
ସୂର୍ପଣଖାର ବନ୍ଧୁଗଣେ
ଯେତେ ମିଳିଲେ ଘୋରରଣେ
ତାଙ୍କୁ ଛେଦିଲେ ଶାଙ୍ଗ ଶରେ
ଅଶେଷ ଜନ ଉପକାରେ
ଚଉଦ ସହସ୍ର ଯେ ବୀର
ମାରିଲେ ଦଶରଥ ବାଳ ।୯।

ସୀତାକଥା ଶ୍ରବଣଦୀପିତହୃଚ୍ଛୟେନ ସୃଷ୍ଟଂ ବିଲୋକ୍ୟ ନୃପତେ ଦଶକନ୍ଧରେଣ ।
ଜଘ୍ନେଽଦ୍ଭୁତୈଣବପୁଷାଶ୍ରମତୋପକୃଷ୍ଟୋ ମାରୀଚମାଶୁ ବିଶିଖେନ ଯଥା କମୁଗ୍ରଃ ॥୧୦॥
ରକ୍ଷୋଽଧମେନ ବୃକବଦ୍‌ବିପିନେଽସମକ୍ଷଂ ବୈଦେହରାଜଦୁହିତର୍ଯ୍ୟପଯାପିତାୟାମ୍ ।
ଭ୍ରାତ୍ରାବନେ କୃପଣବତ୍ ପ୍ରିୟୟା ବିୟୁକ୍ତଃ ସ୍ତ୍ରୀସଙ୍ଗିନାଂ ଗତିମିତି ପ୍ରଥୟଂଶ୍ଚଚାର ॥୧୧॥
ଦଗ୍‌ଧ୍ୱାତ୍ମକୃତ୍ୟହତକୃତ୍ୟମହନ୍ କବନ୍ଧଂ ସଖ୍ୟଂ ବିଧାୟ କପିଭିର୍ଦୟିତାଗତିଂ ତୈଃ ।
ବୁଦ୍ଧ୍ୱାଥ ବାଲିନି ହତେ ପ୍ଲବଗେନ୍ଦ୍ରସୈନ୍ୟୈର୍ବେଳାମଗାତ୍ସ ମନୁଜୋଽଜଭବାର୍ଚ୍ଚିତାଙ୍ଘ୍ରିଃ ॥୧୨॥

---

ହେ ରାଜନ୍ ! ଅତ୍ୟନ୍ତ କାମାର୍ତ୍ତ ଦଶାନନ ସୀତାଙ୍କର ରୂପ ଲାବଣ୍ୟ ବିଷୟ ଶ୍ରବଣ କରି ମାରୀଚକୁ ପ୍ରେରଣ କରିଥିଲା ଏବଂ ମାରୀଚ ମାୟାରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ସ୍ୱର୍ଣ୍ଣ ମୃଗ ରୂପ ଧାରଣ କରି ରାମଚନ୍ଦ୍ରଙ୍କୁ ଆଶ୍ରମର ବହୁଦୂରକୁ ନେଇଯାଇଥିଲା । ଶିବ ଦକ୍ଷକୁ ବିନାଶ କଲାପରି ରାମଚନ୍ଦ୍ର ବାଣଦ୍ୱାରା ମାରୀଚକୁ ବଧ କରିଥିଲେ ।୧୦।

ରାକ୍ଷସାଧମ ରାବଣ କ୍ଷୁଦ୍ର ବ୍ୟାଘ୍ର ତୁଲ୍ୟ ଅସାକ୍ଷାତରେ ଜନକ ରାଜକନ୍ୟା ସୀତାଙ୍କୁ ଅପହରଣ କରିଥିଲା । ପ୍ରିୟତମା ବିଚ୍ଛେଦରେ ରାମଚନ୍ଦ୍ର ଦୀନ ଭାବରେ ସ୍ତ୍ରୀ ସଙ୍ଗୀମାନଙ୍କର ଦୁଃଖ ଦାୟକ ଅବସ୍ଥା-ଜ୍ଞାପନ କରି ଲକ୍ଷ୍ମଣଙ୍କ ସହିତ ବନ ମଧ୍ୟରେ ଭ୍ରମଣ କରିଥିଲେ ।୧୧।

ମାନବ ମୂର୍ତ୍ତିରେ ଅବତୀର୍ଣ୍ଣ ବ୍ରହ୍ମାଦି ଦେବଗଣ ବନ୍ଦିତ ଶ୍ରୀରାମଚନ୍ଦ୍ରଙ୍କ କାର୍ଯ୍ୟ ସାଧନ ନିମିତ୍ତ ପଥ ମଧ୍ୟରେ ରାବଣ ସହିତ ଯୁଦ୍ଧକରି ଜଟାୟୁ ପକ୍ଷୀ ନିହତ ହେବାରୁ ଶ୍ରୀରାମଚନ୍ଦ୍ର ପୁତ୍ରପରି ତାହାର ସତ୍କାର ବିଧାନ କରିଥିଲେ । ପରେ କବନ୍ଧକୁ ବଧ କରିଥିଲେ, ବାଳୀବଧ କରିଥିଲେ ଏବଂ ବାନରମାନଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରି ସେମାନଙ୍କର ସାହାଯ୍ୟରେ ପ୍ରିୟତମାଙ୍କର ଅବସ୍ଥିତ ସ୍ଥାନ ନିର୍ଣ୍ଣୟ କରି ସମୁଦ୍ର-ତୀରକୁ ଲକ୍ଷ୍ମଣଙ୍କ ସହିତ ଗମନ କରିଥିଲେ ।୧୨।

---

ବରଷା ଋତୁ ଆଗମନେ
ପଶିଲେ ରାମ ଘୋର ବନେ
ଚିତ୍ରକୂଟ ବୃକ୍ଷ ତଳେ ରହି
ପଲ୍ଲବେ କୁଟୀର ତିଆରି
ସୀତାର ରୂପ ଗୁଣ କଥା
ଶୁଣି ରାବଣ ମନେ ବ୍ୟଥା
ଅତି ପୀଡ଼ିତ କାମଶରେ
ରାକ୍ଷସ ପଶେ ଅନ୍ତଃପୁରେ
ମାରୀଚ ରାବଣ ଆଦେଶେ
ମିଳିଲା ରଘୁନାଥ ପାଶେ
ଅଦ୍ଭୁତ ବିଧାତାର ଯୋଗ
ବନେ ମିଳିଲା ମାୟା ମୃଗ

ବନେ ସୁବର୍ଣ୍ଣ ମୃଗ ଦେଖି
ରାମଙ୍କୁ ବୋଲେ ଚନ୍ଦ୍ରମୁଖୀ
ହେ ନାଥ ! ମୋର କ୍ରୀଡ଼ା ଅର୍ଥେ
ସୁବର୍ଣ୍ଣ ମୃଗ ଦିଅ ମୋତେ
ସେ ରାମ ନାରୀ ବଶ ଅର୍ଥେ
ଧନୁ ନାରାଚ ଧରି ହସ୍ତେ
ଧାଇଁଲେ ତାର ବଧ ଅର୍ଥେ
ସେ ପଶେ ଗହନ ବନସ୍ତେ
ତାହାକୁ ମାରିବାର କାଳେ
ଶବଦ କଲା ସେ ବିକଳେ
"ରକ୍ଷ ଲକ୍ଷ୍ମଣ" ସେ ଶୁଭିଲା
ଜାନକୀ ଲକ୍ଷ୍ମଣେ କହିଲା

ଲକ୍ଷ୍ମଣ ଯାଅ ବେଗ ହୋଇ
ସ୍ୱାମିର ସୁଖ ନ ଦେଖଇ
ତକ୍ଷଣେ ଧନୁ ଧରି ହସ୍ତେ
ମିଳିଲେ ରାମର ଅଗ୍ରତେ ।୧୦।
ରାବଣ ମିଳି ବୃକ୍ଷ ତଳେ
ସୀତାଙ୍କୁ ନେଲା ଅନ୍ତରାଳେ
ସୀତା ବିଚ୍ଛେଦେ ଦୁଃଖ ମନେ
ମିଳିଲେ ଋଷ୍ୟମୂକ ବନେ
ସେ ବନେ ବାଳୀକି ସଂହାରି
ସୁଗ୍ରୀବ ତୁଲେ ମିତ୍ର କରି
ଅଙ୍ଗଦ ହନୁମାନ ତୁଲେ
ସମୁଦ୍ର ନିକଟେ ମିଳିଲେ ।୧୧,୧୨

ଯଦ୍ରୋଷବିଭ୍ରମବିବୃତ୍ତକଟାକ୍ଷପାତସମ୍ଭ୍ରାନ୍ତନକ୍ରମକରୋଭୟଗୀର୍ଣ୍ଣଘୋଷଃ ।
ସିନ୍ଧୁଃ ଶିରସ୍ୟର୍ହଣଂ ପରିଗୃହ୍ୟ ରୂପୀ ପାଦାରବିନ୍ଦମୁପଗମ୍ୟ ବଭାଷ ଏତତ୍ ।୧୩।
ନ ତ୍ୱାଂ ବୟଂ ଜଡଧିୟୋ ନୁ ବିଦାମ ଭୂମନ୍ କୂଟସ୍ଥମାଦ୍ୟପୁରୁଷଂ ଜଗତାମଧୀଶମ୍ ।
ଯତ୍ ସତ୍ତ୍ୱତଃସୁରଗଣାରଜସଃ ପ୍ରଜେଶା ମନ୍ୟୋଶ୍ଚ ଭୂତପତୟଃ ସ ଭବାନ୍ ଗୁଣେଶଃ ॥
କାମଂ ପ୍ରଜାହି ଜହି ବିଶ୍ରବସୋଽବମେହଂ ତ୍ରୈଲୋକ୍ୟରାବଣମବାପ୍ନୁହି ବୀର ପତ୍ନୀମ୍
ବଧ୍ନୀହି ସେତୁମିହ ତେ ଯଶସୋ ବିତତ୍ୟୈ ଗାୟନ୍ତି ଦିଗ୍‌ବିଜୟିନୋ
ଯମୁପେତ୍ୟ ଭୂପାଃ ।୧୫।
ବଦ୍ଧ୍ୱୋଦଧୌ ରଘୁପତିର୍ବିବିଧାଦ୍ରିକୂଟୈଃ ସେତୁଂ କପୀନ୍ଦ୍ରକରକମ୍ପିତଭୂରୁହାଙ୍ଗୈଃ ।
ସୁଗ୍ରୀବନୀଲହନୁମତ୍ପ୍ରମୁଖୈରନୀକୈର୍ଲଙ୍କାଂ ବିଭୀଷଣଦୃଶାବିଶଦଗ୍ରଦଗ୍ଧାମ୍ ।୧୬।

---

ଶ୍ରୀରାମଚନ୍ଦ୍ର ତ୍ରିରାତ୍ର ଉପବାସରେ ସମୁଦ୍ରର ଆଗମନ ପ୍ରତୀକ୍ଷା କରିଥିଲେ ମଧ୍ୟ ସମୁଦ୍ର ଉପସ୍ଥିତ ନ ହୁଅନ୍ତେ କ୍ରୋଧବଶତଃ କଟାକ୍ଷପାତ କରିବାରୁ ସମୁଦ୍ର ମଧ୍ୟସ୍ଥିତ ନକ୍ର ଓ ମକରାଦି ଜଳ ଜନ୍ତୁମାନେ ସନ୍ତ୍ରସ୍ତ ହୋଇଥିଲେ । ସମୁଦ୍ର ମଧ୍ୟ ନିଜର ତରଙ୍ଗ ଶବ୍ଦ ସଂଯତ କରି ମୂର୍ତ୍ତିମାନ ହୋଇ ମସ୍ତକରେ ଅର୍ଘ୍ୟାଦି ପୂଜୋପକରଣ ଗ୍ରହଣ କରି ଶ୍ରୀରାମଚନ୍ଦ୍ରଙ୍କର ପାଦପଦ୍ମରେ ଉପସ୍ଥିତ ହୋଇ କହିଥିଲା ।୧୩।

ହେ ଭୂମନ୍ (ସର୍ବବ୍ୟାପକ) ! ଜଡ଼ବୁଦ୍ଧି ସମ୍ପନ୍ନ ଆମ୍ଭେମାନେ ଅଜ୍ଞ, ତେଣୁ ନିର୍ବିକାର ଆଦି ପୁରୁଷ ଜଗଦୀଶ୍ୱର ଆପଣଙ୍କୁ ଚିହ୍ନି ପାରୁନାହୁଁ, ଆପଣଙ୍କର ସତ୍ତ୍ୱଗୁଣରୁ ଦେବଗଣ, ରଜୋଗୁଣରୁ ପ୍ରଜାପତିମାନେ ଏବଂ ତମ ଗୁଣରୁ ରାଜନ୍ୟମଣ୍ଡଳୀ ଉତ୍ପନ୍ନ ହୋଇଅଛନ୍ତି । ଆପଣ ସେହି ଗୁଣ ସମୂହର ଅଧୀଶ୍ୱର ।୧୪।

ହେ ବୀର ! ଆପଣ ଯଥେଚ୍ଛା ଭାବରେ ଏହି ଜଳ ଉପରେ ଗମନ କରନ୍ତୁ ବିଶ୍ରବାଙ୍କର ବିଷ୍ଠା ସ୍ୱରୂପ ଏବଂ ତ୍ରିଭୁବନର ଦୁଃଖଦାୟକ ରାବଣକୁ ବଧ କରନ୍ତୁ ଏବଂ ଆପଣଙ୍କର ପତ୍ନୀ ସୀତାଙ୍କୁ ଲାଭ କରନ୍ତୁ ଏବଂ ଆପଣଙ୍କର କୀର୍ତ୍ତି ବିସ୍ତାର ନିମିତ୍ତ ମୋ ଉପରେ ସେତୁ ବନ୍ଧନ କରନ୍ତୁ । ତାହା ଦେଖି ପରବର୍ତ୍ତୀ ଯୁଗରେ ନୃପତିମାନେ ଆପଣଙ୍କର କୀର୍ତ୍ତି ଗାନ କରୁଥିବେ ।୧୫।

ରଘୁପତି ରାମଚନ୍ଦ୍ର ବାନର ସେନାମାନଙ୍କର ହସ୍ତଦ୍ୱାରା ଦୋଳକମ୍ପିତ ବୃକ୍ଷଯୁକ୍ତ ପର୍ବତରାଜି ଆନୟନ କରି ସମୁଦ୍ରରେ ସେତୁବନ୍ଧନ କରି ବିଭୀଷଣଙ୍କର ପରାମର୍ଶ ଅନୁସାରେ ସୁଗ୍ରୀବ, ନୀଳ, ହନୁମାନ ପ୍ରଭୃତି କପିସେନାଙ୍କ ସହିତ ଲଙ୍କାରେ ପ୍ରବେଶ କରିଥିଲେ । ପୂର୍ବରୁ ସେ ଲଙ୍କାପୁରୀ ହନୁମାନ କର୍ତ୍ତୃକ ଦଗ୍ଧ ହୋଇଥିଲା ।୧୬।

---

ପ୍ରିୟା ବିଚ୍ଛେଦେ ଦୁଃଖମନ
ଜାଣିଲା ବରୁଣ ରାଜନ
ସ୍ୱଭାବେ ଦୁର୍ଗମ ଗମ୍ଭୀର
ଭ୍ରମନ୍ତି ମକର କୁମ୍ଭୀର
ତକ୍ଷଣେ ନିଜ ରୂପ ଧରି
ରାମର ପାଦେ ନମସ୍କରି

ଅନେକ ସ୍ତୁତି ବାକ୍ୟ କଲା
ସେତୁ ବନ୍ଧନେ ମାର୍ଗ ଦେଲା
ବୋଲଇ ଭବଭକ୍ତ ବନ୍ଧ
ରାବଣ ବଧ କରି ଶୁଦ୍ଧ
ସକଳ ରାକ୍ଷସ ସଂହାର
ବେଗେ ତୁ ଲଭ ନିଜ ନାରୀ

ତୋ ଯଶ ରହୁ ଦଶଦିଗେ
ମୁନିଏ ଗାଇବେ ହରଷେ ।୧୩-୧୫
ସୁଗ୍ରୀବ ନୀଳ ହନୁମନ୍ତ
ଅଙ୍ଗଦ ଘେନି କପିଯୂଥ
ଚଳନ୍ତି ରାଘବଙ୍କ ସଙ୍ଗେ
ଲଙ୍କା ଦହନ କରି ବେଗେ

ସ ବାନରେନ୍ଦ୍ରବଲରୁଦ୍ଧବିହାରକୋଷଶ୍ରୀଦ୍ୱାରଗୋପୁରସଦୋବଲଭୀବିଟଙ୍କାଃ ।
ନିର୍ଭଜ୍ୟମାନଧିଷଣଧ୍ୱଜହେମକୁମ୍ଭଶୃଙ୍ଗାଟକା ଗଜକୁଲୈର୍ହ୍ରଦିନୀବ ଘୂର୍ଣ୍ଣା । ୧୭ ।
ରକ୍ଷଃପତିସ୍ତଦବଲୋକ୍ୟ ନିକୁମ୍ଭକୁମ୍ଭଧୂମ୍ରାକ୍ଷଦୁର୍ମୁଖସୁରାନ୍ତନରାନ୍ତକାଦୀନ୍ ।
ପୁତ୍ରଂ ପ୍ରହସ୍ତମତିକାୟବିକମ୍ପନାଦୀନ୍ ସର୍ବାନୁଗାନ୍ ସମହିନୋଦଥ କୁମ୍ଭକର୍ଣ୍ଣମ୍ ।୧୮।
ତାଂ ଯାତୁଧାନପୃତନାମସିଶୂଲଚାପପ୍ରାସର୍ଷ୍ଟିଶକ୍ତିଶରତୋମରଖଡ୍ଗଦୁର୍ଗାମ୍ ।
ସୁଗ୍ରୀବଲକ୍ଷ୍ମଣମରୁତ୍‌ସୁତଗନ୍ଧମାଦନୀଲାଙ୍ଗଦର୍କ୍ଷପନସାଦିଭିରନ୍ୱିତୋଽଗାତ୍ । ୧୯ ।
ତେଽନୀକପା ରଘୁପତେରଭିପତ୍ୟ ସର୍ବେ ଦ୍ୱନ୍ଦ୍ୱଂ ବରୂଥମିଭପତ୍ତିରଥାଶ୍ୱଯୋଧୈଃ ।
ଜଘ୍ନୁର୍ଦ୍ରୁମୈର୍ଗିରିଗଦେଷୁଭିରଙ୍ଗଦାଦ୍ୟାଃ ସୀତାଭିମର୍ଷହତମଙ୍ଗଳରାବଣେଶାନ୍ ।୨୦।

---

ହସ୍ତୀମାନେ ଯେପରି ନଦୀ ମଧ୍ୟରେ ପ୍ରବେଶ କରି ନଦୀକୁ ବିଚଳିତ କରିଥାନ୍ତି ସେହିପରି ଶ୍ରୀରାମଚନ୍ଦ୍ର ବାନର ସେନାମାନଙ୍କ ସହିତ ଲଙ୍କାରେ ପ୍ରବେଶ କରନ୍ତେ ଲଙ୍କା କମ୍ପିତ ହେଲା । ସେମାନେ ଲଙ୍କା-ପୁରୀର କ୍ରୀଡ଼ାସ୍ଥାନ, ଧାନ୍ୟାଗାର, ଭଣ୍ଡାର, ଗୃହାଦି ପୁରଦ୍ୱାର, ସଭାଗୃହ, ଅଟ୍ଟାଳିକା, ଉଚ୍ଚଗୃହ, କପୋତ ପାଳିକା ପ୍ରଭୃତି ରୁଦ୍ଧ କରିଥିଲେ ଏବଂ ବେଦୀ, ପତାକା, ସ୍ୱର୍ଣ୍ଣକଳସ, ଚତୁଷ୍ପଥ, ପ୍ରଭୃତି ଭଗ୍ନ କରିଥିଲେ ।୧୭।

ରାକ୍ଷସପତି ରାବଣ ଏହା ଦେଖି ସେମାନଙ୍କୁ ଜୟ କରିବା ନିମିତ୍ତ କୁମ୍ଭ, ନିକୁମ୍ଭ, ଧୂମ୍ରାକ୍ଷ, ଦୁର୍ମୁଖ, ସୁରାନ୍ତକ, ନରାନ୍ତକ, ଇନ୍ଦ୍ରଜିତ୍, ପ୍ରହସ୍ତ, ଅତିକାୟ, ବିକମ୍ପନ ପ୍ରଭୃତି ଅନୁଚରମାନଙ୍କୁ ଓ କୁମ୍ଭକର୍ଣ୍ଣଙ୍କୁ ପ୍ରେରଣ କରିଥିଲା ।୧୮।

ଏହି ରାକ୍ଷସ ସେନାମାନେ ଅସି, ଶୂଳ, ଧନୁ ,ପାଶ, ଋଷ୍ଟି ,ଶକ୍ତି, ଶର, ତୋମର ଓ ଖଡ୍‌ଗାଦିଦ୍ୱାରା ଦୁର୍ଦ୍ଧର୍ଷ ହେଲେ ମଧ୍ୟ ରାମଚନ୍ଦ୍ର ସୁଗ୍ରୀବ, ଲକ୍ଷ୍ମଣ, ହନୁମାନ ଗନ୍ଧମାଦନ, ନୀଳ, ଅଙ୍ଗଦ, ଋକ୍ଷ, ଜାମ୍ବବାନ, ପନସ, ପ୍ରଭୃତିଙ୍କ ସହିତ ମିଳିତ ହୋଇ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାକୁ ଗମନ କରିଥିଲେ ।୧୯।

ଅଙ୍ଗଦ ପ୍ରଭୃତି ଶ୍ରୀରାମଚନ୍ଦ୍ରଙ୍କର ଅନୁଚରବର୍ଗ ହସ୍ତୀ, ଅଶ୍ୱ, ରଥ, ପଦାତି ଏହି ଚତୁରଙ୍ଗ ବଳ ସମନ୍ୱିତ ରାକ୍ଷସ ସେନାଙ୍କ ସହିତ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହୋଇ ବୃକ୍ଷ, ପର୍ବତ, ଗଦା, ବାଣ ସମୂହଦ୍ୱାରା ସେମାନଙ୍କୁ ବଧ କରିଥିଲେ । ସୀତାହରଣ ଅପରାଧରେ ରାବଣ ଶ୍ରୀ ଭ୍ରଷ୍ଟ ହୋଇଥିଲା ।୨୦।

---

ନିକୁମ୍ଭ କୁମ୍ଭ ଇନ୍ଦ୍ରଜିତ
ଧୂମ୍ରାକ୍ଷ ଆଦି ଯେତେ ଯୂଥ
ଏ ଆଦି ଯେତେ ଘୋର ସୈନ୍ୟ
ସଙ୍ଗେ ଘେନି କୁମ୍ଭକର୍ଣ୍ଣ
ଶୂଳ ବେଗ ପ୍ରାସ ଋଷ୍ଟି
ଭୁଷଣ୍ଡି ତୀକ୍ଷ୍ଣ ଶର ବୃଷ୍ଟି

କରନ୍ତି ରାକ୍ଷସ ସମୂହେ
ସମୁଚ୍ଛେ ହୋନ୍ତି ଯେତେ କ୍ଷୟେ
ସୁଗ୍ରୀବ ଲକ୍ଷ୍ମଣ ସମେତ
ଗନ୍ଧମାଦ ଯେ ହନୁମନ୍ତ
ଏ ଆଦି ରୁଦ୍ରବଳ ଭୂତଳ
ରାକ୍ଷସ ସଂହାରିଲେ ଭଲେ

ସଙ୍ଗେ ଘେନି କପିବଳ
ଲଙ୍କାରେ ସଯୋଜି ଅନଳ
ରାକ୍ଷସ ସଙ୍ଗେ ଯୁଦ୍ଧ କରି
ଅନେକ ବଳ ତାରି ମାରି
ସୀତା ହରଣ ଦୋଷ ସଙ୍ଗେ
ସଭାମେସର୍ବେନାଶଗଲେ ।୧୬-୨୦

ରକ୍ଷଃପତିଃ ସ୍ୱବଲନଷ୍ଟିମବେକ୍ଷ୍ୟ ରୁଷ୍ଟ ଆରୁହ୍ୟ ଯାନକମଥାଭିସସାର ରାମମ୍ ।
ସ୍ୱଃସ୍ୟନ୍ଦନେ ଦ୍ୟୁମତି ମାତଲିନୋପନୀତେ ବିଭ୍ରାଜମାନମହନନ୍ନିଶିତୈଃ କ୍ଷୁରପ୍ରୈଃ ॥
ରାମସ୍ତମାହ ପୁରୁଷାଦପୁରୀଷ ଯନ୍ନଃ କାନ୍ତାସମକ୍ଷମସତାପହୃତା ଶ୍ୱବତ୍ତେ ।
ତ୍ୟକ୍ତତ୍ରପସ୍ୟ ଫଲମଦ୍ୟ ଜୁଗୁପ୍ସିତସ୍ୟ ଯଚ୍ଛାମି କାଲ ଇବ
କର୍ତ୍ତୁରଲଙ୍ଘ୍ୟବୀର୍ଯ୍ୟଃ । ୨୨।

ଏବଂ କ୍ଷିପନ୍ ଧନୁଷି ସନ୍ଧିତମୁତ୍ସସର୍ଜ୍ଜ ବାଣଂ ସ ବଜ୍ରମିବ ତଦ୍ଧୃଦୟଂ ବିଭେଦ ।
ସୋଽସୃଗ୍ୱମନ୍ ଦଶମୁଖୈର୍ନ୍ୟପତଦ୍ୱିମାନାଦ୍ଧାହେତି ଜଳ୍ପତି ଜନେ ସୁକୃତୀବ ରିକ୍ତଃ



ରାବଣବଧ

ତଦନନ୍ତର ରାବଣ ନିଜର ସୈନ୍ୟମାନଙ୍କୁ ବିନଷ୍ଟ ହେବାରଦେଖି ରଥରେ ଆରୋହଣ କରି ଯୁଦ୍ଧପାଇଁ ଆଗମନ କରିଥିଲା । ଦେବରାଜ ଇନ୍ଦ୍ର ସାରଥି ମାତଳି କର୍ତ୍ତୃକ ଆନୀତ ଦୀପ୍ତିଶାଳୀ ସ୍ୱର୍ଗୀୟ ରଥୋପରି ଶ୍ରୀରାମଚନ୍ଦ୍ର ବିରାଜମାନ କରିଥିଲେ । ରାବଣକ୍ଷୁରଧାରପରି ତୀକ୍ଷ୍ଣଅସ୍ତ୍ରଦ୍ୱାରା ଶ୍ରୀରାମଚନ୍ଦ୍ରଙ୍କୁ ପ୍ରହାର କରୁଥିଲା ।୨୧।

ଶ୍ରୀରାମଚନ୍ଦ୍ର ରାବଣକୁ କହିଲେ :—

ହେ ରାକ୍ଷସମାନଙ୍କର ପୁରିଷ ତୁଲ୍ୟ ରାବଣ ! କୁକୁର ପରି ମୋ ଅସାକ୍ଷାତରେ ତୁ ମୋର ସ୍ତ୍ରୀକୁ ଅପହରଣ କରିଅଛୁ । ଅମୋଘ ବୀର୍ଯ୍ୟ କାଳ ଯେପରି ପାପୀର ଦଣ୍ଡବିଧାନ କରେ ସେହିପରି ମୁଁ ପାପାତ୍ମା ତୋର ଦଣ୍ଡ ବିଧାନ କରିବି ।୨୨।

ଏହିପରି ତିରସ୍କାର କରି ଶ୍ରୀରାମଚନ୍ଦ୍ର ଧନୁରେ ବାଣ ଯୋଜନା କରି ନିକ୍ଷେପକଲେ । ସେହି ନିକ୍ଷିପ୍ତ ବାଣ ବଜ୍ରତୁଲ୍ୟ ରାବଣ ହୃଦୟକୁ ଭେଦ କରିଥିଲା । ପୁଣ୍ୟକ୍ଷୟ ହେଲେ ଯେପରି ପୁଣ୍ୟ ଲୋକରୁ ପୁଣ୍ୟବାନ୍ ବ୍ୟକ୍ତି ପତିତ ହୁଏ ସେହିପରି ଦଶମୁଖ ରାବଣ ରକ୍ତବାନ୍ତିକରି ପୁଷ୍ପକରଥରୁ ପତିତ ହୋଇଥିଲା, ରାକ୍ଷସ ପକ୍ଷୀୟଲୋକମାନେ ହାହାକାର କରିଥିଲେ ।୨୩

ଦେଖିଣ ବୀରଙ୍କ ମରଣ
ରଥ ଆରୋହିଲା ରାବଣ
ମାତଳି ସଙ୍ଗେ ଦିବ୍ୟ ଯାନେ
ମିଳିଲେ ରାମ ସନ୍ନିଧାନେ
ରାମ ରାବଣ ମୁଖ ଚାହିଁ
କହନ୍ତି କୋପଭର ହୋଇ

ମୋ ନାରୀ ହରିଲୁ ଯେ ତୁହି
ତପ ପ୍ରସାଦେ ଗର୍ବ ବହି
ଆଜ ସରିଲା ତପ ଫଳ
ହେଲେ ଗଞ୍ଜିବି ତୋର ବଳ
ଏମନ୍ତ କହି ରଘୁନାଥ
କୋପେ କୋଦଣ୍ଡ ଧରି ହସ୍ତ

ବଜ୍ର ସମାନ ରାମ ଶର
ଭେଦିଲା ରାବଣ ହୃଦର
ରଥୁ ପଡ଼ିଲା ଭୂମିତଳେ
ଦଶ ବଦନୁଁ ଶ୍ରୋଣି ଗଳେ
ଭୂମି କମ୍ପିଲା ଥରହର
ଶବଦ ଶୁଭେ ହାହାକାର ।୨୧-୨୩

ତତୋ ନିଷ୍କ୍ରମ୍ୟ ଲଙ୍କାୟା ଯାତୁଧାନ୍ୟଃ ସହସ୍ରଶଃ ।
ମନ୍ଦୋଦର୍ଯ୍ୟା ସମଂ ତତ୍ର ପ୍ରରୁଦନ୍ତ୍ୟ ଉପାଦ୍ରବନ୍ । ୨୪ ।
ସ୍ୱାନ୍ ସ୍ୱାନ୍ ବନ୍ଧୂନ୍ ପରିଷ୍ୱଜ୍ୟ ଲକ୍ଷ୍ମଣେଷୁଭିରର୍ଦ୍ଦିତାନ୍ ।
ରୁରୁଦୁଃ ସୁସ୍ୱରଂ ଦୀନା ଘ୍ନନ୍ତ୍ୟ ଆତ୍ମାନମାତ୍ମନା । ୨୫ ।
ହା ହତାଃ ସ୍ମ ବୟଂ ନାଥ ଲୋକରାବଣ ରାବଣ ।
କଂ ଯାୟାଚ୍ଛରଣଂ ଲଙ୍କା ତ୍ୱଦ୍ୱିହୀନା ପରାର୍ଦ୍ଦିତା । ୨୬ ।
ନ ବୈ ବେଦ ମହାଭାଗ ଭବାନ୍ କାମବଶଂ ଗତଃ ।
ତେଜୋଽନୁଭାବଂ ସୀତାୟା ଯେନ ନୀତୋ ଦଶାମିମାମ୍ । ୨୭ ।
କୃତୈଷା ବିଧବା ଲଙ୍କା ବୟଞ୍ଚ କୁଳନନ୍ଦନ ।
ଦେହଃ କୃତୋଽନ୍ନଂ ଗୃଧ୍ରାଣାମାତ୍ମା ନରକହେତବେ । ୨୮ ।

---

ଲଙ୍କାରୁ ସହସ୍ର ସହସ୍ର ରାକ୍ଷସୀ ମନ୍ଦୋଦରୀ ସହିତ ରୋଦନ କରୁ କରୁ ରଣ ସ୍ଥଳରେ ଉପସ୍ଥିତ ହେଲେ ଏବଂ ଲକ୍ଷ୍ମଣଙ୍କ ବାଣାଘାତରେ ନିହତ ଆପଣା ଆପଣା ସ୍ୱାମୀଙ୍କୁ ଆଲିଙ୍ଗନ କରି ଅତିଶୟ କାତର ଭାବରେ ନିଜ ବକ୍ଷରେ କରାଘାତ କରି କରୁଣ ସ୍ୱରରେ ରୋଦନ କଲେ । ୨୪, ୨୫ ।

ମନ୍ଦୋଦରୀ କହିଲେ :—

ହେ ନାଥ ! ହେ ଲୋକଭୀତିପ୍ରଦ ରାବଣ ! ଆମ୍ଭେମାନେ ମଲୁଁ । ତୁମ୍ଭ ବିହୀନେ ଏ ଲଙ୍କାପୁରୀ ଶତ୍ରୁ କର୍ତ୍ତୃକ ପ୍ରପୀଡ଼ିତ ହେଲା, ଆମ୍ଭେମାନେ କାହାର ଆଶ୍ରୟ ଗ୍ରହଣ କରିବୁଁ ? ହେ ନାଥ ! ତୁମ୍ଭେ କାମାର୍ତ୍ତ ହୋଇ ସୀତାର ସତୀତ୍ୱ ପ୍ରଭାବ ଜାଣିପାରିଲ ନାହିଁ; ତେଣୁ ଏ ଦଶା ଲଭିଲ । ୨୬, ୨୭ ।

ହେ ରାକ୍ଷସକୁଳ ଶ୍ରେଷ୍ଠ ! ଏ ଲଙ୍କାପୁରୀକୁ ଓ ଆମ୍ଭମାନଙ୍କୁ ତୁମ୍ଭେ ବିଧବା କଲ । ତୁମର ଦେହକୁ ଗୃଧ୍ରମାନଙ୍କର ଭକ୍ଷଣ ଯୋଗ୍ୟ କଲ ଓ ତୁମ୍ଭର ଆତ୍ମାପାଇଁ ନରକଭୋଗର ବ୍ୟବସ୍ଥା କଲ ।୨୮।

---

ରାବଣ ହତ ଶୁଣି କର୍ଣ୍ଣେ
ଚଳିଲେ ଅନ୍ତଃପୁର ଜନେ
ତକ୍ଷଣେ ମନ୍ଦୋଦରୀ ଛୁଟିଲେ
ରାକ୍ଷସୀଗଣ ଉଚ୍ଚରିଲେ
ରୋଦନ କରି ସେ ବନିତେ
ଶବଦେ ଭୁବନ ଉଛୁଳେ
ଚିହ୍ନିଲେ ରଣ ଭୂମିମଧ୍ୟେ
ସ୍ୱାମୀ ମରଣେ ଶୋକନାଦେ
ହୃଦୟେ କ୍ରନ୍ଦନକର ତାଡ଼
ହା ନାଥ ! ବୋଲି ପାଦେ ପଡ଼ି

ରାକ୍ଷସନାରୀଙ୍କ ରୋଦନ
ପୂରିଲା ଧରଣୀ ଗଗନ ।୨୪,୨୫
କାନ୍ଦନ୍ତି ସ୍ୱାମୀ କୋଳେ ଧରି
ନାଥଙ୍କ ତୁଲେ ମନ୍ଦୋଦରୀ
ବଜ୍ର ସମାନେ ରାମ ଶର
ଭେଦିଲା ତୋର ହୃଦୟର
ହେ ନାଥ ! ତୋହର ମରଣେ
ପଶିବୁଁ କାହାର ଶରଣେ
ଲୋକରାବଣ ତୁ ରାବଣ
ଅନାଥ କଲୁ ନାରୀଗଣ

ତୋର ମରଣେ ଲଙ୍କାପୁରୀ
ଏବେ ହୋଇଲା ହତଶିରୀ
ତୁ ନାଥ କାମେ ହେଳ ହୋଇ
ଛଳେ ହରିଲୁ ବଇଦେହୀ
ସେ ଦୋଷ ତୋତେ ନାଶକଲା
ମରଣ ଦଶା ଭଆରିଲା ।୨୬,୨୭
ଅନାଥ କଲୁ ସର୍ବ ନାରୀ
ଆମ୍ଭ ସଙ୍ଗତେ ଲଙ୍କାପୁରୀ
ଦେହକୁ କଲୁ ଗୃଧ୍ର ଗ୍ରାସ
ନରକେ ହୋଇଲୁ ପ୍ରବେଶ ।୨୮.

ଶ୍ରୀ ଶୁକ ଉବାଚ

ସ୍ୱାନାଂ ବିଭୀଷଣଶ୍ଚକ୍ରେ କୋଶଳେନ୍ଦ୍ରାନୁମୋଦତଃ ।
ପିତୃମେଧବିଧାନେନ ଯଦୁକ୍ତଂ ସାମ୍ପରାୟିକମ୍ । ୨୯ ।
ତତୋ ଦଦର୍ଶ ଭଗବାନଶୋକବନିକାଶ୍ରମେ ।
କ୍ଷାମାଂ ସ୍ୱବିରହବ୍ୟାଧିଂ ଶିଂଶପାମୂଳମାଶ୍ରିତାମ୍ । ୩୦ ।
ରାମଃ ପ୍ରିୟତମାଂ ଭାର୍ଯ୍ୟାଂ ଦୀନାଂ ବୀକ୍ଷାନ୍ୱକମ୍ପତ ।
ଆତ୍ମସନ୍ଦର୍ଶନାହ୍ଲାଦ-ବିକସନ୍ମୁଖପଙ୍କଜାମ୍ । ୩୧ ।
ଆରୋପ୍ୟାରୁରୁହେ ଯାନଂ ଭ୍ରାତୃଭ୍ୟାଂ ହନୁମଦ୍ୟୁତଃ ।
ବିଭୀଷଣାୟ ଭଗବାନ୍ ଦତ୍ତ୍ୱା ରକ୍ଷୋଗଣେଶତାମ୍ ।
ଲଙ୍କାମାୟୁଶ୍ଚ କଳ୍ପାନ୍ତଂ ଯଯୌ ଚୀର୍ଣ୍ଣବ୍ରତଃ ପୁରୀମ୍ । ୩୨ ।

---

ଶ୍ରୀ ଶୁକଦେବ କହିଲେ :—

ତଦନନ୍ତର ଶ୍ରୀରାମଚନ୍ଦ୍ରଙ୍କର ଆଜ୍ଞାନୁସାରେ ବିଭୀଷଣ ପିତୃକାର୍ଯ୍ୟ ବିଧାନାନୁସାରେ ଆତ୍ମୀୟମାନଙ୍କର ପାରଲୌକିକ କ୍ରିୟା ସମାପନ କରିଥିଲେ ।୨୯।

ତଦନନ୍ତର ଭଗବାନ୍ ଶ୍ରୀରାମଚନ୍ଦ୍ର ଅଶୋକବନକୁ ଗମନ କରି ପତିବିରହ କାତରା, ତେଣୁ କ୍ଷୀଣା ସୀତା ଦେବୀଙ୍କୁ ଅଶୋକ ବୃକ୍ଷ ମୂଳରେ ଉପବେଶନ କରିଥିବାର ଦେଖିଲେ ।୩୦।

ଶ୍ରୀରାମଚନ୍ଦ୍ର ପ୍ରିୟତମା ପତ୍ନୀଙ୍କୁ ଅତ୍ୟନ୍ତ କାତର ଦେଖି ଦୟାର୍ଦ୍ର ହୋଇଥିଲେ । ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କରି ତାହାଙ୍କର ପଦ୍ମମୁଖ ପ୍ରଫୁଲ୍ଲ ହୋଇଥିଲା ।୩୧।

ଶ୍ରୀରାମଚନ୍ଦ୍ର ବିଭୀଷଣଙ୍କୁ ରାକ୍ଷସାଧିପତ୍ୟ, ଲଙ୍କାପୁରୀ ଓ କଳ୍ପାନ୍ତ ଆୟୁ ପ୍ରଦାନ କରି ଚତୁର୍ଦ୍ଦଶ ବର୍ଷ ବନଗମନ ବ୍ରତ ସମାପନ କରି ପୁଷ୍ପକ ରଥରେ ଲକ୍ଷ୍ମଣ, ସୁଗ୍ରୀବ ଓ ହନୁମାନଙ୍କ ସହିତ ଆରୋହଣ କରି ପ୍ରତ୍ୟାବର୍ତ୍ତନ କରିଥିଲେ ।୩୨।

---

ଏମନ୍ତେ କହି ନାରୀଗଣେ
ପ୍ରାଣ ଛାଡ଼ିଲେ ହୁତାଶନେ
ରହିଲା ମନ୍ଦୋଦରୀ ଶେଷ
ଏବେ ହୋ ଶୁଣ କୁରୁଶିଷ୍ୟ !
ରାବଣ ଭାଇ ବିଭୀଷଣ
ଥିଲା ଯେ ରାମର ଶରଣ
ତାହାକୁ ଦେଲେ ମନ୍ଦୋଦରୀ
ଲଙ୍କାରେ ଅଧିକାରୀ କରି

ବୋଇଲେ ପ୍ରଭୁ ରଘୁବୀର
ତୁ ଏବେ ପ୍ରେତ କାର୍ଯ୍ୟ କର ।୨୯
ଏମନ୍ତ ଆଜ୍ଞା ରାମ ଦେଲେ
ଅଶୋକ ବିପିନେ ପଶିଲେ
ସୀତା ଦେଖିଲେ ବେନି ତୋଳେ
ଅଧୋବଦନେ ବୃକ୍ଷତଳେ
ରାମ ବିଚ୍ଛେଦବ୍ୟାଧି ଜ୍ୱରେ
ଶୁଖିଛି ସୁରଙ୍ଗ ଅଧରେ

ଲୋଚନେ ଅଶ୍ରୁ ଜଳ ପୂରି
'ହା ସୀତା' ବୋଲି କୋଳେ ଧରି
ଜାନକୀ ପ୍ରଭୁ ମୁଖ ଚାହିଁ
ବେଗେ ଉଠିଲେ ଜ୍ଞାନ ପାଇ
ଆଦିତ୍ୟ ଦେଖି ପଦ୍ମ ଯେସନ୍ତେ
ଅନାଇଥିଲା ନୀଳଲୋଚନେ ।୩୦,୩୧
ରାମର ହସ୍ତେ ହସ୍ତ ଦେଇ
କାଞ୍ଚନ ବିମାନ ଆରୋହି

ଅବକୀର୍ଯ୍ୟମାଣଃ କୁସୁମୈର୍ଲୋକପାଳାର୍ପିତୈଃ ପଥି ।
ଉପଗୀୟମାନଚରିତଃ ଶତଧୃତ୍ୟାଦଭିର୍ମୁଦା । ୩୩ ।
ଗୋମୂତ୍ରଯାବକଂ ଶ୍ରୁତ୍ୱା ଭ୍ରାତରଂ ବଲ୍କଲାମ୍ବରମ୍ ।
ମହାକାରୁଣିକୋଽତପ୍ୟଜ୍ଜଟିଳଂ ସ୍ଥଣ୍ଡିଳେଶୟମ୍ । ୩୪ ।
ଭରତଂ ପ୍ରାପ୍ତମାକର୍ଣ୍ୟ ପୌରାମାତ୍ୟପୁରୋହିତୈଃ ।
ପାଦୁକେ ଶିରସିନ୍ୟସ୍ୟ ରାମଂ ପ୍ରତ୍ୟୁଦ୍ୟତୋଽଗ୍ରଜମ୍ । ୩୫ ।
ନନ୍ଦିଗ୍ରାମାତ୍ ସ୍ୱଶିବିରାତ୍ ଗୀତବାଦିତ୍ରନିସ୍ୱନୈଃ ।
ବ୍ରହ୍ମଘୋଷେଣ ଚ ମୁହୁଃ ପଠଦ୍ଭିର୍ବ୍ରହ୍ମବାଦିଭିଃ । ୩୬ ।

---

ପଥିମଧ୍ୟରେ ଇନ୍ଦ୍ରାଦି ଲୋକପାଳଗଣ ଓ ବ୍ରହ୍ମାଦି ଦେବଗଣ ପୁଷ୍ପବୃଷ୍ଟି କରିଥିଲେ ଏବଂ ଶ୍ରୀରାମଚନ୍ଦ୍ରଙ୍କୁ ସ୍ତବ କରିଥିଲେ । ସେ ଆନନ୍ଦରେ ଅଯୋଧ୍ୟାପୁରୀକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।୩୩।

ଅତ୍ୟନ୍ତ ଦୟାର୍ଦ୍ର ହୃଦୟ ଶ୍ରୀରାମଚନ୍ଦ୍ର ଶୁଣିଲେ ଭରତ ଗୋ ମୂତ୍ରରେ ଯବାନ୍ନ ପାକକରି ଭୋଜନ କରୁଅଛନ୍ତି, ବଲ୍କଳ ପରିଧାନ କରୁଅଛନ୍ତି, ଜଟାଧାରଣ କରିଅଛନ୍ତି, ଭୂମିରେ ଶୟନ କରୁଅଛନ୍ତି ଏହା ଶୁଣି ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲେ ।୩୪।

ଭରତ ଶ୍ରୀରାମଚନ୍ଦ୍ରଙ୍କର ଆଗମନ ବାର୍ତ୍ତାପାଇ ତାହାଙ୍କର ପାଦୁକା ଶିରରେ ବହନ କରି ନିଜର ଶିବିର ନନ୍ଦିଗ୍ରାମଠାରୁ ଗୀତ ବାଦ୍ୟ ଧ୍ୱନିସହ ପୁରୋହିତ ଓ ଅମାତ୍ୟଙ୍କ ସହିତ ଆସି ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହୋଇଥିଲେ ।୩୫।

ବ୍ରାହ୍ମଣମାନେ ଅତ୍ୟନ୍ତ ଉଚ୍ଚସ୍ୱରରେ ବେଦପାଠ କରିଥିଲେ । ସ୍ୱର୍ଣ୍ଣ ରସ ରଞ୍ଜିତ ପତାକା ଧାରଣ

---

ଲକ୍ଷ୍ମଣ ହନୁମନ୍ତ ଭୂପେ
ରାମ ସମାନେ ବିଜେ କଲେ
ବିଭୀଷଣଙ୍କୁ ଦାଶରଥି
ଲଙ୍କାରେ କରି ଅଧିପତି
ହୋଇଲେ ତୁଅ ଭୁ ଅମର
ଏ ଲଙ୍କା କଲ୍ପାନ୍ତ ଭୋଗ କର
ବିଭୀଷଣଙ୍କୁ ରାଜା କରି
ରାମ ବିଜୟେ ନିଜପୁରୀ
ପିତା ନିଦେଶେ ବନବାସ
ସରିଲା ଚଉଦ ବରଷ ।
ରାମ ବିଜୟେ ଇନ୍ଦ୍ର ସ୍ୱହିଁ
ସ୍ୱର୍ଗ କୁସୁମ ବରଷଇ
ଗଗନେ ଦେବେ ସନ୍ତି ସନ୍ତି
ରାମ ବିଜୟ ଉଚ୍ଚାରନ୍ତି ।୩୨।୩୩।

ରାମ ବିଚ୍ଛେଦ-ଦୁଃଖ ମନେ
ଭରତ ଥିଲେ ତପୋବନେ
ତାର ଚରିତ ଶୁଣି କର୍ଣ୍ଣେ
ଯେବା କହିଲେ ମୁନି ଜନେ
କଠୋର ତପ ବନେ କରି
ବ୍ରହ୍ମଚାରୀର ରୂପ ଧରି
ଯାବକ ଭକ୍ଷେ ଗୋରୁ ମୂତ୍ରେ
ବଲ୍କଳ ପିନ୍ଧି କଟୀ ସୂତ୍ରେ
ପିଙ୍ଗଳ ଜଟା ଶିରେ ବହେ
ରାତ୍ରେ ସ୍ଥଣ୍ଡିଳେ ବୀର ଶୋଏ
ରାମ-ପାଦୁକା ଅଗ୍ରେ ସ୍ଥାପି
କଣ୍ଟକ ଧ୍ୟାନେ ରତି ରେପି
ସେ ରାମ ମୁନିଗଣ ଭୁଲେ
ଭରତ ଆଶ୍ରମେ ମିଳିଲେ

ତାହାର ହସ୍ତ ରାମ ଧରି
ଆଶ୍ୱାସ କରି କୋଳ କରି
ରାମ ଲକ୍ଷ୍ମଣ ହନୁମନ୍ତ
ସଙ୍ଗତେ ଚଳିଲେ ଭରତ
ରାମ ପାଦୁକା ମୁଣ୍ଡେ ବହେ
ତପସ୍ୱୀରୂପେ ଜନ ମୋହେ
ମିଳିଲେ ଅଯୋଧ୍ୟା ନିକଟେ
ସରଯୂ ନଦୀ ପୂର୍ବ ତଟେ ।୩୪,୩୫।
ରାମର ଆଗମନ ପଥେ
ମିଳିଲେ ପାତ୍ର ପୁରୋହିତେ
ବେଦ ଶବଦେ ବିପ୍ରଜନେ
ଶଙ୍ଖ ଦୁନ୍ଦୁଭି ବାଦ୍ୟ ସ୍ୱନେ

ସ୍ୱର୍ଣ୍ଣକକ୍ଷପତାକାଭିର୍ହୈମୈଶ୍ଚିତ୍ରଧ୍ୱଜୈ ରଥୈଃ ।
ସଦଶ୍ୱୈରୁକ୍ମସନ୍ନାହୈର୍ଭଟୈଃ ପୁରଟବର୍ମ୍ମଭିଃ । ୩୭ ।
ଶ୍ରେଣୀଭିର୍ବାରମୁଖ୍ୟାଭିର୍ଭୃତ୍ୟୈଶ୍ଚୈବ ପଦାନୁଗୈଃ ।
ପାରମେଷ୍ଠ୍ୟାନ୍ୟୁପାଦାୟ ପଣ୍ୟାନ୍ୟୁଚ୍ଚାବଚାନି ଚ ।
ପାଦୟୋର୍ନ୍ୟପତତ୍‌ପ୍ରେମ୍ଣା ବକ୍ଲିନ୍ନହୃଦୟେକ୍ଷଣଃ । ୩୮ ।
ପାଦୁକେ ନ୍ୟସ୍ୟ ପୁରତଃ ପ୍ରାଞ୍ଜଳିର୍ବାଷ୍ପଲୋଚନଃ ।
ତମାଶ୍ଲିଷ୍ୟ ଚିରଂ ଦୋର୍ଭ୍ୟାଂ ସ୍ନାପୟନ୍ନେତ୍ରଜୈର୍ଜଳୈଃ ।୩୯।
ରାମୋ ଲକ୍ଷ୍ମଣସୀତାଭ୍ୟାଂ ବିପ୍ରେଭ୍ୟୋ ଯେ ଽର୍ହସତ୍ତମାଃ ।
ତେଭ୍ୟଃ ସ୍ୱୟଂ ନମଶ୍ଚକ୍ରେ ପ୍ରଜାଭିଶ୍ଚ ନମସ୍କୃତଃ । ୪୦ ।
ଧୁନ୍ୱନ୍ତ ଉତ୍ତରାସଙ୍ଗାନ୍ ପତିଂ ବୀକ୍ଷ୍ୟ ଚିରାଗତମ୍ ।
ଉତ୍ତରାଃ କୋଶଳା ମାଲ୍ୟୈଃ କିରନ୍ତୋ ନନୃତୁର୍ମୁଦା । ୪୧ ।

---

କରି କେତେ ଲୋକେ ଯାଇଥିଲେ । ବଚିତ୍ର ଧ୍ୱଜ ବଶିଷ୍ଟ ସୁଲକ୍ଷଣ ସମ୍ପନ୍ନ ଅଶ୍ୱଯୋଜିତ ଓ ସୁବର୍ଣ୍ଣ ପରିଚ୍ଛଦ ସଂଯୁକ୍ତ ସୁବର୍ଣ୍ଣ-ମୟ ରଥ, ସୁବର୍ଣ୍ଣ କବଚଧାରୀ ସୈନ୍ୟଗଣ, ଶ୍ରେଣୀଗଣ, ସୁନ୍ଦରୀ ଅପ୍‌ସରାଗଣ ଓ ପଦାତକ ଭୃତ୍ୟଗଣ ସଙ୍ଗରେ ଯାଇଥିଲେ । ଭରତ ରାଜଯୋଗ୍ୟ ଛତ୍ର, ଚାମର ଏବଂ ବହୁମୂଲ୍ୟ ରତ୍ନାଦି ନେଇ ପ୍ରେମବିହ୍ୱଳ ହୃଦୟରେ ଶ୍ରୀରାମଚନ୍ଦ୍ରଙ୍କର ଚରଣରେ ନିପତିତ ହୋଇଥିଲେ । ପ୍ରେମାଶ୍ରୁ ପତିତ-ହୋଇ ଭରତଙ୍କର ହୃଦୟ ଓ ନୟନଦ୍ୱୟ ଚିକ୍ତ ଯାଇଥିଲା । ୩୭-୩୮ ।

ଭରତ ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ପାଦୁକାଦ୍ୱୟ ସ୍ଥାପନ କରି କୃତାଞ୍ଜଳି ପୂର୍ବରେ ଦଣ୍ଡାୟମାନ ହୋଇଥିଲେ ଏବଂ ପରେ ନୟନ ଜଳରେ ଶ୍ରୀରାମଚନ୍ଦ୍ରଙ୍କୁ ଅଭିଷେକ କରି ବାହୁଦ୍ୱୟରେ ତାହାଙ୍କୁ ବହୁକ୍ଷଣ ଆଲିଙ୍ଗନ କରିଥିଲେ ।୩୯।

ପ୍ରଜାମାନେ ନମସ୍କାର କରିଥିଲେ । ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତା ପୂଜନୀୟ କୁଳବୃଦ୍ଧମାନଙ୍କୁ ଓ ପୂଜନୀୟମାନଙ୍କୁ ନମସ୍କାର କରିଥିଲେ ।୪୦।

ଅଯୋଧ୍ୟାବାସୀ ପ୍ରଜାବର୍ଗ ବହୁକାଳ ପରେ ସମାଗତ ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କରି ଅତ୍ୟନ୍ତ ଆନନ୍ଦରେ ଉତ୍ତରୀୟ ବସନ କମ୍ପିତ କରି, ପୁଷ୍ପମାଲ୍ୟ ପ୍ରଦାନ କରି ଆନନ୍ଦରେ ନୃତ୍ୟ କରିଥିଲେ ।୪୧।

---

ଦିବ୍ୟ ବିମାନ ଶ୍ରେଣୀ ସାଥେ
ଘରେ ଧାମନ୍ତି ବେଗେ ପଥେ
ଧ୍ୱଜ ପତାକା ଶୋଭେ ସ୍ୱର୍ଣ୍ଣେ
ଉତ୍ତମ ବାଜି ଗଜ ଯାନେ
ଗଣିକା ଯୂଥ ଆଗେ ଶୋହେ
ମାର୍ଗେ ଚଳନ୍ତେ ଜନ ମୋହେ

ବିବିଧ ଉପାୟନ ହସ୍ତେ
ଜୟ ଶବଦ କରି ପଥେ
ନେଇ ଉତ୍ତମ ଗ୍ରାସାବଳି
ପଥେ ନାଚିଏ ହୁଳାହୁଳି
ବିପ୍ରଙ୍କୁ ଦେଖି ରଘୁନାଥ
ଶିରେ ନିବେଶି ବେନି ହସ୍ତ

ବିପ୍ରଙ୍କୁ ନମସ୍କାର କଲେ
ସୀତା ଲକ୍ଷ୍ମଣ ନେଇ ଭୁଲେ
ଅଯୋଧ୍ୟା ପୁର ଜନ ଯେତେ
ରାମ ଆଗମ ଦେଖି ପଥେ
ରାମ ଲକ୍ଷ୍ମଣ ମୁଖ ଚାହିଁ
ରଙ୍ଗେ ନାଚନ୍ତି ଗୀତ ଗାଇ ।୩୭-୪୧

ପାଦୁକେ ଭରତୋଽଗୃହ୍ଣାଚ୍ଚାମରବ୍ୟଜନୋତ୍ତମେ ।
ବିଭୀଷଣଃ ସସୁଗ୍ରୀବଃ ଶ୍ୱେତଚ୍ଛତ୍ରଂ ମରୁତ୍ସୁତଃ । ୪୨ ।
ଧନୁର୍ନିଷଙ୍ଗାଞ୍ଛତ୍ରୁଘ୍ନଃ ସୀତାତୀର୍ଥକମଣ୍ଡଳୁମ୍ ।
ଅବିଭ୍ରଦଙ୍ଗଦଃ ଖଡ୍ଗଂ ହୈମଂ ଚର୍ମ୍ମର୍କ୍ଷରାଣ୍ନୃପ । ୪୩ ।
ପୁଷ୍ପକସ୍ଥୋ ନୁତଃ ସ୍ତ୍ରୀଭିଃ ସ୍ତୂୟମାନଶ୍ଚ ବନ୍ଦିଭିଃ ।
ବିରେଜେ ଭଗବାନ୍ ରାଜନ୍ ଗ୍ରହୈଶ୍ଚନ୍ଦ୍ର ଇବୋଦିତଃ । ୪୪ ।
ଭ୍ରାତ୍ରାଭିନନ୍ଦିତଃ ସୋଽଥ ସୋତ୍ସବାଂ ପ୍ରାବିଶତ୍ପୁରୀମ୍ ।
ପ୍ରବିଶ୍ୟ ରାଜଭବନଂ ଗୁରୁପତ୍ନୀଃ ସ୍ୱମାତରମ୍ । ୪୫ ।
ଗୁରୂନ୍ ବୟସ୍ୟାବରଜାନ୍ ପୂଜିତଃ ପ୍ରତ୍ୟପୂଜୟତ୍ ।
ବୈଦେହୀ ଲକ୍ଷ୍ମଣଶ୍ଚୈବ ଯଥାବତ୍ ସମୁପେୟତୁଃ । ୪୬ ।

---

ହେ ନୃପ ! ଭରତ ପାଦୁକାଦ୍ୱୟ ଧାରଣ କରିଥିଲେ । ସୁଗ୍ରୀବ ଓ ବିଭୀଷଣ ଉତ୍ତମ ଚାମର ଦ୍ୱୟ, ହନୁମାନ ଶ୍ୱେତଛତ୍ର, ଶତ୍ରୁଘ୍ନ ଧନୁ ଓ ତୂଣ, ସୀତା ତୀର୍ଥବାରି ପୂର୍ଣ୍ଣ କମଣ୍ଡଳୁ, ଅଙ୍ଗଦ ଖଡ୍ଗ, ଋକ୍ଷପତି ଜାମ୍ବବାନ୍ ସ୍ୱର୍ଣ୍ଣ ନିର୍ମିତ ବର୍ମ ଧାରଣ କରିଥିଲେ ।୪୨, ୪୩।

ସ୍ତ୍ରୀମାନେ ମଙ୍ଗଳ ଧ୍ୱନିକରି ବନ୍ଦନା କରିଥିଲେ ଓ ବନ୍ଦୀମାନେ ସ୍ତବପାଠ କରିଥିଲେ । ସେତେବେଳେ ପୁଷ୍ପକ ରଥରେ ଶ୍ରୀରାମଚନ୍ଦ୍ର ଗ୍ରହ ପରିବୃତ୍ତ ଚନ୍ଦ୍ରତୁଲ୍ୟ ଶୋଭା ପାଉଥିଲେ ।୪୪।

ତଦନନ୍ତର କନିଷ୍ଠ ଭ୍ରାତା ଭରତ ଶ୍ରୀରାମଚନ୍ଦ୍ରଙ୍କୁ ବନ୍ଦନା କରି ନାନା ଉତ୍ସବରେ ଅଯୋଧ୍ୟାପୁରୀକୁ ନେଇ ଯାଇଥିଲେ ଏବଂ ରାଜ ଭବନରେ ପ୍ରବେଶ କରି କୈକେୟୀ ପ୍ରଭୃତି ବିମାତାମାନଙ୍କୁ ଏବଂ ନିଜ ମାତା କୌଶଲ୍ୟାଙ୍କୁ ଓ ଅନ୍ୟାନ୍ୟ ଗୁରୁଜନମାନଙ୍କୁ ବନ୍ଦନା କରିଥିଲେ । ବୟସ୍ୟ ଓ କନିଷ୍ଠମାନଙ୍କ କର୍ତ୍ତୃକ ବନ୍ଦିତ ହୋଇ ସେମାନଙ୍କୁ ଯଥାବିହିତ ସ୍ନେହ ପ୍ରଦର୍ଶନ କରି ସୀତା ଓ ଲକ୍ଷ୍ମଣ ସମସ୍ତଙ୍କ ନିକଟକୁ ଗମନ କରିଥିଲେ, ଏବଂ ସେମାନଙ୍କୁ ଯଥାବିହିତ ସମ୍ମାନ ଦେଖାଇଥିଲେ ।୪୫, ୪୬।

---

ରାମ ପାଦୁକା ନେଇ ଶିରେ
ଭରତ ଚଳଇ ସଧୀରେ
ଉତ୍ତମ ବ୍ୟଜନ ଚାମରେ
ସୁଗ୍ରୀବ ବିଭୀଷଣ ଧରେ
ଅଞ୍ଜନା ସୁତ ବୀରମଣି
ଚଳନ୍ତି ଶ୍ୱେତ ଛତ୍ର ନେଇ
ଶତ୍ରୁଘ୍ନ କରେ ଧନୁ ଶର
ରଥେ ଦେଖନ୍ତି ପୁର ନର
ଜାନକୀ କରେ କମଣ୍ଡଳ
ପୂରିତ ନାନା ତୀର୍ଥଜଳ

ଅଙ୍ଗଦ ହସ୍ତେ ଖଡ୍ଗ ବହି
ସୁବର୍ଣ୍ଣ ଶତଚନ୍ଦ୍ର ଯହିଁ
ସ୍ତୁବନ୍ତି ବନ୍ଦୀ ନାରୀଯୂଥ
ମଧ୍ୟେ ବିଜୟେ ରଘୁନାଥ
ନକ୍ଷତ୍ର ମଧ୍ୟେ ଯେସନ୍ତେ ଶଶୀ
ତ୍ରିଦଶେ କୁସୁମ ବରଷି ।୪୨-୪୪
ସଙ୍ଗତେ ନେଇ ତିନି ଭାଇ
ମିଳିଲେ ଅନ୍ତଃପୁରେ ଯାଇ
ନମିଲେ ଗୁରୁପତ୍ନୀ ପାଦେ
କୌଶଲ୍ୟା ଚରଣେ ଆନନ୍ଦେ

ରାମଙ୍କୁ ଦେଖି ମାତୃଗଣ
ଆନନ୍ଦେ କରନ୍ତି କଲ୍ୟାଣ
ପ୍ରାଣକୁ ପାଇ ତନୁ ଯେସନ୍ତେ
ଉଠଇ ହରଷ ବଦନେ
ଆନନ୍ଦେ ଅଶ୍ରୁ ଜଳ ନେତ୍ରେ
ସିଞ୍ଚିନ୍ତି ଶ୍ରୀରାମର ଗାତ୍ରେ ।୪୫,୪୬

ପୁତ୍ରାନ୍ ସ୍ୱମାତରସ୍ତାଂସ୍ତୁ ପ୍ରାଣାଂସ୍ତନ୍ୱ ଇବୋତ୍‌ଥିତାଃ ।
ଆରୋପ୍ୟାଙ୍କେଽଭିଷିଞ୍ଚନ୍ତ୍ୟୋବାଷ୍ପୌଘୈର୍ବିଜହୁଃ ଶୁଚଃ । ୪୭ ।
ଜଟା ନିର୍ମୁଚ୍ୟ ବିଧିବତ୍ କୁଳବୃଦ୍ଧୈଃ ସମଂ ଗୁରୁଃ ।
ଅଭ୍ୟଷିଞ୍ଚଦ୍ୟଥୈବେନ୍ଦ୍ରଂ ଚତୁଃସିନ୍ଧୁଜଳାଦିଭିଃ । ୪୮ ।
ଏବଂ କୃତଶିରଃସ୍ନାନଃ ସୁବାସାଃ ସ୍ରଗ୍‌ବ୍ୟଳଂକୃତଃ ।
ସ୍ୱଳଂକୃତୈଃ ସୁବାସୋଭିର୍ଭ୍ରାତୃଭିର୍ଭାର୍ଯ୍ୟୟା ବଭୌ । ୪୯ ।
ଅଗ୍ରହୀଦାସନଂ ଭ୍ରାତ୍ରା ପ୍ରଣିପତ୍ୟ ପ୍ରସାଦିତଃ ।
ପ୍ରଜାଃ ସ୍ୱଧର୍ମନିରତା ବର୍ଣ୍ଣାଶ୍ରମଗୁଣାନ୍ୱିତାଃ ।
ଜୁଗୋପ ପିତୃବଦ୍‌ରାମୋ ମେନିରେ ପିତରଞ୍ଚ ତମ୍ । ୫୦ ।
ତ୍ରେତାୟାଂ ବର୍ତ୍ତମାନାୟାଂ କାଳଃ କୃତସମୋଽଭବତ୍ ।
ରାମେ ରାଜନି ଧର୍ମଜ୍ଞେ ସର୍ବଭୂତସୁଖାବହେ । ୫୧ ।

---

ପିଣ୍ଡରେ ପ୍ରାଣ ପଶିଲେ ଯେ ଯେପରି ଉଠେ ସେହିପରି ମାତୃଗଣ ପୁତ୍ରମାନଙ୍କୁ ପାଇ ଆନନ୍ଦରେ ଉଠି ସେମାନଙ୍କୁ କୋଡ଼ରେ ଗ୍ରହଣ କରି ନାନା ଜଳରେ ଅଭିଷେକ ପୂର୍ବକ ସନ୍ତାପ ଦୂର କରିଥିଲେ ।୪୭

ଗୁରୁ ବଶିଷ୍ଠ ଶ୍ରୀରାମଚନ୍ଦ୍ରଙ୍କର ଜଟା ମୋଚନ କରି କୁଳବୃଦ୍ଧମାନଙ୍କ ସହିତ ଚାରି ସମୁଦ୍ରରେ ଇନ୍ଦ୍ରଙ୍କୁ ଅଭିଷେକ କଲାପରି ଶ୍ରୀରାମଚନ୍ଦ୍ରଙ୍କୁ ଅଭିଷେକ କରିଥିଲେ ।୪୮।

ଏହିପରି ଅଭିଷିକ୍ତ ହୋଇ ଶ୍ରୀରାମଚନ୍ଦ୍ର ଉତ୍ତମବସ୍ତ୍ର ପରିଧାନ କରିଥିଲେ ଓ ମାଲ୍ୟ ଅଳଙ୍କାର ଗ୍ରହଣ କରିଥିଲେ । ବସନ ଭୂଷଣ ବିଭୂଷିତ ଭ୍ରାତୃଗଣ ଓ ସୀତାଙ୍କ ସହିତ ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ଶୋଭିମାନ ହୋଇଥିଲେ ।୪୯।

ଭରତ ଶ୍ରୀରାମଙ୍କ ଚରଣରେ ପ୍ରଣାମ କରି ତାହାଙ୍କର ପ୍ରୀତି ସମ୍ପାଦନ କରିଥିଲେ ଓ ଶ୍ରୀରାମଚନ୍ଦ୍ର ସିଂହାସନରେ ଉପବିଷ୍ଟ ହୋଇଥିଲେ ଏବଂ ସ୍ୱଧର୍ମ ନିରତ ଓ ବର୍ଣ୍ଣାଶ୍ରମ ଗୁଣଯୁକ୍ତ ପ୍ରଜାମାନଙ୍କୁ ପିତୃତୁଲ୍ୟ ପାଳନ କରିଥିଲେ ପ୍ରଜାମାନେ ମଧ୍ୟ ଶ୍ରୀରାମଚନ୍ଦ୍ରଙ୍କୁ ପିତୃତୁଲ୍ୟ ଜ୍ଞାନକରୁଥିଲେ । ଶ୍ରୀରାମଚନ୍ଦ୍ରଙ୍କ ସୁଶାସନରେ ତ୍ରେତାଯୁଗ ସତ୍ୟଯୁଗ ପରି ହୋଇଥିଲା ।୫୦, ୫୧।

---

ରାମର ଶିରେ ଜଟା ଦେଖି
ସର୍ବେ ହୋଇଲେ ମନେ ଦୁଃଖୀ
ତକ୍ଷଣେ ମିଳିଲେ ବ୍ରାହ୍ମଣେ
ବଶିଷ୍ଠ ଆଦି ଗୁରୁଜନେ
ମୁଣ୍ଡନ କରି ଜଟା ଭାର
ଘେନାଇ ନାନା ଉପହାର
ସୁବର୍ଣ୍ଣ କୁମ୍ଭ ତୀର୍ଥ ଜଳେ
ରାମଙ୍କୁ ଅଭିଷେକ କଲେ ।୪୮।

ଉତ୍ତମ ବସ୍ତ୍ର ଅଳଂକାରେ
ରତ୍ନ ମୁକୁଟ ବାନ୍ଧି ଶିରେ
ଜାନକୀ ତୁଲେ ଅଭିଷେକ
ମିଳି ସକଳ ପ୍ରଜା ଲୋକ । ୪୯ ।
ରାମଙ୍କୁ ପାଇ ପ୍ରଜାଜନେ
ସକଳେ ହରଷିତ ମନେ
ପିତାଙ୍କୁ ପାଇ ପୁତ୍ର ଯେହ୍ନେ
ଆନନ୍ଦ ହରଷ ବଦନେ

ତ୍ରେତାରେ ବର୍ତ୍ତମାନ କାଳେ
ଯେସନେ ସତ୍ୟ ଯୁଗ ମିଳେ
ରାମ ହୋଇଲେ ରାଜ୍ୟେ ରାଜା
ସତ୍ୟ ଯୁଗରି ପ୍ରାୟେ ପ୍ରଜା
କରନ୍ତି ସ୍ୱଧର୍ମ ଆଚାର
ଏବେ ହେ ଶୁଣ କୁରୁବୀର ।
ବନ ପର୍ବତ ନଦୀ ନଦ
ଦ୍ୱୀପ ବରଷ ସିନ୍ଧୁ ଭେଦ

ବନାନି ନଦ୍ୟୋ ଗିରୟୋ ବର୍ଷାଣି ଦ୍ୱୀପସିନ୍ଧବଃ ।
ସର୍ବେ କାମଦୁଘା ଆସନ୍ ପ୍ରଜାନାଂ ଭରତର୍ଷଭ । ୫୨
ନାଧିବ୍ୟାଧିଜରାଗ୍ଲାନି-ଦୁଃଖଶୋକଭୟକ୍ଲମାଃ ।
ମୃତ୍ୟୁଶ୍ଚାନିଚ୍ଛତାଂ ନାସୀଦ୍ରାମେ ରାଜନ୍ୟଧୋକ୍ଷଜେ । ୫୩ ।
ଏକପତ୍ନୀବ୍ରତଧରୋ ରାଜର୍ଷିଚରିତଃ ଶୁଚିଃ ।
ସ୍ୱଧର୍ମ୍ମଂ ଗୃହମେଧୀୟଂ ଶିକ୍ଷୟନ୍ ସ୍ୱୟମାଚରତ୍ । ୫୪ ।
ପ୍ରେମ୍ଣାନୁବୃତ୍ତ୍ୟା ଶୀଳେନ ପ୍ରଶ୍ରୟାବନତା ସତୀ ।
ଧିୟା ହ୍ରିୟା ଚ ଭାବଜ୍ଞା ଭର୍ତ୍ତୁଃ ସୀତାହରନ୍ମନଃ । ୫୫ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମଚରିତେ ନାମ ଦଶମୋଽଧ୍ୟାୟଃ ।

---

ସମସ୍ତ ପ୍ରାଣୀଙ୍କର ସୁଖକର ଶ୍ରୀରାମଚନ୍ଦ୍ର ରାଜା ହେବାରୁ ବନ, ନଦୀ, ପର୍ବତ, ବର୍ଷ, ଦ୍ୱୀପ, ସମୁଦ୍ର ସମସ୍ତ ପ୍ରାଣୀ ଜଗତ୍ର ଅଭିଳଷିତ ଫଳ ଲାଭ କରିଥିଲେ ।୫୨।

ହେ ଭରତ କୁଳଶ୍ରେଷ୍ଠ ! ସେତେବେଳେ ପ୍ରଜାମାନଙ୍କର ମନଃପୀଡ଼ା, ଶରୀରପୀଡ଼ା; ଜରା, ଗ୍ଲାନି; ଶୋକ, ଭୟ, କାତରତା ପ୍ରଭୃତି କିଛି ମାତ୍ର ଦୁଃଖ ନ ଥିଲା ।୫୩।

ଏକପତ୍ନୀବ୍ରତଧାରୀ ଶୁଦ୍ଧଚେତା ଶ୍ରୀରାମଚନ୍ଦ୍ର ରାଜର୍ଷି ତୁଲ୍ୟ ହୋଇ ପ୍ରଜାମାନଙ୍କୁ ନିଜେ ଗୃହସ୍ଥ ଧର୍ମ ଶିକ୍ଷା ଦେଉଥିଲେ । ବିନୟାବନତ ସାଧ୍ୱୀ ସୀତାଦେବୀ ପ୍ରେମ, ସେବା, ସାଧୁଚରିତ, ସଙ୍କୋଚ; ଲଜ୍ଜା ଓ ସ୍ୱାମୀଙ୍କର ଭାବାନୁସାରେ କର୍ମ ସମ୍ପାଦନ କରି ତାହାଙ୍କ ଚିତ୍ତ ବିନୋଦ କରୁଥିଲେ ।୫୪, ୫୫।

---

ପ୍ରଜାଙ୍କୁ କାମଧେନୁ ପ୍ରାୟ
ଭୂମି ହୋଇଲା ରସଦାୟ
ନଶିଲେ ଆଧି ବ୍ୟାଧି ବ୍ୟଥା
ବୃଦ୍ଧେ ହୋଇଲେ ସାମରଥା ।୫୦, ୫୩
ସେ ରାମ ଏକ ପତ୍ନୀ ବ୍ରତ
ଆଚରେ ରାଜ ଋଷି ମତ

ଆଚରେ ଗୃହମେଧି ଧର୍ମ
ଶୁଭେ ସକଳ କ୍ରିୟା କର୍ମ
ଜାନକୀ ରାମର ଚରଣେ
ସ୍ୱଭାବେ ଖଟେ ଅନୁକ୍ଷଣେ ।୫୪, ୫୫
କହଇ ବିପ୍ର ଜଗନ୍ନାଥ
ଆଦିତ୍ୟ ବଂଶାନୁଚରିତ

ପବିତ୍ର କଲେ ନିଜ ଅଂଶେ
ଜନମି ହରି ଯେଉଁ ବଂଶେ
ସୁଜନେ ଶୁଣ ଅବହିତେ
ହରି ଚରିତ ଭାଗବତେ ।



**ବିଶଦାର୍ଥ :—**

ଏହି ଅଧ୍ୟାୟରେ ପ୍ରଥମେ ଖଟ୍ୱାଙ୍ଗ ନୃପତିଙ୍କ ପ୍ରସଙ୍ଗ ଉତ୍ଥାପନ କରି ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ ରଘୁବଂଶ ବିବରଣୀ ଶୁଣାଇଥିଲେ । ଶ୍ରୀରାମଚନ୍ଦ୍ର ସେହି ରଘୁବଂଶ ପବିତ୍ର କରି ଅଯୋଧ୍ୟା ନଗରୀରେ ଅବତୀର୍ଣ୍ଣ ହୋଇଥିଲେ । ଶ୍ରୀରାମଚନ୍ଦ୍ରଙ୍କର ପିତୃ ସତ୍ୟ ପାଳନ, ବନଗମନ ଓ ସତୀ ସୀତାଦେବୀ ରାକ୍ଷସ ରାବଣ କର୍ତ୍ତୃକ ଅପହୃତ ହେବା, ରାବଣବଧ ଇତ୍ୟାଦି ପ୍ରସଙ୍ଗ ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି, ରାମାୟଣ ପାଠକମାନେ ଏ ପ୍ରସଙ୍ଗ ଉତ୍ତମରୂପେ ଅବଗତ ଥିବେ । ତେଣୁ ବିଶଦ ଭାବରେ ଏଠାରେ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ।

# ଏକାଦଶୋଽଧ୍ୟାୟଃ

ତତସ୍ତ୍ୱେକାଦଶେଽଯୋଧ୍ୟାମାବସନ୍ନନୁଜୈଃ ସହ ।
ଯଜ୍ଞାଦ ଯଚ୍ଚକାରେଶୋ ରାମସ୍ତଦନୁବର୍ଣ୍ଣ୍ୟତେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକଉବାଚ

ଭଗବାନାତ୍ମନାତ୍ମାନଂ ରାମ ଉତ୍ତମକଳ୍ପକୈଃ ।
ସର୍ବଦେବମୟଂ ଦେବମୀଜେଽଥାଚାର୍ଯ୍ୟବାନ୍ ମଖୈଃ । ୧ ।
ହୋତ୍ରେଽଦଦାଦ୍ଦିଶଂ ପ୍ରାଚୀଂବ୍ରହ୍ମଣେ ଦକ୍ଷିଣାଂ ପ୍ରଭୁଃ ।
ଅଧ୍ୱର୍ଯ୍ୟବେ ପ୍ରତୀଚୀଂ ବା ଉତ୍ତରାଂ ସାମଗାୟ ସଃ । ୨ ।
ଆଚାର୍ଯ୍ୟାୟ ଦଦୌ ଶେଷାଂ ଯାବତୀ ଭୂସ୍ତଦନ୍ତରା ।
ମନ୍ୟମାନ ଇଦଂ କୃତ୍ସ୍ନଂ ବ୍ରାହ୍ମଣୋଽର୍ହତି ନିସ୍ପୃହଃ । ୩ ।

---

## ଶ୍ରୀରାମଚନ୍ଦ୍ର ପ୍ରସଙ୍ଗ

**ଏକାଦଶ ଅଧ୍ୟାୟରେ ଶ୍ରୀରାମଙ୍କର ଅଯୋଧ୍ୟା ପ୍ରବେଶ ଏବଂ ଅଶ୍ୱମେଧାଦ ଯଜ୍ଞାନୁଷ୍ଠାନ ବର୍ଣ୍ଣନା କରାଯାଇଅଛି ॥ ● ॥**

**ଶ୍ରୀ ଶୁକଦେବ କହିଲେ :—**

ହେ ରାଜନ୍ ! ତଦନନ୍ତର ଭଗବାନ୍ ଶ୍ରୀରାମଚନ୍ଦ୍ର ଆଚାର୍ଯ୍ୟଙ୍କ ଉପଦେଶାନୁସାରେ ଯଜ୍ଞାନୁଷ୍ଠାନ କରି ସର୍ବଦେବମୟ ଆତ୍ମସ୍ୱରୂପ ବିଷ୍ଣୁଙ୍କ ଆରାଧନା କରିଥିଲେ ।୧।

ସର୍ବଶକ୍ତିମାନ୍ ଭଗବାନ୍ ଶ୍ରୀରାମଚନ୍ଦ୍ର ଯଜ୍ଞାବଶେଷରେ ହୋତାଙ୍କୁ ପୂର୍ବଦିଗ, ବ୍ରହ୍ମାଙ୍କୁ ଦକ୍ଷିଣଦିଗ ଅଧ୍ୱର୍ଯ୍ୟୁଙ୍କୁ ପଶ୍ଚିମଦିଗ ଏବଂ ସାମବେଦ ଗାନକାରୀଙ୍କୁ ଉତ୍ତରଦିଗ ପ୍ରଦାନ କରିଥିଲେ ।୨।

ବିଷୟରେ ଆସକ୍ତିଶୂନ୍ୟ ହୋଇ ଏହି ଦିଗମାନଙ୍କର ମଧ୍ୟସ୍ଥିତ ଭୂଖଣ୍ଡମାନ ଆଚାର୍ଯ୍ୟଙ୍କର ପ୍ରାପ୍ୟ ବୋଲି ମନେକରି ତାହା ଆଚାର୍ଯ୍ୟଙ୍କୁ ଦାନ କରିଥିଲେ ।୩।

---

ଅଯୋଧ୍ୟାପୁରେ ରାମରାଜା, ଭାଇଙ୍କ ସଙ୍ଗେ ପାଳି ପ୍ରଜା ।
ଯଜ୍ଞାଦ ଯାହା ଯାହା କଲେ, ବର୍ଣ୍ଣିତ ଏ ଏକାଦଶରେ ॥

**ଶ୍ରୀ ଶୁକ ଉବାଚ—**

**ଶ୍ରୀରାମ ସାକ୍ଷାତ ହୋଇ ରାଜା**
**ଆନନ୍ଦେ ପାଳି ଜନ ପ୍ରଜା**
**ଉତ୍ତମ କର୍ମେ ଯଜ୍ଞ କଲେ**
**ବଶିଷ୍ଠ ସର୍ବ ମୂଳ ଭୁଲେ**
ବିପ୍ରଙ୍କୁ ଗୁରବେଦୁଁ ବର
ଦକ୍ଷିଣା ଦେଲେ ଚତୁ ଭର
ଭୂମିକି କରି ଚାରି ଭାଗ
ଦକ୍ଷିଣା ଦେଲେ ଅନୁରାଗ
ହୋତାଙ୍କ ପୂର୍ବଦିଗ ଦେଲେ
ଅଧ୍ୱର୍ଯ୍ୟୁ ପଶ୍ଚିମେ କଳିଲେ
ଉତ୍ତର ଦିଗ ସାମଗାନେ
ବ୍ରହ୍ମାଙ୍କୁ ଦକ୍ଷିଣ ବିଧାନେ
ବ୍ରାହ୍ମଣେ ଦେଲେ ଚାରି ଦିଶ
ଆଚାର୍ଯ୍ୟେ ଦେଲେ ଅବଶେଷ ।୧-୩

ଇତ୍ୟୟଂ ତଦଲଙ୍କାରବାସୋଭ୍ୟାମବଶେଷିତଃ ।
ତଥା ରାଜ୍ଞ୍ୟପି ବୈଦେହୀ ସୌମଙ୍ଗଲ୍ୟାବଶେଷିତା । ୪ ।
ତେ ତୁ ବ୍ରାହ୍ମଣ୍ୟଦେବସ୍ୟ ବାତ୍ସଲ୍ୟଂ ବୀକ୍ଷ୍ୟ ସଂସ୍ତୁତମ୍ ।
ପ୍ରୀତାଃ କ୍ଲିନ୍ନଧିୟସ୍ତସ୍ମୈ ପ୍ରତ୍ୟର୍ପ୍ୟେଦଂ ବଭାଷିରେ । ୫ ।
ଅପ୍ରତ୍ତଂ ନସ୍ତ୍ୱୟା କିଂ ନୁ ଭଗବାନ୍ ଭୁବନେଶ୍ୱର ।
ଯନ୍ନୋଽନ୍ତର୍ହୃଦୟଂ ବିଶ୍ୟ ତମୋ ହଂସି ସ୍ୱରୋଚିଷା । ୬ ।
ନମୋ ବ୍ରହ୍ମଣ୍ୟଦେବାୟ ରାମାୟାକୁଣ୍ଠମେଧସେ ।
ଉତ୍ତମଶ୍ଲୋକଧୁର୍ଯ୍ୟାୟ ନ୍ୟସ୍ତଦଣ୍ଡାର୍ପିତାଙ୍ଘ୍ରୟେ । ୭ ।
କଦାଚିଲ୍ଲୋକଜିଜ୍ଞାସୁର୍ଗୂଢ଼ୋ ରାତ୍ର୍ୟାମଲକ୍ଷିତଃ ।
ଚରନ୍ ବାଚୋଽଶୃଣୋଦ୍ରାମୋ ଭାର୍ଯ୍ୟାମୁଦ୍ଦିଶ୍ୟ କସ୍ୟଚିତ୍ । ୮ ।

---

ଏହିପରି ଦାନ କଲାପରେ ଶ୍ରୀରାମଚନ୍ଦ୍ରଙ୍କର କେବଳ ମାତ୍ର ବସ୍ତ୍ର ଓ ଅଳଙ୍କାର ଅବଶିଷ୍ଟ ରହିଲା, ରାଜମହିଷୀ ସୀତାଦେବୀ ମଧ୍ୟ କେବଳ ମଙ୍ଗଳସୂଚକ ଅଳଙ୍କାର ରଖି ଅନ୍ୟ ସମସ୍ତ ଦାନ କରିଥିଲେ ।୪।

ବ୍ରାହ୍ମଣମାନେ ବ୍ରହ୍ମଣ୍ୟଦେବ ଶ୍ରୀରାମଚନ୍ଦ୍ରଙ୍କର ସାଧୁମାନଙ୍କ ପ୍ରତି ଏପରି ବାତ୍ସଲ୍ୟ ଦର୍ଶନକରି ପ୍ରୀତ ଓ ଆର୍ଦ୍ରଚିତ୍ତ ହୋଇ ସମସ୍ତ ସମ୍ପତ୍ତି ପୁନର୍ବାର ତାହାଙ୍କୁ ପ୍ରତ୍ୟର୍ପଣ କରିଥିଲେ ।୫।

ବ୍ରାହ୍ମଣମାନେ କହିଲେ :—

ହେ ଭଗବନ୍, ଭୁବନେଶ୍ୱର ! ଆପଣ ଆମ୍ଭମାନଙ୍କୁ କଣ ଦା ନ ଦେଇଅଛନ୍ତି, କାରଣ ଆପଣ ଆମ୍ଭମାନଙ୍କର ହୃଦୟ ମଧ୍ୟରେ ପ୍ରବେଶ କରି ନିଜର ପ୍ରଭାଦ୍ୱାରା ଅଜ୍ଞାନାନ୍ଧକାର ବିନାଶ କରିଅଛନ୍ତି ।୬।

ହେ ବ୍ରହ୍ମଣ୍ୟଦେବ ! ଯାହାଙ୍କର ଜ୍ଞାନ ଅପ୍ରତିହତ, ଯେ ଯଶସ୍ୱୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଯେ ବୈରିଶୂନ୍ୟ, ସେ ମୁନିମାନଙ୍କ ଚିତ୍ତରେ ନିଜର ଶ୍ରୀଚରଣ ଅର୍ପଣ କରିଅଛନ୍ତି । ସେହି ଶ୍ରୀରାମଚନ୍ଦ୍ରଙ୍କ ପ୍ରଣିପାତ କରୁଅଛୁଁ ।୭।

ଥରେ ଶ୍ରୀରାମଚନ୍ଦ୍ର ପ୍ରଜାମାନେ କିପରି ଅଛନ୍ତି ଏହା ଜାଣିବା ନିମନ୍ତେ ଗୁପ୍ତଭାବରେ ରାତ୍ରି-କାଳରେ ଛଦ୍ମ ବେଶରେ ବିଚରଣ କରୁଥିଲେ । ଏମନ୍ତ ସମୟରେ ଶୁଣିଲେ ଜଣେ ଲୋକ ତାହାର ସ୍ତ୍ରୀକୁ

---

| | | |
|---|---|---|
| ସୀତା ସମେତେ ରଘୁପତି | ରାମର ନିକଟେ ମିଳିଲେ | ଏମନ୍ତେ କେତେ ଦିନ ଗଲା |
| ଆଚରି ଗୃହସ୍ଥଙ୍କ ଗତି | ଅନେକ ସ୍ତୁତି ବାକ୍ୟ କଲେ | ଶୁଣ ହେ ଗୋବିନ୍ଦର ଲୀଳା |
| ଅନେକ ବସ୍ତ୍ର ରତ୍ନ ଧନେ | କହିଲେ ପ୍ରିୟ ସ୍ତବ ବହି | ଦିନେକ ରାମ ସ୍ୱର୍ଗ କାଳେ |
| ସନ୍ତୋଷ କରି ସର୍ବଜନେ | ହେ ନାଥ ! ଏଥେଁ କାର୍ଯ୍ୟ ନାହିଁ | ବୁଲନ୍ତି ନିତ୍ୟ ଭୃତ୍ୟମେଳେ |
| ଆଚରି ଗୃହମେଧି ଧର୍ମ୍ମ | ଆମ୍ଭେ କହିଲୁ ବେଦ ଧର୍ମ୍ମେ | ଯଶ ଅଯଶ କେ କି ବୋଲେ |
| ବେଦ ବିହିତ ଯେତେ କର୍ମ୍ମ ।୪। | ତୋତେ ନ ଜାଣି ମତି ଭ୍ରମେ | ଏମନ୍ତେ ବିପ୍ରର ଗୃହରେ |
| ବ୍ରାହ୍ମଣେ ଦେଖି ସାଧୁ କଥା | ତୋହର ରାଜ୍ୟ ତୁହି ଥାଅ | ଶୁଣିଲେ ଏକ ଗୃହାଶ୍ରମେ |
| ଶ୍ରୀରାମ ପାଦେ କଲେ ଚିନ୍ତା | ଆମ୍ଭର ହୃଦେ ସଦା ଥାଅ ।୫-୭। | ପତ୍ନୀକି ବୋଲେ ଗର୍ଭଭ୍ରମେ |

ନାହଂ ବିଭର୍ମି ତ୍ୱାଂ ଦୁଷ୍ଟାମସତୀଂ ପରବେଶ୍ମଗାମ୍ ।
ସ୍ତ୍ରୈଣୋ ହି ବିଭୃୟାତ୍‌ସୀତାଂ ରାମୋ ନାହଂ ଭଜେ ପୁନଃ । ୯ ।
ଇତି ଲୋକାଦ୍‌ବହୁମୁଖାଦ୍ଦୁରାରାଧ୍ୟାଦସଂବିଦଃ ।
ପତ୍ୟା ଭୀତେନ ସା ତ୍ୟକ୍ତା ପ୍ରାପ୍ତା ପ୍ରାଚେତସାଶ୍ରମମ୍ ।୧୦।
ଅନ୍ତର୍ବତ୍ନ୍ୟାଗତେ କାଲେ ଯମୌ ସା ସୁଷୁବେ ସୁତୌ ।
କୁଶୋ ଲବ ଇତ ଖ୍ୟାତୌ ତୟୋଶ୍ଚକ୍ରେ କ୍ରିୟା ମୁନିଃ ।୧୧।
ଅଙ୍ଗଦଶ୍ଚିତ୍ରକେତୁଶ୍ଚ ଲକ୍ଷ୍ମଣସ୍ୟାତ୍ମଜୌ ସ୍ମୃତୌ ।
ତକ୍ଷପୁଷ୍କଳ ଇତ୍ୟାସ୍ତାଂ ଭରତସ୍ୟ ମହୀପତେ । ୧୨ ।


ଲବକୁଶ ଜନ୍ମ

କହୁଅଛି, "ରେ ଦୁଷ୍ଟା, ଅସତୀ, ପରଘରେ ରହିଥିଲୁ ଶ୍ରୀରାମଚନ୍ଦ୍ର ସ୍ତ୍ରୈଣ, ସେ ସୀତାଙ୍କୁ ଅଙ୍ଗୀକାର କରି ପାରନ୍ତି କିନ୍ତୁ ତୋତେ ମୁଁ ଏଠାରେ ସ୍ଥାନ ଦେବିନାହିଁ । ୮, ୯ ।

ଏହା ଶୁଣି ଶ୍ରୀରାମଚନ୍ଦ୍ର ଦୁଷ୍ଟଅଜ୍ଞ ଲୋକଙ୍କ ଭୟରେ ସୀତାଙ୍କୁ ପରିତ୍ୟାଗ କରିଥିଲେ । ସୀତା ବାଲ୍ମୀକିଙ୍କ ତପୋବନରେ ଆଶ୍ରୟଲାଭ କରିଥିଲେ ଏବଂ ଗର୍ଭବତୀ ସୀତା ଯଥାସମୟରେ ଦୁଇଟି ପୁତ୍ର ପ୍ରସବ କରିଥିଲେ । ବାଲ୍ମୀକି ଯଥାବିଧିରେ ସେମାନଙ୍କର ଜାତକର୍ମାଦି ସମ୍ପାଦନ କରି ଲବ ଓ କୁଶ ବୋଲି ନାମକରଣ କରିଥିଲେ ।୧୦, ୧୧।

ହେ ମହାରାଜ ! ଲକ୍ଷ୍ମଣଙ୍କର ପୁତ୍ର ଅଙ୍ଗଦ ଓ ଚିତ୍ରକେତୁ, ଭରତଙ୍କରପୁତ୍ର ତକ୍ଷ ଓ ପୁଷ୍କର, ଶତ୍ରୁଘ୍ନଙ୍କର ପୁତ୍ର ସୁବାହୁ ଓ ଶ୍ରୁତସେନ । ୧୨ ।

"ରେ ଦୁଷ୍ଟା ବାପ ଘରୁ ଯାଅ
ମୁଁ ନ ଛୁଇଁବି ତୋର ଦେହ
ଅସତୀ ପର ଗୃହାଶ୍ରମୀ
ମୁଁ ନୋହେଁ ରାମ ପ୍ରାୟେ କାମୀ
ସେ ଯେହ୍ନେ ସୀତା ଘେନି ଘରେ
ଆନନ୍ଦେ ଗୃହାଶ୍ରମ କରେ" ।୮,୯
ଏମନ୍ତ ଶୁଣି ତାର ମୁଖେ
ଗୃହେ ମିଳିଲେ ମନଦୁଃଖେ

ଶୁଣି ସେ ଲୋକ ଅପବାଦ
ଚିନ୍ତାବସିଲେ ରାମ ହୃଦ
ସୀତାର ଗର୍ଭବାସ ଦେଖି
ତାର ବିଚ୍ଛେଦେ ହୋଇ ଦୁଃଖୀ
ଏ ଲୋକ-ବାଦ ମହାଭୟେ
କରିବି କେବଣ ଉପାୟେ
ଲକ୍ଷ୍ମଣ ରାଇ ରଘୁନାଥ
ତାହାଙ୍କୁ ବୋଲି ସେ ଏକାନ୍ତ

ବୋଇଲେ ସୀତାଙ୍କୁ ବନିକେ
ନିବେଶି ଆସ ତୁ କହନେ
ତକ୍ଷଣେ ରାମ ଆଜ୍ଞା ପାଇ
ସୀତା ବନସ୍ତେ ନେଇ ଥୋଇ
ସେ ମିଳେ ବାଲ୍ମୀକି ଭୁବନେ
ବେନି କୁମର ଜାତ ବନେ।୧୦,୧୧
ବାଲ୍ମୀକି ଭ୍ରାନ୍ତ ଛିଡ଼ ମନେ
ସୀତା ଶୋଧିତ ହୁତାଶନେ

ସୁବାହୁଃ ଶ୍ରୁତସେନଶ୍ଚ ଶତ୍ରୁଘ୍ନସ୍ୟ ବଭୂବତୁଃ ।
ଗନ୍ଧର୍ବାନ୍ କୋଟିଶୋ ଜଘ୍ନେ ଭରତୋ ବିଜୟେ ଦିଶାମ୍ ।୧୩।
ତଦୀୟଂ ଧନମାନୀୟ ସର୍ବଂ ରାଜ୍ଞେ ନ୍ୟବେଦୟତ୍
ଶତ୍ରୁଘ୍ନଶ୍ଚ ମଧୋଃ ପୁତ୍ରଂ ଲବଣଂ ନାମ ରାକ୍ଷସମ୍ ।
ହତ୍ୱା ମଧୁବନେ ଚକ୍ରେ ମଥୁରାଂ ନାମ ବୈ ପୁରୀମ୍ ।୧୪।
ମୁନୌ ନିକ୍ଷିପ୍ୟ ତନୟୌ ସୀତା ଭର୍ତ୍ରା ବିବାସିତା ।
ଧ୍ୟାୟନ୍ତୀ ରାମଚରଣୌ ବିବରଂ ପ୍ରବିବେଶ ହ ।୧୫।
ତଚ୍ଛ୍ରୁତ୍ୱା ଭଗବାନ୍ ରାମୋ ରୁନ୍ଧନ୍ନପି ଧିୟା ଶୁଚଃ ।
ସ୍ମରଂସ୍ତସ୍ୟା ଗୁଣାଂସ୍ତାଂସ୍ତାନ୍ ନାଶକ୍ନୋଦ୍ରୋଦ୍ଧୁମୀଶ୍ୱରଃ ।୧୬।
ସ୍ତ୍ରୀପୁଂପ୍ରସଙ୍ଗ ଏତାଦୃକ୍ ସର୍ବତ୍ର ତ୍ରାସମାବହଃ ।
ଅପୀଶ୍ୱରାଣାଂ କିମୁତ ଗ୍ରାମ୍ୟସ୍ୟ ଗୃହଚେତସଃ ।୧୭।

---

ଭରତ ଦିଗ୍‌ବିଜୟ କାଳରେ କୋଟି କୋଟି ଗନ୍ଧର୍ବଙ୍କୁ ବିନାଶ କରି ସେମାନଙ୍କର ଧନରାଜି ଶ୍ରୀରାମଚନ୍ଦ୍ରଙ୍କୁ ଅର୍ପଣ କରିଥିଲେ । ୧୩ ।

ଶତ୍ରୁଘ୍ନ ମଧୁଦୈତ୍ୟର ପୁତ୍ର ଲବଣକୁ ବଧକରି ମଧୁବନରେ ମଥୁରାପୁରୀ ନିର୍ମାଣ କରିଥିଲେ ।୧୪।

ଭର୍ତ୍ତା ଶ୍ରୀରାମଚନ୍ଦ୍ର ସୀତାଙ୍କୁ ବନ ମଧ୍ୟରେ ପରିତ୍ୟାଗ କରନ୍ତେ ସୀତା ପୁତ୍ର ଦ୍ୱୟଙ୍କୁ ବାଲ୍ମୀକିଙ୍କ ନିକଟରେ ରଖି ଶ୍ରୀରାମଚନ୍ଦ୍ରଙ୍କର ପାଦପଦ୍ମ ଧ୍ୟାନ କରୁ କରୁ ପାତାଳ ମଧ୍ୟରେ ପ୍ରବେଶ କରିଥିଲେ ।୧୫।

ଭଗବାନ୍ ଶ୍ରୀରାମଚନ୍ଦ୍ର ଏହା ଶ୍ରବଣ କରି ସର୍ବପ୍ରକାରେ ସମର୍ଥ ହେଲେ ମଧ୍ୟ ସୀତାଙ୍କ ଗୁଣ ସ୍ମରଣ କରି ରୋଦନ କରିବାକୁ ଲାଗିଲେ ଏବଂ ବୁଦ୍ଧିଦ୍ୱାରା ଶୋକ ସମ୍ବରଣ କରିବାକୁ ସମର୍ଥ ହେଲେ ନାହିଁ ।୧୬।

ବ୍ରହ୍ମାଦି ଦେବତାମାନଙ୍କର ମଧ୍ୟ ସ୍ତ୍ରୀ ପୁରୁଷ ବିଚ୍ଛେଦ ବିଷୟରେ ପୁଣି ଏହିପରି ଦୁଃଖ ଘଟିଥାଏ । ସାଧାରଣ ମନୁଷ୍ୟ କଥା ବା କଣ କହିବା ? ।୧୭।

---

ନିଜ କୁଟୀରେ ଦେଲେ ସ୍ଥାନ
ପୁତ୍ରଙ୍କୁ କରନ୍ତି ପାଳନ
ଏମନ୍ତେ କେତେ ଦିନ ଅନ୍ତେ
ରାମ ଚଳିଲେ ସୀତା ପଥେ
ରାମ ଆଗମ ଶୁଣି କର୍ଣ୍ଣେ
ତକ୍ଷଣେ ବରୁଣ ଭୁବନେ
ଜାନକୀ ହୋଇଲେ ପ୍ରବେଶ
ମନେ ଅନେକ କରି ରୋଷ
ସୀତାର ନ ପାଇ ଉଦ୍ଦେଶ୍ୟ
ରାମ ଚଳିଲେ ନିଜ ଦେଶ

ଅଙ୍ଗଦ ଚନ୍ଦ୍ରକେତୁ ଦୁଇ
ଲକ୍ଷ୍ମଣ ଔରସେ ଜାତ ହୋଇ
ତକ୍ଷ ପୁଷ୍କଳ ବେନି ଭାଇ
ଭରତ ପତ୍ନୀ ଗର୍ଭେ ହୋଇ
ସୁବାହୁ ଶ୍ରୁତସେନ ବୀର
ହୋଇଲେ ଶତ୍ରୁଘ୍ନ କୁମର
ଭରତ ଦିଗ ବିଜେ କରି
କୋଟି ଗନ୍ଧର୍ବ ଦଳ ମାରି
ଯୁଦ୍ଧେ ପାଇଲେ ଧନ ଯେତେ
ଦେଲେ ସେ ରାମର ଅଗ୍ରତେ

ଶତ୍ରୁଘ୍ନ ଦିଗ ବିଜେ କରି
ଲବଣ ମଧୁପୁତ୍ର ମାରି
ମଥୁରାପୁର ମଧୁବନେ
କରି ସ୍ଥାପିଲେ ପ୍ରଜାଜନେ ।୧୨-୧୫
ରାମ ଯେ ଜାନକୀ ବିଷାଦେ
ମନ ନ କଲେ ରାଜପଦେ
ସୀତାର ଗୁଣ ଚିନ୍ତି ମନେ
ନିଦ୍ରା ନ ଯାଆନ୍ତି ନୟନେ

ତତ ଊର୍ଦ୍ଧ୍ୱଂ ବ୍ରହ୍ମଚର୍ଯ୍ୟଂ ଧାରୟନ୍ନଜୁହୋତ୍ ପ୍ରଭୁଃ ।
ତ୍ରୟୋଦଶାବ୍ଦସାହସ୍ରମଗ୍ନିହୋତ୍ରମଖଣ୍ଡିତମ୍ ।୧୮।
ସ୍ମରତାଂ ହୃଦି ବିନ୍ୟସ୍ୟ ବିଦ୍ଧଂ ଦଣ୍ଡକକଣ୍ଟକୈଃ ।
ସ୍ୱପାଦପଲ୍ଲବଂ ରାମ ଆତ୍ମଜ୍ୟୋତିରଗାତ୍ ତତଃ ।୧୯।

ନେଦଂ ଯଶୋ ରଘୁପତେଃ ସୁରଯାଚ୍ଞୟାତ୍ତଲୀଳାତନୋରଧିକସାମ୍ୟବିମୁକ୍ତଧାମ୍ନଃ ।
ରକ୍ଷୋବଧୋ ଜଲଧିବନ୍ଧନମସ୍ତ୍ରପୂଗୈଃ କିଂ ତସ୍ୟ ଶତ୍ରୁହନନେ କପୟଃ ସହାୟାଃ ।୨୦
ଯସ୍ୟାମଲଂ ନୃପସଦଃସୁ ଯଶୋଽଧୁନାପି ଗାୟନ୍ତ୍ୟଘଘ୍ନମୃଷୟୋ ଦିଗିଭେନ୍ଦ୍ରପଟ୍ଟମ୍ ।
ତନ୍ନାକପାଳବସୁପାଳକିରୀଟଜୁଷ୍ଟପାଦାମ୍ବୁଜଂ ରଘୁପତିଂ ଶରଣଂ ପ୍ରପଦ୍ୟେ ।୨୧।

ସ ଯୈଃ ସ୍ପୃଷ୍ଟୋଽଭିଦୃଷ୍ଟୋ ବା ସଂବିଷ୍ଟୋଽନୁଗତୋଽପି ବା ।
କୋଶଳାସ୍ତେ ଯଯୁଃ ସ୍ଥାନଂ ଯତ୍ର ଗଚ୍ଛନ୍ତି ଯୋଗିନଃ । ୨୨ ।

---

ମହାଶକ୍ତିଶାଳୀ ଶ୍ରୀରାମଚନ୍ଦ୍ର ସେହିଦିନୁ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ଧାରଣ କରି ତ୍ରୟୋଦଶସହସ୍ର ବର୍ଷ ପର୍ଯ୍ୟନ୍ତ ଅଗ୍ନିହୋତ୍ର ଯଜ୍ଞ ଅନୁଷ୍ଠାନ କରିଥିଲେ ।୧୮।

ତଦନନ୍ତର ଶ୍ରୀରାମଚନ୍ଦ୍ର ଭକ୍ତଗଣଙ୍କ ହୃଦୟରେ ନିଜର ପଦପଲ୍ଲବ ସ୍ଥାପନ କରି ସ୍ୱଧାମକୁ ଗମନ କରିଥିଲେ ।୧୯।

ଦେବତାମାନଙ୍କର ପ୍ରାର୍ଥନାନୁସାରେ ପୃଥିବୀରେ ଲୀଳାବିଗ୍ରହ ରୂପେ ଅବତୀର୍ଣ୍ଣ ହୋଇ ପ୍ରଭାବଶାଳୀ ରଘୁପତି ଶ୍ରୀରାମଚନ୍ଦ୍ରଙ୍କର ରାକ୍ଷସବଧ ଓ ସମୁଦ୍ରରେ ସେତୁବନ୍ଧନ କରିବା ଅତ୍ୟନ୍ତ ଆଶ୍ଚର୍ଯ୍ୟକଥା ନୁହେଁ । ଶତ୍ରୁମାନଙ୍କର ବିନାଶ ବିଷୟରେ ବାନରମାନେ ତାହାଙ୍କୁ କଣ ସାହାଯ୍ୟ କରିପାରନ୍ତି ? କାରଣ ସେ ସ୍ୱୟଂ ସେହି କାର୍ଯ୍ୟ କରିବାକୁ ସକ୍ଷମ, ତାଙ୍କ ପକ୍ଷରେ କୌଣସି କାର୍ଯ୍ୟ କରିବାପାଇଁ କାହାରିକୁ ଅପେକ୍ଷା କରିବାକୁ ନ ଥିଲା ।୨୦।

ଯୁଧିଷ୍ଠିର ପ୍ରଭୃତି ରାଜନ୍ୟମଣ୍ଡଳୀଙ୍କ ରାଜସଭାରେ ମାର୍କଣ୍ଡେୟାଦି ଋଷିଗଣ ପାପନାଶକ ଦିଗନ୍ତ-ବ୍ୟାପୀ ଶ୍ରୀରାମଚନ୍ଦ୍ରଙ୍କର ନିର୍ମଳ ଯଶ ଯାହା କୀର୍ତ୍ତନ କରିଥିଲେ ଅଦ୍ୟାପି ଭକ୍ତଗଣ ତାହା କୀର୍ତ୍ତନ କରିଥାନ୍ତି ଦେବାଧିପତି ଓ ନରାଧିପତି ଗଣ ଯେଉଁ ରଘୁପତିଙ୍କର ପାଦପଦ୍ମକୁ ସ୍ୱୀୟ ମସ୍ତକଦ୍ୱାରା ସେବା କରିଥାନ୍ତି ମୁଁ ତାଙ୍କ ନିକଟରେ ଶରଣାପନ୍ନ ହେଉଛି ।୨୧।

ଯେଉଁମାନେ ଶ୍ରୀରାମଚନ୍ଦ୍ରଙ୍କୁ ସ୍ପର୍ଶନ କରିଅଛନ୍ତି, ଦର୍ଶନ କରିଅଛନ୍ତି, ଉପବେଶନ କରାଇଅଛନ୍ତି ଓ ତାହାଙ୍କର ଅନୁଗତ ହୋଇଅଛନ୍ତି ସେହି ଅଯୋଧ୍ୟାବାସୀମାନେ ଯୋଗୀମାନଙ୍କର ପରମଧାମ ବୈକୁଣ୍ଠ-ପୁରକୁ ଗମନ କରିଥିଲେ ।୨୨।

---

ଜଣ୍ଟ ବୃଣ୍ଟିତ ଶୋକେ ପୁରି
ଦେହକୁ ନ ପାରନ୍ତି ଧରି

ପ୍ରିୟ ପୁରୁଷ ଦଙ୍ଗ ଏହି
କେସାରେ ନରଦେହବହି ।୧୬,୧୭

ସେ ଦିନୁ ବ୍ରହ୍ମଚର୍ଯ୍ୟ କରି
ରାମ ହୋଇଲେ ବ୍ରହ୍ମଶ୍ରୀ

ପୁରୁଷୋ ରାମଚରିତଂ ଶ୍ରବଣୈରୁପଧାରୟନ୍ ।
ଆନୃଶଂସ୍ୟପରୋ ରାଜନ୍ କର୍ମ୍ମବନ୍ଧୈର୍ବିମୁଚ୍ୟତେ । ୨୩ ।
କଥଂ ସ ଭଗବାନ୍ ରାମୋ ଭ୍ରାତୃନ୍ ବା ସ୍ୱୟମାତ୍ମନଃ ।
ତସ୍ମିନ୍ ବା ତେଽନ୍ୱବର୍ତ୍ତନ୍ତ ପ୍ରଜାଃ ପୌରାଶ୍ଚ ଈଶ୍ୱରେ । ୨୪ ।

ଶ୍ରୀ ବାଦରାୟଣିରୁବାଚ

ଅଥାଦିଶଦ୍ଦିଗ୍‌ବିଜୟେ ଭ୍ରାତୄଂସ୍ତ୍ରିଭୁବନେଶ୍ୱରଃ ।
ଆତ୍ମାନଂ ଦର୍ଶୟନ୍ ସ୍ୱାନାଂ ପୁରୀମୈକ୍ଷତ ସାନୁଗଃ । ୨୫ ।
ଆସିକ୍ତମାର୍ଗାଂ ଗନ୍ଧୋଦୈଃ କରିଣାଂ ମଦଶୀକରୈଃ ।
ସ୍ୱାମିନଂ ପ୍ରାପ୍ତମାଲୋକ୍ୟ ମତ୍ତାଂ ବା ସୁତରାମିବ । ୨୬ ।
ପ୍ରାସାଦଗୋପୁରସଭା-ଚୈତ୍ୟଦେବଗୃହାଦିଷୁ ।
ବିନ୍ୟସ୍ତହେମକଲସୈଃ ପତାକାଭିଶ୍ଚ ମଣ୍ଡିତାମ୍ । ୨୭ ।

---

ହେ ରାଜନ୍ ! ଯେଉଁ ବ୍ୟକ୍ତି ଏହି ଶ୍ରୀରାମ ଚରିତ ଶ୍ରବଣ ଓ ଧାରଣ କରନ୍ତି ସେ କ୍ରୂରତା ଶୂନ୍ୟ ହୋଇ କର୍ମ ବନ୍ଧନରୁ ବିମୁକ୍ତ ହୁଅନ୍ତି । ୨୩ ।

ରାଜା ପରୀକ୍ଷିତ କହିଲେ :—

ହେ ଗୁରୋ ! ଶ୍ରୀରାମଚନ୍ଦ୍ର କପରି ରହୁଥିଲେ, ନିଜର ଅଂଶ ସ୍ୱରୂପ ଭ୍ରାତୃମାନଙ୍କ ସହିତ କପରି ବ୍ୟବହାର କରୁଥିଲେ, ସାକ୍ଷାତ୍ ପରମେଶ୍ୱର ସ୍ୱରୂପ ସେହି ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ପ୍ରଜାମାନଙ୍କର ବ୍ୟବହାର କପରି ଥିଲା ତାହା କହନ୍ତୁ । ୨୪ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ତ୍ରିଭୁବନାଧୀଶ୍ୱର ଶ୍ରୀରାମଚନ୍ଦ୍ର ଭ୍ରାତାମାନଙ୍କୁ ଦିଗ୍‌ବିଜୟ କରିବାକୁ ପ୍ରେରଣ କରୁଥିଲେ, ନିଜେ ଆତ୍ମୀୟମାନଙ୍କର ପ୍ରୀତି ଉତ୍ପାଦନ କରି ଅନୁଚରମାନଙ୍କ ସହିତ ମିଳିତ ହୋଇ ସମ୍ୟକରୂପେ ପ୍ରଜାପାଳନ କରୁଥିଲେ । ୨୫।

ଅଯୋଧ୍ୟା ପୁରୀରେ ଗଙ୍ଗାଜଳ ଓ ହସ୍ତୀମାନଙ୍କର ମଦଜଳ ଦ୍ୱାରା ରାଜପଥ ସର୍ବଦା ସିକ୍ତ ହେଉଥିଲା । ଏହି ପୁରୀ ସ୍ୱୀୟ ଅଧିପତି ଶ୍ରୀରାମଚନ୍ଦ୍ରଙ୍କ ପାଇ ଅତ୍ୟନ୍ତ ସମୃଦ୍ଧି ସମ୍ପନ୍ନ ହୋଇଥିଲା । ସେଠାର ରାଜପ୍ରାସାଦ, ଗୋପୁର, ସଭା, ପାଷାଣାଦି ନିର୍ମିତ ଦେବଗୃହ ପ୍ରଭୃତିରେ ଜଳପୂର୍ଣ୍ଣ ସୁବର୍ଣ୍ଣ କୁମ୍ଭମାନ ସଜିତ

---

| ବର୍ଷ ସହସ୍ର ତ୍ରୟୋଦଶେ | ଅଖଣ୍ଡ ଅଗ୍ନିହୋତ୍ର କଲେ | ଦକ୍ଷିଣା ଦେଲେ ତୋଷ ଚିତ୍ତେ |
|---|---|---|
| କରନ୍ତେ ବ୍ରହ୍ମଚର୍ଯ୍ୟ ବେଶେ | ବଶିଷ୍ଠ ମୁନି ଆଦି ଭୁଲେ | ସନ୍ଧ୍ୟା ମଧ୍ୟାହ୍ନ ଅବରତେ |

ପୂଗୈଃ ସବୃନ୍ତୈଃ ରମ୍ଭାଭିଃ ପଟ୍ଟିକାଭିଃ ସୁବାସସାମ୍ ।
ଆଦର୍ଶୈରଂଶୁକୈଃ ସ୍ରଗ୍‌ଭିଃ କୃତକୌତୁକତୋରଣାମ୍ । ୨୮ ।
ତମୁପେୟୁସ୍ତତ୍ର ତତ୍ର ପୌରା ଅର୍ହଣପାଣୟଃ ।
ଆଶିଷୋଯୁଯୁଜୁର୍ଦ୍ଦେବ ପାହି ମାଂପ୍ରାକ୍‌ତ୍ୱୟୋଦ୍ଧୃତାମ୍ । ୨୯ ।
ତତଃ ପ୍ରଜା ବୀକ୍ଷ୍ୟ ପତିଂ ଚିରାଗତଂ ଦଦୃକ୍ଷୟୋତ୍ସୃଷ୍ଟଗୃହାଃ ସ୍ତ୍ରିୟୋ ନରାଃ ।
ଆରୁହ୍ୟ ହର୍ମ୍ମ୍ୟାଣ୍ୟରବିନ୍ଦଲୋଚନ-ମତୃପ୍ତନେତ୍ରାଃ କୁସୁମୈରବାକିରନ୍ । ୩୦ ।
ଅଥ ପ୍ରବିଷ୍ଟଃ ସ୍ୱଗୃହଂ ଜୁଷ୍ଟଂ ସ୍ୱୈଃପୂର୍ବରାଜଭିଃ ।
ଅନନ୍ତାଖିଳକୋଷାଢ୍ୟମନର୍ଘୋରୁପରିଚ୍ଛଦମ୍ । ୩୧ ।
ବିଦ୍ରୁମୋଦୁମ୍ବରଦ୍ୱାରୈର୍ବୈଦୂର୍ଯ୍ୟସ୍ତମ୍ଭପଂକ୍ତିଭିଃ ।
ସ୍ଥଳୈର୍ମାରକତୈଃ ସ୍ୱଚ୍ଛୈର୍ଭ୍ରାଜତ୍‌ସ୍ଫଟିକଭିତ୍ତିଭିଃ ।୩୨।

---

ବିରାଜିତ ଥିଲା, ବୃନ୍ତ ସହିତ ଗୁବାକ, ରମ୍ଭା, ସୁଶୋଭିତ ବସନ ପେଟିକା, ଦର୍ପଣ, ବସ୍ତ୍ର, ମାଲ୍ୟ ପ୍ରଭୃତି ଦ୍ୱାରା ସ୍ଥାନେ ସ୍ଥାନେ ମଙ୍ଗଳ ତୋରଣାଦି ନିର୍ମିତ ହୋଇଥିଲା । ଏବଂ ପତାକାଦି ଦ୍ୱାରା ସେ ପୁରୀ ଶୋଭିତ ହୋଇଥିଲା ।୨୭, ୨୮।

ଏହି ସ୍ଥାନର ଅଧିବାସୀମାନେ ଉପହାରମାନ ନେଇ ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହେଉଥିଲେ ଏବଂ ମଙ୍ଗଳ କାମନା କରି କହୁଥିଲେ, "ହେ ଦେବ ! ଆପଣ ପୂର୍ବେ ପୃଥିବୀକୁ ଉଦ୍ଧାର କରିଅଛନ୍ତି, ବର୍ତ୍ତମାନ ଏହାକୁ ପାଳନ କରନ୍ତୁ ।୨୯।

ବହୁକାଳ ପରେ ବନବାସରୁ ପ୍ରତ୍ୟାଗତ ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କରିକରି ଚକ୍ଷୁର ଲାଳସା ନ ମେଣ୍ଟିବାରୁ ସ୍ତ୍ରୀ ପୁରୁଷମାନେ ଦର୍ଶନାକାଙ୍କ୍ଷରେ ଗୃହ ପରିତ୍ୟାଗ କରି ପ୍ରାସାଦରେ ଆରୋହଣ କରି କମଳଲୋଚନ ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କରି ପୁଷ୍ପ ବର୍ଷଣ କରିଥିଲେ ।୩୦।

ତଦନନ୍ତର ଶ୍ରୀରାମଚନ୍ଦ୍ର ନିଜର ପୂର୍ବ ପୁରୁଷମାନଙ୍କର ଦ୍ୱାରା ସଂରକ୍ଷିତ ବହୁବିଧ ରତ୍ନ ବହୁମୂଲ୍ୟ ପରିଚ୍ଛଦାଦି ନିଜ ଗୃହରେ ପ୍ରବେଶ କରିଥିଲେ ।୩୧।

ଗୃହଦ୍ୱାର ମାନଙ୍କରେ ଦେହଳୀମାନ ପଦ୍ମରାଗ ମଣିରେ ନିର୍ମିତ ହୋଇଥିଲା, ସ୍ତମ୍ଭମାନ ବୈଦୁର୍ଯ୍ୟ ମଣିରେ ଖଚିତ ହୋଇଥିଲା, ସ୍ଥଳଭାଗ ସ୍ୱଚ୍ଛ ମରକତ ମଣିରେ ନିର୍ମିତ ହୋଇଥିଲା, ଭିତ୍ତି ସମୂହ ଦେଦୀପ୍ୟମାନ ସ୍ଫଟିକମଣି ଦ୍ୱାରା ନିର୍ମିତ ହୋଇଥିଲା ।୩୨।

---

| | | |
|---|---|---|
| ସଂସାରରେ ଥୋଇ ନିଜ ଯଶ | ବୋଲନ୍ତି ଶୁକ ବହୁଋଷି | ରାମ ଚରିତ୍ର ତୋ ଅଗ୍ରତେ |
| ହୋଇଲେ ସ୍ୱଧାମେ ପ୍ରବେଶ | ଶୁଣ ହୋ ରାଜା କୁରୁବଂଶି । | ସଂକ୍ଷେପେ କହିଲି ମୁଁ ତୋତେ |

ଚବସ୍ରଗ୍‌ଭିଃ ପଟିକାଭିର୍ବାସୋମଣିଗଣାଂଶୁକୈଃ ।
ମୁକ୍ତାଫଳୈଶ୍ଚିଦୁଲ୍ଲାସୈଃ କାନ୍ତକାମୋପପତ୍ତିଭିଃ ।୩୩।
ଧୂପଦୀପୈଃ ସୁରଭିଭିର୍ମଣ୍ଡିତଂ ପୁଷ୍ପମଣ୍ଡନୈଃ ।
ସ୍ତ୍ରୀପୁଂଭିଃ ସୁରସଂକାଶୈର୍ଜୁଷ୍ଟଂ ଭୂଷଣଭୂଷଣୈଃ ।୩୪।
ତସ୍ମିନ୍ ସ ଭଗବାନ୍ ରାମଃ ପ୍ରିୟୟା ସ୍ନିଗ୍ଧଚେଷ୍ଟୟା ।
ରେମେ ସ୍ୱାରାମଧୀରାଣାମୃଷଭଃ ସୀତୟା କିଲ ।୩୫।
ବୁଭୁଜେ ଚ ଯଥାକାଲଂ କାମାନ୍ ଧର୍ମମପୀଡ଼ୟନ୍ ।
ବର୍ଷପୂଗାନ୍ ବହୂନ୍ ନୃଣାମଭିଧ୍ୟାତାଙ୍ଘ୍ରିପଲ୍ଲବଃ ।୩୬।

ଇତ ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ଶ୍ରୀରାମଚରିତଂ ନାମ ଏକାଦଶୋଽଧ୍ୟାୟଃ ।୧୧।

---

ବିଚିତ୍ର ମାଲ୍ୟ, ଧ୍ୱଜ, ବସନ ଏବଂ ମଣିଗଣର ଦୀପ୍ତି ଦ୍ୱାରା ସମୁଜ୍ଜ୍ୱଳ, ମୁକ୍ତାଫଳ ଓ କମନୀୟ ବହୁବିଧ ଭୋଗୋପକରଣ ଦ୍ୱାରା ରାଜପୁରୀ ବିମଣ୍ଡିତ ହୋଇଥିଲା ।୩୩।

ରାଜପୁରୀକୁ ସୁରଭି ଧୂପ ଦୀପ ସୁରକ୍ଷିତ କରୁଥିଲା । ତାହା ପୁଷ୍ପ ଭୂଷଣରେ ଭୂଷିତ ଏବଂ ଯେଉଁ-ମାନେ ଭୂଷଣର ଭୂଷଣ ସ୍ୱରୂପ ସେହି ଦେବତୁଲ୍ୟ ନରନାରୀଗଣଙ୍କ ଦ୍ୱାରା ତାହା ସେବିତ ହେଉଥିଲା ।୩୪।

ଆତ୍ମାରାମ ମାନଙ୍କର ଶିରୋମଣି ଶ୍ରୀରାମଚନ୍ଦ୍ର ସେହି ରାଜପୁରୀରେ ସ୍ନେହଶୀଳା, ମନୋରମା, ପ୍ରିୟତମା ସୀତାଙ୍କ ସହିତ କାଳଯାପନ କରୁଥିଲେ ।୩୫।

ସର୍ବଲୋକ ବନ୍ଦିତ ଶ୍ରୀରାମଚନ୍ଦ୍ର ବହୁକାଳ ପର୍ଯ୍ୟନ୍ତ ଧର୍ମାନୁସାରେ ଯଥାଯୋଗ୍ୟାନୁସାରେ ଭୋଗ୍ୟ-ବସ୍ତୁମାନ ଉପଭୋଗ କରିଥିଲେ ।୩୬।

---

| | | |
|---|---|---|
| ଯେ ଏହା ଶ୍ରବଣେ ଶୁଣନ୍ତି | ବୋଲଇ ବିପ୍ର ଜଗନ୍ନାଥ | ରାମଚରିତ୍ର ପୁଣ୍ୟ କଥା |
| ଦୁର୍ଗମ ସଙ୍କଟୁ ତରନ୍ତି ।୧୮-୩୬ | ନବମସ୍କନ୍ଧେ ଭାଗବତ | ଯେଣେ ଖଣ୍ଡଇ ଭବବ୍ୟଥା । |

**ଭାବାର୍ଥ :—**

ପ୍ରଜାରଞ୍ଜନ ଶ୍ରୀରାମଚନ୍ଦ୍ରଙ୍କର ରାଜକୀୟ ଜୀବନର ଆଦର୍ଶ ଥିଲା, ସେ ସେହି ବ୍ରତ ପାଳନ କରି ନିଜର ପ୍ରିୟତମା ପତ୍ନୀ ସୀତାଙ୍କୁ ମଧ୍ୟ ପରିତ୍ୟାଗ କରିଥିଲେ । ଶ୍ରୀରାମଚନ୍ଦ୍ରଙ୍କର ରାଜନୀତି ଅଦ୍ୟାପି "ରାମରାଜ୍ୟ" ବୋଲି ବିଖ୍ୟାତ । ସେ ଭ୍ରାତୃମାନଙ୍କ ପ୍ରତି, ପ୍ରଜାମାନଙ୍କ ପ୍ରତି ଯେଉଁ ସ୍ନେହ ଶୀଳତା ପ୍ରଦର୍ଶନ କରିଥିଲେ ତାହା ଅନନ୍ୟ ବିରଳ, ଶ୍ରୀରାମଚନ୍ଦ୍ରଙ୍କ ପଦ ସ୍ପର୍ଶରେ ଅଯୋଧ୍ୟାପୁରୀ ସ୍ୱର୍ଗପୁରୀ ତୁଲ୍ୟ ହୋଇଥିଲା । ସେହି ପୁରାଣକୀର୍ତ୍ତି, ରଘୁବଂଶାବତଂସ ଶ୍ରୀରାମଚନ୍ଦ୍ରଙ୍କ କୀର୍ତ୍ତିଗାଥା ଦଶମ ଓ ଏକାଦଶ ଅଧ୍ୟାୟରେ ସଂକ୍ଷିପ୍ତ ଭାବରେ ଶ୍ରୀ ଶୁକଦେବ ବର୍ଣ୍ଣନା କରିଅଛନ୍ତି ।

# ଦ୍ୱାଦଶୋଽଧ୍ୟାୟଃ

ଦ୍ୱାଦଶେ ରାଜପୁତ୍ରସ୍ୟ କୁଳସ୍ୟାନ୍ୱୟ ଉଚ୍ୟତେ ।
ଏବମିକ୍ଷ୍ୱାକୁପୁତ୍ରସ୍ୟ ଶଶାଦସ୍ୟେତରତୋଽନ୍ୱୟଃ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ

କୁଶସ୍ୟ ଚାତିଥିସ୍ତସ୍ମାନ୍ନିଷଧସ୍ତତ୍ସୁତୋ ନଭଃ ।
ପୁଣ୍ଡରୀକୋଽଥ ତତ୍ପୁତ୍ରଃ କ୍ଷେମଧନ୍ୱାଭବତ୍ ତତଃ ।୧।
ଦେବାନୀକସ୍ତତୋଽନୀହଃ ପାରଯାତ୍ରୋଽଥ ତତ୍ସୁତଃ ।
ତତୋ ବଳସ୍ଥଳସ୍ତସ୍ମାଦ୍‌ବଜ୍ରନାଭୋଽର୍କସମ୍ଭବଃ ।୨।
ସ୍ୱଗଣସ୍ତତ୍ସୁତସ୍ତସ୍ମାଦ୍‌ବିଧୃତଶ୍ଚାଭବତ୍ ସୁତଃ ।
ତତୋ ହିରଣ୍ୟନାଭୋଽଭୂଦ୍‌ଯୋଗାଚାର୍ଯ୍ୟସ୍ତୁ ଜୈମିନେଃ ।୩।

---

## କୁଶବଂଶ ବିବରଣ

ଦ୍ୱାଦଶ ଅଧ୍ୟାୟରେ ଶ୍ରୀରାମଚନ୍ଦ୍ରଙ୍କର ପୁତ୍ର କୁଶଙ୍କର ବଂଶ ପରିଚୟ ଏବଂ ଇକ୍ଷ୍ୱାକୁପୁତ୍ର ଶଶାଦଙ୍କର ବଂଶ ବର୍ଣ୍ଣନା କରାଯାଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! କୁଶଙ୍କର ପୁତ୍ର ଅତିଥି, ଅତିଥିଙ୍କର ପୁତ୍ର ନିଷଧ, ନିଷଧଙ୍କର ପୁତ୍ର ନଭ, ନଭଙ୍କର ପୁତ୍ର ପୁଣ୍ଡରୀକ, ପୁଣ୍ଡରୀକଙ୍କର ପୁତ୍ର କ୍ଷେମଧନ୍ୱା ।୧।

କ୍ଷେମଧନ୍ୱାଙ୍କର ପୁତ୍ର ଦେବାନୀକ, ଦେବାନୀକଙ୍କର ପୁତ୍ର ଅନୀହ, ତାହାଙ୍କର ପୁତ୍ର ପାରିଯାତ୍ର, ତାହାଙ୍କର ପୁତ୍ର ବଳସ୍ଥଳ, ବଳସ୍ଥଳଙ୍କଠାରୁ ସୂର୍ଯ୍ୟଙ୍କ ଅଂଶରେ ବଜ୍ରନାଭ ଉତ୍ପନ୍ନ ହୋଇଥିଲେ ।୨।

ବଜ୍ରନାଭଙ୍କର ପୁତ୍ର ସଗଣ, ସଗଣଙ୍କର ପୁତ୍ର ବିଧୃତ, ବିଧୃତଙ୍କର ପୁତ୍ର ହିରଣ୍ୟନାଭ, ସେ ଜୈମିନିଙ୍କର ଶିଷ୍ୟ ହୋଇ ଯୋଗରେ ଆଚାର୍ଯ୍ୟ ହୋଇଥିଲେ ।୩।

---

କୁଶ ଶଶାଦ ବଂଶ କଥା । ଦ୍ୱାଦଶ ଅଧ୍ୟାୟ ବ୍ୟବସ୍ଥା ॥

ଶ୍ରୀଶୁକ ଉବାଚ—

ଶୁଣ ପରୀକ୍ଷ ମହୀପତି
ଶ୍ରୀରଘୁନାଥଙ୍କ ସନ୍ତତି
ଅତିଥି କୁଶର ନନ୍ଦନ
ନିଷଧ ତାର ତନୁଁ ଜାତ

ନଭି ତାହାର ପୁତ୍ର ହୋଏ
ତା ପୁତ୍ର ପୁଣ୍ଡରୀକ ନାଁ ଏ
ତା ସୁତ କ୍ଷେମଧନ୍ୱା ନାମ
ରୂପେ ସୁନ୍ଦର ଅନୁପମ । ୧ ।
ତାର କୁମର ଦେବାନୀକ
ତାହାର ପୁତ୍ର ହୋଏ ଏକ

ତାହାର ନାମ ପାରିଯାତ୍ର
ବଳସ୍ଥଳ ଯେ ତାର ସୁତ
ତାର ସନ୍ତତି ବଜ୍ରନାଭ
ଅର୍କର ଅଂଶେ ସେ ସମ୍ଭବ । ୨ ।
ସଗଣ ତାହାର ତନୟେ
ବିଧୃତି ତାର ଜାୟେ ହୋଏ

ଶିଷ୍ୟଃ କୌଶଲ୍ୟ ଆଧ୍ୟାତ୍ମ୍ୟଂ ଯାଜ୍ଞବଲ୍କ୍ୟୋଽଧ୍ୟଗାଦ୍‌ଯତଃ ।
ଯୋଗଂ ମହୋଦୟମୃଷିର୍ହୃଦୟଗ୍ରନ୍ଥିଭେଦକମ୍ । ୪ ।
ପୁଷ୍ୟୋ ହିରଣ୍ୟନାଭସ୍ୟ ଧ୍ରୁବସନ୍ଧିସ୍ତତୋଽଭବତ୍ ।
ସୁଦର୍ଶନୋଽଥାଗ୍ନିବର୍ଣ୍ଣଃ ଶୀଘ୍ରସ୍ତସ୍ୟ ମରୁଃ ସୁତଃ । ୫ ।
ସୋଽସାବାସ୍ତେ ଯୋଗସିଦ୍ଧଃ କଳାପଗ୍ରାମମାସ୍ଥିତଃ ।
କଳେରନ୍ତେ ସୂର୍ଯ୍ୟବଂଶଂ ନଷ୍ଟଂ ଭାବୟିତା ପୁନଃ । ୬ ।
ତସ୍ମାତ୍ ପ୍ରସୁଶ୍ରୁତସ୍ତସ୍ୟ ସନ୍ଧିସ୍ତସ୍ୟାପ୍ୟମର୍ଷଣଃ ।
ମହସ୍ୱାଂସ୍ତତ୍ସୁତସ୍ତସ୍ମାଦ୍‌ବିଶ୍ୱବାହୁରଜାୟତ । ୭ ।
ତତଃ ପ୍ରସେନଜିତ୍ ତସ୍ମାତ୍ ତକ୍ଷକୋ ଭବିତା ପୁନଃ ।
ତତୋ ବୃହଦ୍‌ବଲୋ ଯସ୍ତୁ ପିତ୍ରା ତେ ସମରେ ହତଃ ।୮।

---

ହିରଣ୍ୟନାଭଠାରୁ କୋଶଳ ବାସୀ ଯାଜ୍ଞବଲ୍କ ଋଷି ଶିଷ୍ୟତ୍ୱ ଗ୍ରହଣକରି ହୃଦୟର ଅଜ୍ଞାନ ବନ୍ଧନ ଛେଦକ ପରମ ପବିତ୍ର ଅଧ୍ୟାତ୍ମ୍ୟ ଯୋଗ ଶିକ୍ଷା କରିଥିଲେ । ୪।

ହିରଣ୍ୟନାଭଙ୍କର ପୁତ୍ର ପୁଷ୍ପ, ପୁଷ୍ପଙ୍କର ପୁତ୍ର ଧ୍ରୁବସନ୍ଧି, ତାହାଙ୍କର ପୁତ୍ର ସୁଦର୍ଶନ, ତାହାଙ୍କର ପୁତ୍ର ଅଗ୍ନିବର୍ଣ୍ଣ, ଅଗ୍ନିବର୍ଣ୍ଣଙ୍କର ପୁତ୍ର ଶୀଘ୍ର; ତାହାଙ୍କର ପୁତ୍ର ମରୁ ।୫।

ମରୁ ଯୋଗସିଦ୍ଧ ହୋଇ କଲ୍ୟାଣ ନାମକ ଗ୍ରାମରେ ଅବସ୍ଥାନ କରୁଅଛନ୍ତି । କଳିଯୁଗର ଅବସାନ କାଳରେ ନଷ୍ଟପ୍ରାପ୍ତ ସୂର୍ଯ୍ୟବଂଶକୁ ସେ ପୁନରୁତ୍ଥାନ କରିବେ ।୬।

ମରୁଙ୍କର ପୁତ୍ର ପ୍ରଶୁଶ୍ରୁତ, ତାହାଙ୍କର ପୁତ୍ର ସନ୍ଧି, ତାଙ୍କପୁତ୍ର ଅମର୍ଷଣ, ତାଙ୍କପୁତ୍ର ମହସ୍ୱାନ୍, ମହସ୍ୱାନଙ୍କଠାରୁ ବିଶ୍ୱବାହୁ ଜନ୍ମଗ୍ରହଣ କରିଥିଲେ ।୭।

ବିଶ୍ୱବାହୁଙ୍କଠାରୁ ପ୍ରସେନଜିତ୍ ଓ ପ୍ରସେନଜିତ୍‌ଙ୍କଠାରୁ ତକ୍ଷକ, ତକ୍ଷକଙ୍କର ପୁତ୍ର ବୃହଦ୍‌ବଳ, ସେହି ବୃହଦ୍‌ବଳଙ୍କୁ ତୁମ୍ଭର ପିତା ଅଭିମନ୍ୟୁ ଯୁଦ୍ଧରେ ସଂହାର କରିଥିଲେ ।୮।

---

ହିରଣ୍ୟନାଭ ତା ସନ୍ତତ
ଯୋଗ ବିଦ୍ୟାରେ ତାର ଖ୍ୟାତ
ତା ଗୁରୁ ଅଟନ୍ତି ଜୈମିନି
ତା ଶିଷ୍ୟ ଯାଜ୍ଞବଲ୍କ୍ୟ ମୁନି
ଅଭ୍ୟାସ ଯାର ସ୍ଥିର ବେଦେ
ଚ୍ଛେଦେ ହୃଦୟ ଗ୍ରନ୍ଥି ଭେଦେ ।୩,୪
ହିରଣ୍ୟନାଭର କୁମର
ପୁଷ୍ପ ଅଭ୍ୟାସ ଯଜ୍ଞେ ଯାର
ତାର କୁମର ଧ୍ରୁବସନ୍ଧି
ଯା ବଂଶେ ଥାନ୍ତି ଅଷ୍ଟନିଧି

ତାର କୁମର ସୁଦର୍ଶନ
ତାହାର ପୁତ୍ର ଅଗ୍ନିବର୍ଣ୍ଣ
ଶୀଘ୍ର ଜନମ ତାହାଠାରୁ
ତାହାର ସୁତ ଅଟେ ମରୁ । ୫ ।
ମରୁ ଯେ ଶୀଘ୍ରର ତନୟେ
ଯେ କାତ୍ୟୟଯୋଗକର୍ମଧ୍ୟାୟେ
କଳାପ ଗ୍ରାମେ ବସିଧ୍ୟାନେ
ଯନ୍ତ୍ରିତ ନିତ୍ୟ ତତ୍ତ୍ୱଜ୍ଞାନେ
ଯୋଗ ସାଧଇ ଯେବା ଅର୍ଥେ
ଶୁଣ କହିବା ତୋ ଅଗ୍ରତେ

କଳିର ଅନ୍ତେ ସୂର୍ଯ୍ୟ ବଂଶ
ସେ ପୁଣ କରିବ ପ୍ରକାଶ । ୬ ।
ପ୍ରସୁଶ୍ରୁତ ତାର ତନୟେ
ତା ସୁତ ସନ୍ଧି ନାମ କହେ
ଅମର୍ଷଣ ଯେ ତାର ସୁତ
ମହସ୍ୱାନ ଯେ ତହୁଁ ଜାତ
ତାର କୁମର ବିଶ୍ୱବାହୁ
ତାର ମହିମା କେବା କହୁ ? ।୭।
ପ୍ରସେନଜିତ ତାର ପୁତ୍ର
ତକ୍ଷକ ନାମେ ତାର ସୁତ

# ଦ୍ୱାଦଶୋଽଧ୍ୟାୟଃ

ଦ୍ୱାଦଶେ ରାଜପୁତ୍ରସ୍ୟ କୁଳସ୍ୟାନ୍ୱୟ ଉଚ୍ୟତେ ।
ଏବମିକ୍ଷ୍ୱାକୁପୁତ୍ରସ୍ୟ ଶଶାଦସ୍ୟେରିତୋଽନ୍ୱୟଃ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ

କୁଶସ୍ୟ ଚାତିଥିସ୍ତସ୍ମାନ୍ନିଷଧସ୍ତତ୍ସୁତୋ ନଭଃ ।
ପୁଣ୍ଡରୀକୋଽଥ ତତ୍ପୁତ୍ରଃ କ୍ଷେମଧନ୍ୱାଭବତ୍ ତତଃ ।୧।
ଦେବାନୀକସ୍ତତୋଽନୀହଃ ପାରଯାତ୍ରୋଽଥ ତତ୍ସୁତଃ ।
ତତୋ ବଳସ୍ଥଳସ୍ତସ୍ମାଦ୍‌ବଜ୍ରନାଭୋଽର୍କସମ୍ଭବଃ ।୨।
ସ୍ୱଗଣସ୍ତତ୍ସୁତସ୍ତସ୍ମାଦ୍‌ବିଧୃତଶ୍ଚାଭବତ୍ ସୁତଃ ।
ତତୋ ହିରଣ୍ୟନାଭୋଽଭୂଦ୍‌ଯୋଗାଚାର୍ଯ୍ୟସ୍ତୁ ଜୈମିନେଃ ।୩।

---

## କୁଶବଂଶ ବିବରଣ

ଦ୍ୱାଦଶ ଅଧ୍ୟାୟରେ ଶ୍ରୀରାମଚନ୍ଦ୍ରଙ୍କର ପୁତ୍ର କୁଶଙ୍କର ବଂଶ ପରିଚୟ ଏବଂ ଇକ୍ଷ୍ୱାକୁପୁତ୍ର ଶଶାଦ-ଙ୍କର ବଂଶ ବର୍ଣ୍ଣନା କରାଯାଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! କୁଶଙ୍କର ପୁତ୍ର ଅତିଥି, ଅତିଥିଙ୍କର ପୁତ୍ର ନିଷଧ, ନିଷଧଙ୍କର ପୁତ୍ର ନଭ, ନଭଙ୍କର ପୁତ୍ର ପୁଣ୍ଡରୀକ, ପୁଣ୍ଡରୀକଙ୍କର ପୁତ୍ର କ୍ଷେମଧନ୍ୱା ।୧।

କ୍ଷେମଧନ୍ୱାଙ୍କର ପୁତ୍ର ଦେବାନୀକ, ଦେବାନୀକଙ୍କର ପୁତ୍ର ଅନୀହ, ତାହାଙ୍କର ପୁତ୍ର ପାରିଯାତ୍ର, ତାହାଙ୍କର ପୁତ୍ର ବଳସ୍ଥଳ, ବଳସ୍ଥଳଙ୍କଠାରୁ ସୂର୍ଯ୍ୟଙ୍କ ଅଂଶରେ ବଜ୍ରନାଭ ଉତ୍ପନ୍ନ ହୋଇଥିଲେ ।୨।

ବଜ୍ରନାଭଙ୍କର ପୁତ୍ର ସଗଣ, ସଗଣଙ୍କର ପୁତ୍ର ବିଧୃତ, ବିଧୃତଙ୍କର ପୁତ୍ର ହିରଣ୍ୟନାଭ, ସେ ଜୈମିନିଙ୍କର ଶିଷ୍ୟ ହୋଇ ଯୋଗରେ ଆଚାର୍ଯ୍ୟ ହୋଇଥିଲେ ।୩।

---

କୁଶ ଶଶାଦ ବଂଶ କଥା ।　　ଦ୍ୱାଦଶ ଅଧ୍ୟାୟ ବ୍ୟବସ୍ଥା ॥

ଶ୍ରୀଶୁକ ଉବାଚ—

ଶୁଣ ପରୀକ୍ଷ ମହୀପତି
ଶ୍ରୀରଘୁନାଥଙ୍କ ସନ୍ତତି
ଅତିଥି କୁଶର ନନ୍ଦନ
ନିଷଧ ତାର ତହୁଁ ଜନ୍ମ

ନଭ ତାହାର ପୁତ୍ର ହୋଏ
ତା ପୁତ୍ର ପୁଣ୍ଡରୀକ ନାଁ ଏ
ତା ସୁତ କ୍ଷେମଧନ୍ୱା ନାମ
ରୂପେ ସୁନ୍ଦର ଅନୁପମ । ୧ ।
ତାର କୁମର ଦେବାନୀକ
ତାହାର ପୁତ୍ର ହୋଏ ଏକ

ତାହାର ନାମ ପାରିଯାତ୍ର
ବଳସ୍ଥଳ ଯେ ତାର ସୁତ
ତାର ସନ୍ତତି ବଜ୍ରନାଭ
ଅର୍କର ଅଂଶେ ସେ ସମ୍ଭବ । ୨ ।
ସଗଣ ତାହାର ତନୟେ
ବିଧୃତ ତାର ଦାୟାଦ ହୋଏ

ଶିଷ୍ୟଃ କୌଶଲ୍ୟ ଆଧ୍ୟାତ୍ମଂ ଯାଜ୍ଞବଲ୍କ୍ୟୋଽଧ୍ୟଗାଦ୍ୟତଃ ।
ଯୋଗଂ ମହୋଦୟମୃଷିର୍ହୃଦୟଗ୍ରନ୍ଥିଭେଦକମ୍ । ୪ ।
ପୁଷ୍ୟୋ ହିରଣ୍ୟନାଭସ୍ୟ ଧ୍ରୁବସନ୍ଧିସ୍ତତୋଽଭବତ୍ ।
ସୁଦର୍ଶନୋଽଥାଗ୍ନିବର୍ଣ୍ଣଃ ଶୀଘ୍ରସ୍ତସ୍ୟ ମରୁଃ ସୁତଃ । ୫ ।
ସୋଽସାବାସ୍ତେ ଯୋଗସିଦ୍ଧଃ କଳାପଗ୍ରାମମାସ୍ଥିତଃ ।
କଳେରନ୍ତେ ସୂର୍ଯ୍ୟବଂଶଂ ନଷ୍ଟଂ ଭାବୟିତା ପୁନଃ । ୬ ।
ତସ୍ମାତ୍ ପ୍ରସୁଶ୍ରୁତସ୍ତସ୍ୟ ସନ୍ଧିସ୍ତସ୍ୟାପ୍ୟମର୍ଷଣଃ ।
ମହସ୍ୱାଂସ୍ତତ୍ସୁତସ୍ତସ୍ମାଦ୍ୱିଶ୍ୱବାହୁରଜାୟତ । ୭ ।
ତତଃ ପ୍ରସେନଜିତ୍ ତସ୍ମାତ୍ ତକ୍ଷକୋ ଭବିତା ପୁନଃ ।
ତତୋ ବୃହଦ୍‌ବଳୋ ଯସ୍ତୁ ପିତ୍ରା ତେ ସମରେ ହତଃ । ୮ ।

---

ହିରଣ୍ୟନାଭଠାରୁ କୋଶଳ ବାସୀ ଯାଜ୍ଞବଲ୍କ୍ୟ ଋଷି ଶିଷ୍ୟତ୍ୱ ଗ୍ରହଣକରି ହୃଦୟର ଅଜ୍ଞାନ ବନ୍ଧନ ଛେଦକ ପରମ ପବିତ୍ର ଅଧ୍ୟାତ୍ମ ଯୋଗ ଶିକ୍ଷା କରିଥିଲେ । ୪।

ହିରଣ୍ୟନାଭଙ୍କର ପୁତ୍ର ପୁଷ୍ୟ, ପୁଷ୍ୟଙ୍କର ପୁତ୍ର ଧ୍ରୁବସନ୍ଧି, ତାହାଙ୍କର ପୁତ୍ର ସୁଦର୍ଶନ, ତାହାଙ୍କର ପୁତ୍ର ଅଗ୍ନିବର୍ଣ୍ଣ, ଅଗ୍ନିବର୍ଣ୍ଣଙ୍କର ପୁତ୍ର ଶୀଘ୍ର; ତାହାଙ୍କର ପୁତ୍ର ମରୁ । ୫।

ମରୁ ଯୋଗସିଦ୍ଧ ହୋଇ କଲ୍ୟାଣ ନାମକ ଗ୍ରାମରେ ଅବସ୍ଥାନ କରୁଅଛନ୍ତି । କଳିଯୁଗର ଅବସାନ କାଳରେ ନଷ୍ଟପ୍ରାପ୍ତ ସୂର୍ଯ୍ୟବଂଶକୁ ସେ ପୁନରୁତ୍ଥାନ କରିବେ । ୬।

ମରୁଙ୍କର ପୁତ୍ର ପ୍ରଶୁଶ୍ରୁତ, ତାହାଙ୍କର ପୁତ୍ର ସନ୍ଧି, ତାଙ୍କପୁତ୍ର ଅମର୍ଷଣ, ତାଙ୍କପୁତ୍ର ମହସ୍ୱାନ୍, ମହସ୍ୱାନଙ୍କଠାରୁ ବିଶ୍ୱବାହୁ ଜନ୍ମଗ୍ରହଣ କରିଥିଲେ । ୭।

ବିଶ୍ୱବାହୁଙ୍କଠାରୁ ପ୍ରସେନଜିତ୍ ଓ ପ୍ରସେନଜିତ୍‌ଙ୍କଠାରୁ ତକ୍ଷକ, ତକ୍ଷକଙ୍କର ପୁତ୍ର ବୃହଦ୍‌ବଳ, ସେହି ବୃହଦ୍‌ବଳଙ୍କୁ ତୁମ୍ଭର ପିତା ଅଭିମନ୍ୟୁ ଯୁଦ୍ଧରେ ସଂହାର କରିଥିଲେ । ୮।

---

ହିରଣ୍ୟନାଭ ତା ସନ୍ତତି
ଯୋଗ ବିଦ୍ୟାରେ ତାର ଖ୍ୟାତି
ତା ଗୁରୁ ଅଟନ୍ତି ଜୈମିନି
ତା ଶିଷ୍ୟ ଯାଜ୍ଞବଲ୍କ୍ୟ ମୁନି
ଅଭ୍ୟାସ ଯାର ଗୁରୁ ବେଦେ
ଛେଦେ ହୃଦୟ ଗ୍ରନ୍ଥି ଭେଦେ । ୩, ୪
ହିରଣ୍ୟନାଭର କୁମର
ପୁଷ୍ୟ ଅଭ୍ୟାସ ଯଜ୍ଞେ ଯାର
ତାର କୁମର ଧ୍ରୁବସନ୍ଧି
ଯା ବଂଶେ ଥାନ୍ତି ଅଷ୍ଟନିଧି

ତାର କୁମର ସୁଦର୍ଶନ
ତାହାର ପୁତ୍ର ଅଗ୍ନିବର୍ଣ୍ଣ
ଶୀଘ୍ର ଜନମ ତାହାଠାରୁ
ତାହାର ସୁତ ଅଟେ ମରୁ । ୫ ।
ମରୁ ଯେ ଶୀଘ୍ରର ତନୟେ
ଯେ କାତ୍ୟେ ଯୋଗକର୍ମ ଧ୍ୟାୟେ
କଳାପ ଗ୍ରାମେ ବିଧିଧ୍ୟାନେ
ଯନ୍ତ୍ରିତ କାତ୍ୟେ ତତ୍ତ୍ୱଜ୍ଞାନେ
ଯୋଗ ସାଧଇ ଯେବା ଅର୍ଥେ
ଶୁଣ କହିବା ତୋ ଅଗ୍ରତେ

କଳିର ଅନ୍ତେ ସୂର୍ଯ୍ୟ ବଂଶ
ସେ ପୁଣ କରିବ ପ୍ରକାଶ । ୬ ।
ପ୍ରସୁଶ୍ରୁତ ତାର ତନୟେ
ତା ସୁତ ସନ୍ଧି ନାମ କହେ
ଅମର୍ଷଣ ଯେ ତାର ସୁତ
ମହସ୍ୱାନ ଯେ ତହୁଁ ଜାତ
ତା'ର କୁମର ବିଶ୍ୱବାହୁ
ତା'ର ମହିମା କେବା କହୁ ? । ୭ ।
ପ୍ରସେନଜିତ ତାର ପୁତ୍ର
ତକ୍ଷକ ନାମେ ତାର ସୁତ

ଏତେ ହୀକ୍ଷ୍ୱାକୁଭୂପାଳା ଅତୀତାଃ ଶୃଣ୍ୱନାଗତାନ୍ ।
ବୃହଦ୍‌ବଳସ୍ୟ ଭବିତା ପୁତ୍ରୋ ନାମ୍ନା ବୃହଦ୍ରଣଃ ।୯ ।
ଉରୁକ୍ରିୟଃ ସୁତସ୍ତସ୍ୟ ବତ୍ସବୃଦ୍ଧୋ ଭବିଷ୍ୟତି ।
ପ୍ରତିବ୍ୟୋମସ୍ତତୋ ଭାନୁର୍ଦିବାକୋ ବାହିନୀପତିଃ ।୧୦।
ସହଦେବସ୍ତତୋ ବୀରୋ ବୃହଦଶ୍ୱୋଽଥ ଭାନୁମାନ୍ ।
ପ୍ରତୀକାଶ୍ୱୋ ଭାନୁମତଃ ସୁପ୍ରତୀକୋଽଥ ତତ୍‌ସୁତଃ ।୧୧।
ଭବିତା ମରୁଦେବୋଽଥ ସୁନକ୍ଷତ୍ରୋଽଥ ପୁଷ୍କରଃ ।
ତସ୍ୟାନ୍ତରୀକ୍ଷସ୍ତତ୍‌ପୁତ୍ରଃ ସୁତପାସ୍ତଦମିତ୍ରଜିତ୍ ।୧୨।
ବୃହଦ୍ରାଜସ୍ତୁ ତସ୍ୟାପି ବର୍ହିସ୍ତସ୍ମାତ୍ କୃତଞ୍ଜୟଃ ।
ରଣଞ୍ଜୟସ୍ତସ୍ୟ ସୁତଃ ସଞ୍ଜୟୋ ଭବିତା ତତଃ ।୧୩।

---

ଏହିଠାରେ ଇକ୍ଷ୍ୱାକୁ ବଂଶୀୟ ନରପତିମାନଙ୍କର ପ୍ରସଙ୍ଗ ଶେଷ ହେଲା । ବର୍ତ୍ତମାନ ଅନାଗତ ନୃପତିମାନଙ୍କ ବଂଶ କହୁଅଛୁ ଶ୍ରବଣ କର । ବୃହଦ୍‌ବଳର ପୁତ୍ର ହେବ ବୃହଦ୍ରଣ ।୯।

ସେହି ବୃହଦ୍ରଣଙ୍କର ପୁତ୍ର ଉରୁକ୍ରିୟ, ତାହାଙ୍କର ପୁତ୍ର ବତ୍ସବୃଦ୍ଧ, ତାହାଙ୍କର ପୁତ୍ର ପ୍ରତିବ୍ୟୋମ, ତାହାଙ୍କଠାରୁ ଭାନୁ, ତାହାଙ୍କଠାରୁ ସେନାପତି ଦିବାକ ଜନ୍ମଗ୍ରହଣ କରିବେ ।୧୦।

ଦିବାକରଙ୍କ ପୁତ୍ର ମହାବୀର ସହଦେବ । ତାହାଙ୍କଠାରୁ ବୃହଦଶ୍ୱ, ବୃହଦଶ୍ୱଙ୍କଠାରୁ ଭାନୁମାନ, ଭାନୁମାନଙ୍କଠାରୁ ପ୍ରତୀକାଶ, ପ୍ରତୀକାଶଙ୍କଠାରୁ ସୁପ୍ରତୀକ ଜନ୍ମଗ୍ରହଣ କରିବେ ।୧୧।

ସୁପ୍ରତୀକଙ୍କର ପୁତ୍ର ମରୁଦେବ, ତାହାଙ୍କର ପୁତ୍ର ସୁନକ୍ଷତ୍ର, ତାହାଙ୍କର ପୁତ୍ର ପୁଷ୍କର, ପୁଷ୍କରଙ୍କର ପୁତ୍ର ସୁତପା, ତାହାଙ୍କର ପୁତ୍ର ଅମିତ୍ରଜିତ୍ ଜନ୍ମଗ୍ରହଣ କରିବେ ।୧୨।

ଅମିତ୍ରଜିତଙ୍କଠାରୁ ବୃହଦ୍ରାଜ, ତାହାଙ୍କଠାରୁ ବର୍ହି, ତାହାଠାରୁ କୃତଞ୍ଜୟ, ତାହାଙ୍କଠାରୁ ରଣଞ୍ଜୟ, ରଣଞ୍ଜୟଙ୍କଠାରୁ ସଞ୍ଜୟ ଜନ୍ମଗ୍ରହଣ କରିବେ ।୧୩।

---

ବୃହଦ୍‌ବଳ ତାର ସୁତ
ତୋ ପିତା ଯୋଗେ ରଣେ ହତ ।୮
ଇକ୍ଷ୍ୱାକୁ ବଂଶେ ଏତେ ରାଜା
ଧର୍ମେ ପାଳିଲେ ଜନପ୍ରଜା
ଶୁଣ ଭବିଷ୍ୟ କହୁ ଏବେ
ଭବିଷ୍ୟେ ଯେତେ ଉପୁଜିବେ
ବୃହଦ୍‌ବଳ ପୁତ୍ର ଶୁଣ
ନାମ ହୋଇବ ବୃହଦ୍ରଣ । ୯ ।

ତାହାର ପୁତ୍ର ଉରୁକ୍ରିୟ
ବତ୍ସ ବୃଦ୍ଧ ତାର ତନୟ
ତାର କୁମର ପ୍ରତିବ୍ୟୋମା
ଅଦ୍ଭୁତ ଯାହାର ମହିମା ।୧୦।
ତା ସୁତ ହେବ ସହଦେବ
ଅଧିକ ମହିମା ପ୍ରଭାବ
ତାର କୁମର ଭାନୁମାନ
ପ୍ରତୀକାଶ୍ୱ ତାର ନନ୍ଦନ

ସୁପ୍ରତୀକ ତହୁଁ ସମ୍ଭବ
ତା ପୁତ୍ର ହେବ ମରୁଦେବ
ତାର ନନ୍ଦନ ସୁନକ୍ଷତ୍ର
ପୁଷ୍କର ହେବ ତାର ପୁତ୍ର
ତାହାର ଅନ୍ତରୀକ୍ଷ ସୁତ
ସୁତପା ତା ସୁତ ବିଦିତ
ଅମିତ୍ରଜିତ ତା ନନ୍ଦନ
ତା ତହୁଁ ବୃହଦ୍ରାଜ ଜନ୍ମ

ତସ୍ମାଚ୍ଛାକ୍ୟୋଽଥ ଶୁଦ୍ଧୋଦୋ ଲାଙ୍ଗଲସ୍ତତ୍ସୁତଃ ସ୍ମୃତଃ ।
ତତଃ ପ୍ରସେନଜିତ୍ତସ୍ମାତ୍ କ୍ଷୁଦ୍ରକୋ ଭବିତା ତତଃ । ୧୪ ।
ରଣକୋ ଭବିତା ତସ୍ମାତ୍ ସୁରଥସ୍ତନୟସ୍ତତଃ ।
ସୁମିତ୍ରୋ ନାମ ନିଷ୍ଠାନ୍ତ ଏତେ ବାର୍ହଦ୍‌ବଲାନ୍ୱୟାଃ ।୧୫।
ଇକ୍ଷ୍ୱାକୂଣାମୟଂ ବଂଶଃ ସୁମିତ୍ରାନ୍ତୋ ଭବିଷ୍ୟତି ।
ଯତସ୍ତଂ ପ୍ରାପ୍ୟ ରାଜାନଂ ସଂସ୍ଥାଂ ପ୍ରାପ୍ସ୍ୟତି ବୈ କଲୌ ।୧୬।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମବଂଶାନୁକୀର୍ତ୍ତନଂ ନାମ ଦ୍ୱାଦଶୋଽଧ୍ୟାୟଃ ।୧୨।

---

ସଞ୍ଜୟଙ୍କର ପୁତ୍ର ଶାକ୍ୟ, ତାହାଙ୍କର ପୁତ୍ର ଶୁଦ୍ଧୋଦ, ତାହାଙ୍କର ପୁତ୍ର ଲାଙ୍ଗଳ, ଲାଙ୍ଗଳଙ୍କର ପୁତ୍ର ପ୍ରସେନଜିତ୍, ତାହାଙ୍କଠାରୁ କ୍ଷୁଦ୍ରକ ଜନ୍ମଗ୍ରହଣ କରିବେ ।୧୪।

କ୍ଷୁଦ୍ରକଙ୍କର ଠାରୁ ରଣକ, ରଣକଙ୍କଠାରୁ ସୁରଥ, ତାହାଙ୍କ ଠାରୁ ସୁମିତ୍ର ଜାତ ହେବେ । ଏହାଙ୍କ ଠାରେ ଏ ବଂଶ ଶେଷ ହେବ । ଏମାନେ ସମସ୍ତେ ବୃହଦ୍‌ବଳଙ୍କର ବଂଶଧର ।୧୫।

ଇକ୍ଷ୍ୱାକୁ ମାନଙ୍କର ବଂଶ ସୁମିତ୍ରଙ୍କଠାରୁ ଶେଷ ହେବ, ସୁମିତ୍ର କଳିଯୁଗରେ ରାଜା ହେଲାପରେ ଇକ୍ଷ୍ୱାକୁ ବଂଶ ଲୋପପ୍ରାପ୍ତ ହେବ ।୧୬।

---

ତହୁଁ ଉପୁଜେ ରଣଞ୍ଜୟ
ତା ପୁତ୍ର ନାମଟି ସଞ୍ଜୟ
ତାହାର ପୁତ୍ର ଶାକ୍ୟ ନାମ
ଶୁଦ୍ଧୋଦ ତାହାର ନନ୍ଦନ
ତାଠାରୁ ଜାତ ଯେ ଲାଙ୍ଗଳ
ପ୍ରସେନଜିତ ତାର ବାଳ ।୧୧,୧୪
ତାହାର ନନ୍ଦନ କ୍ଷୁଦ୍ରକ
ତା ତହୁଁ ହୋଇବ ରଣକ
ତା ସୁତ ସୁରଥ ହୋଇବ
ସୁମିତ୍ର ପୁତ୍ରେ ଶେଷ ହେବ ।୧୫

ଇକ୍ଷ୍ୱାକୁବଂଶେ ଜାତ ଯେତେ
ତୋତେ କହିଲି ଭବିଷ୍ୟତେ
ସୁମିତ୍ର ଯାଏ କଳିଯୁଗେ
ଏତେ ନୃପତି ହେବେ ବେଗେ ।୧୬
ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ଆଦିତ୍ୟ ବଂଶାନୁଚରିତ
ଯେ ଅବା ଛୁଁ ଭବିଷ୍ୟତ
ତାହାଙ୍କ ଜନ୍ମ ଏ ସଂସାରେ
ଶୁଣନ୍ତି ସର୍ବ ପାପ ହରେ

ବୋଲଇ ବିପ୍ରଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ଆଦିତ୍ୟ ବଂଶାନୁଚରିତ
ଯେ ଅବା ଛୁଁ ଭବିଷ୍ୟତ
ତାହାଙ୍କ ଜନ୍ମ ଏ ସଂସାରେ
ଶୁଣନ୍ତି ସର୍ବ ପାପହରେ ।



# ତ୍ରୟୋଦଶୋଽଧ୍ୟାୟଃ

ଇକ୍ଷ୍ୱାକୋରେବ ପୁତ୍ରସ୍ୟ ନିମେର୍ବଂଶସ୍ତ୍ରୟୋଦଶେ ।
ବର୍ଣ୍ଣ୍ୟତେ ଯତ୍ରବୈ ଯଜ୍ଞ ବ୍ରହ୍ମଜ୍ଞା ଜନକାଦୟଃ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ ।

ନିମିରିକ୍ଷ୍ୱାକୁତନୟୋ ବଶିଷ୍ଠ ମବୃତର୍ତ୍ୱିଜମ୍ ।
ଆରଭ୍ୟ ସତ୍ରଂ ସୋଽପ୍ୟାହ ଶକ୍ରେଣ ପ୍ରାଗ୍ବୃତୋଽସ୍ମି ଭୋଃ । ୧ ।
ତଂ ନିର୍ବର୍ତ୍ତ୍ୟାଗମିଷ୍ୟାମି ତାବନ୍ମାଂ ପ୍ରତିପାଳୟ ।
ତୂଷ୍ଣୀମାସୀଦ୍‌ଗୃହପତିଃ ସୋଽପୀନ୍ଦ୍ରସ୍ୟାକରୋନ୍ମଖମ୍ । ୨ ।
ନିମିଶ୍ଚଳମିଦଂ ବିଦ୍ୱାନ୍ ସତ୍ରମାରଭତାତ୍ମବାନ୍ ।
ଋତ୍ୱିଗ୍‌ଭିରପରୈସ୍ତାବନ୍ନାଗମଦ୍‌ଯାବତା ଗୁରୁଃ । ୩ ।

---

## ନିମି ଉପାଖ୍ୟାନ

ଇକ୍ଷ୍ୱାକୁ ପୁତ୍ର ନିମିଙ୍କର ବଂଶ ବର୍ଣ୍ଣନା କରିବା ଛଳରେ ବ୍ରହ୍ମଜ୍ଞ ଜନକ ପ୍ରଭୃତିଙ୍କର ଜନ୍ମ ଏବଂ ଚରିତ ବର୍ଣ୍ଣନା କରାଯାଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ଇକ୍ଷ୍ୱାକୁଙ୍କର ପୁତ୍ର ନିମି ଯଜ୍ଞ ଆରମ୍ଭ କରି ବଶିଷ୍ଠଙ୍କୁ ଆର୍ତ୍ୱିଜ୍ୟ ପଦରେ ବରଣ କରିଥିଲେ ମାତ୍ର ବଶିଷ୍ଠ କହିଲେ, ହେ ରାଜନ୍ ! ମୋତେ ପୂର୍ବରୁ ଇନ୍ଦ୍ର ବରଣ କରିଅଛନ୍ତି ତେଣୁ ଆପଣ ଅପେକ୍ଷା କରନ୍ତୁ, ମୁଁ ଇନ୍ଦ୍ରଙ୍କର ଯଜ୍ଞ ଶେଷକରି ଆପଣଙ୍କର ଯଜ୍ଞ କରିବି, ଏହା ଶୁଣି ନିମି ନୀରବ ରହିଲେ ଏବଂ ବଶିଷ୍ଠ ଇନ୍ଦ୍ରଙ୍କର ଯଜ୍ଞ କରିବାକୁ ଗଲେ । ୧, ୨ ।

ନିମି ଅମୃଜ୍ଞ, ଯେ ଭାବିଲେ ଏ ଦେହ କ୍ଷଣ ଭଙ୍ଗୁର, କେତେବେଳେ ଶରୀର ପାତ ହେବ ତାହା ଅଜଣା ସୁତରାଂ ଗୁରୁଙ୍କ ଆଗମନ ପର୍ଯ୍ୟନ୍ତ ଅନ୍ୟ ଋତ୍ୱିକଙ୍କ ଦ୍ୱାରା ଯଜ୍ଞ କରିବା ବିହିତ । ୩ ।

---

ଇକ୍ଷ୍ୱାକୁ ପୁତ୍ର ନିମି ଆଦି, ଯେବା ରାଜର୍ଷି ଜନକାଦି ।
ତାହାଙ୍କ ବଂଶ ତ୍ରୟୋଦଶେ, ବର୍ଣ୍ଣନ ହୋଇଛି ବିଶେଷେ ॥

ଶ୍ରୀଶୁକ ଉବାଚ—

ନିମି ଯେ ଇକ୍ଷ୍ୱାକୁର ସୁତ
ତା ବଂଶେ ଯେତେ ରାଜା ଜାତ
ଯେ କର୍ମ କଲେ ଅନୁଭବେ
ଶୁଣ କହିବା ତୋତେ ଏବେ
ସେ ନିମି ବଶିଷ୍ଠ ସଙ୍ଗତେ
କହି ରାଜନ ଯଜ୍ଞ ଅର୍ଥେ
ବଶିଷ୍ଠ ମୋର ଯଜ୍ଞକର
ଋତ୍ୱିଜ ଗୁରୁ ହେଉଁ ବର
ବଶିଷ୍ଠ ତାର ମୁଖ ଚାହିଁ
ବୋଇଲେ ସ୍ନେହଭରି ହୋଇ
ଇନ୍ଦ୍ର ବରଣ କଲା ମୋତେ
ତୋ ଯଜ୍ଞ କରିବି କେମନ୍ତେ
ମୁଁ ଆଗେ ଇନ୍ଦ୍ର ଯଜ୍ଞ ସାରି
ତୋ ଯଜ୍ଞେ ଗୁରୁ ହେଉଁ ବରି
ପଛେ କରିବି ଯଜ୍ଞ ତୋର
ସେ ନିମି ନ ଦେଲା ଉତ୍ତର
ବଶିଷ୍ଠ ଇନ୍ଦ୍ର ଯଜ୍ଞ ଗଲେ
ଅନ୍ୟ ବ୍ରାହ୍ମଣେ ନିମି କଲେ
ଯଜ୍ଞ ଆରମ୍ଭିଲେ ହରଷେ
ସକଳ ସହସ୍ରେ ବରଷେ ।୧-୩।

ଶିଷ୍ୟବ୍ୟସ୍ତକର୍ମଂ ବୀକ୍ଷ୍ୟ ତଂ ନବର୍ତ୍ତ୍ୟାଗତୋ ଗୁରୁଃ ।
ଅଶପତ୍ ପତତାଦ୍ଦେହୋ ନମେଃ ପଣ୍ଡିତ ମାନନଃ ।। ୪ ।
ନମିଃ ପ୍ରତଦଦୌ ଶାପଂ ଗୁରବେଽଧର୍ମ୍ମବର୍ତ୍ତିନେ ।
ତବାପି ପତତାଦ୍ ଦେହୋ ଲୋଭାଦ୍ଧର୍ମ୍ମମଜାନତଃ । ୫ ।
ଇତ୍ୟୁତ୍ସସର୍ଜ୍ଜ ସ୍ୱଂ ଦେହଂ ନମିରଧ୍ୟାତ୍ମକୋବିଦଃ ।
ମିତ୍ରାବରୁଣୟୋର୍ଜ୍ଜଜ୍ଞେ ଉର୍ବଶ୍ୟାଂ ପ୍ରପିତାମହଃ । ୬ ।
ଗନ୍ଧବସ୍ତୁଷୁ ତଦ୍ଦେହଂ ନିଧାୟ ମୁନିସତ୍ତମାଃ ।
ସମାପ୍ତେ ସତ୍ରଯାଗେ ଚ ଦେବାନୂଚୁଃ ସମାଗତାନ୍ । ୭ ।

ବଶିଷ୍ଠ ଇନ୍ଦ୍ରଯଜ୍ଞ ସମାପନ କରି ଫେରିଆସି ଦେଖିଲେ ଶିଷ୍ୟ ନିମି ଅନ୍ୟ ଋତ୍ୱିକଙ୍କ ଦ୍ୱାରା ଯଜ୍ଞ କରାଉଅଛନ୍ତି । ଏହା ଦେଖି ସେ ପଣ୍ଡିତାଭିମାନି ନିମିଙ୍କ ପ୍ରତି ଅଭିଶାପ ଦେଲେ ଯେ ତୁମ୍ଭର ଦେହ ପତନ ହେଉ ।୪।

ନିମି ମଧ୍ୟ ବଶିଷ୍ଠଙ୍କପ୍ରତି ପ୍ରତିଅଭିଶାପ ଦେଇ କହିଲେ ଯେ ଆପଣ ଗୁରୁ ହେଲେ ମଧ୍ୟ ଇନ୍ଦ୍ରଙ୍କ ନିକଟରୁ ଅଧିକ ଦକ୍ଷିଣା ପାଇବେ ଏହି ଲୋଭରେ ଆପଣ ନିଜର ବ୍ରତ ପାଳନ କରିନାହାନ୍ତି । ତେଣୁ ମୁଁ ଅଭିଶାପ ଦେଉଅଛି ଯେ ଆପଣଙ୍କ ଶରୀର ମଧ୍ୟ ପତନ ହେଉ ।୫।

ଅଧ୍ୟାତ୍ମ୍ୟ ବିଦ୍ୟାବିତ୍ ନିମି ଦେହତ୍ୟାଗ କଲେ ଏବଂ ବଶିଷ୍ଠଙ୍କର ଶରୀରପାତ ହୋଇଥିଲା; କିନ୍ତୁ ଉର୍ବଶୀଙ୍କୁ ଦେଖି ମିତ୍ରାବରୁଣ ଋଷି ଦ୍ୱୟଙ୍କର ରେତଃ ସ୍ଖଳିତ ହୋଇଥିବାରୁ ତାହା ସେ ଗୋଟିଏ କୁମ୍ଭରେ ସ୍ଥାପିତ କରିଥିଲେ ! ତନ୍ମଧ୍ୟରୁ ମୋର ପ୍ରପିତାମହ ବଶିଷ୍ଠ ଜନ୍ମଗ୍ରହଣ କରିଥିଲେ ।୬।

ପ୍ରଧାନ ମୁନିମାନେ ନିମିଙ୍କର ପରିତ୍ୟକ୍ତ ଦେହ ସୁଗନ୍ଧ ବସ୍ତୁଯୁକ୍ତ ତୈଳପାତ୍ରରେ ସ୍ଥାପନ କରି ଯଜ୍ଞ ସମାପନ ଉତ୍ତାରୁ ଯଜ୍ଞଭୂମିକୁ ସମାଗତ ଦେବତାମାନଙ୍କୁ କହିଲେ ଯଦି ଆପଣମାନଙ୍କର ସାମର୍ଥ୍ୟ ଥାଏ

ଏମନ୍ତେ ଇନ୍ଦ୍ର ଯଜ୍ଞ ସାରି
ନିମିର ବାକ୍ୟ ସେ ସୁମରି
ସେ ଯଜ୍ଞ କରିବାର ଆଶେ
ବେଗେ ମିଳିଲେ ନିମି ପାଶେ
ଯଜ୍ଞ ଆରମ୍ଭ ଦେଖି ତାର
କୋପିଲେ ବ୍ରହ୍ମାର କୁମର
ବୋଇଲେ କୋପଭର ହୋଇ
ମୋତେ ଅବଜ୍ଞା କଲୁ ତୁହି
ତୋର ଜୀବନେ ନାହିଁ କାର୍ଯ୍ୟ
ମରଣ ହେଉ ତୋତେ ଆଜ ।୪।

ତା ଶୁଣି ନିମି କୋପ ବହି
ବୋଇଲେ ଜୀବ ଛାଡ଼ ତୁହି
ତକ୍ଷଣେ ନିମି ଶାପଫଳେ
ବଶିଷ୍ଠ ବସିଲେ ନିଷ୍ଟଳେ
ଜୀବନ ଗଲା ଦେହୁଁ ଛାଡ଼ି
ତକ୍ଷଣେ ଶୂନ୍ୟ ମାର୍ଗେ ଉଡ଼ି
ଉର୍ବଶୀ ଗର୍ଭେ ହେଲେ ଜନ୍ମ
ମିତ୍ରା ବରୁଣଙ୍କ ନନ୍ଦନ । ୫,୬
ନିମି ଯେ ଯଜ୍ଞଶାଳେ ଥିଲା
ତକ୍ଷଣେ ଜୀବନ ଛାଡ଼ିଲା

ଜୀବନ ଯଜ୍ଞଶାଳେ ପଶି
ରହିଲା ଯଜ୍ଞପ୍ରମ୍ଭ ଗ୍ରାସି
ନିମି ଶରୀରେ ବସ୍ତ୍ରଜଡ଼େ
ବିସ୍ତର କଲେ ଅନୁମାନେ
ତୈଳ ସୁଗନ୍ଧ ଦ୍ରବ୍ୟ ଦେଇ
ନିମି ଶରୀର ତହିଁ ଥୋଇ
ବୋଲନ୍ତି ପୂର୍ଣ୍ଣାହୁତି ବେଳେ
ଶରୀର ଦହିବା ଅନଳେ
ଏମନ୍ତ ବୋଲି ଯଜ୍ଞ କଲେ
ସମ୍ପୂର୍ଣ୍ଣ ପୂର୍ଣ୍ଣାହୁତି ଦେଲେ

ରାଜ୍ଞୋ ଜୀବତୁ ଦେହୋଽୟଂ ପ୍ରସନ୍ନାଃ ପ୍ରଭବୋ ଯଦି ।
ତଥେତ୍ୟୁକ୍ତେ ନିମିଃ ପ୍ରାହ ମାଭୂନ୍ମେ ଦେହବନ୍ଧନମ୍ । ୮ ।
ଯସ୍ୟ ଯୋଗଂ ନ ବାଞ୍ଛନ୍ତି ବିୟୋଗଭୟକାତରାଃ ।
ଭଜନ୍ତି ଚରଣାମ୍ଭୋଜଂ ମୁନୟୋ ହରିମେଧସଃ । ୯ ।
ଦେହଂ ନାବରୁରୁତ୍ସେଽହଂ ଦୁଃଖଶୋକଭୟାବହମ୍ ।
ସର୍ବତ୍ରାସ୍ୟ ଯତୋ ମୃତ୍ୟୁର୍ମତ୍ସ୍ୟାନାମୁଦକେ ଯଥା । ୧୦ ।

ଦେବା ଊଚୁଃ

ବିଦେହ ଉଷ୍ୟତାଂ କାମଂ ଲୋଚନେଷୁ ଶରୀରିଣାମ୍ ।
ଉନ୍ମେଷଣନିମେଷାଭ୍ୟାଂ ଲକ୍ଷିତୋଽଧ୍ୟାତ୍ମସଂସ୍ଥିତଃ । ୧୧ ।

---

ହେ ଯଜ୍ଞ ଅସଶମାନେ ପ୍ରସନ୍ନ ହୋଇଥାଆନ୍ତି, ତେବେ ନିମି ରାଜାଙ୍କର ଏହି ଦେହ ପୁନର୍ଜୀବିତ ହେଉ, ଏହା ଶୁଣି ଦେବତାମାନେ 'ତଥାସ୍ତୁ' କହିଥିଲେ ମାତ୍ର ନିମି ପରଲୋକରୁ କହିଲେ, "ମୁଁ ପୁନର୍ବାର ଦେହ ସମ୍ବନ୍ଧ ଇଚ୍ଛା କରେ ନାହିଁ" ।୭, ୮।

ଯେଉଁମାନେ ଭଗବାନଙ୍କଠାରେ ଚିତ୍ତନିବେଶ କରିଅଛନ୍ତି ସେହି ମୁନିମାନେ ବିୟୋଗ ଭୟରେ କାତର ହୋଇ ଦେହ ସହିତ ସମ୍ବନ୍ଧ ଇଚ୍ଛା କରନ୍ତି ନାହିଁ । ମାତ୍ର ମୋକ୍ଷ ନିମିତ୍ତ ଶ୍ରୀହରି ଚରଣାରବିନ୍ଦ ଭଜନା କରିଥାନ୍ତି ।୯।

ଦୁଃଖ, ଶୋକ, ଭୟର ଆଧାର ସ୍ୱରୂପ ଏହି ଦେହଧାରଣ କରିବାକୁ ମୁଁ ଇଚ୍ଛୁକ ନୁହେଁ । ଯେପରି ମତ୍ସ୍ୟମାନେ ଜଳରେ ରହି ଅନ୍ୟ ଜଳଚରଙ୍କଠାରୁ ଭୀତ ପ୍ରାପ୍ତ ହୁଅନ୍ତି ଏବଂ ସ୍ଥଳରେ ସ୍ୱଭାବତଃ ମୃତ୍ୟୁଲାଭ କରନ୍ତି ।୧୦।

ଦେବତାମାନେ କହିଲେ :—

ତା ହେଲେ ନିମି ଦେହଶୂନ୍ୟ ହୋଇ ଦେହଧାରୀମାନଙ୍କ ଲୋଚନରେ ଯଥେଚ୍ଛାକ୍ରମେ ବାସ କରନ୍ତୁ । ତଦନନ୍ତର ଅମୂର୍ତ୍ତ ହୋଇ ସେ ଉନ୍ମେଷ ଓ ନିମେଷ ଦ୍ୱାରା ତତ୍ ପ୍ରବର୍ତ୍ତକରୂପେ ଦୃଷ୍ଟ ହେବେ ମାତ୍ର ।୧୧।

---

ଇନ୍ଦ୍ରାଦି ଯେତେ ଦେବେ ଥିଲେ
ବିପ୍ରେ ଯେ ଦକ୍ଷିଣା ପାଇଲେ
ଦେବତା ଋଷି ତୋଷମନେ
ବର ଯାଚିଲେ ଯଜମାନେ
ନିମିର ଦେହେ ପଶୁ ପ୍ରାଣ
ଆମ୍ଭେ କରିବା ପରିତ୍ରାଣ
ନିମି ଶୁଣିନ ସ୍ୱର୍ଗେ ଥାଇ
ଦେବଙ୍କୁ ପ୍ରତିବାକ୍ୟ ଦେଇ
ମୋର ଶରୀରେ କାର୍ଯ୍ୟ ନାହିଁ,
ଅସାର ଅନିତ୍ୟ ଏ ଦେହ ।୭,୮

ସକଳ ଦୁଃଖ ଏ ଶରୀରେ
ମରଣ ଭୟ ନିରନ୍ତରେ
ଜନ୍ମି ମରଇ ରାତ୍ରିଦିନ
ଅଶେଷ ବ୍ୟାଧି ଅନୁକ୍ଷଣେ
ମୂତ୍ର ପୁରୀଷ କୃମିସ୍ଥାନ
ମାତୃରେ ହୋଇ ହିତଜ୍ଞାନ
କାମାଦି ଶତ୍ରୁ ମଧ୍ୟେ ରହେ
ନିରତେ ଅହଂକାର ବହେ
ମୃତ୍ୟୁ ସମୁଦ୍ରେ ନିତ ବୁଡ଼େ
ପୁଣି ପଶଇ ପୁଣି ଛାଡ଼େ

ପୁରୀଷ ଭସ୍ମ କୀଟ ଅନ୍ତେ
ଦୁର୍ଗନ୍ଧ ବହଇ ନିରତେ
ରୋଗଙ୍କ ମନ୍ଦିର ମାତର
ସ୍ୱଭାବେ ଦୁଃଖ ଏ ଶରୀର ।୯,୧୦
ଏମନ୍ତେ ନିମିର ବଚନେ
ସର୍ବ ଦେବତା ତୋଷମନେ
ବୋଇଲେ ପ୍ରମାଣ ଏ ବାଣୀ
ପୁଣି କ୍ଷଣକେ ମନେ ଗୁଣି

ଦେବାଊଚୁଃ—

ବୋଇଲେ ଶୁଣ ନରନାଥ
ଆମ୍ଭର ବର ନୋହେ ବ୍ୟର୍ଥ

ଅରାଜକଭୟଂ ନୃଣାଂ ମନ୍ୟମାନା ମହର୍ଷୟଃ ।
ଦେହଂ ମମନ୍ଥୁଃ ସ୍ମ ନମେଃ କୁମାରଃ ସମଜାୟତ ।୧୨।
ଜନ୍ମନା ଜନକଃ ସୋଽଭୂଦ୍‌ବୈଦେହସ୍ତୁ ବିଦେହଜଃ ।
ମିଥିଲୋ ମଥନାଜ୍ଜାତୋ ମିଥିଲା ଯେନ ନିର୍ମିତା । ୧୩ ।
ତସ୍ମାଦୁଦାବସୁସ୍ତସ୍ୟ ପୁତ୍ରୋଽଭୂନ୍ନନ୍ଦିବର୍ଦ୍ଧନଃ ।
ତତଃ ସୁକେତୁସ୍ତସ୍ୟାପି ଦେବରାତୋ ମହୀପତେ । ୧୪ ।
ତସ୍ମାଦ୍‌ବୃହଦ୍ରଥସ୍ତସ୍ୟ ମହାବୀର୍ଯ୍ୟଃ ସୁଧୃତ୍‌ପିତା ।
ସୁଧୃତେର୍ଧୃଷ୍ଟକେତୁର୍ବୈ ହର୍ଯ୍ୟଶ୍ୱୋଽଥ ମରୁସ୍ତତଃ ।୧୫।
ମରୋଃ ପ୍ରତୀପକସ୍ତସ୍ମାଜ୍ଜାତଃ କୃତରଥୋ ଯତଃ ।
ଦେବମୀଢ଼ସ୍ତସ୍ୟ ପୁତ୍ରୋ ବିଶ୍ରୁତୋଽଥ ମହାଧୃତିଃ ।୧୬।

---

ମହର୍ଷିମାନେ ଅରାଜକ ରାଜ୍ୟରେ ପ୍ରଜାମାନଙ୍କର ଭୟ ଉପସ୍ଥିତ ଦେଖି ନିମିଙ୍କର ଦେହକୁ ମନ୍ଥନ କରିବାରୁ ତାହାଙ୍କ ଦେହରୁ ଗୋଟିଏ କୁମାର ଜନ୍ମ ହେଲେ ।୧୨।

ଅସାଧାରଣ ଭାବରେ ଜନ୍ମଗ୍ରହଣ କରିବାରୁ ତାହାଙ୍କର ନାମ ହେଲା ଜନକ, ବିଦେହରୁ ସଞ୍ଜାତ ହେବାରୁ ବୈଦେହ ଏବଂ ମଥନରୁ ଉତ୍ପନ୍ନ ହେବାରୁ ମିଥିଳ ହୋଇଥିଲେ । ସେ ମିଥିଳାପୁରୀ ନିର୍ମାଣ କରିଥିଲେ ।୧୩।

ହେ ରାଜନ୍ ! ଜନକଙ୍କଠାରୁ ଉଦାବସୁ ଜାତ ହୋଇଥିଲେ । ତାହାଙ୍କର ପୁତ୍ର ନନ୍ଦିବର୍ଦ୍ଧନ । ନନ୍ଦି ବର୍ଦ୍ଧନଙ୍କର ପୁତ୍ର ସୁକେତୁ । ସୁକେତୁଙ୍କର ପୁତ୍ର ଦେବରାତ ।୧୪।

ଦେବରାତଙ୍କଠାରୁ ବୃହଦ୍ରଥ ଜାତ ହୋଇଥିଲେ । ବୃହଦ୍ରଥଙ୍କର ପୁତ୍ର ମହାବୀର୍ଯ୍ୟ, ମହାବୀର୍ଯ୍ୟଙ୍କର ପୁତ୍ର ସୁଧୃତ, ସୁଧୃତଙ୍କର ପୁତ୍ର ଧୃଷ୍ଟକେତୁ, ଧୃଷ୍ଟକେତୁଙ୍କର ପୁତ୍ର ହର୍ଯ୍ୟଶ୍ୱ, ହର୍ଯ୍ୟଶ୍ୱଙ୍କର ପୁତ୍ର ମରୁ, ମରୁଙ୍କର ପୁତ୍ର ପ୍ରତୀପକ, ପ୍ରତୀପକଙ୍କର ପୁତ୍ର କୃତରଥ, କୃତରଥଙ୍କର ପୁତ୍ର ଦେବମୀଢ଼, ତାହାଙ୍କର ପୁତ୍ର ବିଶ୍ରୁତ ଓ ମହାଧୃତ । ୧୫, ୧୬।

---

ସକଳ ଜନ୍ତୁଙ୍କ ଲୋଚନେ
ବସ ତୁ ନିମେଷ ବିଧାନେ
ନିମେଷମତେ ସଂଖ୍ୟା କରି
କାଳର ଗଣନା ବେଭାର
ଏମନ୍ତେ ଦେବଙ୍କ ବଚନେ
ବସିଲା ଜନ୍ତୁଙ୍କ ଲୋଚନେ
ଅଧ୍ୟାତ୍ମ ଗତି ତାର ନିତ୍ୟ
ଏବେ ହୋ ଶୁଣ କୁରୁନାଥ ।୧୧।
ଅରାଜ୍ୟ ଭୟେ ମହାଜନେ
ସକଳେ ବିଚାରିଲେ ମନେ

ଆମ୍ଭେ ଯେ ବେଦ ମନ୍ତ୍ର ସ୍ୱରେ
କୁଶେ ମନ୍ଥିବା ଏ ଶରୀରେ
ଯେମନ୍ତେ ପୁତ୍ର ଜନ୍ମ ହୋଇ
ନିର୍ଭୟେ ପ୍ରଜାଙ୍କୁ ପାଳଇ
ଏମନ୍ତେ ବିଚାରି ମନରେ
ତକ୍ଷଣେ ନିମିର ଶରୀରେ
କୁଶେ ମନ୍ଥିଲେ ବେଦ ସ୍ୱରେ
ତକ୍ଷଣେ ଜନ୍ମିଲା କୁମରେ ।୧୨।
ଜନ୍ମନ୍ତେ ଜନକ ହୋଇଲା
ବୈଦେହ ନାମ ସେ ବହିଲା

ମନ୍ଥନେ ମିଥିଳ ତା ନାମ
ବହେ ଅଶେଷ ଗୁଣଧାମ
ଏମନ୍ତେ ନିମି ରାଜା ବଳୀ
ମିଥିଳା ପୁର ବସାଇଲା ।୧୩।
ତା ସୁତ ଉଦାବସୁ ନାମ
ନନ୍ଦିବର୍ଦ୍ଧନ ତା ନନ୍ଦନ
ସୁକେତୁ ନାମେ ତାର ସୁତ
ତାର ସନ୍ତତି ଦେବରାତ ।୧୪।
ଦେବରାତରୁ ବୃହଦ୍ରଥ
ତା ଠାରୁ ମହାବୀର୍ଯ୍ୟ ଜାତ

କୃତରାତସ୍ତତସ୍ତସ୍ମାନ୍ମହାରୋମା ଚ ତତ୍ସୁତଃ ।
ସ୍ୱର୍ଣ୍ଣରୋମା ସୁତସ୍ତସ୍ୟ ହ୍ରସ୍ୱରୋମା ବ୍ୟଜାୟତ । ୧୭ ।
ତତଃ ଶୀରଧ୍ୱଜୋ ଜଜ୍ଞେ ଯଜ୍ଞାର୍ଥଂ କର୍ଷତୋ ମହୀମ୍ ।
ସୀତା ଶୀରାଗ୍ରତୋ ଜାତା ତସ୍ମାତ୍ ଶୀରଧ୍ୱଜଃ ସ୍ମୃତଃ । ୧୮ ।
କୁଶଧ୍ୱଜସ୍ତସ୍ୟ ପୁତ୍ରସ୍ତତୋ ଧର୍ମ୍ମଧ୍ୱଜୋ ନୃପଃ ।
ଧର୍ମ୍ମଧ୍ୱଜସ୍ୟ ଦ୍ୱୌପୁତ୍ରୌ କୃତଧ୍ୱଜମିତଧ୍ୱଜୌ । ୧୯ ।
କୃତଧ୍ୱଜାତ୍ କେଶିଧ୍ୱଜଃ ଖାଣ୍ଡିକ୍ୟସ୍ତୁ ମିତଧ୍ୱଜାତ୍ ।
କୃତଧ୍ୱଜସୁତୋ ରାଜନ୍ନାତ୍ମବିଦ୍ୟାବିଶାରଦଃ । ୨୦ ।
ଖାଣ୍ଡିକ୍ୟଃ କର୍ମତତ୍ତ୍ୱଜ୍ଞୋ ଭୀତଃ କେଶୀଧ୍ୱଜାଦ୍‌ଦ୍ରୁତଃ ।
ଭାନୁମାଂସ୍ତସ୍ୟ ପୁତ୍ରୋଽଭୂଚ୍ଛତଦ୍ୟୁମ୍ନସ୍ତୁ ତତ୍ସୁତଃ । ୨୧ ।

---

ମହାଧୃତଙ୍କର ପୁତ୍ର କୃତରାତ, ତାହାଙ୍କର ପୁତ୍ର ସ୍ୱର୍ଣ୍ଣରୋମା, ତାହାଙ୍କର ପୁତ୍ର ହ୍ରସ୍ୱରୋମା, ତାହାଙ୍କର ପୁତ୍ର ଶିରଧ୍ୱଜ, ସେ ଯଜ୍ଞ ନିମିତ୍ତ ଭୂମିକର୍ଷଣ କରୁ କରୁ ଲଙ୍ଗଳାଗ୍ରରୁ ( ସୀତାରୁ ) ଉତ୍ପନ୍ନ ହେବାରୁ ତାହାଙ୍କର ନାମ ଶିରଧ୍ୱଜ ହୋଇଥିଲା । ୧୭, ୧୮ ।

ହେ ରାଜନ୍ ! ଶିରଧ୍ୱଜଙ୍କର ପୁତ୍ର କୃତଧ୍ୱଜ, ତାହାଙ୍କର ପୁତ୍ର ଧର୍ମଧ୍ୱଜ, ତାହାଙ୍କର ଦୁଇପୁତ୍ର— କୃତଧ୍ୱଜ ଓ ମିତଧ୍ୱଜ, କୃତଧ୍ୱଜଙ୍କର ପୁତ୍ର କେଶୀଧ୍ୱଜ, ମିତଧ୍ୱଜଙ୍କର ପୁତ୍ର ଖାଣ୍ଡିକ୍ୟ, ହେ ରାଜନ୍ ! କୃତଧ୍ୱଜଙ୍କର ପୁତ୍ର କେଶୀଧ୍ୱଜ ଅମୃତବିଦ୍ୟା ବିଶାରଦ ଥିଲେ, ଖାଣ୍ଡିକ୍ୟ କର୍ମ ତତ୍ତ୍ୱଜ୍ଞ ଥିଲେ । କେଶୀଧ୍ୱଜଙ୍କର ଭୟରେ ଖାଣ୍ଡିକ୍ୟ ପଳାୟନ କରିଥିଲେ, କେଶୀଧ୍ୱଜଙ୍କର ପୁତ୍ର ଭାନୁମାନ୍, ତାହାଙ୍କର ପୁତ୍ର ଶତଦ୍ୟୁମ୍ନ,

---

ସୁଧୃତ ତାହାର କୁମର
ତା ପୁତ୍ର ଧୃଷ୍ଟକେତୁ ବୀର
ହର୍ଯ୍ୟଶ୍ୱ ତାହାର କୁମର
ମରୁ ତାହାର ବଂଶଧର
ମରୁରୁ ପ୍ରତୀପକ ଜନ୍ମ
ତା ସୁତ କୃତରଥ ନାମ
ତାର କୁମର ଦେବମୀଢ
ଯା ଚିତ୍ତ ଯୋଗାଭ୍ୟାସେ ଦୃଢ
ବିଶ୍ରୁତ ତାହାର ସନ୍ତତି
ତାର କୁମର ମହାଧୃତି ।୧୫,୧୬
ତା ସୁତ କୃତରାତ ନାମ
ତାର ସନ୍ତତି ମହାରୋମ

ସୁବର୍ଣ୍ଣରୋମା ତା ତନୟ
ତା ତହୁଁ ହ୍ରସ୍ୱରୋମା ହୋଏ
ତାର କୁମର ଶୀରଧ୍ୱଜ
ତାର ମହିମା ମହାତେଜ
ବିପ୍ରେ ଯେ ତାର ଯଜ୍ଞକାଳେ
ମହୀ କରଷିଲେ ଲଙ୍ଗଳେ
ଲଙ୍ଗଳ ଅଗ୍ରେ ସୀତା ଜାତ
ଏଣୁ ସେ ଶୀରଧ୍ୱଜଖ୍ୟାତ ।୧୭,୧୮
ତାର କୁମର କୁଶଧ୍ୱଜ
ଧର୍ମ୍ମଧ୍ୱଜ ତାର ତନୁଜ
ତା ତହୁଁ ବେନି ପୁତ୍ର ଜାତ
ଶୁଣ ତାହାଙ୍କର ଚରିତ

ସେ କୃତଧ୍ୱଜ ମିତଧ୍ୱଜ
ଶୁଣ ତାହାଙ୍କର ତନୁଜ
କୃତଧ୍ୱଜର କେଶିଧ୍ୱଜ
ଖାଣ୍ଡିକ୍ୟ ଆନର ତନୁଜ
ଖାଣ୍ଡିକ୍ୟ କେଶୀଧ୍ୱଜ ବେନି
ସାଧିଲେ ଯୋଗ ବିଦ୍ୟା ଘେନି
କେଶିଧ୍ୱଜରଠାରୁ ଭୟେ
ପଳାଇଗଲା ଆନ ଠାଏ
କେଶିଧ୍ୱଜରୁ ଭାନୁମାନ
ତାର ତନୟ ଶତଦ୍ୟୁମ୍ନ
ଶୁଚି ନାମରେ ତା ତନୁଜ
ତାର ତନୁଜ ସନଦ୍ୱାଜ

ଶୁଚସ୍ତୁ ତନୟସ୍ତସ୍ମାତ୍ ସନଦ୍ୱାଜଃ ସୁତୋଽଭବତ୍ ।
ଊର୍ଦ୍ଧ୍ୱକେତୁଃ ସନଦ୍ୱାଜାଦଜୋଽଥ ପୁରୁଜିତ୍‌ସୁତଃ । ୨୨ ।
ଅରିଷ୍ଟନେମିସ୍ତସ୍ୟାପି ଶ୍ରୁତାୟୁସ୍ତତ୍‌ସୁପାର୍ଶ୍ୱକଃ ।
ତତଶ୍ଚିତ୍ରରଥୋ ଯସ୍ୟ କ୍ଷେମାଧିର୍ମିଥିଳାଧିପଃ ।୨୩।
ତସ୍ମାତ୍ ସମରଥସ୍ତସ୍ୟ ସୁତଃ ସତ୍ୟରଥସ୍ତତଃ ।
ଆସୀଦୁପଗୁରୁସ୍ତସ୍ମାଦୁପଗୁପ୍ତୋଽଗ୍ନିସମ୍ଭବଃ । ୨୪ ।
ବସ୍ୱନନ୍ତୋଽଥ ତତ୍‌ପୁତ୍ରୋ ଯୁଯୁଧୋ ଯତ୍‌ସୁଭାଷଣଃ ।
ଶ୍ରୁତସ୍ତତୋ ଜୟସ୍ତସ୍ମାଦ୍‌ବିଜୟୋଽସ୍ମାଦୃତଃ ସୁତଃ ।୨୫।
ଶୁନକସ୍ତତ୍‌ସୁତୋ ଯଜ୍ଞେ ବୀତହବ୍ୟୋ ଧୃତସ୍ତତଃ ।
ବହୁଳାଶ୍ୱୋ ଧୃତେସ୍ତସ୍ୟ କୃତିରସ୍ୟ ମହାବଶୀ । ୨୬ ।

---

ଶତଦ୍ୟୁମ୍ନଙ୍କର ଶୁଚ, ଶୁଚଙ୍କର ପୁତ୍ର ସନଦ୍ୱାଜ, ସନଦ୍ୱାଜଙ୍କର ପୁତ୍ର ଊର୍ଦ୍ଧ୍ୱକେତୁ, ଊର୍ଦ୍ଧ୍ୱକେତୁଙ୍କର ପୁତ୍ର ପୁରୁଜିତ୍ । ୧୯-୨୨ ।

ପୁରୁଜିତ୍‌ଙ୍କର ପୁତ୍ର ଅରିଷ୍ଟନେମୀ, ତାହାଙ୍କର ପୁତ୍ର ଶ୍ରୁତାୟୁ, ଶ୍ରୁତାୟୁଙ୍କର ପୁତ୍ର ସୁପାର୍ଶ୍ୱକ, ତାହାଙ୍କର ପୁତ୍ର ଚିତ୍ରରଥ, ତାହାଙ୍କର ପୁତ୍ର ମିଥିଳାଧିପତି କ୍ଷେମାଧି, କ୍ଷେମାଧିଙ୍କର ପୁତ୍ର ସମରଥ, ସମରଥଙ୍କର ପୁତ୍ର ଉପଗୁରୁ, ଉପଗୁରୁଙ୍କଠାରୁ ଅଗ୍ନିଙ୍କ ଅଂଶରେ ଉପଗୁପ୍ତ ଜାତ ହୋଇଥିଲେ । ୨୩, ୨୪।

ଉପଗୁପ୍ତଙ୍କର ପୁତ୍ର ବସ୍ୱନନ୍ତ, ତାହାଙ୍କର ପୁତ୍ର ଯର୍ଜୁବାନ, ତାହାଙ୍କର ପୁତ୍ର ସୁଭାଷଣ, ତାହାଙ୍କର ପୁତ୍ର ଶ୍ରୁତ, ଶ୍ରୁତଙ୍କର ପୁତ୍ର ଜୟ, ଜୟଙ୍କର ପୁତ୍ର ବିଜୟ, ବିଜୟଙ୍କର ପୁତ୍ର ଋତ, ଋତଙ୍କର ପୁତ୍ର ସୁନକ, ସୁନକଙ୍କର ପୁତ୍ର ବୀତହବ୍ୟ, ତାହାଙ୍କର ପୁତ୍ର ଧୃତ, ଧୃତଙ୍କର ପୁତ୍ର ବହୁଳାଶ୍ୱ, ବହୁଳାଶ୍ୱଙ୍କର ପୁତ୍ର ମହାମନା ଜିତେନ୍ଦ୍ରିୟ କୃତ । ୨୫, ୨୬ ।

---

ଊର୍ଦ୍ଧ୍ୱକେତୁ ଯେ ତହୁଁ ଜାତ
ତାହାର ପୁତ୍ର ପୁରୁଜିତ ।୧୯-୨୨।
ଅରିଷ୍ଟନେମି ସୁତ ତାର
ଶ୍ରୁତାୟୁ ତାହାର କୁମର
ତାର ତନୟ ସୁପାର୍ଶ୍ୱକ
ତା ସୁତ ଚିତ୍ରରଥ ଲେଖ
କ୍ଷେମାଧି ନାମେ ତାର ସୁତ
ତାର ତନୟ ସମରଥ

ତାହାର ପୁତ୍ର ସତ୍ୟରଥ
ଉପଗୁରୁ ଯେ ତାର ସୁତ
ତାହାର ପୁତ୍ର ଉପଗୁପ୍ତ
ବସ୍ୱନନ୍ତ ଯେ ତାର ସୁତ
ତା ପୁତ୍ରନାମ ଯଯୁବାନ
ତା ତହୁଁ ହେଲ ସୁଭାଷଣ
ତା ସୁତ ଶ୍ରୁତ ତହୁଁ ଜୟ
ତାହାର ତନୟ ବିଜୟ

ତା ତହୁଁ ଋତ ହେଲ ଜାତ
ଶୁନକ ତାହାର ଯେ ସୁତ
ବୀତହବ୍ୟ ଯେ ତା ସନ୍ତତି
ତାହାର ତହୁଁ ଜାତ ଧୃତ
ତାହାର ପୁତ୍ର ବହୁଳାଶ୍ୱ
ତା ସୁତ କୃତ ମହାଯଶ ।୨୩,୨୬

ଏତେ ବୈ ମୈଥିଳା ରାଜନ୍ନାତ୍ମବିଦ୍ୟାବିଶାରଦାଃ ।
ଯୋଗେଶ୍ୱରପ୍ରସାଦେନ ଦ୍ୱନ୍ଦ୍ୱୈର୍ମୁକ୍ତା ଗୃହେଷ୍ୱପି । ୨୭ ।
ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ସୂର୍ଯ୍ୟବଂଶକୀର୍ତ୍ତନଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।

ହେ ରାଜନ୍ ! ମିଥିଳାଧିପତି ଏହି ରାଜାମାନେ ଆତ୍ମ ତତ୍ତ୍ୱଜ୍ଞ ଥିଲେ । ଯୋଗେଶ୍ୱର ଯାଜ୍ଞବଲ୍କ୍ୟ ପ୍ରଭୃତିଙ୍କ କୃପାରୁ ଏମାନେ ଗୃହରେ ବାସକରି ସୁଦ୍ଧା ସୁଖ ଦୁଃଖରେ ଆସକ୍ତି ଶୂନ୍ୟ ହୋଇଥିଲେ ।୨୭।

ଜନକ ବଂଶେ ଜାତ ଯେତେ
କହିଲୁ ଭୂପ ଭବଦ୍ୟେତେ
ସେ ସର୍ବ ଯୋଗ ବିଦ୍ୟାସାଧି
ଯଥା ଜଡ଼ତେ ଯେବା ବିଧି । ୨୭।

ବୋଲଇ ଦାସ ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ରବିର ବଂଶେ ରାଜା ଯେତେ
ଯେ କଥା ବଂଶାନୁଚରିତେ

ତୋତେ କହିଲୁ ପ୍ରିୟଭବେ
ଏ ସୋମବଂଶ ଶୁଣ ଏବେ ।

## ଚତୁର୍ଦ୍ଦଶୋଽଧ୍ୟାୟଃ

ଚତୁର୍ଦ୍ଦଶେ ଗୁରୋଃ ପତ୍ନ୍ୟାଂ ତାରାୟାଂ ସୋମଜାଦ୍ ବୁଧାତ୍ ।
ଜାତଶ୍ଚୈଳଃ ଷଡ୍‌ବଂଶ୍ୟାମାୟୁମୁଖ୍ୟାନଜୀଜନାତ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକଉବାଚ

ଅଥାତଃ ଶ୍ରୂୟତାଂ ରାଜନ୍ ବଂଶଃ ସୋମସ୍ୟ ପାବନଃ ।
ଯସ୍ମିନ୍ନୈଳାଦୟୋ ଭୂପାଃ କୀର୍ତ୍ତ୍ୟନ୍ତେ ପୁଣ୍ୟକୀର୍ତ୍ତୟଃ । ୧ ।

### ଚନ୍ଦ୍ରବଂଶ ବୃତ୍ତାନ୍ତ

ଚତୁର୍ଦ୍ଦଶ ଅଧ୍ୟାୟରେ ବୃହସ୍ପତିଙ୍କ ପତ୍ନୀ ତାରାଙ୍କଠାରୁ ବୁଧଙ୍କର ଜନ୍ମ ଏବଂ ବୁଧଙ୍କଠାରୁ ଐଳ ପ୍ରଭୃତିଙ୍କର ଉତ୍ପତ୍ତି ବର୍ଣ୍ଣନା କରାଯାଇଅଛି ॥ • ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ତଦନନ୍ତର ପବିତ୍ର ସୋମବଂଶ ପ୍ରସଙ୍ଗ ଶ୍ରବଣ କରନ୍ତୁ । ଏହି ବଂଶରେ ପବିତ୍ର ଯଶା ଐଳ ପ୍ରଭୃତି ନରପତିମାନେ ଜନ୍ମ ଗ୍ରହଣ କରି ଖ୍ୟାତିଲାଭ କରିଥିଲେ ।୧।

ଗୁରୁପତ୍ନୀର ଗର୍ଭେ ସୋମ, ଜନ୍ମାଏ ପୁତ୍ର ବୁଧନାମ । ତାବଂଶେ ଐଳଆଦି ଖ୍ୟାତ,ଚତୁର୍ଦ୍ଦଶ ଅଧ୍ୟା: ଚରିତ ॥•

ଶ୍ରୀ ଶୁକ ଉବାଚ—
ଏବେ ହୋ ସୋମବଂଶ ଶୁଣ
ଯେବେ ତରିବ ତନ ଗୁଣ

ଯେ ବଂଶେ ପୁରୁରବା ଆଦି
ଯେ ଭବେ ଯେ ଅବା ସମ୍ବାଦ

ଯଶ କହିଲି ରବି ତଳେ
ସର୍ବେ ଚଳିଲେ କାଳବଳେ ।୧।

ସହସ୍ରଶିରସଃ ପୁଂସୋ ନାଭିହ୍ରଦସରୋରୁହାତ୍ ।
ଜାତସ୍ୟାସୀତ୍ ସୁତୋ ଧାତୁରତ୍ରିଃ ପିତୃସମୋ ଗୁଣୈଃ । ୨ ।
ତସ୍ୟ ଦୃଗ୍‌ଭ୍ୟୋଽଭବତ୍ ପୁତ୍ରଃ ସୋମୋଽମୃତମୟଃ କିଲ ।
ବିପ୍ରୌଷଧ୍ୟୁଡୁଗଣାନାଂ ବ୍ରହ୍ମଣା କଳ୍ପିତଃ ପତିଃ । ୩ ।
ସୋଽୟଜଦ୍ରାଜସୂୟେନ ବିଜିତ୍ୟ ଭୁବନତ୍ରୟମ୍ ।
ପତ୍ନୀଂ ବୃହସ୍ପତେର୍ଦର୍ପାତ୍ ତାରାଂ ନାମାହରଦ୍‌ବଳାତ୍ ।୪।
ଯଦା ସ ଦେବଗୁରୁଣା ଯାଚିତୋଽଭିକ୍ଷ୍ଣଶୋ ମଦାତ୍ ।
ନାତ୍ୟଜତ୍ ତତ୍କୃତେ ଜଜ୍ଞେ ସୁରଦାନବବିଗ୍ରହଃ । ୫ ।
ଶୁକ୍ରୋ ବୃହସ୍ପତେର୍ଦ୍ୱେଷାଦଗ୍ରହୀତ୍ ସାସୁରୋଡୁପମ୍ ।
ହରୋ ଗୁରୁସୁତଂ ସ୍ନେହାତ୍ ସର୍ବଭୂତଗଣାବୃତଃ । ୬ ।

---

ସହସ୍ରଶୀର୍ଷା ପରମପୁରୁଷ ବିଷ୍ଣୁଙ୍କର ନାଭିହ୍ରଦପଦ୍ମରୁ ଉତ୍ପନ୍ନ ବ୍ରହ୍ମାଙ୍କର ଅତ୍ରି ନାମକ ପୁତ୍ର ଗୁଣାବଳୀରେ ପିତୃତୁଲ୍ୟ ହୋଇଥିଲେ ।୨।

ଅତ୍ରିଙ୍କର ନେତ୍ରରୁ ଅମୃତମୟ ସୋମ ଅର୍ଥାତ୍ ଚନ୍ଦ୍ର ଜାତ ହୋଇଥିଲେ । ବ୍ରହ୍ମା ତାହାଙ୍କୁ ବିପ୍ର, ଔଷଧି ଓ ନକ୍ଷତ୍ରମାନଙ୍କର ଅଧିପତି କରିଥିଲେ । ଏହି ସୋମ ତ୍ରିଭୁବନ ଜୟ କରି ରାଜସୂୟଯଜ୍ଞ ଅନୁଷ୍ଠାନ କରିଥିଲେ । ମାତ୍ର ଦର୍ପ ହେତୁ ବୃହସ୍ପତିଙ୍କର ପତ୍ନୀ ତାରାଙ୍କୁ ବଳପୂର୍ବକ ହରଣ କରିଥିଲେ ।୩, ୪।

ଦେବଗୁରୁ ବୃହସ୍ପତି ବାରମ୍ବାର ପ୍ରାର୍ଥନା କଲେ ମଧ୍ୟ ଅହଙ୍କାର ବଶତଃ ଚନ୍ଦ୍ର ତାରାଙ୍କୁ ପ୍ରତ୍ୟର୍ପଣ କଲେ ନାହିଁ, ଏଣୁ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଯୁଦ୍ଧ ଉପସ୍ଥିତ ହେଲା ।୫।

ବୃହସ୍ପତି ଓ ଶୁକ୍ରାଚାର୍ଯ୍ୟଙ୍କ ମଧ୍ୟରେ ବିବାଦ ହେତୁ ଅସୁରମାନେ ଚନ୍ଦ୍ରଙ୍କ ପକ୍ଷ ଅବଲମ୍ବନ କଲେ ଏବଂ ଶଙ୍କର ଭୂତଗଣ ପରିବେଷ୍ଟିତ ହୋଇ ସ୍ୱୀୟ ଗୁରୁ ଅଙ୍ଗିରସାଙ୍କ ପୁତ୍ର ବୃହସ୍ପତିଙ୍କୁ ଗ୍ରହଣ କରିଥିଲେ ।୬।

---

ସହସ୍ରଶିର ଯେ ଅନନ୍ତ
ତା ନାଭିପଦ୍ମୁ ବ୍ରହ୍ମା ଜାତ
ସୃଷ୍ଟିର ଅର୍ଥେ ସପ୍ତପୁତ୍ରେ
ଜନ୍ମ ହୋଇଲେ ବ୍ରହ୍ମା ଗାତ୍ରେ
ମରୀଚି ଆଦି ସପ୍ତଋଷି
ଧ୍ରୁବମଣ୍ଡଳ ରଥେ ବସି
ଭ୍ରମନ୍ତି ଧ୍ରୁବ-ଚକ୍ର ବଳେ
ଉତ୍ତର ଆକାଶ ମଣ୍ଡଳେ
ତାହାଙ୍କ ମଧ୍ୟେ ଅତ୍ରି ମୁନି
ତପ କରନ୍ତି ଯୋଗ ଘେନି ।୨।

ତାଙ୍କ ଲୋଚନ ଅଶ୍ରୁ ଜଳେ
ଧ୍ୟାନ କରନ୍ତେ ଯୋଗ ବଳେ
ପୂରୁଷେ ହୋଇଲା ପ୍ରକାଶ
ତେଜେ ଗର୍ଜ୍ଜିଲା ଦଶଦିଶ
ଅମୃତମୟ ମନୋରମ
ତାହାର ନାମ ଦେଲେ ସୋମ
ବିପ୍ର ଔଷଧି ଉଡୁଗଣେ
ବ୍ରହ୍ମା ସ୍ଥାପିଲେ ରାଜାପଣେ ।୩।
ସେ ସୋମ ରାଜସୂୟ କରି
ତିନି ଭୁବନେ ଅଧିକାରୀ

ବଳେ ଜିଣିଲା ତିନି ପୁର
ଏବେ ହେ ଶୁଣ ନୃପବର ।
ସୁନ୍ଦର ରୂପେ ମତ୍ତ ଗର୍ବେ
କରତେ ଭ୍ରମେ ସେ ସ୍ୱଭାବେ
ଏମନ୍ତେ ବୃହସ୍ପତି ନାରୀ
ଗଙ୍ଗା ଉଦକେ ସ୍ନାନ କରି
ରୂପେ ସୁନ୍ଦର ମନୋହରୀ
ସ୍ୱଭାବେ ନାମ ତାର ତାରା
ତାହାର ରୂପ ଗୁଣ ଲକ୍ଷି
ଅନଙ୍ଗ ବାଣେ ମନ ମୋହି

ସର୍ବଦେବଗଣୋପେତୋ ମହେନ୍ଦ୍ରୋ ଗୁରୁମନ୍ୱୟାତ୍ ।
ସୁରାସୁରବିନାଶୋଽଭୂତ୍ ସମରସ୍ତାରକାମୟଃ । ୭ ।
ନିବେଦିତୋଽଥାଙ୍ଗିରସା ସୋମଂ ନିର୍ଭର୍ତ୍ସ୍ୟ ବିଶ୍ୱକୃତ୍ ।
ତାରାଂ ସ୍ୱଭର୍ତ୍ତ୍ରେ ପ୍ରାୟଚ୍ଛଦନ୍ତର୍ବତ୍ନୀମବୈତ୍ ପତିଃ । ୮ ।
ତ୍ୟଜ ତ୍ୟଜାଶୁ ଦୁଷ୍ପ୍ରଜ୍ଞେ ମତ୍କ୍ଷେତ୍ରାଦାହୃତଂ ପରୈଃ ।
ନାହଂ ତ୍ୱାଂ ଭସ୍ମସାତ୍ କୁର୍ଯ୍ୟାଂ ସ୍ତ୍ରିୟଂ ସାନ୍ତାନିକୋଽସତି ।୯।

---

ଇନ୍ଦ୍ର, ଅନ୍ୟାନ୍ୟ ଦେବତାମାନଙ୍କ ସହ ମିଳିତ ହୋଇ ବୃହସ୍ପତିଙ୍କ ପକ୍ଷ ଅବଲମ୍ବନ କଲେ ଏବଂ ଦେବାସୁର ବିନାଶକ ଭୀଷଣ ଯୁଦ୍ଧ ଉପସ୍ଥିତ ହେଲା ।୭।

ବୃହସ୍ପତି ବ୍ରହ୍ମାଙ୍କୁ ସମସ୍ତ ବିଷୟ ଜଣାଇବାରୁ ବ୍ରହ୍ମା ଚନ୍ଦ୍ରଙ୍କୁ ଅତ୍ୟନ୍ତ ତିରସ୍କାର କଲେ ଏବଂ ତାରାଙ୍କୁ ବୃହସ୍ପତିଙ୍କ ନିକଟରେ ପ୍ରତ୍ୟର୍ପଣ କରିଥିଲେ । ବୃହସ୍ପତି ତାରାଙ୍କୁ ପାଇ ସେ ଗର୍ଭବତୀ ହୋଇଥିବାର ଜାଣିପାରିଲେ ।୮।

ବୃହସ୍ପତି କହିଲେ :—

ହେ ଦୁର୍ବୁଦ୍ଧେ ! ମୋର କ୍ଷେତ୍ରରେ ଅନ୍ୟ କର୍ତ୍ତୃକ ଆହିତଗର୍ଭ ଶୀଘ୍ର ତ୍ୟାଗକର, ହେ ଅସତି ! ମୁଁ ସନ୍ତାନାର୍ଥୀ, ତେଣୁ ମୁଁ କଦାପି ତୁମ୍ଭଙ୍କୁ ଭସ୍ମ କରିବ ନାହିଁ ।୯।

---

ସ୍ୱଭାବେ ଗୁରୁ ସ୍ନାନ କଲେ
ସୋମ ହରିଲା ତାଙ୍କୁ ବଳେ ।୪।
ସେ କଥା ଶୁଣି ବୃହସ୍ପତି
ସ୍ତ୍ରୀ ହରଣେ ଦୁଃଖମତି
ସୋମର ଦ୍ୱାରେ ଯାଇ ଗଲେ
ଅନେକ ପ୍ରକାରେ ମାଗିଲେ
କେବେହେଁ ତାରାକୁ ନ ଦେଲା
ଅନେକ ଅପମାନନା କଲା
ସେ ଗୁରୁ ଦେବମଧ୍ୟେ ଆସି
ଇନ୍ଦ୍ରକୁ କହିଲେ ବିଶ୍ୱାସି
ଇନ୍ଦ୍ରର ଦୁଲେ ଦେବ-ବଳ
ତହୁଁ ଶୁକ୍ରେ ମୁଖ ଗୋଳ
ଏ କଥା ଶୁଣି ଶୁକ୍ର ବାଦେ
ମିଳିଲା ଅସୁରଙ୍କ ମଧ୍ୟେ
ଅସୁର ବଳ ସଙ୍ଗ କରି
ଧାଇଁଲେ ସୋମପକ୍ଷ ଧରି

ଇନ୍ଦ୍ରର ଦୁଲେ ଦେବଗଣ
ଏମନ୍ତେ ଦେବାସୁର ରଣ
ପ୍ରକୋପେ ବଢ଼ିଲା ସଂଗ୍ରାମ
ତାରକାମୟ ତାର ନାମ
ତାରାର ଅର୍ଥେ ଯୁଦ୍ଧ ଯେଣୁ
ତାରକାମୟ ନାମ ତେଣୁ
ଏମନ୍ତେ ଘୋର ଯୁଦ୍ଧ କଲେ
ଅନେକ ଦେବାସୁର ମଲେ ।୫-୭।
ଦେବ ଅସୁର ଘୋର ରଣେ
ବ୍ରହ୍ମା ମିଳିଲେ ତତକ୍ଷଣେ
ରଣ ନିବାରି ଚତୁର୍ମୁଖ
ମିଳିଲେ ସୋମର ଅଗ୍ରତ
ଅନେକ ଭର୍ତ୍ସନା ସେ କଲେ
ବୃହସ୍ପତିଙ୍କି ତାରା ଦେଲେ
ସେ ଗୁରୁ ତାରାକୁ ଅନାଇ
ବୋଲନ୍ତି ବ୍ରହ୍ମା ମୁଖ ଚାହିଁ

ହେ ତାତ ! ଦେଖ ତୋ ଅଗ୍ରତେ
ଗର୍ଭ ଏ ଧରିଛି ସାକ୍ଷାତେ
କେମନ୍ତେ ଛୁଇଁବି ଶରୀର
ଏହାରେ କାର୍ଯ୍ୟ ନାହିଁ ମୋର
କାହାର ବୀର୍ଯ୍ୟ ଧରିଅଛି
କେମନ୍ତେ ପାରିବ ମୁଁ ଲକ୍ଷି
ତାରା ଗର୍ଭକୁ ଚାହିଁ କୋପେ
ଗୁରୁ ବୋଲନ୍ତି ମନ ଦୁଃଖେ
ତୁ ମୋତେ ଛୁଇଁବୁ କେମନ୍ତେ
ଭସ୍ମ ନ କରିବି ମୁଁ ତୋତେ ।୮,୯

ତତ୍ୟାଜ ବ୍ରୀଡ଼ିତା ତାରା କୁମାରଂ କନକପ୍ରଭମ୍ ।
ସ୍ପୃହାମାଙ୍ଗିରସଶ୍ଚକ୍ରେ କୁମାରେ ସୋମ ଏବ ଚ । ୧୦ ।
ମମାୟଂ ନ ତବେତ୍ୟୁଚ୍ଚୈସ୍ତସ୍ମିନ୍ ବିବଦମାନୟୋଃ ।
ପପ୍ରଚ୍ଛୁର୍ମୁନୟୋ ଦେବା ନୈବୋଚେ ବ୍ରୀଡ଼ିତା ତୁ ସା । ୧୧ ।
କୁମାରୋ ମାତରଂ ପ୍ରାହ କୁପିତୋଽଲୀକଲଜ୍ଜୟା ।
କିଂ ନ ବୋଚସ୍ୟସଦ୍‌ବୃତ୍ତେ ଆତ୍ମାବଦ୍ୟଂ ବଦାଶୁ ମେ । ୧୨ ।
ବ୍ରହ୍ମା ତାଂ ରହ ଆହୂୟ ସମପ୍ରାକ୍ଷୀଚ ସାନ୍ତ୍ୱୟନ୍ ।
ସୋମସ୍ୟେତ୍ୟାହ ଶନକୈଃ ସୋମସ୍ତଂ ତାବଦଗ୍ରହୀତ୍ । ୧୩ ।

---

ଏହା ଶ୍ରବଣ କରି ତାରା ଅତ୍ୟନ୍ତ ଲଜ୍ଜିତା ହେଲେ ଏବଂ ଗର୍ଭରୁ ଗୋଟିଏ ସୁବର୍ଣ୍ଣବର୍ଣ୍ଣ ପୁତ୍ର ଉତ୍ପାଦନ କଲେ । ସେହି ପୁତ୍ରକୁ ପାଇବାଲାଗି ବୃହସ୍ପତି ଓ ଚନ୍ଦ୍ର ଉଭୟେ ଇଚ୍ଛା କରିଥିଲେ ।୧୦।

ଏହି ପୁତ୍ର ଲାଗି ଚନ୍ଦ୍ର ଓ ବୃହସ୍ପତିଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହୋଇଥିଲା । ମୁନିମାନେ ଓ ଦେବତାମାନେ ଏ ପୁତ୍ର କାହାର ଏହା ତାରାଙ୍କୁ ପଚାରନ୍ତେ ସେ ଲଜ୍ଜାବଶତଃ କିଛିମାତ୍ର କହିଲେନାହିଁ ।୧୧।

ମାତାଙ୍କର ଲଜ୍ଜା ଦେଖି ପୁତ୍ର କୁପିତ ହୋଇ କହିଲା ହେ ଅସତ୍ ଚରିତ୍ରେ ! ଶୀଘ୍ର ନିଜର ଦୋଷ ପ୍ରକାଶ କର । ସତ୍ୟକଥା କହୁନା କାହିଁକ ? ।୧୨।

ବ୍ରହ୍ମା ତାରାଙ୍କୁ ନିର୍ଜନକୁ ନେଇ ପ୍ରଶ୍ନ କରନ୍ତେ ସେ ଅନୁଚ୍ଚ ସ୍ୱରରେ କହିଲେ ଏପୁତ୍ର ସୋମଙ୍କର, ତହୁଁ ଚନ୍ଦ୍ର ସେହି ପୁତ୍ରକୁ ଗ୍ରହଣ କରିଥିଲେ ।୧୩।

---

ଏମନ୍ତେ ଶୁଣି ସେ ଉତ୍ତର
କମ୍ପଇ ତାରାର ଶରୀର
ତକ୍ଷଣେ ଗର୍ଭ ପ୍ରସବିଲା
ସୁନ୍ଦରେ ଜଗତ ମୋହିଲା
କାନ୍ଦଇ ପଡ଼ି ଭୂମିଗତେ
ଆଶ୍ଚର୍ଯ୍ୟ ଦେଖିଲେ ସମସ୍ତେ ।୧୦।
ସୁନ୍ଦର ଦେଖି ତା ବଦନ
କଳିଲା ବୃହସ୍ପତି ମନ
ବୋଲଇ ମୋର ପୁତ୍ର ଏହି
ସୋମ ବୋଲଇ ତାହା ନୁହିଁ
ଦେଖ ଏ ମୋହର କୁମର
ମୋହର ପ୍ରାୟେକ ସୁନ୍ଦର
ଗୁରୁ ବୋଲନ୍ତି ମୋର ପୁତ୍ର
ଏମନ୍ତେ ଶୁଭିଲା ଅନର୍ଥ
ସକଳ ମୁନିଗଣେ ଥିଲେ
ତାରାକୁ ବିଶ୍ୱାସେ ପୁଛିଲେ
ତା ଶୁଣି ଅଧୋମୁଖୀ ହୋଇ
ତାରା ରହିଲା ଲଜ୍ଜାପାଇ ।୧୧।
କୁମର ଭୂମିଗତେ ଥାଇ
ବୋଲେ ଜନନୀ ମୁଖ ଚାହିଁ
ଦୁର୍ବୃତ୍ତି ପଣ ଏ ତୋହର
କହ ମୁଁ କାହାର କୁମର
ନୋହିଲେ ଶାପ ଦେବି ତୋତେ
ଲଜ୍ଜା ହୋଇଲା ବଡ଼ ମୋତେ ।୧୨
ଏମନ୍ତେ ପୁତ୍ର ବାକ୍ୟ ଶୁଣି
ତାରାକୁ ନେଇ କୁଶପାଣି
ବୋଲନ୍ତି କୋମଳ ବଚନ
ନିର୍ଭୟ କରି ତାର ମନ
ହେ ତାରା ! ଲଜ୍ଜା ଦୂର କର
କହ ସେ କାହାର କୁମର

ତସ୍ୟାମ୍ଯୋନରକୃତ ବୁଧ ଇତ୍ୟଭିଧାଂ ନୃପ ।
ବୁଦ୍ଧ୍ୟା ଗମ୍ଭୀରୟା ଯେନ ପୁତ୍ରେଣାପୋଡୁରାଣ୍ମୁଦମ୍ । ୧୪ ।
ତତଃ ପୁରୁରବା ଜଜ୍ଞେ ଇଲାୟାଂ ଚ ଉଦାହୃତଃ ।
ତସ୍ୟ ରୂପଗୁଣୌଦାର୍ଯ୍ୟଶୀଳଦ୍ରବିଣବିକ୍ରମାନ୍ । ୧୫ ।
ଶ୍ରୁତ୍ୱୋର୍ବଶୀନ୍ଦ୍ରଭବନେ ଗୀୟମାନାନ୍ ସୁରର୍ଷିଣା ।
ତଦନ୍ତିକମୁପେୟାୟ ଦେବୀ ସ୍ମରଶରାର୍ଦ୍ଦିତା । ୧୬ ।
ମିତ୍ରାବରୁଣୟୋଃ ଶାପାଦାପନ୍ନା ନରଲୋକତାମ୍ ।
ନିଶାମ୍ୟ ପୁରୁଷଶ୍ରେଷ୍ଠଂ କନ୍ଦର୍ପମିବ ରୂପିଣମ୍ । ୧୭ ।
ଧୃତିଂ ବିଷ୍ଟଭ୍ୟ ଲଲନା ଉପତସ୍ଥେ ତଦନ୍ତିକେ ।
ସ ତାଂ ବିଲୋକ୍ୟ ନୃପତିର୍ହର୍ଷେଣୋତ୍‌ଫୁଲ୍ଲଲୋଚନଃ ।
ଉବାଚ ଶ୍ଲକ୍ଷ୍ଣୟା ବାଚା ଦେବୀଂ ହୃଷ୍ଟତନୂରୁହଃ । ୧୮ ।

---

ହେ ରାଜନ୍ ! ଏହି ପୁତ୍ରର ଗମ୍ଭୀର ବୁଦ୍ଧି ହେତୁ ବ୍ରହ୍ମା ତାହାର ନାମକରଣ କରିଥିଲେ ବୁଧ । ଏହି ପୁତ୍ରକୁ ପାଇ ନକ୍ଷତ୍ରାଧିପତି ଚନ୍ଦ୍ର ଅତ୍ୟନ୍ତ ଆନନ୍ଦ ଲାଭ କରିଥିଲେ ।୧୪।

ବୁଧଙ୍କଠାରୁ ଇଳାଙ୍କ ଗର୍ଭରେ ପୁରୁରବା ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ବୃତ୍ତାନ୍ତ ପୂର୍ବେ ବର୍ଣ୍ଣନା କରାଯାଇଅଛି । ସ୍ୱର୍ଗ ବେଶ୍ୟା ଉର୍ବଶୀ ଇନ୍ଦ୍ରଙ୍କ ସଭାରେ ନାରଦଙ୍କଠାରୁ ପୁରୁରବାଙ୍କର ସ୍ୱଭାବ, ଉଦାରତା, ଗୁଣ, ଧନ ଏବଂ ବଳାଦିର କଥା ଶ୍ରବଣ କରି କାମ ପୀଡ଼ିତା ହୋଇ ପୁରୁରବାଙ୍କ ନିକଟକୁ ଗମନ କରିଥିଲେ ।୧୫, ୧୬।

ହେ ରାଜନ୍ ! ମିତ୍ରାବରୁଣଙ୍କର ଅଭିଶାପରେ ଯେଉଁ ଉର୍ବଶୀ ମନୁଷ୍ୟ ଦେହ ପ୍ରାପ୍ତ ହୋଇଥିଲେ ସେ କାମଦେବ ତୁଲ୍ୟ ରୂପବାନ୍ ପୁରୁଷଶ୍ରେଷ୍ଠ ପୁରୁରବାଙ୍କ ବିଷୟ ଶ୍ରବଣ କରି ଧୈର୍ଯ୍ୟ ଅବଲମ୍ବନ ପୂର୍ବକ ତାହାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ପୁରୁରବା ମଧ୍ୟ ଉର୍ବଶୀଙ୍କୁ ଦେଖି ଆନନ୍ଦ ବିସ୍ଫାରିତ ନୟନରେ ରୋମାଞ୍ଚିତ କଳେବରରେ ସୁମଧୁର ବାକ୍ୟ କହିଥିଲେ ।୧୭, ୧୮।

---

ତା ଶୁଣି ଅଧୋମୁଖେ ରହି
ବୋଲେ ସୋମର ଗର୍ଭ ଏହି
ତକ୍ଷଣେ ସୋମ କୋଳେ କଲା
ବ୍ରହ୍ମା ତାହାକୁ ନାମ ଦେଲା
ବୋଧିଲା ରୂପ ଗୁଣେ ଯେଣୁ
ନାମହେ ଇଲାବୁଧତେଣୁ ।୧୩,୧୪
ସେ ବୁଧ ଇଳା କନ୍ୟା ଗର୍ଭେ
ମୁଁ ତୋତେ କହିଅଛି ପୂର୍ବେ

ପୁରୁରବାକୁ ଜନ୍ମ କଲା
ଯେ କାଳେ ତପୋବନେ ଥିଲା
ଏବେ ହୋ ଶୁଣ ନରନାଥ !
ସୋମର ବଂଶାନୁଚରିତ
ସୁର ଭୁବନେ ଏକ ଦିନେ
ଉର୍ବଶୀ ଗନ୍ଧର୍ବ ଗାୟନେ
ମିତ୍ରା-ବରୁଣଙ୍କୁ ଲଙ୍ଘିଲା
ସେ ତାକୁ କୋପେ ଶାପ ଦେଲା

ବୋଇଲା ନରଲୋକେ ଯାଅ
ସ୍ୱର୍ଗ ଭୁବନେ ତୁ ନ ଥାଅ
ତକ୍ଷଣେ ଅଧୋମୁଖ ହୋଇ
ମିଳିଲା ନରଲୋକେ ଯାଇ
ଗିରି କନ୍ଦର ବନେ ବୁଲେ
ସ୍ୱାମୀ ନ ଲଭେ ଆମ୍ଭକୁଳେ
ଏମନ୍ତେ ଭ୍ରମନ୍ତେ ତରୁଣୀ
ପୁରୁରବାକୁ ଦେଖେ ପୁଣି

ଶ୍ରୀରାଜୋବାଚ । ସ୍ୱାଗତଂ ତେ ବରାରୋହେ ଆସ୍ୟତାଂ କରବାମ କିମ୍ ।
ସଂରମସ୍ୱ ମୟା ସାକଂ ରତିର୍ନୌ ଶାଶ୍ୱତୀଃ ସମାଃ । ୧୯ ।
ଉର୍ବଶ୍ୟୁବାଚ । କସ୍ୟାସ୍ତ୍ୱୟି ନ ସଜ୍ଜେତ ମନୋ ଦୃଷ୍ଟିଶ୍ଚ ସୁନ୍ଦର ।
ଯଦଙ୍ଗାନ୍ତରମାସାଦ୍ୟ ଚ୍ୟବତେହ ରିରଂସୟା । ୨୦ ।
ଏତାବୁରଣକୌ ରାଜନ୍ ନ୍ୟାସୌ ରକ୍ଷସ୍ୱ ମାନଦ ।
ସଂରଂସ୍ୟେ ଭବତା ସାକଂ ଶ୍ଲାଘ୍ୟଃ ସ୍ତ୍ରୀଣାଂ ବରଃ ସ୍ମୃତଃ । ୨୧ ।

---

ରାଜା କହିଲେ :—

ହେ ସୁନ୍ଦରି ! ତୁମ୍ଭର ଆସିବାକୁ କୌଣସି କଷ୍ଟ ହୋଇନାହିଁ ତ ? ମୁଁ ତୁମ୍ଭର କି ଉପକାର କରିପାରେ । ତୁମ୍ଭେ ମୋ ସହିତ ରମଣ କର । ବହୁବର୍ଷ ପର୍ଯ୍ୟନ୍ତ ତୁମ୍ଭର ମୋର ରମଣ ହେଉ ।୧୯

ଉର୍ବଶୀ କହିଲେ :—

ହେ ସୁନ୍ଦର ! ଆପଣଙ୍କୁ ଦେଖିଲେ କେଉଁ ସ୍ତ୍ରୀର ମନ ଆକୃଷ୍ଟ ନ ହେବ । ତୁମ୍ଭର ବକ୍ଷସ୍ଥଳ ପ୍ରାପ୍ତ ହେଲେ କେଉଁ ରମଣୀ ରମଣ ଇଚ୍ଛା ତ୍ୟାଗ କରିପାରିବ ।୨୦।

ହେ ମାନଦ ! ହେ ରାଜନ ! ମୋର ଏହି ମେଷ ଦୁଇଟି ଆପଣଙ୍କ ନିକଟରେ ଗଚ୍ଛିତ ରହିଲା, ଆପଣ ମୋର ମେଷ ଦୁଇଟିଙ୍କୁ ରକ୍ଷା କରିବେ ଏବଂ ମୁଁ ଆପଣଙ୍କ ସହିତ ରମଣ କରିବି । କାରଣ ଶ୍ରେଷ୍ଠ ପୁରୁଷସହିତ ସ୍ତ୍ରୀର ରମଣ କରିବା ଉଚିତ, ଏଥିରେ ସନ୍ଦେହ ନାହିଁ ।୨୧।



ଉର୍ବଶୀ ପୁରୁରବା

---

କନ୍ଦର୍ପ ପ୍ରାୟ ରୂପରାଶି
ତେଜେ ଗଞ୍ଜିଇ ରବି ଶଶୀ
ଏମନ୍ତ ତାହାର ସଙ୍ଗତେ
ଉର୍ବଶୀ ମିଳିଲା ଏକାନ୍ତେ
ପୁରୁରବାର ସନ୍ନିଧାନେ
ଉତ୍ଫୁଲ୍ଲ ହରଷ ଲୋଚନେ
ସେ ରାଜା ତାର ମୁଖ ଚାହିଁ
ତକ୍ଷଣେ କାମ ବଶ ହୋଇ
ଗମ୍ଭୀର ବାକ୍ୟେ ତାକୁ କହେ
ରୋମହର୍ଷସର୍ବଦେହେ ।୧୬-୧୮

ରାଜୋବାଚ—
ଆସ, ସୁନ୍ଦରି ! ବସ ଏଥେ
ଭଲେ ଅଇଲୁଟି କି ପଥେ
ମିଳିଲୁ ମୋହର ସଙ୍ଗତେ
କହ ମୁଁ କି କରିବି ତୋତେ
ମୋ ସଙ୍ଗେ ରମ ଦିନାକେତେ
ସୁନ୍ଦରି ! ରହ ତୁ ଏକାନ୍ତେ ।୧୯

ଉର୍ବଶ୍ୟୁବାଚ—
ତୋ ରୂପ ଦେଖି ହେ ରାଜନ
ଅନଙ୍ଗ ବାନ୍ଧିଲା ମୋ ମନ
ତୁ ମୋର ତୁଲ୍ୟେ ସତ୍ୟକର
ନିଶ୍ଚେ ବରିବି ତୋତେ ବର
ଦେଖ ଏ ମେଷ ପୁତ୍ର ଦୁଇ
ତୁଲେ ଅଛନ୍ତି ବେନି ଭାଇ
ଅତ୍ୟନ୍ତ ପ୍ରିୟ ଏ ମୋହର
ଏହାଙ୍କୁ ଯତ୍ନେ ରକ୍ଷାକର
ଉଲଗ୍ନ ନ ଦେଖିବି ତୋତେ
ଘୃତ ଆହାର ଦେବୁ ନିତ୍ୟେ
ଏମନ୍ତ ପ୍ରତିପାଳୁ ଯେବେ
ତୋ ସଙ୍ଗେ ରମିବଇ ତେବେ

ଘୃତଂ ମେ ବୀର ଭକ୍ଷ୍ୟଂ ସ୍ୟାନ୍ନେକ୍ଷେ ତ୍ୱାନ୍ୟତ୍ର ମୈଥୁନାତ୍ ।
ବିବାସସଂ ତତ୍ ତଥେତି ପ୍ରତିପେଦେ ମହାମନାଃ । ୨୨ ।
ଅହୋ ରୂପମହୋ ଭାବୋ ନରଲୋକବିମୋହନମ୍ ।
କୋ ନ ସେବେତ ମନୁଜୋ ଦେବୀଂ ତ୍ୱାଂ ସ୍ୱୟମାଗତାମ୍ । ୨୩ ।
ତୟା ସ ପୁରୁଷଶ୍ରେଷ୍ଠୋ ରମୟନ୍ତ୍ୟା ଯଥାର୍ହତଃ ।
ରେମେ ସୁରବିହାରେଷୁ କାମଂ ଚୈତ୍ରରଥାଦିଷୁ । ୨୪ ।
ରମମାଣସ୍ତୟା ଦେବ୍ୟା ପଦ୍ମକିଞ୍ଜଲ୍କଗନ୍ଧୟା ।
ତନ୍ମୁଖାମୋଦମୁଷିତୋ ମୁମୁଦେଽହର୍ଗଣାନ୍ ବହୂନ୍ । ୨୫ ।
ଅପଶ୍ୟନ୍ନୁର୍ବଶୀମିନ୍ଦ୍ରୋ ଗନ୍ଧର୍ବାନ୍ ସମଚୋଦୟତ୍ ।
ଉର୍ବଶୀ ରହିତଂ ମହ୍ୟମାସ୍ଥାନଂ ନାତିଶୋଭତେ । ୨୬ ।

---

ହେ ବୀର ! ମୁଁ କେବଳ ଘିଅ ଖାଇବି, ରମଣ ସମୟ ଭିନ୍ନ ଅନ୍ୟ ସମୟରେ ତୁମ୍ଭଙ୍କୁ ଉଲଗ୍ନ ଅବସ୍ଥାରେ ଦେଖିବି ନାହିଁ, ରାଜା ମଧ୍ୟ ଏଥିରେ ସ୍ୱୀକୃତ ହେଲେ ।୨୨।

ରାଜା କହିଲେ :—

ଆହା ! କି ଅଦ୍ଭୁତ ରୂପ ! ଭାବ, ଏହା ମନୁଷ୍ୟ ଲୋକରେ ଦୁର୍ଲଭ, ତୁମ୍ଭେ ସ୍ୱ ଇଚ୍ଛାରେ ସମାଗତ ହୋଇଅଛ, ତୁମ୍ଭଙ୍କୁ ଗ୍ରହଣ ନ କରିବ କିଏ ? ।୨୩।

ପୁରୁଷ ଶ୍ରେଷ୍ଠ ପୁରୁରବା ଉର୍ବଶୀଙ୍କ ସହିତ ଇଚ୍ଛାନୁସାରେ ଦେବଭୋଗ୍ୟ ଚୈତ୍ର ରଥରେ ନାନା-ସ୍ଥାନରେ ବିହାର କରିଥିଲେ ।୨୪।

ପଦ୍ମପରାଗ ଗନ୍ଧଯୁକ୍ତା ଉର୍ବଶୀଙ୍କ ସହିତ ରମଣ କରି ଓ ତାହାଙ୍କର ମୁଖ ଗନ୍ଧରେ ଆକୃଷ୍ଟହୋଇ ସେ ବହୁକାଳ ଆନନ୍ଦରେ ଅତିବାହିତ କରିଥିଲେ ।୨୫।

ଇନ୍ଦ୍ର ନିଜ ସଭାରେ ଉର୍ବଶୀଙ୍କୁ ନ ଦେଖି ଗନ୍ଧର୍ବମାନଙ୍କ କହିଲେ, "ଉର୍ବଶୀ ନ ଥିବାରୁ ମୋର ସଭା ଶୋଭା ଦେଖାଯାଉନାହିଁ । ତୁମ୍ଭେମାନେ ସେ ଯେଉଁଠାରେ ଥିବେ ତାହାଙ୍କୁ ଖୋଜି ନେଇଆସ ।୨୬।

---

ଏମନ୍ତ ତାର ମୁଖୁଁ ଶୁଣି
ସତ୍ୟ ସେ କଲା ନୃପମଣି ।୨୦-୨୨
ଉର୍ବଶୀ ରୂପେ ମୋହି ବଶ
କଲା ସେ ଅନେକ ବିଶ୍ୱାସ
ବିମାନେ ବସି ତା ବିଶ୍ୱାସେ
ଗିରି କାନନ ନାନା ଦେଶେ
ରମିଲା ହରଷିତ ମନେ
ଚଇତ୍ରରଥ ଆଦି ବନେ
ବନ ବିହାରି ନାନା ଦେଶେ
ପଦ୍ମ କୁମୁଦ ଗନ୍ଧ ବାସେ

ଉର୍ବଶୀ ସଙ୍ଗେ ସଙ୍ଗ କଲା
ରାତ୍ରି ଦିବସ ନ ଜାଣିଲା ।୨୩-୨୫
ଏବେ ହୋ ଶୁଣ ରାଜଋଷି !
ଇନ୍ଦ୍ର ଯେ ନ ଦେଖି ଉର୍ବଶୀ
ବୋଇଲେ ଗନ୍ଧର୍ବଙ୍କୁ ଅନାଇଁ
ଉର୍ବଶୀ ମୋର ଗଲା କାହିଁ
ଗନ୍ଧର୍ବେ ବେନି କର ଯୋଡ଼ି
କହିଲେ ଇନ୍ଦ୍ର ପାଦେ ପଡ଼ି
ମିତ୍ରାବରୁଣ ଶାପ ଘୋରେ
ଉର୍ବଶୀ ଅଛି ମର୍ତ୍ତ୍ୟପୁରେ

ରମଇ ପୁରୁରବା ତୁଲେ
ତା ଶୁଣି ପୁରନ୍ଦର ବୋଲେ
ତୁମ୍ଭେ ହୋ ମର୍ତ୍ତ୍ୟଲୋକେ ଯାଇଁ
ଉର୍ବଶୀ ଆଣ ବେଗ ହୋଇ
ସ୍ୱର୍ଗ ନ ଶୋଭେ ତା ବିହୁନେ
ଚନ୍ଦ୍ର ନ ଥିଲେ ରାତ୍ର ଯେସନେ ।୨୬

ତଦୁପେତ୍ୟ ମହାରାଜେ ତମସି ପ୍ରତ୍ୟୁପସ୍ଥିତେ ।।
ଉର୍ବଶ୍ୟା ଉରଣୌ ଜହ୍ରୁର୍ନ୍ୟସ୍ତୌ ରାଜନି ଜାୟୟା । ୨୭ ।
ନିଶମ୍ୟାକ୍ରନ୍ଦିତଂ ଦେବୀ ପୁତ୍ରୟୋର୍ନୀୟମାନୟୋଃ ।
ହତାସ୍ମ୍ୟହଂ କୁନାଥେନ ନପୁଂସା ବୀରମାନିନା । ୨୮ ।
ଯଦ୍ବିସ୍ରମ୍ଭାଦହଂ ନଷ୍ଟା ହୃତାପତ୍ୟା ଚ ଦସ୍ୟୁଭିଃ ।
ଯଃ ଶେତେ ନିଶି ସନ୍ତ୍ରସ୍ତୋ ଯଥା ନାରୀ ଦିବା ପୁମାନ୍ । ୨୯ ।
ଇତି ବାକ୍ସାୟକୈର୍ବିଦ୍ଧଃ ପ୍ରତୋତ୍ରୈରିବ କୁଞ୍ଜରଃ ।
ନିଶି ନିସ୍ତ୍ରିଂଶମାଦାୟ ବିବସ୍ତ୍ରୋଽଭ୍ୟଦ୍ରବଦ୍ରୁଷା । ୩୦ ।

---

ଗନ୍ଧର୍ବମାନେ ପୃଥିବୀକୁ ଆସି ଅନ୍ଧକାର ରାତ୍ରିର ମଧ୍ୟ ଭାଗରେ ରାଜାଙ୍କ ନିକଟରେ ଉର୍ବଶୀ ଯେଉଁ ମେଷ ଦୁଇଟି ରଖିଥିଲେ ସେମାନଙ୍କୁ ଅପହରଣ କରି ଘେନିଗଲେ ।୨୭।

ଉର୍ବଶୀ ମେଷଶାବକ ଦୁଇଟିଙ୍କୁ ପୁତ୍ରପରି ପାଳନ କରୁଥିଲେ, ସେମାନଙ୍କୁ ଗନ୍ଧର୍ବମାନେ ଘେନି-ଯିବାରୁ ସେମାନଙ୍କ କ୍ରନ୍ଦନ ଧ୍ୱନି ଶୁଣି ଉର୍ବଶୀ କହିଲେ—ମୁଁ ଏହି କୁତ୍ସିତ ପତିଦ୍ୱାରା ପ୍ରତାରିତ ହୋଇ-ଅଛି, ଏ ବୃଥାରେ ବୀରତ୍ୱ ଅଭିମାନ କରୁଅଛନ୍ତି ।୨୮।

ଏହାଙ୍କ ଉପରେ ବିଶ୍ୱାସ କରି ମୁଁ ନଷ୍ଟ ହେଲି, ଏହାଙ୍କ ଅସାବଧାନତା ହେତୁ ମୋର ଶିଶୁ ଦୁଇଟିଙ୍କୁ ଦସ୍ୟୁମାନେ ଚୋରିକରି ଘେନିଗଲେ, ଏ ଦିନରେ ପୁରୁଷପରି ରାତିରେ ସ୍ତ୍ରୀପରି ନିଦ୍ରାରେ ଶୋଇ ରହିଅଛି ।୨୯।

ହେ ରାଜନ୍ ! ଅଙ୍କୁଶରେ ହସ୍ତୀ ବିଦ୍ଧ ହେଲପରି ଉର୍ବଶୀଙ୍କର ବାକ୍ୟବାଣରେ ବିଦ୍ଧହୋଇ ପୁରୁରବା ରାତି କାଳରେ ଉଲଗ୍ନ ହୋଇ ଖଡ୍ଗଧାରଣ ପୂର୍ବକ ଧାବିତ ହେଲେ ।୩୦।

---

ତକ୍ଷଣେ ଇନ୍ଦ୍ର ଆଜ୍ଞା ଶିରେ
ଘେନି ଚଳିଲେ ମର୍ତ୍ତ୍ୟପୁରେ
ମିଳିଲେ ପୁରୁରବା ପୁରେ
ରାତ୍ରେ ନିବିଡ଼ ଅନ୍ଧକାରେ
ତକ୍ଷଣେ ଦେବ ମାୟା କଲେ
ଉର୍ବଶୀ ମେଷ ନେଇଗଲେ ।୨୭
ସେ ବେନି ମେଷ ଶୂନ୍ୟେ ଯାନ୍ତେ
ଉଚ୍ଚେ ରୋଦନ କଲେ ପଥେ
ତା ଶୁଣି ନିଦ୍ରାଭଙ୍ଗ ହୋଇ
ବିକଳେ ଉର୍ବଶୀ କାନ୍ଦଇ
କାନ୍ଦଇ ଶିରେ ହସ୍ତ ଦେଇ
ମୋ ପୁତ୍ର କେ ନେଲା ନେଇ

ମୁଁ ଏଡ଼େ ହୀନ ଆଶ୍ରା କଲି
ଏ ପୁରେ ଅନାଥା ହୋଇଲି
ଭୁଲିଲି ନପୁଂସକ ବୋଲେ
ପୁତ୍ରେ ମୋହର କାହିଁ ଗଲେ
ଏ ରାଜା ନାରୀଙ୍କର ପ୍ରାୟେ
ଶୋଇଛନ୍ତି ନିଦ୍ରା ସୁଖେ ମୋହେ
ଯେସନେ ନପୁଂସକ ଶୋଇ
ଏମନ୍ତ ଦେଖିଲିତ ନାହିଁ ।୨୮,୨୯
ଏମନ୍ତେ ରୋଦନ କରନ୍ତେ
ରାଜାର ଶୟନ ଏକାନ୍ତେ
ଉର୍ବଶୀ କଟୁ ବାକ୍ୟ ଶୁଣି
ନିଦ୍ରା ତେଜିଲେ ନୃପମଣି

ବ୍ୟଥିତ ଉର୍ବଶୀ ବଚନେ
ପ୍ରହାରେ କୁଞ୍ଜର ଯେସନେ
ତକ୍ଷଣେ ଶଯ୍ୟାରୁ ସେ ଉଠି
ଖଡ଼ଗ କରି ଦୃଢ ମୁଷ୍ଟି
ଉଲଗ୍ନେ ରାଜା ଥିଲେ ଶୋଇ
ଅନ୍ଧାରେ ଦେହ ନ ଦିଶଇ
ପଥେ ସେ ରେ ରେ କାର ରାବେ
ମେଷକୁ ଛାଡ଼ିଲେ ଗନ୍ଧର୍ବେ
ସେ ମେଷ ଘେନି ବେନି ହସ୍ତେ
ମିଳିଲେ ଉର୍ବଶୀ ଅଗ୍ରତେ
ଗନ୍ଧର୍ବ ଶୂନ୍ୟମାର୍ଗେ ଥିଲେ
ବିଜୁଳି ତେଜ ପ୍ରକାଶିଲେ

ତେ ବସୃଜେ୍ୟାରଣୌ ତତ୍ର ବ୍ୟଦ୍ୟୋତନ୍ତ ସ୍ମ ବିଦ୍ୟୁତଃ ।
ଆଦାୟ ମେଷାବାୟାନ୍ତଂ ନଗ୍ନମୈକ୍ଷତ ସା ପତିମ୍ । ୩୧ ।
ଐଳୋଽପି ଶୟନେ ଜାୟାମପଶ୍ୟନ୍ ବିମନା ଇବ ।
ତଚ୍ଚିତ୍ତୋ ବିହ୍ୱଳଃ ଶୋଚନ୍ ବଭ୍ରାମୋନ୍ମତ୍ତବନ୍ମହୀମ୍ । ୩୨ ।
ସ ତାଂ ବୀକ୍ଷ୍ୟ କୁରୁକ୍ଷେତ୍ରେ ସରସ୍ୱତ୍ୟାଞ୍ଚ ତତ୍ସଖୀଃ ।
ପଞ୍ଚ ପ୍ରହୃଷ୍ଟବଦନଃ ପ୍ରାହ ସୂକ୍ତଂ ପୁରୁରବାଃ । ୩୩ ।
ଅହୋ ଜାୟେ ତିଷ୍ଠ ତିଷ୍ଠ ଘୋରେ ନ ତ୍ୟକ୍ତୁମର୍ହସି ।
ମାଂ ତ୍ୱମଦ୍ୟାପ୍ୟନିର୍ବୃତ୍ୟ ବଚାଂସି କୃଣବାବହୈ । ୩୪ ।

---

ଗନ୍ଧର୍ବମାନେ ମେଷ ଶାବକମାନଙ୍କୁ ପରିତ୍ୟାଗ କରି ତେଜଃ ପ୍ରକାଶ କରିଥିଲେ, ରାଜା ମେଷ ଶାବକମାନଙ୍କୁ ଘେନି ଫେରିଆସିଲେ, ଉର୍ବଶୀ ତାହାଙ୍କୁ ଦେଖି କହିଲେ, ତୁମ୍ଭେ ପ୍ରତିଜ୍ଞା ଭଙ୍ଗ କରିଅଛ, ମୁଁ ତୁମ୍ଭଙ୍କୁ ପରିତ୍ୟାଗ କଲି । ଏହାକହି ପ୍ରସ୍ଥାନ କଲେ ।୩୧।

ପୁରୁରବା ଉର୍ବଶୀଙ୍କୁ ନ ଦେଖି ସର୍ବଦା ତାହାଙ୍କ କଥା ଭାବି ଉନ୍ମତ୍ତ ପରି ପୃଥିବୀ ଭ୍ରମଣ କରିବାକୁ ଲାଗିଲେ ।୩୨।

ପୁରୁରବା ସରସ୍ୱତୀ ନଦୀତୀରରେ କୁରୁକ୍ଷେତ୍ରରେ ପଞ୍ଚସଖୀଙ୍କ ସହିତ ଉର୍ବଶୀଙ୍କୁ ଦେଖି ମଧୁର ବାକ୍ୟରେ କହିଲେ ।୩୩।

ପୁରୁରବା କହିଲେ :—

ହେ ଜାୟେ ! ରୁହ, ରୁହ । ହେ ନିଷ୍ଠୁରେ ! ମୋର ସୁଖ ଶେଷ ହୋଇନାହିଁ । ତୁମ୍ଭେ ମୋତେ ଛାଡିଯାଅ ନାହିଁ, ରୁହ, ତୁମ୍ଭଙ୍କୁ ମୁଁ କେତେ କଥା କହିବ ।୩୪।

---

ରାଜା କଟୀରେ ବସ୍ତ୍ର ନାହିଁ
ଉଲଗ୍ନ ଦେଖି କୋପ ବହି
ମେଷଙ୍କୁ ଦେଖି ରାଜା ହସ୍ତେ
ଉର୍ବଶୀ ଗଲେଣ ନ୍ୟପତେ ।୩୦,୩୧
ସେ ରାଜା ମେଷ ଘେନି କରେ
ଆସି ମିଳିଲେ ନିଜ ପୁରେ
ବୋଲଇ ଜାୟେ ତୋ ନନ୍ଦନ
ନ ଜାଣି କଲୁ ଯେ ବେଦନ
ଶୟନ ସ୍ଥାନେ ଯେ ପଶିଲ
ଖଟେ ଉର୍ବଶୀ ନ ଦେଖିଲ

ଦୀପ ଆଣିଲ ତତକ୍ଷଣେ
ଦେଖେ ଉର୍ବଶୀ ଗଲା କେଣେ
ନ ଦେଖି ମୋହଗତେ ପଡ଼ି
କାନ୍ଦେ ହୃଦୟେ କର ତାଡ଼ି
ଉନ୍ମତ୍ତ ପ୍ରାୟେ ମହୀ ଭ୍ରମେ
ଗିରି କାନନ ପଥ ଶ୍ରମେ ।୩୨।
ଭ୍ରମନ୍ତେ ଅତି ପ୍ରାତଃକାଳେ
ଅଇଲେ କୁରୁକ୍ଷେତ୍ର ମେଳେ
ଉର୍ବଶୀ ସଖୀ ସଙ୍ଗମେଳେ
ଦେଖିଲେ ସରସ୍ୱତୀ କୂଳେ

ରାଜାଙ୍କୁ ରହିଁ ଅଧୋମୁଖୀ
ମନେ ହୋଇଲେ ମହାଦୁଃଖୀ
ରାଜା ଉର୍ବଶୀ ମୁଖ ରହିଁ
ବୋଲଇ ସ୍ନେହଭର ହୋଇ
ରାଜାଙ୍କୁ ଦେଖି କୋପଭରେ
ଉର୍ବଶୀ ଗଲେ କିଛି ଦୂରେ
ପଛେ ଗୋଡ଼ାଇ କାମବଶେ
ସେ ରାଜା ବୋଲଇ ବିଶ୍ୱାସେ ।୩୩
ହେ ସଖି ! କ୍ଷଣେ ରହି ରହ
ନ ଛାଡ଼ ତୁ ମୋହର ସ୍ନେହ

ସୁଦେହୋଽୟଂ ପତତ୍ୟତ୍ର ଦେବ ଦୂରଂ ହୃତସ୍ତ୍ୱୟା ।
ଖାଦନ୍ତ୍ୟେନଂ ବୃକା ଗୃଧ୍ରାସ୍ତ୍ୱତ୍ପ୍ରସାଦସ୍ୟ ନାସ୍ପଦମ୍ । ୩୫ ।

ଉର୍ବଶ୍ୟୁବାଚ ।

ମା ମୃଥାଃ ପୁରୁଷୋଽସି ତ୍ୱଂ ମାସ୍ମ ତ୍ୱାଦ୍ୟୁର୍ବୃକା ଇମେ ।
କ୍ୱାପି ସଖ୍ୟଂ ନ ବୈ ସ୍ତ୍ରୀଣାଂ ବୃକାଣାଂ ହୃଦୟଂ ଯଥା । ୩୬ ।
ସ୍ତ୍ରିୟୋ ହ୍ୟକରୁଣାଃ କ୍ରୂରା ଦୁର୍ମ୍ମର୍ଷା ପ୍ରିୟସାହସାଃ ।
ଘ୍ନନ୍ତ୍ୟଲ୍ପାର୍ଥେଽପି ବିଶ୍ରବ୍ଧଂ ପତିଂ ଭ୍ରାତରମପ୍ୟୁତ । ୩୭ ।
ବିଧାୟାଲୀକବିଶ୍ରମ୍ଭମଜ୍ଞେଷୁ ତ୍ୟକ୍ତସୌହୃଦାଃ ।
ନବଂ ନବମଭୀପ୍ସନ୍ତ୍ୟଃ ପୁଂଶ୍ଚଲ୍ୟଃ ସ୍ୱୈରବୃତ୍ତୟଃ । ୩୮ ।

---

ହେ ଦେବୀ ! ତୁମ୍ଭଲାଗି ମୋର ଏ ସୁନ୍ଦର ଦେହ ଏଠାରେ ଆସି ପଡ଼ିଅଛି । ତୁମ୍ଭେ ଗ୍ରହଣ ନ କଲେ ବ୍ୟାଘ୍ର, ଗୃଧ୍ର ଏହାକୁ ଭକ୍ଷଣ କରିବେ । ୩୫ ।

**ଉର୍ବଶୀ କହିଲେ :—**

ହେ ରାଜନ୍ ! ତୁମ୍ଭେ ମର ନାହିଁ, ତୁମ୍ଭେ ପୁରୁଷ, ଧୈର୍ଯ୍ୟଧର, ଏହି ଇନ୍ଦ୍ରିୟମାନେ ତୁମ୍ଭଙ୍କୁ ଭକ୍ଷଣ ନ କରନ୍ତୁ । ସ୍ତ୍ରୀ ଜାତିର ହୃଦୟ ବ୍ୟାଘ୍ର ତୁଲ୍ୟ ନିଷ୍ଠୁର, ସେ କୌଣସି ଗୋଟିଏ ଲୋକକୁ ଚିରକାଳ ଭଜି ନ ପାରେ ।୩୬।

ସ୍ତ୍ରୀଜାତି ସ୍ୱଭାବତଃ ନିର୍ଦ୍ଦୟ, ଖଳ ସ୍ୱଭାବ, ଅପରାଧ ସହ୍ୟ କରିପାରେ ନାହିଁ । ନିଜର ପ୍ରିୟଜନମାନଙ୍କ ପ୍ରତି ମଧ୍ୟ ଅନ୍ୟାୟ କାର୍ଯ୍ୟ କରିପାରେ, ସାମାନ୍ୟ ସୁଖ ନିମିତ୍ତ ସେ ବିଶ୍ୱାସୀ ସ୍ୱାମୀ ଓ ଭ୍ରାତାଙ୍କୁ ମଧ୍ୟ ବିନାଶ କରିପାରେ ।୩୭।

ଯେଉଁ ସ୍ତ୍ରୀମାନେ ସ୍ୱାଧୀନ ସ୍ୱଭାବା ଏବଂ ନଷ୍ଟଚରିତ୍ରା ସେମାନେ ମୂର୍ଖ ପୁରୁଷମାନଙ୍କୁ କପଟ ସ୍ନେହଦ୍ୱାରା ବଶ କରି ସେମାନଙ୍କ ପ୍ରତି ସ୍ନେହଶୂନ୍ୟ ହୋଇ ପୁଣି ନୂତନ ପ୍ରେମିକ ପାଇବାର ବାସନା କରନ୍ତି ।।

---

ତୁ ଘୋର କର୍ମ୍ମ କର୍ପା କରୁ
ଭାବ ଅଭାବ ନ ବିଚାରୁ
ମୋତେ ନ ଛାଡ଼ କୋପ ମନେ
ମୁଁ ଅଛୁ ତୋହର ବଚନେ
ତୁ ମୋ ଶରୀର ଦୂର କଲୁ
ଜୀବନ ଛାଡ଼ିବି ମୁଁ ଭଲ
ତୋର ବିହୀନେ ମୋ ଶରୀର
ଭକ୍ଷିବେ ଶୃଗାଳକୁକ୍କୁର ।୩୪,୩୫

ଉର୍ବଶ୍ୟୁବାଚ—

ହେ ରାଜା ଶୁଣ ମୋ ଉତ୍ତର
ସଂସାରେ ସ୍ତ୍ରିରିଙ୍କ ବେଭାର
ସ୍ୱଭାବେ ଯେବା ଦୁଷ୍ଟା ନାରୀ
ତା ସଙ୍ଗେ ବିଶ୍ୱାସ ନ କରି
ବ୍ୟାଘ୍ର ଭଲ୍ଲୁକ ସଙ୍ଗେ ନର
ଯେମନ୍ତେ ବିଶ୍ୱାସ ବେଭାର
ସ୍ତ୍ରିରିଙ୍କ ଦେହେ ଯେତେ ଗୁଣ
ରାଜନ ସାବଧାନେ ଶୁଣ

ନିର୍ଦ୍ଦୟ କପଟ କଠିଣ
ସାହସ ଆଦି ଭରିଗୁଣ
ଅଳପ କୋଧେ ପ୍ରାଣନ୍ୟନ୍ତି
ପତି ଭ୍ରାତାକୁ ନ ଗଣନ୍ତି ।୩୬,୩୭
ଅଜ୍ଞାନ ଭାବେ ଥାନ୍ତି ନିତ୍ୟେ
ବାଞ୍ଛନ୍ତି କାମଭୋଗ ଚିତ୍ତେ
ସ୍ୱଭାବେ ନିତ୍ୟେ ହୋନ୍ତି କାମୀ
ଇଚ୍ଛନ୍ତି ନବ ନବ ସ୍ୱାମୀ
ନାରୀଙ୍କ ସ୍ୱଭାବ ଏମନ୍ତ
କର୍ପା ତୁ କରୁ ଦୁଷ୍ଟମତି ।୩୮।

ସଂବତ୍ସରାନ୍ତେ ହି ଭବାନେକରାତ୍ରଂ ମୟେଶ୍ୱରଃ ।
ରଂସ୍ୟତ୍ୟପତ୍ୟାନି ଚ ତେ ଭବିଷ୍ୟନ୍ତ୍ୟପରାଣି ଭୋଃ । ୩୯ ।
ଅନ୍ତର୍ବତ୍ନୀମୁପାଲକ୍ଷ୍ୟ ଦେବୀଂ ସ ପ୍ରୟଯୌ ପୁରୀମ୍ ।
ପୁନସ୍ତତ୍ର ଗତୋଽବ୍ଦାନ୍ତେ ଉର୍ବଶୀଂ ବୀରମାତରମ୍ । ୪୦ ।
ଉପଲଭ୍ୟ ମୁଦାଯୁକ୍ତଃ ସମୁବାସ ତୟା ନିଶାମ୍ ।
ଅଥୈନମୁର୍ବଶୀ ପ୍ରାହ କୃପଣଂ ବିରହାତୁରମ୍ । ୪୧ ।
ଗନ୍ଧର୍ବାନୁପଧାବେମାଂସ୍ତୁଭ୍ୟଂ ଦାସ୍ୟନ୍ତି ମାମିତି ।
ତସ୍ୟ ସଂସ୍ତୁବତସ୍ତୁଷ୍ଟା ଅଗ୍ନିସ୍ଥାଲୀଂ ଦଦୁର୍ନୃପ ।
ଉର୍ବଶୀଂ ମନ୍ୟମାନସ୍ତାଂ ସୋଽବୁଧ୍ୟତ ଚରନ୍ ବନେ । ୪୨ ।

---

ହେ ମହାରାଜ ! ଯଦି ତୁମ୍ଭେ ନିତାନ୍ତ ଅଧୀର ହୋଇଅଛ ତେବେ ଏକବର୍ଷ ଅତୀତ ହେଲାପରେ ମୁଁ ତୁମ୍ଭ ସହିତ ଏକରାତ୍ରି ମାତ୍ର ରମଣ କରି ପାରିବି, ତଦ୍ଦ୍ୱାରା ତୁମ୍ଭର ଅନ୍ୟ ସନ୍ତାନ ଜନ୍ମିବେ ।୩୯।

ତଦନନ୍ତର ପୁରୁରବା ଉର୍ବଶୀଙ୍କୁ ଗର୍ଭବତୀ ଦେଖି ନିଜ ପୁରୀରେ ପ୍ରବେଶ କଲେ ଏବଂ ଏକବର୍ଷ ଉତ୍ତାରୁ ପୁଣି ସେଠାକୁ ଆଗମନ କରି କରି ଉର୍ବଶୀଙ୍କୁ ବୀର ପ୍ରସବିନୀ ଜାଣି ଅତ୍ୟନ୍ତ ଆନନ୍ଦରେ ତାହାଙ୍କ ସହିତ ରାତ୍ରି ଯାପନ କରିଥିଲେ । ତଦନନ୍ତର ଉର୍ବଶୀ ରାଜାଙ୍କୁ ଅତ୍ୟନ୍ତ ବିରହକାତର ଦେଖି କହିଲେ । ୪୦, ୪୧ ।

ଉର୍ବଶୀ କହିଲେ :—

ତୁମ୍ଭେ ମୋତେ ପାଇବାକୁ ହେଲେ ଏହି ଗନ୍ଧର୍ବମାନଙ୍କୁ ସ୍ତବ କର । ସେମାନେ ସନ୍ତୁଷ୍ଟ ହେଲେ ତୁମ୍ଭଙ୍କୁ ମୋତେ ପ୍ରଦାନ କରିପାରନ୍ତି । ହେ ରାଜା ପରୀକ୍ଷିତ ! ପୁରୁରବା ଗନ୍ଧର୍ବମାନଙ୍କୁ ସ୍ତବ କରି ସନ୍ତୁଷ୍ଟ କରିବାରୁ ସେମାନେ ରାଜାଙ୍କୁ ଗୋଟିଏ ଅଗ୍ନି ସ୍ଥାଳୀ ପ୍ରଦାନ କରିଥିଲେ । ସେ ଏହି ଅଗ୍ନି ସ୍ଥାଳୀକୁ ଉର୍ବଶୀ ମନେକରି ବନରେ ଭ୍ରମଣ କରିଥିଲେ, ପରେ ଜାଣିପାରିଲେ ଯେ ତାହା ଉର୍ବଶୀ ନୁହେଁ,—ଅଗ୍ନି ସ୍ଥାଳୀ ॥

---

ଏବେ ତୁ ନିଜପୁରେ ଯାଅ
ଅବଶ୍ୟ କରି ମୋତେ ସ୍ନେହ
ଆସିବୁ ସମ୍ବତ୍ସର ଅନ୍ତେ
ରମିବୁ ମୋହର ସଙ୍ଗତେ
ତିରୁ ଆସିଲେ ଏକଦିନେ
ରମିବୁ ମୋର ସନ୍ନିଧାନେ
ଅବଶ୍ୟ ହୋଇବ ସନ୍ତାନ
ଏବେ ଉପାୟେ କରି ଧନ

ଗନ୍ଧର୍ବଗଣ ପୂଜା କର
ଏ ତୋତେ ଦେବେ ତୋଷେ ବର
ଏହାଙ୍କ ପ୍ରସାଦେ ତୁ ମୋତେ
ପାଇବୁ ସମ୍ବତ୍ସର ଅନ୍ତେ
ଏମନ୍ତ ତାର ବାକ୍ୟ ଶୁଣି
ଆନନ୍ଦ ମନେ ନୃପମଣି
ଗନ୍ଧର୍ବଗଣେ ପୂଜା କଲା
ଅନେକ ବଳି ଭେଟି ଦେଲା

ସ୍ତୁତି ବଚନେ କରି ଯୋଡ଼
ଚରଣେ ଦଣ୍ଡବତ ପଡ଼ି
ତାର ଭକତି ଦେଖି ମନେ
ଗନ୍ଧର୍ବେ ପ୍ରସନ୍ନ ବଦନେ
ମୃତ୍ତିକା ଭାଣ୍ଡେ ଅଗ୍ନି ଥୋଇ
ରାଜା ସମୀପେ ଦେଲେ ନେଇ
ବୋଇଲେ ଏଥେ ଯଜ୍ଞ କର
ଉର୍ବଶୀଆସି ବଡ଼ତୋପୁର ।୩୯-୪୨

ସ୍ଥାଲୀଂ ନ୍ୟସ୍ୟ ବନେ ଗତ୍ୱା ଗୃହାନାଧ୍ୟାୟତୋ ନିଶି ।
ତ୍ରେତାୟାଂ ସଂପ୍ରବୃତ୍ତାୟାଂ ମନସି ତ୍ରଯ୍ୟବର୍ତ୍ତତଃ । ୪୩ ।
ସ୍ଥାଲୀସ୍ଥାନଂ ଗତୋଽଶ୍ୱତ୍ଥଂ ଶମୀଗର୍ଭଂ ବିଲକ୍ଷ୍ୟ ସଃ ।
ତେନ ଦ୍ୱେ ଅରଣୀ କୃତ୍ୱା ଉର୍ବଶୀଲୋକକାମ୍ୟୟା । ୪୪ ।
ଉର୍ବଶୀଂ ମନ୍ତ୍ରତୋ ଧ୍ୟାୟନ୍ନଧରାରଣିମୁତ୍ତରାମ୍ ।
ଆତ୍ମାନମୁଭୟୋର୍ମଧ୍ୟେ ଯତ୍ତତ୍ ପ୍ରଜନନଂ ପ୍ରଭୁଃ । ୪୫ ।
ତସ୍ୟ ନିର୍ମନ୍ଥନାଜ୍ଜାତୋ ଜାତବେଦା ବିଭାବସୁଃ ।
ତ୍ରୟ୍ୟା ସ ବିଦ୍ୟୟା ରାଜ୍ଞା ପୁତ୍ରତ୍ୱେ କଳ୍ପିତସ୍ତ୍ରିବୃତ୍ । ୪୬ ।

ବନ ମଧ୍ୟରେ ଅଗ୍ନି ସ୍ଥାଳୀ ସ୍ଥାପନ କରି ଘରକୁ ଆସି ଉର୍ବଶୀଙ୍କୁ ଚିନ୍ତା କରୁଥିଲେ । ସେଥିରେ ତ୍ରେତାଯୁଗର ପ୍ରାରମ୍ଭରେ ରାଜାଙ୍କ ମନ ମଧ୍ୟରେ କର୍ମ ବୋଧକ ବେଦତ୍ରୟ ଜାତ ହୋଇଥିଲା ।୪୩।

ତଦନନ୍ତର ରାଜା ଅଗ୍ନି ସ୍ଥାଳୀ ନିକଟକୁ ଗମନ କରି ଦେଖିଲେ ଶମୀବୃକ୍ଷ ଗର୍ଭରେ ଅଶ୍ୱତ୍ଥ ଗଛ ଜନ୍ମିଅଛି । ଏହି ଅଶ୍ୱତ୍ଥ ବୃକ୍ଷରେ ଦୁଇଟି ଅରଣୀ ପ୍ରସ୍ତୁତ କରି ଉର୍ବଶୀଙ୍କୁ ପାଇବା ନିମିତ୍ତ ଅଗ୍ନିମନ୍ଥନ କରିଥିଲେ । ୪୪ ।

ରାଜା ପୁରୁରବା ଉର୍ବଶୀଙ୍କ ଅଧରାଅରଣୀ ଅର୍ଥାତ୍ ନିମ୍ନକାଷ୍ଠ ଓ ନିଜର ଆତ୍ମାକୁ ଉତ୍ତରା ଅରଣୀ ଅର୍ଥାତ୍ ଊର୍ଦ୍ଧ୍ୱକାଷ୍ଠ ଏବଂ ଉଭୟ କାଷ୍ଠର ମଧ୍ୟସ୍ଥଳୀ କାଷ୍ଠକୁ ପୁତ୍ରରୂପେ ଚିନ୍ତାକରି ମନ୍ତ୍ର ପ୍ରୟୋଗ କରି ମନ୍ଥନ କରିଥିଲେ ।୪୫।

ସେହି ମନ୍ଥନରୁ ଅଗ୍ନି ଆବିର୍ଭୂତ ହୋଇ ଥିଲେ, ତେଣୁ ତାଙ୍କର ନାମ ଜାତବେଦ ହୋଇଥିଲା, ତ୍ରୟୀ ବେଦଦ୍ୱାରା ଉତ୍ପନ୍ନ ତ୍ରିବୃତ୍ ଅଗ୍ନିକୁ ରାଜା ନିଜର ପୁତ୍ରରୂପେ କଳ୍ପନା କରିଥିଲେ । ୪୬ ।

ଏମନ୍ତେ ଅଗ୍ନି-କୁଣ୍ଡ ଦେଲେ
ଗନ୍ଧର୍ବେ ଉର୍ବଶୀର ଭୁଲେ
ତକ୍ଷଣେ ଗଲେ ଶୂନ୍ୟ ମାର୍ଗେ
ସେ ଅଗ୍ନି ଘେନି ବନ ଭାଗେ
ରାଜେ ଭୁଲନ୍ତେ ବୃକ୍ଷମୂଳେ
ଥୋଇଲା ନିଶା ଅନ୍ତକାଳେ
ଅଗ୍ନିକି ବୃକ୍ଷ ମୂଳେ ଥୋଇ
ମିଳିଲା ନିଜ ଘରେ ଯାଇଁ
ରହିଲା ପ୍ରଜା ଜନ ହିତେ
ଏମନ୍ତେ ଗଲା ଦିନା କେତେ
ଉର୍ବଶୀ ବାକ୍ୟେ ମନ ଦେଇ
କାଷ୍ଠଲେ ମନ ନ ରହଇ

ଏମନ୍ତେ ସତ୍ୟଯୁଗ ଗଲା
ଶୁଣ ହୋ ଗୋବର୍ଦ୍ଧନ ଲୀଳା ।୪୩।
ତ୍ରେତାସ୍ୟଯୁଗ ପ୍ରବେଶନେ
ରାଜା ଉର୍ବଶୀ ସ୍ମରି ମନେ
ଅଗ୍ନି ଉଦ୍ଦେଶେ ବନେ ଗଲା
ବନେ ଅନଳ ନ ଦେଖିଲା
ଯେ ବୃକ୍ଷ ମୂଳେ ଥୋଇ ଗଲା
ସେ ବୃକ୍ଷ ଅଶ୍ୱତ୍ଥ ହୋଇଲା
ଅଶ୍ୱତ୍ଥ ଗର୍ଭେ ଶମୀ ବୃକ୍ଷେ
ରାଜନ ଦେଖଇ ପ୍ରତ୍ୟକ୍ଷେ
ଏ ଯଜ୍ଞବୃକ୍ଷ କାଷ୍ଠ ଜାଣି
ଗଢିଲା ଯଜ୍ଞର ଅରଣି

ଅରଣି ମନ୍ଥି ଅଗ୍ନି କରି
ନିଗମ ମନ୍ତ୍ରକୁ ଉଚ୍ଚାରି ।୪୪।
ଉର୍ବଶୀ ଧ୍ୟାନ କରି ମନେ
ଆହୁତି ଦେଲା ହୁତାଶନେ
ଉର୍ବଶୀ ଯଜ୍ଞବଳେ ଆସି
ରାଜା ଶୟନେ ମିଳେ ଆସି
ଯଜ୍ଞ-ପୁରୁଷର ପ୍ରସନ୍ନେ
ବସ୍ତୁ ମିଳିଲେ ତାର ମନେ
ଉର୍ବଶୀ ପୁରୁରବା ସଙ୍ଗେ
ପୁତ୍ରେ ଜନ୍ମିଲେ ରତି ରଙ୍ଗେ
ଅଗ୍ନିର ବର୍ଣ୍ଣ ପ୍ରାୟେ ହୋଇ
ଜନ୍ମ ଲଭିଲେ ଷଡ଼ ଭାଇ ।୪୫,୪୬

ତେନାଯଜତ ଯଜ୍ଞେଶଂ ଭଗବନ୍ତମଧୋକ୍ଷଜମ୍ ।
ଉର୍ବଶୀଲୋକମନ୍ୱିଚ୍ଛନ୍ ସର୍ବଦେବମୟଂ ହରିମ୍ । ୪୭ ।
ଏକ ଏବ ପୁରା ବେଦଃ ପ୍ରଣବଃ ସର୍ବବାଙ୍ମୟଃ ।
ଦେବୋ ନାରାୟଣୋ ନାନ୍ୟ ଏକୋଽଗ୍ନିର୍ବର୍ଣ୍ଣ ଏବ ଚ । ୪୮ ।
ପୁରୁରବସ ଏବାସୀତ୍ତ୍ରୟୀ ତ୍ରେତାମୁଖେ ନୃପ ।
ଅଗ୍ନିନା ପ୍ରଜୟା ରାଜା ଲୋକଂ ଗାନ୍ଧର୍ବମେୟିବାନ୍ । ୪୯ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଐଳୋପାଖ୍ୟାନଂ ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ।

---

ଏହି ଅଗ୍ନି ଦ୍ୱାରା ଉର୍ବଶୀଙ୍କୁ କାମନା କରି ରାଜା ଯଜ୍ଞେଶ୍ୱର ସର୍ବ ବେଦମୟ ଶ୍ରୀହରିଙ୍କୁ ଆରାଧନା କରୁଥିଲେ ।୪୭।

ସତ୍ୟଯୁଗରେ ସର୍ବ ବାକ୍ୟର ବୀଜ ସ୍ୱରୂପ ପ୍ରଣବ ( ଓଁ ) ଏକମାତ୍ର ବେଦ ଥିଲା । ନାରାୟଣ ଏକମାତ୍ର ଦେବତା ଥିଲେ, ଯେଉଁ ଅଗ୍ନି ଦ୍ୱାରା ଲୋକେ ଉନ୍ନାଦ କରୁଅଛନ୍ତି, ତାହା ଏକମାତ୍ର ବିଦ୍ୟମାନ ଥିଲା ଏବଂ ହଂସ ନାମରେ ଏକମାତ୍ର ବର୍ଣ୍ଣ ଥିଲା । (ଅର୍ଥାତ୍ ସତ୍ୟଯୁଗରେ ଲୋକେ ସତ୍ତ୍ୱ ପ୍ରଧାନ ଓ ଧର୍ମନିଷ୍ଠ ଓ ଧ୍ୟାନନିଷ୍ଠ ଥିଲେ ।୪୮।

ହେ ରାଜନ୍ ! ତ୍ରେତାଯୁଗରେ ପୁରୁରବାଙ୍କଠାରୁ ବେଦତ୍ରୟୀ ଆବିର୍ଭୂତ ହୋଇଥିଲା । ପୁରୁରବା ପୁତ୍ରରୂପୀ ଅଗ୍ନି ଦ୍ୱାରା ଯଜ୍ଞକରି ଗନ୍ଧର୍ବ ଲୋକ ପ୍ରାପ୍ତ ହୋଇଥିଲେ ।୪୯।

---

ରାଜା ବର୍ତ୍ତିଲେ ମନ ସୁଖେ
ଜନ୍ମିଲେ ତ୍ରେତାଯୁଗ ମୁଖେ
ଅସ୍ଥିର ଅଟନ୍ତି ପୁରୁରବା
ଅନଙ୍ଗ ତ୍ରାସେ ହୋଏ ପ୍ରଭା

ଉର୍ବଶୀ ମନେ ଧ୍ୟାନ ଥିଲେ
ଗନ୍ଧର୍ବ ଲୋକେ ମିଳିଲେ ।୪୭-୪୯
ବୋଲଇ ବିପ୍ର ଜଗନ୍ନାଥ
ନବମେ ବଂଶାନୁଚରିତ

ସୁଜନ ଜନଙ୍କର ହିତେ
ଭାଷା ପ୍ରବନ୍ଧେ ଭାଗବତେ ॥



# ପଞ୍ଚଦଶୋଽଧ୍ୟାୟଃ

ତତଃ ପଞ୍ଚଦଶେ ଗାଧିରୈଳପୁତ୍ରାନ୍ୱୟେଽଜନି ।
ଯଦ୍ଦୌହିତ୍ରସୁତୋ ରାମଃ କାର୍ତ୍ତବୀର୍ଯ୍ୟମହନ୍ ରୁଷା ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ବାଦରାୟଣିରୁବାଚ

ଐଳସ୍ୟ ଚୋର୍ବଶୀଗର୍ଭାତ୍ ଷଡାସନ୍ନାତ୍ମଜା ନୃପ ।
ଆୟୁଃ ଶ୍ରୁତାୟୁଃ ସତ୍ୟାୟୂ ରୟୋଽଥ ବିଜୟୋ ଜୟଃ । ୧ ।
ଶ୍ରୁତାୟୋର୍ବସୁମାନ୍ ପୁତ୍ରଃ ସତ୍ୟାୟୋଶ୍ଚ ଶ୍ରୁତଞ୍ଜୟଃ ।
ରୟସ୍ୟ ସୁତ ଏକଶ୍ଚ ଜୟସ୍ୟ ତନୟୋଽମିତଃ । ୨ ।
ଭୀମସ୍ତୁ ବିଜୟସ୍ୟାଥ କାଞ୍ଚନୋ ହୋତ୍ରକସ୍ତତଃ ।
ତସ୍ୟ ଜହ୍ନୁଃ ସୁତୋ ଗଙ୍ଗାଂ ଗଣ୍ଡୂଷୀକୃତ୍ୟ ଯୋଽପିବତ୍ ।
ଜହ୍ନୋସ୍ତୁ ପୁରୁସ୍ତସ୍ୟାଥ ବଳାକଶ୍ଚାତ୍ମଜୋଽଜକଃ । ୩ ।

---

## ପରଶୁରାମଙ୍କ କର୍ତ୍ତୃକ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ବଧ

ପଞ୍ଚଦଶ ଅଧ୍ୟାୟରେ ଐଳ ପୁତ୍ରଙ୍କର ବଂଶରେ ଗାଧି ଜନ୍ମଗ୍ରହଣ କରିଥିଲେ । ଯାହାଙ୍କର କନ୍ୟାର ବଂଶରେ ମହାବୀର ପରଶୁରାମ ଜନ୍ମହୋଇ କାର୍ତ୍ତବୀର୍ଯ୍ୟଙ୍କୁ ବଧ କରିଥିଲେ ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ହେ ନୃପ ! ଐଳଙ୍କ ଉର୍ବଶୀ ଗର୍ଭରୁ ଆୟୁଃ, ଶ୍ରୁତାୟୁ, ସତ୍ୟାୟୁ, ରୟ, ବିଜୟ ଏବଂ ଜୟନାମକ ଛଅଟି ପୁତ୍ର ଜନ୍ମଗ୍ରହଣ କରିଥିଲେ ।୧।

ଶ୍ରୁତାୟୁଙ୍କର ପୁତ୍ର ବସୁମା ଓ ସତ୍ୟାୟୁଙ୍କର ପୁତ୍ର ଶ୍ରୁତଞ୍ଜୟ, ରୟଙ୍କର ପୁତ୍ର ଏକ ଓ ଜୟଙ୍କର ପୁତ୍ର ଅମିତ, ବିଜୟଙ୍କର ପୁତ୍ର ଭୀମ, ଭୀମଙ୍କର ପୁତ୍ର କାଞ୍ଚନ, କାଞ୍ଚନଙ୍କର ପୁତ୍ର ହୋତ୍ରକ, ହୋତ୍ରକଙ୍କର ପୁତ୍ର ଜହ୍ନୁ । ସେହି ଜହ୍ନୁ ଗଙ୍ଗାଙ୍କୁ ଗଣ୍ଡୁଷ କରି ପାନ କରିଥିଲେ, ଜହ୍ନୁଙ୍କର ପୁତ୍ର ପୁରୁ, ପୁରୁଙ୍କର ପୁତ୍ର ବଳାକ, ବଳାକଙ୍କର ପୁତ୍ର ଅଜକ । ୨, ୩ ।

---

ଐଳର ବଂଶେ ଗାଧି ଜନ୍ମ, ତାଙ୍କ ଦୌହିତ୍ର ପରଶୁରାମ ।
କାର୍ତ୍ତବୀର୍ଯ୍ୟକୁ କଲେ ବଧ, ପଞ୍ଚଦଶ ଅଧ୍ୟା ସମ୍ବାଦ ॥

ଶ୍ରୀ ଶୁକ ଉବାଚ—
ଏବେ ହୋ ଶୁଣ ନରନାଥ !
ସୋମର ବଂଶାନୁଚରିତ
ଉର୍ବଶୀ ଗର୍ଭେ ବିଷ୍ଣୁ ତେଜେ
ଜନ୍ମିଲେ ପୁରୁରବା ରାଜେ
ସୁନ୍ଦରପଣେ ନାହିଁ ସମ
ଶୁଣ ସେ ଷଡ଼ପୁତ୍ର ନାମ
ଆୟୁ ଶ୍ରୁତାୟୁ ପୁଣି ରୟ
ସତ୍ୟାୟୁ ବିଜୟ ଯେ ଜୟ । ୧ ।
ଶ୍ରୁତାୟୁ ସୁତ ବସୁନାମ
ଏକ ନାମ ରୟ ନନ୍ଦନ
ଶ୍ରୁତଞ୍ଜୟ ସତ୍ୟାୟୁ ସୁତ
ଜୟର ତନୟ ଅମିତ । ୨ ।
ବିଜୟ ତନୟ ଯେ ଭୀମ
ଭୀମର ପୁତ୍ର ଯେ କାଞ୍ଚନ
ତା ସୁତ ହୋତ୍ର ଜହ୍ନୁ ହୋଏ
ଗଣ୍ଡୁଷେ ଗଙ୍ଗା ତୋଳି ପିଏ ।୩।

ତତଃ କୁଶଃ କୁଶସ୍ୟାପି କୁଶାମ୍ବୁସ୍ତନୟୋ ବସୁଃ ।
କୁଶନାଭଶ୍ଚ ଚତ୍ୱାରୋ ଗାଧୀରାସୀତ୍ କୁଶାମ୍ବୁଜଃ । ୪ ।
ତସ୍ୟ ସତ୍ୟବତୀଂ କନ୍ୟାମୃଚୀକୋଽଯାଚତ ଦ୍ୱିଜଃ ।
ବରଂ ବିସଦୃଶଂ ମତ୍ୱା ଗାଧିର୍ଭାର୍ଗବମବ୍ରବୀତ୍ । ୫ ।
ଏକତଃ ଶ୍ୟାମକର୍ଣ୍ଣାନାଂ ହୟାନାଂ ଚନ୍ଦ୍ରବର୍ଚ୍ଚସାମ୍ ।
ସହସ୍ରଂ ଦୀୟତାଂ ଶୁଲ୍କଂ କନ୍ୟାୟାଃ କୁଶିକା ବୟମ୍ । ୬ ।
ଇତ୍ୟୁକ୍ତସ୍ତନ୍ମତଂ ଜ୍ଞାତ୍ୱା ଗତଃ ସ ବରୁଣାନ୍ତିକମ୍ ।
ଆନୀୟ ଦତ୍ତ୍ୱା ତାନଶ୍ୱାନୁପୟେମେ ବରାନନାମ୍ । ୭ ।

---

ଅଜକଙ୍କର ପୁତ୍ର କୁଶ, କୁଶଙ୍କର କୁଶାମ୍ବୁ, ତନୟ, ବସୁ, କୁଶନାଭ ଏହି ଚାରିପୁତ୍ର ଜନ୍ମିଥିଲେ, କୁଶାମ୍ବୁଙ୍କର ପୁତ୍ରର ନାମ ଗାଧି ।୪।

ଗାଧୀଙ୍କର କନ୍ୟା ସତ୍ୟବତୀଙ୍କୁ ଋଚିକମୁନି ବିବାହ କରିବା ନିମନ୍ତେ ପ୍ରାର୍ଥନା କରନ୍ତେ ଗାଧୀ ତାହାଙ୍କୁ ଅଯୋଗ୍ୟ ମନେକରି ଋଚିକଙ୍କୁ କହିଲେ ।୫।

ଅବଶ୍ୟ ଏକବର୍ଣ୍ଣ, ଶ୍ୟାମକର୍ଣ୍ଣ ଏବଂ ସର୍ବାଙ୍ଗ ଚନ୍ଦ୍ରତୁଲ୍ୟ ଜ୍ୟୋତି ବିଶିଷ୍ଟ ସହସ୍ର ସଂଖ୍ୟକ ଅଶ୍ୱ କନ୍ୟାକୁ ଶୁଳ୍କରୂପେ ଦେବାକୁ ପଡ଼ିବ । ଏଥିର ମୂଲ୍ୟ ଅଧିକ ନୁହେଁ, କାରଣ ଆମ୍ଭେମାନେ କୁଶିକ ବଂଶଜାତ ।୬।

ଋଚିକ ଋଷି ଗାଧୀଙ୍କର ଏହି କଥା ଶ୍ରବଣକରି ଗାଧୀଙ୍କର ଅଭିପ୍ରାୟ ଅନୁସାରେ ବରୁଣଦେବଙ୍କ ନିକଟକୁ ଗମନ କରି ତାହାଙ୍କୁ ସନ୍ତୁଷ୍ଟ କରି ସହସ୍ର ସଂଖ୍ୟକ ଅଶ୍ୱ ଆଣି ଗାଧୀଙ୍କୁ ଦେଇଥିଲେ ଓ ସେହି ସୁନ୍ଦରୀ କନ୍ୟାକୁ ବିବାହ କରିଥିଲେ ।୭।

---

ଜହ୍ନୁର ସୁତ ପୁରୁ ନାମ
ବଳାକ ତାହାର ନନ୍ଦନ
ଅଜକ ବଳାକର ସୁତ
କୁଶ ତାଠାରୁ ହେଲା ଜାତ
କୁଶର କୁଶାମ୍ବୁ ତନୟ
ବସୁ କୁଶନାଭ ଯେ ହୋଏ
କୁଶାମ୍ବୁ ସୁତ ଗାଧି ନାମ
ଅତି ସୁନ୍ଦର ଗୁଣଧାମ ।୪।
ତାହାର କନ୍ୟା ସତ୍ୟବତୀ
ତା କଥା ଶୁଣ ହେ ନୃପତି !

ଋଚୀକ ନାମେ ବ୍ରହ୍ମଋଷି
କନ୍ୟା ମାଗିଲେ ତାକୁ ଆସି
ଦେଖିଣ ବୃଦ୍ଧ ତା ଶରୀର
ସେ ଗାଧି ନ ବରିଲା ବର
ବୋଇଲେ ଋଚୀକ ମୁଖ ଚାହିଁ
କନ୍ୟା ଲଭିବୁ ଯେବେ ତୁହି
ହୋଇବୁ ମୋର କନ୍ୟା ବର
ତୁ ଏବେ ମୋର ବୋଲ କର
ସହସ୍ର ଅଶ୍ୱ ମୋତେ ଦିଅ
ଚନ୍ଦ୍ରର ପ୍ରାୟେ ଯାର ଦେହ

କର୍ଣ୍ଣ ହୋଇବ ଶ୍ୟାମ ବର୍ଣ୍ଣ
ତେବେ ମୁଁ ଦେବି କନ୍ୟାଦାନ ।୫,୬
ଏମନ୍ତେ ରାଜାର ବଚନେ
ଋଚୀକ ବରୁଣ ଭୁବନେ
ମିଳି ବରୁଣଙ୍କୁ ମାଗିଲେ
ବରୁଣ ସପ୍ତ ଅଶ୍ୱ ଦେଲେ
ସେ ଅଶ୍ୱ ଆଣି ମୁନି ଦେଲା
ସତ୍ୟବତୀକି ବିଭା ହେଲା ।୭।

ସ ଋଷିଃ ପ୍ରାର୍ଥିତା ପତ୍ନ୍ୟା ଶ୍ୱଶ୍ର୍ୱା ଚାପତ୍ୟକାମ୍ୟୟା ।
ଶ୍ରପୟିତ୍ୱୋଭୟୈର୍ମନ୍ତ୍ରୈଶ୍ଚରୁଂ ସ୍ନାତୁଂ ଗତୋ ମୁନିଃ । ୮ ।
ତାବତ୍ ସତ୍ୟବତୀ ମାତ୍ରା ସ୍ୱଚରୁଂ ଯାଚିତା ସତୀ ।
ଶ୍ରେଷ୍ଠଂ ମତ୍ୱାନୟାୟଚ୍ଛନ୍ମାତ୍ରେ ମାତୁରଦତ୍ ସ୍ୱୟମ୍ । ୯ ।
ତଦ୍‌ବିଦିତ୍ୱା ମୁନିଃ ପ୍ରାହ ପତ୍ନୀଂ କଷ୍ଟମକାରଷୀଃ ।
ଘୋରୋ ଦଣ୍ଡଧରଃ ପୁତ୍ରୋ ଭ୍ରାତା ତେ ବ୍ରହ୍ମବିତ୍ତମଃ । ୧୦ ।

---

ସେହି ମୁନି ଋଚୀକ ଋଷିଙ୍କୁ ତାହାଙ୍କର ପତ୍ନୀ ଏବଂ ଶାଶୁ ଉଭୟ ପୁତ୍ର କାମନା କରି ପ୍ରାର୍ଥନା କରିବାରୁ ସେ ପତ୍ନୀଙ୍କ ନିମନ୍ତେ ବ୍ରାହ୍ମ ମନ୍ତ୍ରରେ ଓ ଶାଶୁଙ୍କ ନିମନ୍ତେ କ୍ଷାତ୍ର ମନ୍ତ୍ରରେ ଚରୁପାକ କରି ସ୍ନାନ କରିବାକୁ ଗମନ କରିଥିଲେ ।୮।

ଇତି ମଧ୍ୟରେ ସତ୍ୟବତୀଙ୍କର ମାତା ମନେ କଲେ ଋଷି ନିଜ ସ୍ତ୍ରୀ ଲାଗି ଉତ୍ତମ ଚରୁପାକ କରିଅଛନ୍ତି, ସୁତରାଂ ମୁଁ ତାହା ଗ୍ରହଣ କରିବି । ଏହି ଚିନ୍ତାକରି ସେ କନ୍ୟା ନିକଟରେ, ପ୍ରାର୍ଥନା କରନ୍ତେ ସତୀ ସତ୍ୟବତୀ ନିଜ ଚରୁ ମା'ଙ୍କୁ ଅର୍ପଣ କରି ମା'ଙ୍କ ଚରୁ ନିଜେ ଭକ୍ଷଣ କରିଥିଲେ ।୯।

ମୁନି ସ୍ନାନ କରିଆସି ଏହା ଅବଗତ ହୋଇ ପତ୍ନୀଙ୍କୁ କହିଲେ, "ପ୍ରିୟେ ! ତୁମ୍ଭେ ଅତ୍ୟନ୍ତ ଅନ୍ୟାୟ କରିଅଛ । ତୁମ୍ଭର ପୁତ୍ର ଅତି ଦୁର୍ଦ୍ଦାନ୍ତ କ୍ଷତ୍ରିୟ ହେବ ଏବଂ ତୁମ୍ଭର ଭ୍ରାତା ପରମଧାର୍ମିକ ବ୍ରାହ୍ମଣ ହେବ" ॥

---

ଋଚୀକ ପତ୍ନୀ ଋତୁକାଳେ
ବସିରି କରି ମୁନିଦେଶେ
ଯଜ୍ଞ ଆରମ୍ଭି ପୁତ୍ର ଅର୍ଥେ
ଚରୁ ସାଧିଲି ବେଦ ମନ୍ତ୍ରେ
ଶାଶୁ କ୍ଷତ୍ରଯା ଅର୍ଥେ ବେନି
ଚରୁ ସାଧିଲି ମହାମୁନି
ଚରୁ ସେ ଦେଇ ପତ୍ନୀ ହସ୍ତେ
ଋଚୀକ ଗଲେ ସ୍ନାନ ଅର୍ଥେ ।୮।
ଯେ ଚରୁ କରିଲି ମହାତ୍ମା
ଶୁଣ ସେ ଚରୁର ମହିମା
ଏକ କ୍ଷତ୍ରିୟ ବିପ୍ର ଏକ
ସେ ଚରୁ କ୍ଷପସ୍ୱିତ ଦେଖ

ସତ୍ୟବତୀର ମୁଖ ଚାହିଁ
ମାତା ବୋଲଇ ଶୁଣ ବହି
ତୋ ଚରୁ ମୋର ହସ୍ତେ ଦିଅ
ମୋ ଭାବେ ଯେବେ କରୁ ସ୍ନେହ
ଏମନ୍ତେ ମାତା ମୁଖୁଁ ଶୁଣି
ତକ୍ଷଣେ ତାହାର ଦୁଲଣୀ
ଆପଣା ଚରୁ ମାତା ହସ୍ତେ
ଦେଲା ସେ ମାତା ପ୍ରିୟ ଅର୍ଥେ
ଚରୁ ଭକ୍ଷିଲେ ବେନି ନାରୀ
ଏବେ ହୋ ଶୁଣ ଦଣ୍ଡଧାରି ।।୯।
ଋଚୀକ ସ୍ନାନ ସାରି ଗଲେ
ଗୃହେ ମିଳିଲେ ସନ୍ଧିକାଳେ

ମିଳିଲେ ସତ୍ୟବତୀ ସଙ୍ଗେ
ପ୍ରଚଣ୍ଡ ତେଜ ତାର ଅଙ୍ଗେ
ନିକଟେ ବସି ନ ପାରଇ
ବୋଲଇ ପତ୍ନୀମୁଖ ଚାହିଁ
ତୁ ଘୋର କର୍ମ କର୍ଷୁ କଲୁ
ତୋ ଚରୁ ମାତା ହସ୍ତେ ଦେଲୁ
ପ୍ରଚଣ୍ଡ ହୋଇବ ତୋ ସୁତ
ତା ତେଜେ କମ୍ପିବ ଜଗତ
ଭ୍ରାତା ହୋଇବ ବ୍ରହ୍ମମୁନି
କ୍ରୋଧ ଶମ ଦମ ଘେନି ।୧୦।

ପ୍ରସାଦିତଃ ସତ୍ୟବତ୍ୟା ମୈବଂ ଭୂରିତି ଭାର୍ଗବଃ ।
ଅଥ ତର୍ହି ଭବେତ୍ ପୌତ୍ରୋ ଜମଦଗ୍ନିସ୍ତତୋ ଽଭବତ୍ ।୧୧।
ସା ଚାଭୂତ୍ ସୁମହତ୍ପୁଣ୍ୟା କୌଶିକୀ ଲୋକପାବନୀ ।
ରେଣୋଃ ସୁତାଂ ରେଣୁକାଂ ବୈ ଜମଦଗ୍ନିରୁବାହ ଯାମ୍ ।୧୨।
ତସ୍ୟାଂ ବୈ ଭାର୍ଗବଋଷେଃ ସୁତା ବସୁମଦାଦୟଃ ।
ଯବୀୟାନ୍ ଜଜ୍ଞ ଏତେଷାଂ ରାମ ଇତ୍ୟଭିବିଶ୍ରୁତଃ ।୧୩।
ଯମାହୁର୍ବାସୁଦେବାଂଶଂ ହୈହୟାନାଂ କୁଳାନ୍ତକମ୍ ।
ତ୍ରିଃସପ୍ତକୃତ୍ୱୋ ଯ ଇମାଂ ଚକ୍ରେ ନିଃକ୍ଷତ୍ରିୟାଂ ମହୀମ୍ ।୧୪।

---

ଏହା ଶ୍ରବଣ କରି ସତ୍ୟବତୀ କହିଲେ, "ହେ ମୁନି ! ଏହା ଯେପରି ନ ହୁଏ, ତାହା କରିବାକୁ ମୁଁ ପ୍ରାର୍ଥନା କରୁଅଛି ।" ତହୁଁ ଋଷି କହିଲେ, "ତୁମ୍ଭର ନାତି ଉକ୍ତ ବଣିଷ୍ଟ ରାଜା ହେବ ।" ତଦନନ୍ତର ସତ୍ୟବତୀଙ୍କ ଗର୍ଭରେ ଜମଦଗ୍ନି ଜନ୍ମଗ୍ରହଣ କରିଥିଲେ ।୧୧।

ସେହି ସତ୍ୟବତୀ ଲୋକପାବନୀ କୌଶିକୀ ନଦୀ ହୋଇଥିଲେ । ଜମଦଗ୍ନି ରେଣୁର କନ୍ୟା ରେଣୁକାଙ୍କୁ ବିବାହ କରିଥିଲେ ।୧୨।

ରେଣୁକାଙ୍କ ଗର୍ଭରେ ଜମଦଗ୍ନିଙ୍କର ବସୁମଦ ପ୍ରଭୃତି ବହୁପୁତ୍ର ଜନ୍ମିଥିଲେ । ସେମାନଙ୍କ ମଧ୍ୟରୁ କନିଷ୍ଠ ପୁତ୍ର ରାମ ନାମରେ ବିଖ୍ୟାତ ହୋଇଥିଲେ । ହୈହୟ କୁଳକ୍ଷୟକାରୀ ଏହି ରାମଙ୍କୁ ବାସୁଦେବଙ୍କର ଅଂଶ ବୋଲି ପଣ୍ଡିତମାନେ କୀର୍ତ୍ତନ କରିଥାନ୍ତି । ସେହି ରାମ ଏକୋଇଶ ଥର ପୃଥିବୀକୁ କ୍ଷତ୍ରିୟଶୂନ୍ୟ କରିଥିଲେ ।୧୩, ୧୪।

---

ତା ଶୁଣି ସତ୍ୟବତୀ ହେଲେ
ପଡ଼ିଲେ ସ୍ୱାମିପାଦ ତଳେ
କହନ୍ତି କପାଳେ ଦେଇ ହସ୍ତ
ପ୍ରଚଣ୍ଡ ନୋହୁ ମୋର ସୁତ
ଋଚୀକ ଶୁଣି ତା ବଚନ
ଭବିଷ୍ୟ ଘୁମାଇଲେ ମନେ
ହୋଇବେ ସୁତ ତୋ ସୁତର
ହେବ କ୍ଷତ୍ରିୟ ମହାଘୋର
ଏମନ୍ତ ଋଚୀକ ବଚନେ
ପୁତ୍ର ଜନ୍ମିଲା ବିପ୍ର ବର୍ଣ୍ଣେ

ତାହାର ଜମଦଗ୍ନି ନାମ
ତେଜେ ବିରାଜେ ଅଗ୍ନି ସମ ।୧୧।
ପୁତ୍ର ପ୍ରସବି ସତ୍ୟବତୀ
ଭଜିଲା ନଦୀଙ୍କର ଗତି
ସେ ନଦୀ ରୂପେ ବହିଗଲା
କୌଶିକୀ ନାମ ପୁଣ୍ୟଜଳା
ରେଣୁକା ରେଣୁର ଦୁହିତା
ପୁଣ୍ୟ ପବିତ୍ର ଶୁଦ୍ଧଚିତ୍ତା
ଅତି ସୁନ୍ଦରୀ ସୁକୁମାରୀ
ସେ କନ୍ୟା ଜମଦଗ୍ନି ବରି

ତା ଗର୍ଭେ ଜମଦଗ୍ନି ବୀର୍ଯ୍ୟେ
ପୁତ୍ର ଜନ୍ମିଲେ ବିଷ୍ଣୁ ତେଜେ
ବସୁମଦାଦି ପୁତ୍ର ଭୁଲେ
ପରଶୁରାମ ଉପୁଜିଲେ
ସେ ବାସୁଦେବ ଅଂଶେ ଏକ
ହୈହୟ ରାଜା କୁଳାନ୍ତକ
ପରଶୁ ଦକ୍ଷ ହସ୍ତେ ଧରି
କୋପେ ବୁଲଇ ବସୁନ୍ଧରୀ
ଯେ ଦୁଷ୍ଟ କ୍ଷତ୍ରିୟ ରାଜନ
ବ୍ରାହ୍ମଣେ ନ କରନ୍ତି ମାନ୍ୟ

ଦୃପ୍ତଂ କ୍ଷତ୍ରଂ ଭୃଗୁରଜୈରମନ୍ଦ୍ରହ୍ମଣ୍ୟମନୀନଶତ୍ ।
ରଜସ୍ତମୋବୃତମହନ୍ ଫଲ୍ଗୁନ୍ୟପି କୃତେଽଂହସି । ୧୫ ।

ଶ୍ରୀ ରାଜୋବାଚ

କିଂ ତଦଂହୋ ଭଗବତୋ ରାଜନ୍ୟୈରଜିତାତ୍ମଭିଃ ।
କୃତଂ ଯେନ କୁଳଂ ନଷ୍ଟଂ କ୍ଷତ୍ରିୟାଣାମଭୀକ୍ଷ୍ଣଶଃ । ୧୬ ।

ଶ୍ରୀ ବାଦରାୟଣିରୁବାଚ

ହୈହୟାନାମଧିପତିରର୍ଜ୍ଜୁନଃ କ୍ଷତ୍ରିୟର୍ଷଭଃ ।
ଦତ୍ତଂ ନାରାୟଣାଂଶାଂଶମାରାଧ୍ୟ ପରିକର୍ମ୍ମଭିଃ । ୧୭ ।
ବାହୂନ୍ ଦଶଶତଂ ଲେଭେ ଦୁର୍ଦ୍ଧର୍ଷତ୍ୱମରାତିଷୁ ।
ଅବ୍ୟାହତେନ୍ଦ୍ରିୟୌଜଃ ଶ୍ରୀତେଜୋବୀର୍ଯ୍ୟଯଶୋବଲମ୍ ।୧୮।

---

କ୍ଷତ୍ରିୟଜାତି ରଜଃ ଓ ତମ ଗୁଣାନ୍ୱିତ ହୋଇ ଗର୍ବିତ ଓ ବେଦ ବହିର୍ଭୂତ ହୋଇ ପୃଥିବୀର ଭାର ସ୍ୱରୂପ ହୋଇ ପଡ଼ିଥିଲେ । ତେଣୁ ସାମାନ୍ୟ ଅପରାଧରେ ସୁଦ୍ଧା ପରଶୁରାମ ସେମାନଙ୍କୁ ବିନାଶ କରିଥିଲେ ।୧୫।

ରାଜା ପରୀକ୍ଷିତ କହିଲେ :—

ହେ ବ୍ରହ୍ମନ୍ ! ଅଜିତେନ୍ଦ୍ରିୟ କ୍ଷତ୍ରିୟମାନେ ପରଶୁରାମଙ୍କ ନିକଟରେ କେଉଁ ଅପରାଧ କରିଥିଲେ ଯେଉଁ କାରଣରୁ ସେ ବାରମ୍ବାର କ୍ଷତ୍ରିୟବଂଶ ବିନାଶ କରିଥିଲେ ତାହା କହନ୍ତୁ ।୧୬।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ହୈହୟ କ୍ଷତ୍ରିୟମାନଙ୍କ ମଧ୍ୟରେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଶ୍ରେଷ୍ଠ, ସେ ପରିଚର୍ଯ୍ୟାଦ୍ୱାରା ନାରାୟଣଙ୍କର ଅଂଶ ସ୍ୱରୂପ ଭଗବାନ୍ ଦତ୍ତାତ୍ରେୟଙ୍କ ଅନୁଗ୍ରହ ଲାଭ କରିଥିଲେ । ଦତ୍ତାତ୍ରେୟଙ୍କ ପ୍ରସାଦରୁ ତାହାଙ୍କର ସହସ୍ରବାହୁ ହୋଇଥିଲା, ସେ ଦେବତାମାନଙ୍କ ମଧ୍ୟରେ ଦୁର୍ଜ୍ଜୟ ହୋଇଥିଲେ । ଅପ୍ରତିହତ ଇନ୍ଦ୍ରିୟଶକ୍ତି, ସମୃଦ୍ଧି, ସମ୍ପଦ, ପ୍ରଭାବ, ପ୍ରତିପତ୍ତି, ବଳବୀର୍ଯ୍ୟ, ଯଶ, ଯୋଗୈଶ୍ୱର୍ଯ୍ୟ ଲାଭ କରିଥିଲେ ।

---

କ୍ଷତ୍ରିୟଗର୍ବେ ମତ୍ତେ ଭୂମେ
ଆବୃତ୍ତ ହୋଇ ରଜ ତମେ
ତ୍ରିସପ୍ତ ବାର ସେ ଭ୍ରମିଲ
ଧରଣୀ କ୍ଷତ୍ରିହୀନ କଲ ।୧୩-୧୫

ରାଜୋବାଚ—

ହେ ମୁନି ! କହ ମୋ ଅଗତେ
କୃଷ୍ଣ କ୍ଷତ୍ରିୟ ଏ ଜଗତେ
କ୍ଷତ୍ରିୟ ହଇହୟ ବଂଶ
କଶ୍ୟା ବସ୍ତୁରେ କଲେ ଦୋଷ
ଯେ ଦୋଷେ କରେ ଶସ୍ତ୍ର ଧରି
ନିକ୍ଷତ୍ର କଲେ ବସୁନ୍ଧରୀ ।୧୬।

ଶ୍ରୀଶୁକ ଉବାଚ—

କହନ୍ତି ଶୁକ ମୁନିବର
ଶୁଣ ହେ ଭରତ କୁମର
ଅର୍ଜ୍ଜୁନ ନାମେ ବୀର ଅଂଶେ
ଜନ୍ମିଲ ହୈହୟର ବଂଶେ
ଦତ୍ତ ଯେ ନାରାୟଣ ଅଂଶ
ତା ପାଦେ ହୋଇଲ ବିଶ୍ୱାସ
ଅନେକ ଆରାଧନା କଲ
ସେ ତାଙ୍କୁ ତୋଷେ ବର ଦେଲ
ଭୁଜ ସହସ୍ର ବଳେ ଧରି
ତେଜ ସାମର୍ଥ୍ୟ ଯଶ ଶିରୀ

ଯୋଗେଶ୍ୱରତ୍ୱମୈଶ୍ୱର୍ଯ୍ୟଂ ଗୁଣା ଯତ୍ରାଣିମାଦୟଃ ।
ଚଚାରାବ୍ୟାହତଗତିର୍ଲୋକେଷୁ ପବନୋ ଯଥା । ୧୯ ।
ସ୍ତ୍ରୀରତ୍ନୈରାବୃତଃ କ୍ରୀଡ଼ନ୍ ରେବାମ୍ଭସି ମଦୋତ୍କଟଃ ।
ବୈଜୟନ୍ତୀଂ ସ୍ରଜଂ ବିଭ୍ରଦ୍‌ରୁରୋଧ ସରିତଂ ଭୁଜୈଃ । ୨୦ ।
ବିପ୍ଲାବିତଂ ସ୍ୱଶିବିରଂ ପ୍ରତିସ୍ରୋତଃସରିଜ୍ଜଲୈଃ ।
ନାମୃଷ୍ୟତ୍ ତସ୍ୟ ତଦ୍‌ବୀର୍ଯ୍ୟଂ ବୀରମାନୀ ଦଶାନନଃ । ୨୧ ।
ଗୃହୀତୋ ଲୀଲୟା ସ୍ତ୍ରୀଣାଂ ସମକ୍ଷଂ କୃତକିଲ୍‌ବିଷଃ ।
ମାହିଷ୍ମତ୍ୟାଂ ସନ୍ନିରୁଦ୍ଧୋ ମୁକ୍ତୋ ଯେନ କପିର୍ଯଥା । ୨୨ । .

---

ଅଣିମାଦି ଐଶ୍ୱର୍ଯ୍ୟ ତାଙ୍କର ବଶୀଭୂତ ହୋଇଥିଲା, ତେଣୁ ସେ ପବନତୁଲ୍ୟ ସର୍ବତ୍ର ଅପ୍ରତିହତ ଭାବରେ ଗତି କରୁଥିଲେ ।୧୭, ୧୯।

କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ମଦମତ୍ତ ହୋଇ ସ୍ତ୍ରୀମାନଙ୍କ ସହିତ ନର୍ମଦାଜଳରେ କ୍ରୀଡ଼ା କରୁଥିଲେ ଏବଂ ବୈଜୟନ୍ତୀ ମାଳା ଧାରଣ କରି ସହସ୍ର ବାହୁଦ୍ୱାରା ନର୍ମଦା ନଦୀର ସ୍ରୋତ ଅବରୋଧ କରିଥିଲେ ।୨୦।

ଏହି ସମୟରେ ବୀରତ୍ୱାଭିମାନୀ ଲଙ୍କେଶ୍ୱର ରାବଣ ଦିଗ୍‌ବିଜୟ କରିବାକୁ ବାହାରି ମାହିଷ୍ମତୀ ପୁରୀରୁ ଅନତିଦୂରରେ ଶିବିର ସ୍ଥାପନ କରିଥିଲେ ଏବଂ ନର୍ମଦା ନଦୀତୀରରେ ଦେବାର୍ଚ୍ଚନ କରୁଥିଲେ । ଜଳପ୍ରବାହ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ରୁଦ୍ଧ କରିବାରୁ ତାହା ପ୍ରତିକୂଳ ଭାବରେ ବହି ତଟଭୂମିକୁ ପ୍ଲାବିତ କରିଥିଲା ଏବଂ ରାବଣର ଶିବିରକୁ ମଧ୍ୟ ପ୍ଲାବିତ କରିଥିଲା । ରାବଣ ଏହା ସହ୍ୟକରି ନ ପାରି ଯୁଦ୍ଧପାଇଁ ଅଗ୍ରସର ହେଲା । ୨୧ ।

କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଅପରାଧୀ ରାବଣକୁ ସ୍ତ୍ରୀମାନଙ୍କ ସମ୍ମୁଖରେ ଅନାୟାସରେ ଧରି ମାହିଷ୍ମତୀ ପୁରରେ ବାନର ତୁଲ୍ୟ ଅବରୋଧ କରି ରଖିଥିଲେ, ପରେ ଅବଜ୍ଞାରେ ଛାଡ଼ି ଦେଲେ ।୨୨।

---

ଅଣିମା ଆଦି ଅଷ୍ଟ ସିଦ୍ଧି
ଲଭିଲା ଅନେକ ସମୃଦ୍ଧି ॥ ୭-୧୯
ଭ୍ରମଇ ଏ ତିନି ଭୁବନେ
ପ୍ରଚଣ୍ଡ ଯେମନ୍ତ ପବନେ
ଅନେକ ସ୍ତ୍ରୀସ୍ୱଗଣ ସଙ୍ଗେ
ବିରାଜନ୍ତ୍ କଳି ରଙ୍ଗେ
କାମିନୀ ସଙ୍ଗେ ରସ ଖେଳେ
ପଶିଲା ରେବା ନଦୀ ଜଳେ
ବଇଜୟନ୍ତୀ-ମାଳା ଗଳେ
କାମିନୀ ସଙ୍ଗେ ଜଳେ ଖେଳେ
ଜଳ ପ୍ରମତ୍ତ କ୍ରୀଡ଼ା କାଳେ
ନଦୀ ବାନ୍ଧିଲା ଭୁଜବଳେ
ଭୁଜ ଉପରେ ଭୁଜ ଦେଇ
ନଦୀ ଜଳକୁ ବନ୍ଦ କଲା ।୨୦।
ନଦୀ ବହିଲା ପ୍ରତିସ୍ରୋତେ
ବାମ ଦକ୍ଷିଣେ ଗ୍ରାମ ଯେତେ
ପର୍ବତ ଆଦି ଘୋର ବନ
ଛାଉଣି ଗଲାର ବେଢ଼ ସ୍ଥାନ
ପ୍ରଳୟ ପ୍ରାୟେ ଜଳେ ପୂରେ
କାମିନୀଗଣେ କ୍ରୀଡ଼ା କରେ
ରାବଣ ନଦୀ କୂଳେ ଥିଲା
ଜଳେ ତା ଶିବିର ବୁଡ଼ିଲା
ନ ସହି ଅର୍ଜ୍ଜୁନେ ଭେଟିଲା
ଉଦ୍ଧତ ବାକ୍ୟେ ଗାଳି ଦେଲା
ତା ଶୁଣି ସହସ୍ରା ଅର୍ଜ୍ଜୁନ
ହେଳେ ବାନ୍ଧିଲା ଦଶାନନ ।
ବାନର ପରି ପୁରେ ନେଲା
ଅବଜ୍ଞା କରି ଛାଡ଼ିଦେଲା ୨୧,୨୨।

ସ ଏକଦା ତୁ ମୃଗୟାଂ ବିଚରନ୍ ବିଜନେ ବନେ ।
ଯଦୃଚ୍ଛୟାଶ୍ରମପଦଂ ଜମଦଗ୍ନେରୁପାବିଶତ୍ । ୨୩ ।
ତସ୍ମୈ ସ ନରଦେବାୟ ମୁନିରର୍ହଣମାହରତ୍ ।
ସସୈନ୍ୟାମାତ୍ୟବାହାୟ ହବିଷ୍ମତ୍ୟା ତପୋଧନଃ । ୨୪ ।
ସ ବୈ ରତ୍ନନ୍ତୁ ତଦ୍ଦୃଷ୍ଟ୍ୱା ଆତ୍ମୈଶ୍ୱର୍ଯ୍ୟାତିଶାୟିନମ୍ ।
ତନ୍ନାଦ୍ରିୟତାଗ୍ନିହୋତ୍ର୍ୟାଂ ସାଭିଳାଷଃ ସହୈହୟଃ । ୨୫ ।
ହବିର୍ଧାନୀମୃଷେର୍ଦର୍ପାନ୍ନରାନ୍ ହର୍ତ୍ତୁମଚୋଦୟତ୍ ।
ତେ ଚ ମାହିଷ୍ମତୀଂ ନିନ୍ୟୁଃ ସବତ୍ସାଂ କ୍ରନ୍ଦତୀଂ ବଳାତ୍ । ୨୬ ।
ଅଥ ରାଜନି ନିର୍ଯାତେ ରାମ ଆଶ୍ରମମାଗତଃ ।
ଶ୍ରୁତ୍ୱା ତତ୍ ତସ୍ୟ ଦୌରାତ୍ମ୍ୟଂ ଚୁକ୍ରୋଧାହିରିବାହତଃ । ୨୭ ।

---

ଦିନେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ମୃଗୟା କରିବା ନିମନ୍ତେ ବିଜନ ଅରଣ୍ୟ ମଧ୍ୟରେ ବିଚରଣ କରୁ କରୁ ଜମଦଗ୍ନିଙ୍କ ଆଶ୍ରମରେ ଉପସ୍ଥିତ ହୋଇଥିଲେ । ୨୩।

ତପୋଧନ ମୁନି ଜମଦଗ୍ନି କାମଧେନୁ ଦ୍ୱାରା ସୈନ୍ୟ, ଅମାତ୍ୟ ବାହନାଦି ସହିତ ଆଗତ ରାଜାଙ୍କର ଅତିଥି ସତ୍କାର କରିଥିଲେ । ୨୪।

ରାଜା ନିଜର ସମ୍ପଦଠାରୁ ଏହି କାମଧେନୁକୁ ଅଧିକ ବୋଲି ମନେ କରିଥିଲେ ଏବଂ ହୋମ ଧେନୁ ପାଇବାଲାଗି ଅଭିଳାଷୀ ହୋଇଥିଲେ ଏବଂ ଋଷିଙ୍କର ଆତିଥ୍ୟରେ ପରିତୃପ୍ତି ଲାଭ କରି ନ ଥିଲେ । ୨୫।

ଅହଙ୍କାର ହେତୁ ଜମଦଗ୍ନିଙ୍କର ହୋମଧେନୁକୁ ହରଣ କରିବାଲାଗି ନିଜର ଲୋକମାନଙ୍କୁ ପ୍ରେରଣ କରିଥିଲେ । ସେମାନେ ବଳପୂର୍ବକ ରୋଦନକାରିଣୀ କାମଧେନୁକୁ ବତ୍ସା ସହିତ ମାହିଷ୍ମତୀ ପୁରୀକୁ ନେଇ ଯାଇଥିଲେ । ୨୬।

ତହୁଁ ଉତ୍ତାରୁ ରାଜା ଆଶ୍ରମରୁ ଚାଲିଯାନ୍ତେ ପରଶୁରାମ ଆଶ୍ରମକୁ ଆଗମନ କଲେ ଏବଂ ରାଜାଙ୍କର ଅନ୍ୟାୟାଚରଣ ବିଷୟ ଶ୍ରବଣ କରି ଆହତ ସର୍ପତୁଲ୍ୟ କ୍ରୁଦ୍ଧ ହୋଇଥିଲେ । ୨୭ ।

---

ଶୁଣି ଅର୍ଜ୍ଜୁନ ଏକ ଦିନେ
ମୃଗୟା କଲା ଘୋର ବନେ
ଅନେକ ବଳ ଅଶ୍ୱଯୂଥ
ରଥବର କରଣେ ଭୂଷିତେ
ବୁଲନ୍ତେ ଗିରି ଘୋରବନେ
ମିଳିଲା ଜମଦଗ୍ନି ସ୍ଥାନେ । ୨୩।
ରାଜାକୁ ଦେଖି ମୁନିଜନେ
ବସାଇ ସୁବର୍ଣ୍ଣ ଆସନେ

ପୂଜିଲେ ନାନା ଉପହାରେ
କଳ୍ପିତ ଯଜ୍ଞ ଧେନୁ କ୍ଷୀରେ
ଏବଂ ସୁବର୍ଣ୍ଣମୟ ଗୃହି
ଯେ କାମେ କାମଧେନୁ ଦୁହିଁ । ୨୪
ଅଦ୍ଭୁତ ଦେଖି ରାଜା ମନେ
ସଙ୍କୋଚେ ମନେ ମନେ ଗୁଣେ
ଭୃତ୍ୟଙ୍କୁ ରାଜ ଆଜ୍ଞା ଦେଲା
ଏ ଧେନୁ ନିଅ ହରି ବୋଇଲା

ମୁନିଙ୍କି ଅନାଦର କରି
ତକ୍ଷଣେ ଗଲା ଦଣ୍ଡଧାରୀ
ସେ ଧେନୁ ବତ୍ସା ସଙ୍ଗେ ବାନ୍ଧେ
ପଥେ ଚଳନ୍ତେ ଧେନୁ କାନ୍ଦେ ୨୫ ୨୬
ରାଜା ଚଳିଲା ନିଜ ଗ୍ରାମ
ବନେ ଯେ ଥିଲେ ପର୍ଶୁରାମ
ଯଜ୍ଞ ଆହୁତ ଭଙ୍ଗ ଶୁଣି
ଗୃହେ ମିଳିଲେ ଭୃଗୁ ମଣି

ଘୋରମାଦାୟ ପରଶୁଂ ସତୂଣଂ ବର୍ମ୍ମ କାର୍ମ୍ମୁକମ୍ ।
ଅନ୍ୱଧାବତଦୁର୍ମ୍ମର୍ଷୋ ମୃଗେନ୍ଦ୍ର ଇବ ଯୂଥପମ୍ । ୨୮ ।
ତମାପତନ୍ତଂ ଭୃଗୁବର୍ଯ୍ୟମୋଜସା ଧନୁର୍ଦ୍ଧରଂ ବାଣପରଶ୍ୱଧାୟୁଧମ୍ ।
ଐଣେୟଚର୍ମ୍ମାମ୍ବରମର୍କଧାମଭିର୍ଯୁତଂ ଜଟାଭିର୍ଦଦୃଶେ ପୁରୀଂ ବିଶନ୍ । ୨୯ ।
ଅଚୋଦୟଦ୍ଧସ୍ତିରଥାଶ୍ୱପତ୍ତିଭିର୍ଗଦାସିବାଣର୍ଷ୍ଟି ଶତଘ୍ନି ଶକ୍ତିଭିଃ ।
ଅକ୍ଷୌହିଣୀଃ ସପ୍ତଦଶାତିଭୀଷଣାସ୍ତା ରାମ ଏକୋ ଭଗବାନସୂଦୟତ୍ ।୩୦।
ଯତୋ ଯତୋଽସୌ ପ୍ରହରତ୍ପରଶ୍ୱଧୋ ମନୋଽନିଲୌଜାଃ ପରଚକ୍ରସୂଦନଃ ।
ତତସ୍ତତଶ୍ଛିନ୍ନଭୁଜୋରୁକନ୍ଧରା ନିପେତୁରୁର୍ବ୍ୟାଂ ହତସୂତବାହନାଃ । ୩୧ ।

---

ସିଂହ ଯେପରି ହସ୍ତୀକୁ ଆକ୍ରମଣ କରେ ସେହିପରି ଅତ୍ୟନ୍ତ କ୍ରୁଦ୍ଧ ପରଶୁରାମ ଭୟଙ୍କର ପରଶୁ ( କୁଠାର ), ତୂଣଯୁକ୍ତ ଧନୁର୍ବାଣ, ବର୍ମ ପ୍ରଭୃତି ଗ୍ରହଣ କରି ରାଜାଙ୍କର ପଶ୍ଚାଦିଗରେ ଧାବିତ ହୋଇଥିଲେ ।୨୮।

ରାଜା ପୁରୀ ମଧ୍ୟରେ ପ୍ରବେଶ କରୁ କରୁ ଅତିଶୟ ବେଗରେ ସମାଗତ ଧନୁର୍ବାଣ, ପରଶୁ ଏବଂ ଅନ୍ୟାନ୍ୟ ଅସ୍ତ୍ରଧାରୀ କୃଷ୍ଣାଜିନ ପରିହିତ ସୂର୍ଯ୍ୟ କିରଣ ତୁଲ୍ୟ ଜଟା ପରିବୃତ, ଭୃଗୁକୁଳ ଶ୍ରେଷ୍ଠ ପରଶୁରାମଙ୍କୁ ଦେଖିଲେ ।୨୯।

ସେତେବେଳେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଗଦା, ଅସି, ବାଣ, ଋଷ୍ଟି, ଶତଘ୍ନି ଏବଂ ଶକ୍ତି ପ୍ରଭୃତି ଅସ୍ତ୍ରସହ ରଥ, ଅଶ୍ୱ, ପଦାତିଯୁକ୍ତ ସପ୍ତଦଶ ଅକ୍ଷୌହିଣୀ ସେନା ପ୍ରେରଣ କରିଥିଲେ ମାତ୍ର ପରଶୁରାମ ଏକାକୀ ସେ ସମସ୍ତଙ୍କୁ ବିନାଶ କରିଥିଲେ ।୩୦।

ମନ ଏବଂ ବାୟୁତୁଲ୍ୟ ବେଗଗାମୀ ଶତ୍ରୁ ସୈନ୍ୟ ବିନାଶରେ ନିପୁଣ ପରଶୁଧାରୀ ପରଶୁରାମ ଯେଉଁ ଆଡ଼କୁ ଗଲେ ସେହି ଦିଗରେ ଶତ୍ରୁ ସୈନ୍ୟମାନଙ୍କୁ ଅସ୍ତ୍ରଦ୍ୱାରା ଛିନ୍ନବାହୁ, ଛିନ୍ନଊରୁ, ଛିନ୍ନମସ୍ତକ, ହତାଶ୍ୱ, ହତସାରଥି କରି ଭୂତଳରେ ପକାଇଥିଲେ ।୩୧।

---

ବତ୍ସା ସହିତେ ଧେନୁ ନେଲ
ପିତାଙ୍କୁ ଅନାଦର କଲ
ଏ କଥା ଶୁଣି କୋପଭରେ
ତୀକ୍ଷ୍ଣ ପରଶୁ ଧରି କରେ
କବଚେ ଆବୋରି ଶରୀର
କନ୍ଧେ କାର୍ମ୍ମୁକ ତୀକ୍ଷ୍ଣ ଶର
ପଛେ ଧାଇଁଲେ କୋପ ମନେ
କୁଞ୍ଜରେ ଦେଖି ସିଂହ ଯେହ୍ନେ ।୨୬,୨୮

ପଛେ ଗୋଡ଼ାନ୍ତେ ପର୍ଶୁରାମ
ରାଜା ଦେଖିଲେ ଘୋର ତମ
ପରଶୁ ଦକ୍ଷ କରେ ଧରି
ହରିଣ ଚର୍ମ୍ମ ଦେହେ ଧରି
ସୂର୍ଯ୍ୟର ପ୍ରାୟେ ତେଜ ଦେହେ
କପିଳ ଜଟା ମୁଣ୍ଡେ ବହେ । ୨୯ ।
ଦେଖି ପରଶୁରାମ ତେଜ
ପଛେ ରହିଲେ ନୃପରାଜ

ସୈନ୍ୟକୁ ଗୁହି ଆଜ୍ଞା ଦେଲେ
ଅନେକ ଶସ୍ତ୍ର ପ୍ରହାରିଲେ
ଅଶ୍ୱ କୁଞ୍ଜର ସେନା ଯେତେ
ଶସ୍ତ୍ର ପେଷନ୍ତି ଅପ୍ରମିତେ
ଗଦା ଖଡ଼ଗ ଶକ୍ତି ଋଷ୍ଟି
କୋପେ କରନ୍ତି ଶସ୍ତ୍ର ବୃଷ୍ଟି
ଯୁଦ୍ଧ କରନ୍ତି କୋପ ମନେ
ସମୁଦ୍ରେ ମନ୍ଦର ଯେସନେ

ଦୃଷ୍ଟ୍ୱା ସ୍ୱସୈନ୍ୟଂ ରୁଧିରୌଘକର୍ଦ୍ଦମେ ରଣାଜିରେ ରାମକୁଠାରଶାୟକୈଃ ।
ବିବୃକ୍ଣବର୍ମ୍ମଧ୍ୱଜଚାପବିଗ୍ରହଂ ନିପାତିତଂ ହୈହୟଆପତଦ୍‌ରୁଷା । ୩୨ ।
ଅଥାର୍ଜ୍ଜୁନଃ ପଞ୍ଚଶତେଷୁ ବାହୁଭିର୍ଧନୁଃଷୁ ବାଣାନ୍ ଯୁଗପତ୍ ସ ସନ୍ଦଧେ ।
ରାମାୟ ରାମୋଽସ୍ତ୍ରଭୃତାଂ ସମଗ୍ରଣୀସ୍ତାନ୍ୟେକଧାନ୍ୱେଷୁଭିରଚ୍ଛିନତ୍ ସମମ୍ ।୩୩।
ପୁନଃ ସ୍ୱହସ୍ତୈରଚଳାନ୍ ମୃଧେଽଙ୍ଘ୍ରିପାନ୍ ଉତ୍‌କ୍ଷିପ୍ୟ ବେଗାଦଭିଧାବତୋ ଯୁଧି ।
ଭୁଜାନ୍ କୁଠାରେଣ କଠୋରନେମିନା ଚଚ୍ଛେଦ ରାମଃ ପ୍ରସଭଂ ତ୍ୱହେରିବ ।୩୪।
କୃତ୍ତବାହୋଃ ଶିରସ୍ତସ୍ୟ ଗିରେଃ ଶୃଙ୍ଗମିବାହରତ୍ ।
ହତେ ପିତରି ତତ୍‌ପୁତ୍ରା ଅଯୁତଂ ଦୁଦ୍ରୁବୁର୍ଭୟାତ୍ । ୩୫ ।

---

ରକ୍ତଦ୍ୱାରା କର୍ଦ୍ଦମମୟ ରଣକ୍ଷେତ୍ରରେ ପରଶୁରାମଙ୍କର ଅସ୍ତ୍ରାଘାତରେ ବର୍ମ ଧ୍ୱଜ ଏବଂ ଶରୀରାଦିଦ୍ୱାରା ନିଜର ସୈନ୍ୟମାନଙ୍କୁ ନିହତ ପ୍ରାୟ ଦେଖି କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ନିଜେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ୩୨ ।

କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ପାଞ୍ଚଶତ ଧନୁରେ ବାଣ ଯୋଜନା କରି ନିଜର ବହୁସଂଖ୍ୟକ ବାହୁଦ୍ୱାରା ଏକ ସମୟରେ ଶର ନିକ୍ଷେପ କରିଥିଲେ । ଅସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ପରଶୁରାମ ଏକମାତ୍ର ଧନୁ ସାହାଯ୍ୟରେ ଶର ନିକ୍ଷେପ କରି ସେହି ବାଣମାନଙ୍କୁ ଛିନ୍ନ କରିଥିଲେ ।୩୩।

ତଦନନ୍ତର କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ନିଜର ବାହୁଦ୍ୱାରା ଅସଂଖ୍ୟ ପର୍ବତ ଓ ବୃକ୍ଷ ଘେନି ମହାବେଗରେ ପରଶୁରାମଙ୍କ ଆଡ଼କୁ ଧାବିତ ହୋଇଥିଲେ ମାତ୍ର ଜମଦଗ୍ନି ସୁତ ତୀକ୍ଷ୍ଣଧାର କୁଠାରଦ୍ୱାରା ସର୍ପର ମସ୍ତକ ତୁଲ୍ୟ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କର ସହସ୍ରବାହୁ ଛେଦନ କରିଥିଲେ ।୩୪।

ପର୍ବତର ଶୃଙ୍ଗତୁଲ୍ୟ ଛିନ୍ନ ବାହୁ ଅର୍ଜ୍ଜୁନଙ୍କର ମସ୍ତକକୁ ପରଶୁରାମ କୁଠାରଦ୍ୱାରା ଛେଦନ କଲେ । ପିତାଙ୍କର ମୃତ୍ୟୁ ହେତୁରୁ ତାହାଙ୍କର ଅସଂଖ୍ୟ ପୁତ୍ର ଏଣେ ତେଣେ ପଳାଇଗଲେ ।୩୫।

---

ପରଶୁ କୁଠାରେ ପ୍ରହାର
ଅର୍ଦ୍ଧ ନିମିଷେ ସୈନ୍ୟ ମାରି
ଭୁଜ କନ୍ଧର ଉର ଛିଡି
ସର୍ବେ ପଡ଼ିଲେ ଭୂମି ମାଡ଼ି
ରୁଧିର ନଦୀ ଉଛେ ବହେ
ମାଂସ ଶୋଣିତ ମେଦମୟେ
ମଲେ କ୍ଷୌହିଣୀ ସପ୍ତଦଶ
ସହସ୍ରବାହୁ ରହେ ଶେଷ ।୩୦ ୩୨
ସୈନ୍ୟ ମରନ୍ତେ ମହାମନ୍ୟୁ
ଧଇଲା ପାଞ୍ଚଶତ ଧନୁ
ନାରାଚ ଯୋଡ଼ି ପାଞ୍ଚଶତେ
ରହିଲା ରାମର ଅଗ୍ରତେ
ବୃକ୍ଷରୁ ପତ୍ର ଯେସନ୍ତ ଝଡ଼େ
ରାମ ଉପରେ ଶସ୍ତ୍ର ପଡ଼େ
ଦେଖି ତାହାର ଶର ଗତି
ବେଗେ ଧାଇଁଲେ ଭୃଗୁପତି
କୁଠାରେ ସହସ୍ରେକ ଭୁଜ
ହେଳେ ଛେଦିଲେ ଦେବରାଜ
ତୀକ୍ଷ୍ଣ କୁଠାରେ ମୁଣ୍ଡ ହାଣି
ପୂରା ଭିଡ଼ିଲେ ଧରଣୀ
ପିତା ମରଣ ପୁତ୍ରେ ଦେଖି
ଭାଜିଲେ ସମର ଉପେକ୍ଷି ।୩୩-୩୪
ରାମ ସଂହରି ମହାମନ୍ୟୁ
ଅଛେଦେ କରି ଯଜ୍ଞ ଧେନୁ
ଆନନ୍ଦ ମନେ ଯଜ୍ଞ ବାଟେ
ମିଳିଲେ ପିତାର ନିକଟେ
ପିତା ସମୀପେ ଧେନୁ ଦେଇ
ଚରଣେ ଗଡ଼ଗଲେ ଶୋଇ
ସଙ୍ଗତେ ଘେନି ତିନି ଭ୍ରାତେ
ଯୁଦ୍ଧ କରଣ କଥା ଯେତେ

ଅଗ୍ନିହୋତ୍ରୀମୁପାବର୍ତ୍ତ୍ୟ ସବତ୍ସାଂ ପରବୀରହା ।
ସମୁପେତ୍ୟାଶ୍ରମଂ ପିତ୍ରେ ପରିକ୍ଲିଷ୍ଟାଂ ସମର୍ପୟତ୍ । ୩୬ ।
ସ୍ୱକର୍ମ ତତ୍ କୃତଂ ରାମଃ ପିତ୍ରେ ଭ୍ରାତୃଭ୍ୟ ଏବ ଚ ।
ବର୍ଣ୍ଣୟାମାସ ତତ୍ ଶ୍ରୁତ୍ୱା ଜମଦଗ୍ନିରଭାଷତ । ୩୭ ।
ରାମ ରାମ ମହାବାହୋ ଭବାନ୍ ପାପମକାରଷୀତ୍ ।
ଅବଧୀନ୍ନରଦେବଂ ଯତ୍ ସର୍ବଦେବମୟଂ ବୃଥା । ୩୮ ।
ବୟଂ ହି ବ୍ରାହ୍ମଣାସ୍ତାତ କ୍ଷମୟାର୍ହଣତାଂ ଗତାଃ ।
ଯୟା ଲୋକଗୁରୁର୍ଦ୍ଦେବଃ ପାରମେଷ୍ଠ୍ୟମଗାତ୍ ପଦମ୍ । ୩୯ ।
କ୍ଷମୟା ରୋଚତେ ଲକ୍ଷ୍ମୀର୍ବ୍ରାହ୍ମୀ ସୌରୀ ଯଥା ପ୍ରଭା ।
କ୍ଷମିଣାମାଶୁ ଭଗବାଂସ୍ତୁଷ୍ୟତେ ହରିରୀଶ୍ୱରଃ । ୪୦ ।

---

ଶତ୍ରୁଘାତୀ ପରଶୁରାମ ସବତ୍ସା କାମଧେନୁକୁ ନେଇ ଆଶ୍ରମକୁ ଆଗମନ କରି ପିତାଙ୍କ ନିକଟରେ ସମର୍ପଣ କରିଥିଲେ ।୩୬।

ପରଶୁରାମ ପିତା ଓ ଭ୍ରାତାମାନଙ୍କ ନିକଟରେ ନିଜକୃତ ସମସ୍ତ କାର୍ଯ୍ୟ ବର୍ଣ୍ଣନା କରିଥିଲେ । ଜମଦଗ୍ନି ତାହା ଶ୍ରବଣକରି କହିଲେ, "ହେ ରାମ ! ହେ ରାମ ! ହେ ମହାବାହୁ ! ତୁମ୍ଭେ ଏହି ସର୍ବଦେବ ମୂର୍ତ୍ତି ରାଜାଙ୍କୁ ନିହତକରି ପାପକରିଅଛ । ବତ୍ସ ! ଆମ୍ଭେମାନେ ବ୍ରାହ୍ମଣ କ୍ଷମାଗୁଣ ଅମ୍ଭମାନଙ୍କର ଭୂଷଣ, କ୍ଷମାଗୁଣଦ୍ୱାରା ଆମ୍ଭେମାନେ ପୂଜିତ, କ୍ଷମାଗୁଣ ହେତୁ ବ୍ରହ୍ମା ଲୋକଗୁରୁ ହୋଇ ପରମେଷ୍ଠି ପଦଲାଭ କରିଅଛନ୍ତି । ହେ ବତ୍ସ ! କ୍ଷମା ଗୁଣଦ୍ୱାରା ସୂର୍ଯ୍ୟତେଜ ତୁଲ୍ୟ ବ୍ରହ୍ମଶ୍ରୀ ପ୍ରାପ୍ତ ହୁଏ । କ୍ଷମାଶୀଳ ବ୍ୟକ୍ତି ପ୍ରତି ଭଗବାନ୍ ଆଶୁ ସନ୍ତୁଷ୍ଟ ହୁଅନ୍ତି । ହେ ପୁତ୍ର ! ଅଭିଷିକ୍ତ କ୍ଷତ୍ରିୟ ରାଜାଙ୍କର ବଧସାଧନ

---

କହିଲେ ପିତାର ଅଗ୍ରତେ
ତା ଶୁଣି ପିତା ତୋଷ ଚିତ୍ତେ
ବୋଇଲେ ରାମର ଅଗ୍ରତେ
ହେ ପୁତ୍ର ଶୁଣ ଏକଚିତ୍ତେ ।୩୬-୩୭
ହେ ରାମ ! ରାମ ! ମହାବାହୁ !
ଶୁଣ ସୁମନେ ତୋତେ କହୁଁ
ଶୁଭ ଅଶୁଭ ତୁ ନ ଜାଣି
ପାପ ତୁ କଲୁ ରାଜା ହାଣି
ସର୍ବଦେବତା ନୃପ ଦେହେ
ବସନ୍ତି ସୂର୍ଯ୍ୟତେଜ୍ୟାତପ୍ରାୟେ ।୩୮
ଆମ୍ଭେ ଯେ ଜାତିରେ ବ୍ରାହ୍ମଣ
ସ୍ୱଭାବେ କ୍ଷମା ଆଚରଣ
ବ୍ରହ୍ମା ଯେ ସର୍ବଦେବ ଗୁରୁ
କ୍ଷମା ପୂରିତ ଯେହ୍ନେ ମେରୁ
ତେଣୁ ବସିଲେ ସତ୍ୟ ଲୋକେ
ଅଶେଷ ଲକ୍ଷ୍ମୀ ଭୁଞ୍ଜେ ଏକେ
କ୍ଷମା ଯାହାର ହୃଦେ ରହେ
ବିଷ୍ଣୁ ବସନ୍ତି ତାର ଦେହେ
ଏଣୁ ଯେ ନୃପ ବଧ କଲେ
ଦୁରିତୁଁ କେବେହେଁ ନ ଟଳେ
ଏବେ ତୁ ତୀର୍ଥ ସେବା କରୁ
ତୋଠାରୁ ପାପ ହେବ ଦୂରୁ

ରାଜ୍ଞୋ ମୂର୍ଦ୍ଧାଭିଷିକ୍ତସ୍ୟ ବଧୋ ବ୍ରହ୍ମବଧାଦ୍‌ଗୁରୁଃ ।
ତୀର୍ଥସଂସେବୟା ଚାଂହୋ ଜହ୍ୟଙ୍ଗାଚ୍ୟୁତଚେତନଃ । ୪୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ପରଶୁରାମଚରିତେ ନାମ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

ବ୍ରହ୍ମହତ୍ୟା ଅପେକ୍ଷା ଗୁରୁତର ପାପ, ତେଣୁ ମୁଁ କହୁଅଛି ଭଗବାନଙ୍କଠାରେ ଚିତ୍ତ ସମର୍ପଣ କରି ପୁଣ୍ୟତୀର୍ଥ ପର୍ଯ୍ୟଟନ କରି ପାପକ୍ଷାଳନ କର । ୩୭, ୪୧ ।

---

ଚିତ୍ତେ ଚିନ୍ତୁ ନାରାୟଣ
ଅନ୍ୟଥା ନାହିଁ ପରିତ୍ରାଣ ।୩୯-୪୧
ବୋଲଇ ବିପ୍ର ଜଗନ୍ନାଥ
ନବମ ବଂଶାନୁଚରିତ

ପରଶୁରାମର କାହାଣୀ
ଯେ ନର ଶ୍ରୁତି ପଥେ ଶୁଣି
ନରକ ପଥେ ନାହିଁ ଭ୍ରାନ୍ତି
ଶୁଣିଲେ ସଂସାରୁ ତରନ୍ତି ॥



## ଷୋଡ଼ଶୋଽଧ୍ୟାୟଃ

ଷୋଡ଼ଶେଽର୍ଜ୍ଜୁନ ସୁତୈର୍ଜ୍ଜମଦଗ୍ନୌ ହତେ ମୁହୁଃ ।
ରାମାତ୍ କ୍ଷତ୍ରବଧଃ ପ୍ରୋକ୍ତୋ ବିଶ୍ୱାମିତ୍ରସ୍ୟ ଚାନ୍ୱୟଃ ॥ ୦ ॥ ( ଶ୍ରୀଧରସ୍ୱାମୀ )

---

## ପରଶୁରାମଙ୍କର କ୍ଷତ୍ରିୟବଂଶ ବିନାଶ

ଷୋଡ଼ଶ ଅଧ୍ୟାୟରେ କାର୍ତ୍ତବୀର୍ଯ୍ୟଙ୍କ ସୁତ ଜମଦଗ୍ନିଙ୍କୁ ସଂହାର କରନ୍ତେ ପରଶୁରାମ କ୍ରୋଧ ପରବଶ ହୋଇ କ୍ଷତ୍ରିୟବଂଶ ବିନାଶ କରିବା ଏବଂ ବିଶ୍ୱାମିତ୍ରଙ୍କର ବଂଶ ବର୍ଣ୍ଣନା କରାଯାଇଅଛି ॥ ୦ ॥

---

ଷୋଡ଼ଶେ କାର୍ତ୍ତବୀର୍ଯ୍ୟ ସୁତ, ଜମଦଗ୍ନିଙ୍କୁ କଲେ ହତ ।
ପରଶୁରାମ କୋପ ବହି, ନିଃକ୍ଷତ୍ର କରିଲେ ମହୀ ॥

ଶ୍ରୀ ଶୁକ ଉବାଚ ।

ପିତ୍ରୋପଶିକ୍ଷିତୋ ରାମସ୍ତଥେତି କୁରୁନନ୍ଦନ ।
ସଂବତ୍ସରଂ ତୀର୍ଥଚର୍ଯ୍ୟାଂ ଚରିତ୍ୱାଶ୍ରମମାବ୍ରଜତ୍ । ୧ ।
କଦାଚିଦ୍ରେଣୁକା ଯାତା ଗଙ୍ଗାୟାଂ ପଦ୍ମମାଳିନମ୍ ।
ଗନ୍ଧର୍ବରାଜଂ କ୍ରୀଡ଼ନ୍ତମପ୍ସରୋଭିରପଶ୍ୟତ । ୨ ।
ବିଲୋକୟନ୍ତୀ କ୍ରୀଡ଼ନ୍ତମୁଦକାର୍ଥଂ ନଦୀଂ ଗତା ।
ହୋମବେଳାଂ ନ ସସ୍ମାର କିଞ୍ଚିଚ୍ଚିତ୍ରରଥସ୍ପୃହା । ୩ ।
କାଳାତ୍ୟୟଂ ତଂ ବିଲୋକ୍ୟ ମୁନେଃ ଶାପବିଶଙ୍କିତା ।
ଆଗତ୍ୟ କଳସଂ ତସ୍ଥୌ ପୁରୋଧାୟ କୃତାଞ୍ଜଳିଃ । ୪ ।

---

ଶ୍ରୀ ଶୁକଦେବ କହିଲେ :—

ହେ କୁରୁନନ୍ଦନ ! ପରଶୁରାମ ପିତାଙ୍କର ଆଜ୍ଞା ପାଳନ କରି ସମ୍ବତ୍ସର ପର୍ଯ୍ୟନ୍ତ ତୀର୍ଥ ଭ୍ରମଣ କରି ଉତ୍ତାରୁ ଆଶ୍ରମକୁ ଫେରି ଆସିଥିଲେ ।୧।

ସେହି ସମୟରେ ରେଣୁକା ଗଙ୍ଗାରେ ସ୍ନାନ କରିବାକୁ ଗମନ କରି ଅପ୍ସରାମାନଙ୍କ ମଧ୍ୟରେ କ୍ରୀଡ଼ା କରୁଥିବା ପଦ୍ମମାଳାଧାରୀ ଗନ୍ଧର୍ବରାଜ ଚିତ୍ରରଥଙ୍କୁ ଦେଖିଲେ ।୨।

ରେଣୁକା ଜଳ ଆଣିବାକୁ ଯାଇଁ ଚିତ୍ରରଥଙ୍କ ପ୍ରତି ଅନୁରାଗଯୁକ୍ତ ହୋଇ ରହିଁ ରହିଲେ, ଏଣେ ହୋମବେଳା ଅତିକ୍ରମ ହେଉଅଛି ତାହା ଜାଣିପାରିଲେ ନାହିଁ ।୩।

ହୋମ ସମୟ ଅତିକ୍ରମ ହୋଇଅଛି ପରେ ଜାଣିପାରି ମୁନିଙ୍କ ଅଭିଶାପ ଭୟରେ ଅତ୍ୟନ୍ତ ଭୀତା ହୋଇ ଆଶ୍ରମକୁ ଆଗମନ କଲେ ଏବଂ ମୁନିଙ୍କ ସମ୍ମୁଖରେ କଳସ ସ୍ଥାପନ କରି କୃତାଞ୍ଜଳି ପୁଟରେ ଦଣ୍ଡାୟମାନ ହେଲେ ।୪।

---

ଶ୍ରୀ ଶୁକ ଉବାଚ—

ଏବେ ହୋ ଶୁଣ ନରନାଥ !
ପରଶୁରାମର ଚରିତ
ପିତା ବଚନେ ବନେ ଗଲେ
ଅନେକ ତୀର୍ଥେ ସ୍ନାନ କଲେ
ପୁଣି ସେ ବରଷକ ଅନ୍ତେ
ଗୃହେ ମିଳିଲେ ଶୁଦ୍ଧଚିତ୍ତେ
ପିତା ଚରଣେ ନମସ୍କାର
କରି ରହିଲେ ନିଜ ପୁର ।୧।

ଏବେ ହୋ ଶୁଣ ନୃପମଣି !
ରେଣୁକା ଗଲେ ନୀର ଆଣି
ଗଙ୍ଗାର ନିକଟେ ମିଳିଲେ
ସେ ଜଳେ ଗନ୍ଧର୍ବ ଦେଖିଲେ
ଇନ୍ଦ୍ର କୁମର ଚିତ୍ରରଥ
ସଙ୍ଗତେ ଘେନି ନାରୀ ଯୂଥ
ଅପ୍ସରାଗଣ ଘେନି ଜଳେ
କ୍ରୀଡ଼ା ସେ କରେ କୁତୂହଳେ
ଦଣ୍ଡେ ରହିଲ ତାହା ଦେଖି
ଜଳ ଆଣିବା ସେ ଉପେକ୍ଷି

ହୋମର ବେଳ ନ ସୁମରି
ଗନ୍ଧର୍ବେ ଅଳ୍ପ ସ୍ନେହ କରି
ପୁଣି କ୍ଷଣକେ ଜ୍ଞାନ ପାଇ
ତକ୍ଷଣେ ଜଳ କୁମ୍ଭ ନେଇ
ସ୍ୱାମୀଙ୍କ ଶଙ୍କା ମନେ କଲେ
ତକ୍ଷଣେ ମନ୍ଦିରେ ମିଳିଲେ
ଜଳ କଳସ ଯଜ୍ଞ ଘରେ
ଥୋଇଲେ ମୁନିଙ୍କ ଗୋଚରେ
ଅଞ୍ଜଳି କରି ବେଢ଼ି କରେ
ରେଣୁକା ରହେ ଯଜ୍ଞଘରେ ।୨-୪

ବ୍ୟଭିଚାରଂ ମୁନିର୍ଜ୍ଞାତ୍ୱା ପତ୍ନ୍ୟାଃ ପ୍ରକୁପିତୋଽବ୍ରବୀତ୍ ।
ଘ୍ନତୈନାଂ ପୁତ୍ରକାଃ ପାପାମିତ୍ୟୁକ୍ତାସ୍ତେ ନ ଚକ୍ରିରେ । ୫ ।
ରାମଃ ସଞ୍ଚୋଦିତଃ ପିତ୍ରା ଭ୍ରାତୃନ୍ ମାତ୍ରା ସହାବଧୀତ୍ ।
ପ୍ରଭାବଜ୍ଞୋ ମୁନେ ସମ୍ୟକ୍ ସମାଧେସ୍ତପସଶ୍ଚ ସଃ । ୬ ।
ବରେଣ ଛନ୍ଦୟାମାସ ପ୍ରୀତଃ ସତ୍ୟବତୀସୁତଃ ।
ବବ୍ରେ ହତାନାଂ ରାମୋଽପି ଜୀବିତଞ୍ଚାସ୍ମୃତିଂ ବଧେ । ୭ ।
ଉତ୍ତସ୍ଥୁସ୍ତେ କୁଶଳିନୋ ନିଦ୍ରାପାୟ ଇବାଞ୍ଜସା ।
ପିତୁର୍ବିଦ୍ୱାଂସ୍ତପୋବୀର୍ଯ୍ୟଂ ରାମଶ୍ଚକ୍ରେ ସୁହୃଦ୍ବଧମ୍ । ୮ ।

---

ମୁନି ଜମଦଗ୍ନି ସ୍ତ୍ରୀର ମନର ସ୍ଥୈର୍ଯ୍ୟ ବିଷୟ ଜାଣିପାରି ଅତି କ୍ରୋଧରେ ପୁତ୍ରମାନଙ୍କୁ କହିଲେ ଏହି ପାପିୟସୀକୁ ବିନାଶ କର, ମାତ୍ର ପୁତ୍ରମାନେ ଏ ଆଦେଶ ପାଳନ କଲେ ନାହିଁ ।୫।

ପିତାଙ୍କର ଏହି ଆଦେଶ ଶ୍ରବଣକରି ପରଶୁରାମ ପିତାଙ୍କର ତପଃପ୍ରଭାବ ଓ ସମାଧିର କ୍ଷମତା ଜାଣିପାରି ପିତାଙ୍କ ଆଦେଶ ଅନୁସାରେ ମାତା ଓ ଭ୍ରାତୃଗଣଙ୍କୁ ବଧ କରିଥିଲେ ।୬।

ପରଶୁରାମଙ୍କର ଏହି କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ଜମଦଗ୍ନି ବର ଯାଚନ୍ତେ ପରଶୁରାମ କହିଲେ, "ମୃତବ୍ୟକ୍ତି ମାନେ ଜୀବିତ ହୁଅନ୍ତୁ ଓ ମୁଁ ଯେ ସେମାନଙ୍କୁ ବଧ କରିଥିଲି ଏହା ଯେପରି ସେମାନଙ୍କର ସ୍ମରଣ ନ ରହୁ" । ୭ ।

ତତ୍‌କ୍ଷଣାତ୍ ମୃତବ୍ୟକ୍ତିମାନେ ନିଦ୍ରାରୁ ଉଠିଲାପରି ସୁସ୍ଥଶରୀରହୋଇ ଉଠିବସିଲେ । ପରଶୁରାମପିତାଙ୍କର ତପସ୍ୟାର ଅମୋଘଶକ୍ତି ଜାଣୁଥିଲେ ବୋଲି ମାତା ଓ ଭ୍ରାତାଙ୍କର ବଧ କାର୍ଯ୍ୟରେ ରତ ହୋଇଥିଲେ ।୮।

---

ରେଣୁକା ମୁଖ ଚାହିଁ ମୁନି
ପ୍ରଚଣ୍ଡ କୋପେ ଜମଦଗ୍ନି
ଜାଣିଲେ ଗନ୍ଧର୍ବର ମେଳ
ମନ କଳିଲା ଗଙ୍ଗା ଜଳ
ପୁତ୍ରଙ୍କୁ କୋପମୁଖେ ଚାହିଁ
ବୋଇଲେ ଶିର ଛେଦ ନେଇ
ଗନ୍ଧର୍ବ ଦେଖି ଏହା ମନ
କଳିଲା ତାହାର ସଙ୍ଗମ
ସ୍ୱଭାବେ ଦୁଷ୍ଟା ନାରୀ ଏହି
ଏହାର ବଦନ ନ ଚାହିଁ
ସେ ପୁତ୍ରେ ମାତୃ ସ୍ନେହ କଲେ
ମାତାର ଶିର ନ ଛେଦିଲେ ।୫।
ଅଧିକ କୋପଭରେ ହୋଇ
ବୋଲେ ପରଶୁରାମ ଚାହିଁ
ମାତା ସହିତେ ତିନି ଭାଇ
କୁଠାରେ ମୁଣ୍ଡ ଛେଦ ନେଇ
ସେ ରାମ ପିତା ଗୁଣ ଜାଣେ
ତପ ସମାଧି ପରିମାଣେ
ତକ୍ଷଣେ ପ୍ରହାରି କୁଠାର
ଛେଦିଲେ ମାତା ଭ୍ରାତା ଶିର
ତକ୍ଷଣେ ମୁନି ଶାନ୍ତ ହୋଇ
ପରଶୁରାମ ମୁଖ ଚାହିଁ
ବୋଇଲେ ବର ଦେବି ତୋତେ
ଯେ ବାଞ୍ଛା କର ତୋର ଚିତ୍ତେ
ତକ୍ଷଣେ ପିତା ପାଦେ ପଡ଼ି
ରାମ ବୋଲନ୍ତି କରଯୋଡ଼ି
ହେ ତାତ ! ବର ଦେବ ଯେବେ
ଏ ସର୍ବେ ଜୀବନ ପାଇବେ
ଶିର ଲାଗିବ ଯେଝା କାନ୍ଧ
ମନେ ନ ଥିବ ତାଙ୍କ ବଧ ।୬,୭
ଅସ୍ତୁ ବୋଇଲେ ତପୋଧନ
ସେ ସର୍ବେ ପାଇଲେ ଜୀବନ
ନିଦ୍ରିତ ଜନ ନିଦ୍ରା ଅନ୍ତେ
ଶରୀର ସମ୍ଭାଳେ ଯେମନ୍ତେ
ପିତାର ତପ ବଳ ଜାଣି
ମାତୃ ଭ୍ରାତାଙ୍କ ମୁଣ୍ଡ ହାଣି
ଏମନ୍ତେ କରି ଘୋର କର୍ମ
ରାମ ରଖିଲେ ନିଜ ଧର୍ମ
ରାମର ଅଙ୍ଗ ସଙ୍ଗ ଛୁଟିଲା
ମରଣ ସଙ୍କଟୁଁ ତରିଲେ ।୮।

ଯେଽର୍ଜ୍ଜୁନସ୍ୟ ସୁତା ରାଜନ୍ ସ୍ମରନ୍ତଃ ସ୍ୱପିତୁର୍ବଧମ୍ ।
ରାମବୀର୍ଯ୍ୟପରାଭୂତା ଲେଭିରେ ଶର୍ମ୍ମ ନ କ୍ୱଚତ୍ । ୯ ।
ଏକଦାଶ୍ରମତୋ ରାମେ ସଭ୍ରାତରି ବନଂ ଗତେ ।
ବୈରଂ ସିଷାଧୟିଷବୋ ଲବ୍ଧଚ୍ଛିଦ୍ରା ଉପାଗମନ୍ । ୧୦ ।
ଦୃଷ୍ଟ୍ୱାଗ୍ନ୍ୟାଗାର ଆସୀନମାବେଶିତଧିୟଂ ମୁନିମ୍ ।
ଭଗବତ୍ୟୁତ୍ତମଶ୍ଳୋକେ ଜଘ୍ନୁସ୍ତେ ପାପନିଶ୍ଚୟାଃ । ୧୧ ।
ଯାଚ୍ୟମାନାଃ କୃପଣୟା ରାମମାତ୍ରାତିଦାରୁଣାଃ ।
ପ୍ରସହ୍ୟ ଶିରଉତ୍କୃତ୍ୟ ନିନ୍ୟୁସ୍ତେ କ୍ଷତ୍ରବନ୍ଧବଃ । ୧୨ ।
ରେଣୁକା ଦୁଃଖଶୋକାର୍ତ୍ତା ନିଘ୍ନନ୍ତ୍ୟାତ୍ମାନମାତ୍ମନା ।
ରାମ ରାମେତି ତାତେତି ବିଚୁକ୍ରୋଶୋଚ୍ଚକୈଃ ସତୀ । ୧୩ ।

---

ହେ ରାଜନ୍ ! କାର୍ତ୍ତବୀର୍ଯ୍ୟଙ୍କର ପୁତ୍ରମାନେ ନିଜ ପିତାଙ୍କର ବଧ ବିଷୟ ସ୍ମରଣକରି ଏବଂ ପରଶୁରାମଙ୍କର ଘାରଦ୍ୱାରେ ପରାଜିତ ହୋଇ କଦାପି ଶାନ୍ତିଲାଭ କରି ନ ଥିଲେ ।୯।

ତେବେ ଭାଇମାନଙ୍କ ସହିତ ପରଶୁରାମ ବନଗମନ କରିଥିଲେ, ଏମନ୍ତ ସମୟରେ କାର୍ତ୍ତବୀର୍ଯ୍ୟଙ୍କର ପୁତ୍ରମାନେ ଶତ୍ରୁ ସାଧନ କରିବା ନିମନ୍ତେ ଜମଦଗ୍ନିଙ୍କ ଆଶ୍ରମରେ ଉପସ୍ଥିତ ହେଲେ ।୧୦।

ପାପକାର୍ଯ୍ୟ କରିବାକୁ ପ୍ରସ୍ତୁତ କାର୍ତ୍ତବୀର୍ଯ୍ୟଙ୍କ ପୁତ୍ରମାନେ ଉତ୍ତମ ଶ୍ଳୋକ ଭଗବାନ୍ ନାରାୟଣଙ୍କ ଠାରେ ନିବିଷ୍ଟଚିତ୍ତ ଜମଦଗ୍ନି ଋଷିଙ୍କୁ ଦେଖି ତାହାଙ୍କୁ ବିନାଶ କରିଥିଲେ ।୧୧।

ପରଶୁରାମଙ୍କର ଜନନୀ ଅତ୍ୟନ୍ତ ଦୁଃଖିତା ହୋଇ କାତର ଚିତ୍ତରେ ପତିଙ୍କର ପ୍ରାଣଭିକ୍ଷା କରିଥିଲେ ମଧ୍ୟ ସେହି ନିଷ୍ଠୁର କ୍ଷତ୍ରିୟାଧମମାନେ ମୁନିଙ୍କର ମସ୍ତକ ଛେଦନ କରିଥିଲେ ।୧୨।

ଦୁଃଖ ଶୋକରେ କାତରା ସତୀ ରେଣୁକା ନିଜେ ନିଜର ବକ୍ଷସ୍ଥଳ ତାଡ଼ନକରି ହେ ରାମ ! ହେ ରାମ ! ହେ ପୁତ୍ର ! ହେ ପୁତ୍ର ! ବୋଲି ଉଚ୍ଚସ୍ୱରରେ କ୍ରନ୍ଦନ କଲେ ।୧୩।

---

ଭାଇଙ୍କି ଘେନି ଏକ ଦିନେ
ରାମ ଛାଡ଼ି ଗଲେ ତପୋବନେ
ତପ ଆରମ୍ଭି ଯୋଗ ଧ୍ୟାନେ
ମୁନିଙ୍କେ ବସିଲେ ଆସନେ
ତାହାଙ୍କ ଧ୍ୟାନ ଦେଖି ବନେ
ପଶୁ ପତଙ୍ଗ ଖଗମାନେ
ଭୟେ ଶବଦ ନ କରନ୍ତି
ଏଥିବ ହୋ ଶୁଣ ନରପତି !
ସହସ୍ର ଅର୍ଜ୍ଜୁନ କୁମରେ
ପିତାର ମରଣ ସୁମରେ

ଯାନ୍ତି ଯେ ଥିଲେ ଭୟ ଚିତ୍ତେ
ସେ ପୁଣି ମିଳିଲେ ଏକାନ୍ତେ
ମନେ ସୁମରି ଜମଦଗ୍ନି
ସଙ୍ଗେ ଅନେକ ବଳ ଘେନି
ଛିଦ୍ର ଜାଣିଣ ସେ ବେଳରେ
ରାତ୍ରେ ମିଳିଲେ ଅନ୍ଧକାରେ
ହୃଦେ ସୁମରି ଘୋର ତମ
ଭୁଞ୍ଜିଲେ ମୁନିଙ୍କ ଆଶ୍ରମ ।୯,୧୦
ମୁନି ଯେ ଥିଲେ ଯଜ୍ଞଶାଳେ
ବିଷ୍ଣୁ ଚରଣ ପୂଜା କାଳେ

ବଇରି ସାଧିବାର ହେତେ
ବନ୍ଧନ କଲେ ଦୃଢ଼ ପାଶେ
ରେଣୁକା ରଖ ରଖ ବୋଲି
ପଡ଼ିଲା ତାଙ୍କ ପାଦ ତଳେ
ରେଣୁକା ବଚନ ନ ଶୁଣି
ତୀକ୍ଷ୍ଣ ଖଡ଼ଗେ ମୁଣ୍ଡ ହାଣି
ତକ୍ଷଣେ ଗଲେ ନିଜ ପୁରୀ
ଧନ ସମ୍ପଦ ଜୁରି କରି ।୧୧,୧୨
ରେଣୁକା ଦୁଃଖ ଶୋକ ଭରେ
ରୋଦନ କଲା ଉଚ୍ଚସ୍ୱରେ

ତଦୁପଶ୍ରୁତ୍ୟ ଦୂରସ୍ଥା ହା ରାମେତ୍ୟାର୍ତ୍ତବତ୍ସ୍ୱନମ୍ ।
ତ୍ୱରୟାଶ୍ରମମାସାଦ୍ୟ ଦଦୃଶୁଃ ପିତରଂ ହତମ୍ । ୧୪ ।
ତେ ଦୁଃଖରୋଷାମର୍ଷାର୍ତ୍ତିଶୋକବେଗବମୋହିତାଃ ।
ହା ତାତ ସାଧୋ ଧର୍ମ୍ମିଷ୍ଠ ତ୍ୟକ୍ତ୍ୱାସ୍ମାନ୍ ସ୍ୱର୍ଗତୋ ଭବାନ୍ । ୧୫ ।
ବିଲପ୍ୟୈବଂ ପିତୁର୍ଦ୍ଦେହଂ ନିଧାୟ ଭ୍ରାତୃଷୁ ସ୍ୱୟମ୍ ।
ପ୍ରଗୃହ୍ୟ ପରଶୁଂ ରାମଃ କ୍ଷତ୍ରାନ୍ତାୟ ମନୋ ଦଧେ । ୧୬ ।
ଗତ୍ୱା ମାହିଷ୍ମତୀଂ ରାମୋ ବ୍ରହ୍ମଘ୍ନବିହତଶ୍ରିୟମ୍ ।
ତେଷାଂ ସ ଶୀର୍ଷଭୀରାଜନ୍ ମଧ୍ୟେ ଚକ୍ରେ ମହାଗିରିମ୍ । ୧୭ ।

---

ଭ୍ରାତୃମାନଙ୍କ ସହିତ ବହୁ ଦୂରରେ ଅବସ୍ଥିତ ପରଶୁରାମ ମାତାଙ୍କର କ୍ରନ୍ଦନଧ୍ୱନି ଶୁଣିପାରି ଦ୍ରୁତ ବେଗରେ ଆସି ଆଶ୍ରମରେ ଉପସ୍ଥିତ ହୋଇ ପିତାଙ୍କର ମୃତ୍ୟୁ ହୋଇଥିବାର ଦେଖିଲେ ।୧୪।

ଏପରି ଦୁଃଖ, କ୍ରୋଧରେ କାତର ଶୋକାଭିଭୂତ ହୋଇ ବିଳାପ କଲେ ଏବଂ ଉଚ୍ଚସ୍ୱରରେ, କହିଲେ ହେ ପିତା ! ହେ ସାଧୁ ! ହେ ଧର୍ମିଷ୍ଠ ! ଆପଣ ଆମ୍ଭମାନଙ୍କୁ ପରିତ୍ୟାଗ କରି ସ୍ୱର୍ଗ ଧାମକୁ ଗମନ କଲେ ।୧୫।

ପରଶୁରାମ ଏହିପରି ବିଳାପ କରି ଭ୍ରାତୃଗଣଙ୍କ ନିକଟରେ ପିତାଙ୍କ ଦେହ ରଖି ପରଶୁ ଅର୍ଥାତ୍ କୁଠାର ଧାରଣ ପୂର୍ବକ କ୍ଷତ୍ରିୟବଂଶ ବିନାଶ ନିମନ୍ତେ ପ୍ରତିଜ୍ଞା କଲେ ।୧୬।

ହେ ରାଜନ୍ ! ପରଶୁରାମ ବ୍ରହ୍ମଘାତୀ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କ ପୁତ୍ରମାନଙ୍କ ଦ୍ୱାରା ହତଶ୍ରୀ ମାହିଷ୍ମତୀ-ପୁରୀକୁ ଗମନ କରି ସେମାନଙ୍କ ମସ୍ତକ ଛେଦନ ପୂର୍ବକ ଗୋଟିଏ ବିଶାଳ ପର୍ବତ ପ୍ରସ୍ତୁତ କରିଥିଲେ ।୧୭।

---

ଶିର ହୃଦରେ କର ତାଡ଼ି
କାନ୍ଦଇ ଭୂମିଗତେ ପଡ଼ି
ଉଚ୍ଚେ ଡାକଇ ରାମ ! ରାମ !
ହେ ପୁତ୍ର ! ଆସ ତୁ ଆଶ୍ରମ
ସଙ୍ଗତେ ଘେନି ବନ୍ଧୁ ଭାଇ
ହେ ପୁତ୍ର ! ଆସବେଗହୋଇ
ମାତା ରୋଦନ ବାକ୍ୟ ବନ୍ଦେ
ଶୁଭିଲା ରାମ କର୍ଣ୍ଣମୂଳେ
ହେ ରାମ ! ରାମ ! ବାଣୀ ଶୁଣି
ସମାଧି ତେଜି ବୀରମଣି
ଭାଇଙ୍କ ସଙ୍ଗେ ବେଗେ ଧାଇଁ
ମିଳିଲେ ନିଜାଶ୍ରମେ ଯାଇଁ
ଯଜ୍ଞ ଭୁବନେ ସ୍ୱର ସୁତ
ଦେଖିଲେଜମଦଗ୍ନି ହତ ।୧୩-୧୪।

ପିତାର ଶିରଚ୍ଛେଦ ଦେଖି
ଭାଇଙ୍କ ଭୁଲେ ରାମ ଦୁଃଖୀ
ବିମୋହ ଶୋକ ଗୁରୁତରେ
ରୋଦନ କଲେ ଉଚ୍ଚସ୍ୱରେ
ହେ ତାତ ! ସାଧୁ ତୁ ଧାର୍ମିକ
ସୁଜ୍ଞାନୀ ପଣ୍ଡିତ ବିବେକ
ଆମ୍ଭଙ୍କୁ ଅରକ୍ଷିତ କରି
ଜଣ୍ଟିକ୍ୟେ ଗଲ ସ୍ୱର୍ଗପୁରୀ ।୧୫।
ପିତାର ଶିର ନ ଦେଖିଲେ
ଭାଇଙ୍କି ରଖି ଆଜ୍ଞା ଦେଲେ
ତୁମ୍ଭେ ହୋ ପ୍ରେତ କାର୍ଯ୍ୟ କର
ଏମନ୍ତ କହି ବୀରବର
ପରଶୁ ଧରି ଦକ୍ଷ କରେ
ଦୁଃସହ କୋପ ଗୁରୁତରେ

ସଂକଳ୍ପ କଲେ ଜଳ ଘେନି
ନିକ୍ଷତ୍ର କରିବି ମେଦିନୀ ।୧୬।
କ୍ଷତ୍ରିୟ ଅନ୍ତ କରିବାରେ
ପଥେ ଧାଇଁଲେ କୋପଭରେ
ମିଳିଲେ ମାହିଷ୍ମତୀ ପୁରେ
ଦେଖିଲେ ଶୂନ୍ୟ ପଥେ ପୁରେ
ଅର୍ଜ୍ଜୁନ ବଂଶ ହାଣି କରି
ସଂଗ୍ରାମେ ମୁଣ୍ଡ ଭୁଣ୍ଡକରି
ପର୍ବତ ପ୍ରାୟେ ମୁଣ୍ଡରାଶି
ଗ୍ରାମେ ସ୍ଥାପିଲେ ଭୃଗୁବଂଶୀ ।୧୭

ତତ୍ରକ୍ତେନ ନଦୀଂ ଘୋରାମବ୍ରହ୍ମଣ୍ୟଭୟାବହାମ୍ ।
ହେତୁଂ କୃତ୍ୱା ପିତୃବଧଂ କ୍ଷତ୍ରେଽମଙ୍ଗଳକାରିଣି । ୧୮ ।
ତ୍ରିଃସପ୍ତକୃତ୍ୱଃ ପୃଥିବୀଂ କୃତ୍ୱା ନିଃକ୍ଷତ୍ରିୟାଂ ପ୍ରଭୁଃ ।
ସମନ୍ତପଞ୍ଚକେ ଚକ୍ରେ ଶୋଣିତୋଦାନ୍ ହ୍ରଦାନ୍ ନବ । ୧୯ ।
ପିତୁଃ କାୟେନ ସନ୍ଧାୟ ଶିର ଆଧାୟ ବର୍ହିଷି ।
ସର୍ବଦେବମୟଂ ଦେବମାତ୍ମାନମଯଜନ୍ମଖୈଃ । ୨୦ ।
ଦଦୌ ପ୍ରାଚୀଂ ଦିଶଂ ହୋତ୍ରେ ବ୍ରହ୍ମଣେ ଦକ୍ଷିଣାଂ ଦିଶମ୍ ।
ଅଧ୍ୱର୍ଯ୍ୟବେ ପ୍ରତୀଚୀଂ ବୈ ଉଦ୍‌ଗାତ୍ରେ ଉତ୍ତରାଂ ଦିଶମ୍ । ୨୧ ।
ଅନ୍ୟେଭ୍ୟୋଽବାନ୍ତରଦିଶଃ କଶ୍ୟପାୟ ଚ ମଧ୍ୟତଃ ।
ଆର୍ଯ୍ୟାବର୍ତ୍ତମୁପଦ୍ରଷ୍ଟ୍ରେ ସଦସ୍ୟେଭ୍ୟସ୍ତତଃ ପରମ୍ । ୨୨ ।

---

ପିତୃବଧ ନିମିତ୍ତ ଶକ୍ତିଶାଳୀ ପରଶୁରାମ ରାଜକୁମାରମାନଙ୍କ ରକ୍ତଦ୍ୱାରା ବ୍ରାହ୍ମଣ ବିଦ୍ୱେଷୀଗଣଙ୍କ ଭୟପ୍ରଦ ଗୋଟିଏ ଭୀଷଣ ନଦୀ ପ୍ରସ୍ତୁତ କରିଥିଲେ । ଯେଉଁ କ୍ଷତ୍ରିୟମାନେ ବ୍ରାହ୍ମଣ ବିଦ୍ୱେଷୀ ହୋଇ ଅନ୍ୟାୟାଚରଣ କଲେ ସେମାନଙ୍କୁ ଏକବିଂଶବାର ନିଃକ୍ଷତ୍ରିୟ କରି ସେମାନଙ୍କ ଶୋଣିତଦ୍ୱାରା ସମନ୍ତ ପଞ୍ଚକ କ୍ଷେତ୍ରରେ ଗୋଟିଏ ହ୍ରଦ ନିର୍ମାଣ କରିଥିଲେ ।୧୮, ୧୯।

ପିତାଙ୍କର ମସ୍ତକ ଦେହ ଉପରେ ସ୍ଥାପନକରି ତାହାଙ୍କୁ କୁଶ ଉପରେ ରଖି ବହୁ ଯଜ୍ଞଦ୍ୱାରା ସର୍ବଦେବମୟ ଆତ୍ମରୂପୀ ପରମେଶ୍ୱରଙ୍କ ଅର୍ଚ୍ଚନା କରିଥିଲେ ।୨୦।

ସେହି ଯଜ୍ଞରେ ହୋତାଙ୍କୁ ପୂର୍ବଦିଗ, ବ୍ରହ୍ମାଙ୍କୁ ଦକ୍ଷିଣଦିଗ, ଅଧ୍ୱର୍ଯ୍ୟଙ୍କୁ ପଶ୍ଚିମଦିଗ ଏବଂ ଉଦ୍‌ଗାତାଙ୍କୁ ଉତ୍ତରଦିଗ ଦକ୍ଷିଣା ସ୍ୱରୂପ ଦାନ କରିଥିଲେ ଏବଂ ଅବାନ୍ତର ଦିଗମାନ ଅନ୍ୟାନ୍ୟ ଋତ୍ୱିକମାନଙ୍କୁ ଓ ଯଥାଯୋଗ୍ୟ ଭୂଖଣ୍ଡ ସଦସ୍ୟମାନଙ୍କୁ ଦାନ କରିଥିଲେ ।୨୧, ୨୨।

---

କ୍ଷତ୍ରିୟ ମରଣ ରୁଧିରେ
ନଦୀ ବହିଲା ଭୟଙ୍କରେ
ପିତୃ ତର୍ପଣ କରି ବଧି
ନଦୀରେ ସେତୁ ବନ୍ଧ ବାନ୍ଧି
ସ୍ଥାପିଣ କୁରୁକ୍ଷେତ୍ର ଦେଶେ
ପୁଣି ଧାଇଁଲେ ମହାରୋଷେ
ତ୍ରିସପ୍ତବାର ମହୀ ଭ୍ରମି
କୋପେ ନୋହିଲେ ସଥିରମୀ
କ୍ଷତ୍ରିୟଗଣ ଧରି ଆଣି
କୁଠାର ଧାରେ ଶିରହାଣି

ରୁଧିରେ ନବ କୁଣ୍ଡ କଲେ
ପିତାଙ୍କୁ ତର୍ପଣେ ତୋଷିଲେ ।୧୮,୧୯
ସେ କୁରୁକ୍ଷେତ୍ରେ ଯାଗକରି
ବିପ୍ରଙ୍କୁ ସ୍ୱରବେଦୁଁ ବରି
ଦକ୍ଷିଣା ଦେଲେ ବିପ୍ର ହସ୍ତେ
ଶୁଣ ରାଜନ କହୁଁ ତୋତେ
ଶ୍ରୀକରେ ଘେନି ଜଳ କୁଶ
ହୋତାଙ୍କୁ ଦେଲେ ପୂର୍ବ ଦେଶ
ଦକ୍ଷିଣ ବ୍ରହ୍ମା ହସ୍ତେ ଦେଲେ
ପଶ୍ଚିମ ଅଧ୍ୱର୍ଯ୍ୟୁ ବରିଲେ

ଉତ୍ତର ଉଦଗାତା ହସ୍ତେ
ପ୍ରଦାନକଲେ ସେ ପ୍ରଶସ୍ତେ ।୨୦,୨୧
ବେଦ ଉଚାରି ଗିରିକୋଣେ
ଦେଲେ ସେ ଅନ୍ୟେ ଯେ ବ୍ରାହ୍ମଣେ
ମଧ୍ୟକୁ କୁରୁକ୍ଷେତ୍ର ଭୂଲେ
କଶ୍ୟପ ହସ୍ତେ ରାମ ଦେଲେ
ଏ ଆର୍ଯ୍ୟାବର୍ତ୍ତ ପୁଣ୍ୟ ଭୂମି
ଉପଦ୍ରଷ୍ଟାଙ୍କୁ ଦେଲେ ସ୍ୱାମୀ
ସଭ୍ୟପତିଙ୍କୁ କଲେ ତୋଷ
ଅପରେ ଦେଇ ଅବଶେଷ । ୨୨ ।

ତତଶ୍ଚାବଭୃଥସ୍ନାନବିଧୂତାଶେଷକିଲ୍‌ବିଷଃ ।
ସରସ୍ୱତ୍ୟାଂ ମହାନଦ୍ୟାଂ ରେଜେ ବ୍ୟବ୍‌ଭ୍ର ଇବାଂଶୁମାନ୍ । ୨୩ ।
ସ୍ୱଦେହଂ ଯମଦଗ୍ନିସ୍ତୁ ଲବ୍ଧ୍ୱା ସଂଜ୍ଞାନଲକ୍ଷଣମ୍ ।
ଋଷୀଣାଂ ମଣ୍ଡଳେ ସୋଽଭୂତ୍ ସପ୍ତମୋ ରାମପୂଜିତଃ । ୨୪ ।
ଜାମଦଗ୍ନ୍ୟୋଽପି ଭଗବାନ୍ ରାମଃ କମଳଲୋଚନଃ ।
ଆଗାମିନ୍ୟନ୍ତରେ ରାଜନ୍ ବର୍ତ୍ତୟିଷ୍ୟତି ବୈ ବୃହତ୍ । ୨୫ ।
ଆସ୍ତେଽଦ୍ୟାପି ମହେନ୍ଦ୍ରାଦ୍ରୌ ନ୍ୟସ୍ତଦଣ୍ଡଃ ପ୍ରଶାନ୍ତଧୀଃ ।
ଉପଗୀୟମାନଚରିତଃ ସିଦ୍ଧଗନ୍ଧର୍ବଚାରଣୈଃ । ୨୬ ।
ଏବଂ ଭୃଗୁଷୁ ବିଶ୍ୱାତ୍ମା ଭଗବାନ୍ ହରିରୀଶ୍ୱରଃ ।
ଅବତୀର୍ଯ୍ୟ ପରଂ ଭାରଂ ଭୁବୋଽହନ୍ ବହୁଶୋ ନୃପାନ୍ । ୨୭ ।

---

ତଦନନ୍ତର ସରସ୍ୱତୀ ନାମ୍ନୀ ମହାନଦୀରେ ଅବଭୃଥ ସ୍ନାନକରି ସମସ୍ତ ପାପ ବିନାଶ ପୂର୍ବକ ମେଘଶୂନ୍ୟ ସୂର୍ଯ୍ୟତୁଲ୍ୟ ଶୋଭା ପାଇଲେ । ୨୩।

ପରଶୁରାମ ପୂଜିତ ଜମଦଗ୍ନି ନିଜ ଦେହକୁ ପୁନଃ ଚୈତନ୍ୟ ସ୍ୱରୂପ ଲାଭକରି ଋଷିମଣ୍ଡଳ ମଧ୍ୟରେ ସପ୍ତମଋଷି ରୂପେ ବିରାଜମାନ କଲେ । ୨୪।

ହେ ରାଜନ୍ ! ଆଗାମୀ ମନ୍ୱନ୍ତରରେ ଜମଦଗ୍ନି ତନୟ ଭଗବାନ୍ କମଳଲୋଚନ ପରଶୁରାମ ବେଦପ୍ରବର୍ତ୍ତକ ସପ୍ତଋଷି ମଧ୍ୟରେ ଗଣନୀୟ ହେବେ । ୨୫।

ହେ ରାଜନ୍ ! ନ୍ୟସ୍ତଦଣ୍ଡ, ପ୍ରଶାନ୍ତଚିତ୍ତ, ସିଦ୍ଧଚାରଣ ଗନ୍ଧର୍ବମାନଙ୍କ କର୍ତ୍ତୃକ ସେବିତ ଜମଦଗ୍ନି ପୁତ୍ର ପରଶୁରାମ ଅଦ୍ୟାପି ମହେନ୍ଦ୍ର ପର୍ବତରେ ଅବସ୍ଥାନ କରୁଅଛନ୍ତି । ୨୬।

ସର୍ବ ଜୀବର ଜୀବନ ସ୍ୱରୂପ ଭଗବାନ୍ ଶ୍ରୀହରି ଭୃଗୁ ବଂଶରେ ଅବତୀର୍ଣ୍ଣ ହୋଇ ପୃଥିବୀର ଭାର ସ୍ୱରୂପ ବହୁ କ୍ଷତ୍ରିୟ ବିନାଶ କରିଥିଲେ । ୨୭।

---

ତା ପରେ ସରସ୍ୱତୀ କୂଳେ
ଯଜ୍ଞାବଭୃଥ ସ୍ନାନ କଲେ
ସେ ବ୍ରହ୍ମନଦୀ ଜଳେ ପଶି
ରବିର ତେଜ ପ୍ରାୟେ ଦିଶି । ୨୩।
ସେ ଯଜ୍ଞ ପୂର୍ଣ୍ଣେ ଜମଦଗ୍ନି
ଜ୍ଞାନ ଲକ୍ଷଣ ଦେହେ ଘେନି

ସପ୍ତ ଋଷିଙ୍କ ମଧ୍ୟେ ଧାମ
ସ୍ଥାପିଲେ ତାଙ୍କୁ ପର୍ଶୁରାମ । ୨୪।
ସେ ରାମ କମଳଲୋଚନ
ସ୍ୱୟଂତେ ଭୃଗୁର ନନ୍ଦନ
ଭବିଷ୍ୟ ମନ୍ୱନ୍ତର କାଳେ
ବ୍ରହ୍ମ ବିସ୍ତାରେ ଯୋଗବଳେ

ସିଦ୍ଧ ଗନ୍ଧର୍ବ ସ୍ତୁତି କଲେ
ମହେନ୍ଦ୍ରପର୍ବତେରହିଲେ ୨୫, ୨୬
ଏମନ୍ତେ ଭୃଗୁବଂଶେ ହରି
ନର ଶରୀରେ ଦେହ ଧରି
ଦୁଷ୍ଟ କ୍ଷତ୍ରିୟ ନାଶ କରି
ହେଲେ ଧରଣୀ ଭାର ହରି । ୨୭।

ଗାଧେରଭୂନ୍ମହାତେଜାଃ ସମିଦ୍ଧ ଇବ ପାବକଃ ।
ତପସା କ୍ଷାତ୍ରମୁତ୍ସୃଜ୍ୟ ଯୋ ଲେଭେ ବ୍ରହ୍ମ ବର୍ଚ୍ଚସମ୍ । ୨୮ ।
ବିଶ୍ୱାମିତ୍ରସ୍ୟ ଚୈବାସନ୍ ପୁତ୍ରା ଏକଶତଂ ନୃପ ।
ମଧ୍ୟମସ୍ତୁ ମଧୁଚ୍ଛନ୍ଦା ମଧୁଚ୍ଛନ୍ଦସ ଏବ ତେ । ୨୯ ।
ପୁତ୍ରଂକୃତ୍ୱା ଶୁନଃଶେଫଂ ଦେବରାତଞ୍ଚ ଭାର୍ଗବମ୍ ।
ଅଜୀଗର୍ତ୍ତଂ ସୁତାନାହ ଜ୍ୟେଷ୍ଠ ଏଷ ପ୍ରକଲ୍ପ୍ୟତାମ୍ । ୩୦ ।
ଯୋ ବୈ ହରିଶ୍ଚନ୍ଦ୍ରମଖେ ବିକ୍ରୀତ ପୁରୁଷଃ ପଶୁଃ ।
ସ୍ତୁତ୍ୱା ଦେବାନ୍ ପ୍ରଜେଶାଦୀନ୍ ମୁମୁଚେ ପାଶବନ୍ଧନାତ୍ । ୩୧ ।
ଯୋ ରାତୋ ଦେବଯଜନେ ଦେବୈର୍ଗାଧିଷୁ ତାପସଃ ।
ଦେବରାତ ଇତି ଖ୍ୟାତଃ ଶୁନଃଶେଫସ୍ତୁ ଭାର୍ଗବଃ । ୩୨ ।

---

ଗାଧିଙ୍କଠାରୁ ପ୍ରଜ୍ୱଳିତ ଅଗ୍ନି ତୁଲ୍ୟ ତେଜସ୍ୱୀ ବିଶ୍ୱାମିତ୍ର ଜନ୍ମଗ୍ରହଣ କରିଥିଲେ । ବିଶ୍ୱାମିତ୍ର ତପସ୍ୟାଦ୍ୱାରା କ୍ଷତ୍ରିୟତ୍ୱ ପରିତ୍ୟାଗ କରି ବ୍ରହ୍ମତ୍ୱ ଲାଭ କରିଥିଲେ ।୨୮।

ହେ ରାଜନ୍ ! ବିଶ୍ୱାମିତ୍ରଙ୍କର ଏକଶତ ପୁତ୍ର ଜନ୍ମି ଥିଲେ । ତାହାଙ୍କର ମଧ୍ୟମପୁତ୍ର ମଧୁଚ୍ଛନ୍ଦଙ୍କ ପୁତ୍ରମାନଙ୍କ ମଧ୍ୟରେ ପ୍ରଧାନ ଥିବାରୁ ସମସ୍ତ ପୁତ୍ର ସେହି ନାମରେ ବିଖ୍ୟାତ ହୋଇଥିଲେ ।୨୯।

ଅଜୀଗର୍ତ୍ତଙ୍କର ପୁତ୍ର ଶୁନଃଶେଫ ଓ ଦେବରାତ, ଏମାନଙ୍କୁ ଭୃଗୁବଂଶୀୟ ବୋଲି ପୁତ୍ରରୂପେ ସ୍ୱୀକାର କରି ବିଶ୍ୱାମିତ୍ର ପୁତ୍ରମାନଙ୍କୁ କହିଲେ "ତୁମ୍ଭେମାନେ ଏହାଙ୍କୁ ଜ୍ୟେଷ୍ଠବୋଲି କଳ୍ପନା କର" ।୩୦।

ସେହି ଶୁନଃଶେଫ ହରିଶ୍ଚନ୍ଦ୍ରଙ୍କର ଯଜ୍ଞକାଳରେ ପୁରୁଷ ପଶୁରୂପେ ପିତାଙ୍କ କର୍ତ୍ତୃକ ବିକ୍ରୀତ ହୋଇଥିଲେ, ତଦନନ୍ତର ଦେବତାମାନଙ୍କୁ ସ୍ତବ କରି ପାଶ ବନ୍ଧନରୁ ବିମୁକ୍ତ ହୋଇ ଥିଲେ ।୩୧।

ସେହି ଶୁନଃଶେଫ ଅତ୍ୟନ୍ତ ତାପସ ଥିଲେ ଏବଂ ଦେବଯଜ୍ଞରେ ଦେବତାମାନଙ୍କ କର୍ତ୍ତୃକ ରକ୍ଷିତ ହୋଇଥିଲେ ବୋଲି ଭୃଗୁବଂଶଜ ହେଲେ ମଧ୍ୟ ଗାଧିବଂଶରେ ଦେବରାତ ନାମରେ ବିଖ୍ୟାତ ହୋଇଥିଲେ ।୩୨।

---

ଗାଧିର ପୁତ୍ର ହୋଇ ଜନ୍ମ
ସଂସାରେ କଲେ ଯେତେ କର୍ମ
କ୍ଷତ୍ରିୟ କର୍ମ ଏ ଶସ୍ତ୍ରେକେ
ତେଜିଲେ ତପସ୍ୟାର ବଳେ
ବ୍ରହ୍ମବର୍ଚ୍ଚ ସେ ଛନ୍ଦା କଲେ
ବିଶ୍ୱାମିତ୍ର ସେ ବୋଲାଇଲେ ।୨୮
ବିଶ୍ୱାମିତ୍ରର ଶତ ପୁତ୍ର
ସେହୁ ଜନ୍ମିଲେ ସପ୍ତଗୋତ୍ର
ସେ ଗୋତ୍ରେ ମଧୁ ଛନ୍ଦ ଆଦି
ସର୍ବେ ଜନ୍ମିଲେ ବେଦବାଦୀ ।୨୯।
ଶୁନଃଶେଫଙ୍କୁ ପୁତ୍ର କରି
ଭାର୍ଗବ ବଂଶ ତାକୁ ବରି
ନିଜ ସୁତଙ୍କୁ ରାଇ ଧୀରେ
କହିଲେ ନିଗମ ଗୋଚରେ
"ଏହାକୁ ଜ୍ୟେଷ୍ଠ ବୋଲି ମଣ
ଏ ତୁମ୍ଭ ଗୋତ୍ରର ବର୍ଦ୍ଧନ ।୩୦।
ଏ ହରିଶ୍ଚନ୍ଦ୍ର ଯଜ୍ଞ କାଳେ
ପିତା ବିକ୍ରୟ କଲାବେଳେ
ରୋହିତ ପଶୁ ଅର୍ଥେ କେଲ
ଏହାର ମାଂସେ ଯଜ୍ଞ କଲ
ଏହାକୁ ଦେବେ ତୋଷ ହୋଇ
ତକ୍ଷଣେ ମରଣୁ ଛାଡ଼ିଆଇ
ଥୋଇଲେ ମୋ ପୁତ୍ରଙ୍କ ମେଳେ
ଦେବରାତ ତା ନାମ ଦେଲେ"
। ୩୧,୩୨ ।

ଯେ ମଧୁଚ୍ଛନ୍ଦସୋ ଜ୍ୟେଷ୍ଠାଃ କୁଶଲଂ ମେନିରେ ନ ତତ୍ ।
ଅଶପତ୍ ତାନ୍ ମୁନିଃ କ୍ରୁଦ୍ଧା ମ୍ଳେଚ୍ଛା ଭବତ ଦୁର୍ଜ୍ଜନାଃ । ୩୩ ।
ସ ହୋବାଚ ମଧୁଚ୍ଛନ୍ଦାଃ ସାର୍ଦ୍ଧଂ ପଞ୍ଚାଶତା ତତଃ ।
ଯନ୍ନୋ ଭବାନ୍ ସଞ୍ଜାନୀତେ ତସ୍ମିଂସ୍ତିଷ୍ଠାମହେ ବୟମ୍ । ୩୪ ।
ଜ୍ୟେଷ୍ଠଂ ମନ୍ତ୍ରଦୃଶଂ ଚକ୍ରୁସ୍ତ୍ୱାମନ୍ୱଞ୍ଚୋ ବୟଂ ସ୍ମ ହ ।
ବିଶ୍ୱାମିତ୍ରଃ ସୁତାନାହ ବୀରବନ୍ତୋ ଭବିଷ୍ୟଥ ।
ଯେ ମାନଂ ମେଽନୁଗୃହ୍ଣନ୍ତୋ ବୀରବନ୍ତମକର୍ତ୍ତ ମାମ୍ । ୩୫ ।
ଏଷ ବଃ କୁଶିକା ବୀରୋ ଦେବରାତସ୍ତମନ୍ୱିତଃ ।
ଅନ୍ୟେ ଚାଷ୍ଟକହାରୀତ-ଜୟକ୍ରତୁମଦାଦୟଃ । ୩୬ ।

---

ମଧୁଛନ୍ଦସମାନେ ଶୁନଃଶେଫଙ୍କୁ ଜ୍ୟେଷ୍ଠ ବୋଲି ସ୍ୱୀକାର କଲେ ନାହିଁ, ତେଣୁ ସେମାନେ ବିଶ୍ୱାମିତ୍ରଙ୍କ ଅଭିଶାପରେ ମ୍ଳେଚ୍ଛ ହୋଇଥିଲେ ।୩୩।

ତଦନନ୍ତର ମଧ୍ୟମ ମଧୁଛନ୍ଦସ ପଚାଶତ କନିଷ୍ଠ ଭ୍ରାତାଙ୍କ ସହିତ ମିଳିତହୋଇ ପିତାଙ୍କ ନିକଟକୁ ଗମନ କଲେ ଏବଂ କହିଲେ, "ଆପଣ ଆମ୍ଭମାନଙ୍କ ପ୍ରତି ଯେଉଁ ଆଦେଶ କରିଅଛନ୍ତି ଶୁନଃଶେଫଙ୍କୁ ଜ୍ୟେଷ୍ଠ ବୋଲି ସ୍ୱୀକାର କରିବାକୁ, ଆମ୍ଭେମାନେ ତାହା ସ୍ୱୀକାର କଲୁଁ ।୩୪।

ଏହାକହି ଶୁନଃଶେଫଙ୍କୁ ଜ୍ୟେଷ୍ଠରୂପେ ସ୍ୱୀକାର କରିଥିଲେ, ଏବଂ କହିଲେ, "ହେ ମନ୍ତ୍ରଦ୍ରଷ୍ଟା ! ଆମ୍ଭେମାନେ ତୁମ୍ଭର ଅନୁଗତ ହେଲୁ, ଏଥିରେ ବିଶ୍ୱାମିତ୍ର ପ୍ରସନ୍ନ ହୋଇ ପୁତ୍ରମାନଙ୍କୁ କହିଲେ, "ତୁମ୍ଭେ-ମାନେ ମୋର ବାକ୍ୟ ସ୍ୱୀକାର କରି ମୋତେ ପୁତ୍ରବନ୍ତ କରିଅଛ, ତୁମ୍ଭେମାନେ ପୁତ୍ରବନ୍ତ ହୁଅ ।୩୫।

ହେ କୁଶିକଗଣ ! ଏହି ଦେବରାତ ପୁରୁଷବୀର କୁଶିକବଂଶୀୟ ହେଲେ । ତୁମ୍ଭେମାନେ ଏହାଙ୍କ ଅନୁସରଣ କର । ବିଶ୍ୱାମିତ୍ରଙ୍କ ଅଷ୍ଟକ, ହାରୀତ, ଜୟ, କ୍ରତୁମଦ ପ୍ରଭୃତି ଅନ୍ୟାନ୍ୟ ପୁତ୍ରମାନେ ମଧ୍ୟ ଥିଲେ ।୩୬।

---

ବିଶ୍ୱାମିତ୍ରଙ୍କ ଶତ ସୁତେ
ଜ୍ୟେଷ୍ଠ ଯେ ଥିଲେ ପଚାଶତେ
ହୋଇଲେ ଏ ତିନାହେଁ ଉଚିତ
ଏ ଜ୍ୟେଷ୍ଠ ହୋଇବ କେମନ୍ତ
ପିତା ତାହାଙ୍କୁ ଦେଲେ ଶାପ
ମ୍ଳେଚ୍ଛ ହୁଅ ରେ ତୁମ୍ଭେ ପାପ ।୩୩।

ଆର ପଚାଶ ପୁତ୍ର ସାନ
ତାହାକୁ କଲେ ଜ୍ୟେଷ୍ଠ ମାନ୍ୟ
ସନ୍ତୋଷେ ବୋଇଲେ ବିଶ୍ୱାମିତ୍ର
ସଭିଲେ ହୁଅ ପୁତ୍ରବନ୍ତ ।୩୪,୩୫।
ଏ ଶୁନଃଶେଫ ଅଟେ ବୀର
ସର୍ବେ ଏହାକୁ ଅନୁସର

ଶୁଣ ହେ ରାଜା ପରୀକ୍ଷିତ
ଆଉର ବିଶ୍ୱାମିତ୍ର ପୁତ୍ର
ଅଷ୍ଟକ ଜୟ ଯେ ହାରୀତ
କ୍ରତୁମଦାଦ୍ଧ ଥିଲେ ସୁତ । ୩୬ ।

ଏବଂ କୌଶିକଗୋତ୍ରନ୍ତୁ ବିଶ୍ୱାମିତ୍ରୈଃ ପୃଥଗ୍‌ବିଧମ୍ ।
ପ୍ରବରାନ୍ତରମାପନ୍ନଂ ତଦ୍ଧି ଚୈବଂ ପ୍ରକଳ୍ପିତମ୍ । ୩୭ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀପରଶୁରାମଚରିତଂ
ନାମ ଷୋଡଶୋଽଧ୍ୟାୟଃ ।

---

ଏହିପରି କୌଶିକ ଗୋତ୍ର ବିଶ୍ୱାମିତ୍ରଙ୍କ କଣ୍ଠିଜ ପୁତ୍ରମାନଙ୍କରେ ବିଭକ୍ତ ହୋଇଥିଲା ଏବଂ ସେମାନଙ୍କର ମଧ୍ୟ ବିଭିନ୍ନ ପ୍ରବର ହୋଇଥିଲା ।୩୭।

---

ଏରୂପେ କଉଶିକ ଗୋତ୍ର
ପୁତ୍ର ଭାଗରେ ହେଲା ଖ୍ୟାତ
କୌଶିକ ଗୋତ୍ରର ପ୍ରବର
ଏଣୁ ଯେ ସପତ ପ୍ରକାର ।୩୭।

ବୋଲଇ ଦାସ ଜଗନ୍ନାଥ
ନବମେ ବର୍ଣ୍ଣନ୍ତୁ ଚରିତ
ଭୃଗୁର ବଂଶେ ହୋଇ ଜନ୍ମ
ସେ ହରି କଲେ ଯେତେ କର୍ମ

ଶୁଣନ୍ତେ ସର୍ବ ପାପ ହରେ
ଅଶେଷ ପାପବନ୍ଧୁ ତରେ ।



## ସପ୍ତଦଶୋଽଧ୍ୟାୟ

ଆୟୋଃ ସପ୍ତଦଶେ ବୈଳ ଜ୍ୟେଷ୍ଠପୁତ୍ରସ୍ୟ ପଞ୍ଚସୁ ।
ସୁତେଷୁ କ୍ଷତ୍ରବୃଦ୍ଧାଦ ଚତୁର୍ଣ୍ଣାଂ ବଂଶବର୍ଣ୍ଣନମ୍ ॥ ( ଶ୍ରୀଧରସ୍ୱାମୀ )

---

### କ୍ଷତ୍ରବୃଦ୍ଧାଦଙ୍କ ଚରିତ

ସପ୍ତଦଶ ଅଧ୍ୟାୟରେ ଆୟୁଙ୍କର ଜ୍ୟେଷ୍ଠପୁତ୍ର ଐଳ ଏବଂ ଐଳଙ୍କ ପୁତ୍ର କ୍ଷତ୍ରବୃଦ୍ଧ ପ୍ରଭୃତିଙ୍କ ଚରିତ ବର୍ଣ୍ଣନା ହୋଇଅଛି ॥ ୦ ॥

---

ଆୟୁର ସୁରିପୁତ୍ର ବଂଶ, ବର୍ଣ୍ଣିତ ଅଧ୍ୟା ସପ୍ତଦଶ ॥

ବାଦରାୟଣିରୁବାଚ ।

ଯଃ ପୁରୁରବସଃ ପୁତ୍ର ଆୟୁସସ୍ୟାଭବନ୍ ସୁତାଃ ।
ନହୁଷଃ କ୍ଷତ୍ରବୃଦ୍ଧଶ୍ଚ ରଜୀରମ୍ଭଶ୍ଚ ବୀର୍ଯ୍ୟବାନ୍ । ୧ ।
ଅନେନା ଇତି ରାଜେନ୍ଦ୍ର ଶୃଣୁକ୍ଷେତ୍ରବୃଧୋଽନ୍ୱୟମ୍ ।
କ୍ଷତ୍ରବୃଦ୍ଧସୁତସ୍ୟାସନ୍ ସୁହୋତ୍ରସ୍ୟାତ୍ମଜାସ୍ତ୍ରୟଃ । ୨ ।
କାଶ୍ୟଃ କୁଶୋ ଗୃତ୍ସମଦ ଇତ ଗୃତ୍ସମଦାଦଭୂତ୍ ।
ଶୁନକଃ ସୌନକୋ ଯସ୍ୟ ବହ୍ୱୃଚପ୍ରବରୋ ମୁନିଃ । ୩ ।
କାଶ୍ୟସ୍ୟ କାଶିସ୍ତତ୍ପୁତ୍ରୋ ରାଷ୍ଟ୍ରୋଦୀର୍ଘତମଃ ପିତା ।
ଧନ୍ୱନ୍ତରୀ ର୍ଦୈର୍ଘତମସ ଆୟୁର୍ବେଦପ୍ରବର୍ତ୍ତିକଃ ।
ଯଜ୍ଞଭୁଗ୍‌ବାସୁଦେବାଂଶଃ ସ୍ମୃତମାତ୍ରାର୍ତ୍ତିନାଶନଃ । ୪ ।

---

ଶ୍ରୀଶୁକଦେବ କହିଲେ :—

ପୁରୁରବାଙ୍କର ପୁତ୍ର ଆୟୁଃ, ଆୟୁଙ୍କର ପାଞ୍ଚିପୁତ୍ର । ନହୁଷ, କ୍ଷେତ୍ରବୃଦ୍ଧ, ରଜି, ରମ୍ଭ ଏବଂ ଅନେନା । ହେ ମହାରାଜ ! ସେମାନଙ୍କ ମଧ୍ୟରୁ କ୍ଷେତ୍ର ବୃଦ୍ଧଙ୍କର ବଂଶପ୍ରସଙ୍ଗ ଶ୍ରବଣ କରନ୍ତୁ । ୧ ।

କ୍ଷେତ୍ରବୃଦ୍ଧଙ୍କର ପୁତ୍ର ସୁହୋତ୍ର । ସୁହୋତ୍ରଙ୍କର ତିନିପୁଅ, କାଶ୍ୟ, କୁଶ ଏବଂ ଗୃତ୍ସମଦ । ଗୃତ୍ସମଦଙ୍କର ପୁତ୍ର ସୁନକ, ସୁନକଙ୍କର ପୁତ୍ର ସୌନକ । ସୌନକ ବହ୍ୱୃଚପ୍ରବର ପ୍ରଧାନ ମୁନି ଥିଲେ । ୨, ୩ ।

କାଶ୍ୟଙ୍କର ପୁତ୍ର କାଶୀ, କାଶୀଙ୍କର ପୁତ୍ର ରାଷ୍ଟ୍ର, ରାଷ୍ଟ୍ରଙ୍କର ପୁତ୍ର ଦୀର୍ଘତମା । ଦୀର୍ଘତମାଙ୍କର ପୁତ୍ର ଧନ୍ୱନ୍ତରୀ, ଧନ୍ୱନ୍ତରୀ ଆୟୁର୍ବେଦ ପ୍ରବର୍ତ୍ତକ ଥିଲେ । ସେ ଯଜ୍ଞଭାଗ ଭୋଗୀ ବାସୁଦେବଙ୍କର ଅଂଶସ୍ୱରୂପ, ତାଙ୍କୁ ସ୍ମରଣ କଲା ମାତ୍ରକେ ରୋଗ ଦୁଃଖ ହରଣ ହୁଏ ।୪।

---

ଶ୍ରୀ ଶୁକ ଉବାଚ—
ଆୟୁ ଯେ ପୁରୁରବା ସୁତ
ଶୁଣ ହେ। ତାହାର ଚରିତ
ନହୁଷ ତାହାର ତନୟେ
ଅପରେ କ୍ଷେତ୍ର ବୃଦ୍ଧ ହୁଏ
ରଜୀ ରମ୍ଭ ଯେ ବୀର୍ଯ୍ୟବନ୍ତ
ଅନେନା ଆଦି ପଞ୍ଚସୁତ

କ୍ଷତ୍ରବୃଦ୍ଧର ବଂଶ ଶୁଣ
ସୁହୋତ୍ର ତାର ପୁତ୍ର ନାମ
କୁଶାଦି ତାର ତିନି ସୁତ
କାଶ୍ୟ ଗୃତ୍ସମଦ ସହିତ
ଶୁନକ ଗୃତ୍ସମଦ ସୁତ
ଶୌନକ ମୁନି ତହୁଁ ଜାତ ।୧,୩
କାଶ୍ୟର କାଶୀ ନାମେ ସୁତ
ତା ପୁତ୍ର ରାଷ୍ଟ୍ର ନାମେ ଖ୍ୟାତ

ତାହାର ପୁତ୍ର ଦୀର୍ଘତମ
ତା ପୁତ୍ର ଧନ୍ୱନ୍ତରୀ ନାମ
ସେ ଆୟୁର୍ବେଦ ଭିଆଇଲ
ପ୍ରାଣିଙ୍କ ବ୍ୟାଧି ନାଶ କଲ
ସେ ଯଜ୍ଞଭୁକ ବିଷ୍ଣୁ ଅଂଶେ
ସ୍ମରଣେ ଏବଂ ରୋଗ ନାଶେ ।୪।

ତତ୍ପୁତ୍ରଃ କେତୁମାନସ୍ୟ ଜଜ୍ଞେ ଭୀମରଥସ୍ତତଃ ।
ଦିବୋଦାସୋ ଦ୍ୟୁମାଂସ୍ତସ୍ମାତ୍ ପ୍ରତର୍ଦ୍ଦନ ଇତି ସ୍ମୃତଃ । ୫ ।
ସ ଏବ ଶତ୍ରୁଜିତ୍ ବତ୍ସ ଋତଧ୍ୱଜ ଇତୀରିତଃ ।
ତଥା କୁବଳୟାଶ୍ୱେତି ପ୍ରୋକ୍ତୋଽଳର୍କାଦୟସ୍ତତଃ । ୬ ।
ଷଷ୍ଟିଂ ବର୍ଷସହସ୍ରାଣି ଷଷ୍ଟିଂ ବର୍ଷଶତାନି ଚ ।
ନାଳର୍କାଦପରୋ ରାଜନ୍ ବୁଭୁଜେ ମେଦନୀଂ ଯୁବା । ୭ ।
ଅଳର୍କାତ୍ ସନ୍ତତିସ୍ତସ୍ମାତ୍ ସୁନୀଥୋଽଥ ନିକେତନଃ ।
ଧର୍ମ୍ମକେତୁଃ ସୁତସ୍ତସ୍ମାତ୍ ସତ୍ୟକେତୁରଜାୟତ । ୮ ।
ଧୃଷ୍ଟକେତୁସ୍ତତସ୍ତସ୍ମାତ୍ ସୁକୁମାରଃ କ୍ଷିତୀଶ୍ୱରଃ ।
ବୀତିହୋତ୍ରୋଽସ୍ୟ ଭର୍ଗୋଽତୋ ଭାର୍ଗଭୂମିରଭୂନ୍ନୃପଃ । ୯ ।

ତାହାଙ୍କର ପୁତ୍ର କେତୁମାନ । କେତୁମାନଙ୍କର ପୁତ୍ର ଭୀମରଥ, ଭୀମରଥଙ୍କଠାରୁ ଦିବୋଦାସ ଏବଂ ଦିବୋଦାସଙ୍କଠାରୁ ଦ୍ୟୁମାନ ଜନ୍ମଗ୍ରହଣ କରିଥିଲେ । ସେ ପ୍ରତର୍ଦ୍ଦନ, ଶତ୍ରୁଜିତ୍, ବତ୍ସ, ଋତଧ୍ୱଜ, କୁବଳୟାଶ୍ୱ ନାମରେ ବିଖ୍ୟାତ । ଏହାଙ୍କର ଅଳର୍କ ପ୍ରଭୃତି ଅନେକ ଗୁଡ଼ିଏ ସନ୍ତାନ ଜନ୍ମିଥିଲେ । ହେ ରାଜନ ! ଅଳର୍କ ଷାଠିଏ ହଜାର ଷାଠିଏଶହ ବର୍ଷ ରାଜ୍ୟପାଳନ କରିଥିଲେ । ତାଙ୍କ ବ୍ୟତୀତ ଅନ୍ୟ କେହି ଯୁବକ ଏହା କରିପାରିନାହିଁ । ୫, ୭ ।

ଅଳର୍କଙ୍କର ପୁତ୍ର ସନ୍ତତି, ତାହାଙ୍କର ପୁତ୍ର ସୁନୀଥ, ତାହାଙ୍କର ପୁତ୍ର ନିକେତନ, ତାହାଙ୍କର ପୁତ୍ର ଧର୍ମକେତୁ, ତାହାଙ୍କର ପୁତ୍ର ସତ୍ୟକେତୁ, ତାହାଙ୍କର ପୁତ୍ର ଧୃଷ୍ଟକେତୁ, ତାହାଙ୍କର ପୁତ୍ର କ୍ଷିତୀଶ୍ୱର ସୁକୁମାର, ସେହି ସୁକୁମାରଙ୍କର ପୁତ୍ର ବୀତିହୋତ୍ର । ବୀତିହୋତ୍ରଙ୍କଠାରୁ ଭର୍ଗ, ଭର୍ଗଙ୍କଠାରୁ ଭର୍ଗ ଜନ୍ମିଥିଲେ । ହେ ରାଜନ୍ ! କାଶୀବଂଶ ସମ୍ଭୂତ ଏହି ରାଜାମାନେ ସେମାନଙ୍କର ପ୍ରପିତାମହ କ୍ଷେତ୍ରବୃଦ୍ଧଙ୍କ ନାମରେ ବିଖ୍ୟାତ ହୋଇଥିଲେ । ୮, ୯ ।

ତାର ସନ୍ତତି କେତୁବାନ
ଭୀମରଥ ତାର ନନ୍ଦନ
ତାହାର ଦାୟାଦ ଦିବୋଦାସ
ଦ୍ୟୁମାନ ତାହାର ଯେ ଶିଷ୍ୟ
ତା ନାମ ପ୍ରତର୍ଦ୍ଦନ ଖ୍ୟାତ
ହେ ଅବା ବୋଲେ ଶତ୍ରୁଜିତ
ଋତଧ୍ୱଜ କୁବଳୟାଶ୍ୱ
ବୋଲନ୍ତି ପୁଣି ତାକୁ ବତ୍ସ । ୫, ୬ ।
ଅଳର୍କ ତାର ତନୁଜ ଜନ୍ମ
ଶୁଣ ହୋ ତାର ଘୋରକର୍ମ୍ମ

ଷାଠିଏ ସହସ୍ର ବରଷ
ଅଧିକେ ଷଷ୍ଟିଶତ ଶେଷ
ଅବନୀ ତଳେ ହୋଇ ରାଜା
ଧର୍ମ୍ମେ ପାଳିଲା ଜନ ପ୍ରଜା । ୭ ।
ଅଳର୍କୁ ସନ୍ତତି ସୁନୀଥ
ନିକେତନ ଯେ ତାର ପୁତ୍ର
ତାର ତନୟ ଧର୍ମ୍ମକେତୁ
ତାହାର ପୁତ୍ର ସତ୍ୟକେତୁ । ୮ ।
ଧୃଷ୍ଟକେତୁ ତାର ନନ୍ଦନ
ରୂପେ ଗଞ୍ଜିଲା ସେ ମଦନ

ସୁକୁମାର ତାର ତନୁଜ
ଅନେକ ଦିନ କଲା ରାଜ୍ୟ
ତାର ଯେ ବୀତହୋତ୍ର ସୁତ
ଭର୍ଗ ଯେ ତାର ତନୁଜାତ
ତାହାର ପୁତ୍ର ଭର୍ଗଭୂମି
ଯେ ରାଜା ଅଟେ ମହାଧର୍ମୀ
ତାହାର ନାମେ କର୍ମଭୂମି
ଯମ ନ ପାରେ ଯହିଁ ଭ୍ରମି । ୯ ।

ଇତୀମେ କାଶୟୋ ଭୂପାଃ କ୍ଷତ୍ରବୃଦ୍ଧାନ୍ୱୟାୟିନଃ ।
ରମ୍ଭସ୍ୟ ରଭସଃ ପୁତ୍ରୋ ଗମ୍ଭୀରଶ୍ଚାକ୍ରିୟସ୍ତତଃ । ୧୦ ।
ତଦ୍‌ଗୋତ୍ରଂ ବ୍ରହ୍ମବଜ୍ଜଜ୍ଞେ ଶୃଣୁ ବଂଶମନେନସଃ ।
ଶୁଦ୍ଧସ୍ତତଃ ଶୁଚସ୍ତସ୍ମାଚ୍ଚିତ୍ରକୃଦ୍ଧର୍ମସାରଥିଃ । ୧୧ ।
ତତଃ ଶାନ୍ତରଜା ଜଜ୍ଞେ କୃତକୃତ୍ୟଃ ସ ଆତ୍ମବାନ୍ ।
ରଜେଃ ପଞ୍ଚଶତାନ୍ୟାସନ୍ ପୁତ୍ରାଣାମମିତୌଜସାମ୍ । ୧୨ ।
ଦେବୈରଭ୍ୟର୍ଥିତୋ ଦୈତ୍ୟାନ୍ ହତ୍ୱେନ୍ଦ୍ରାୟାଦଦାଦ୍ଦିବମ୍ ।
ଇନ୍ଦ୍ରସ୍ତସ୍ମୈ ପୁନର୍ଦତ୍ତ୍ୱା ଗୃହୀତ୍ୱା ଚରଣୌ ରଜେଃ ।
ଆତ୍ମାନମର୍ପୟାମାସ ପ୍ରହ୍ଲାଦାଦ୍ୟରିଶଙ୍କିତଃ । ୧୩ ।

---

ରମ୍ଭଙ୍କର ପୁତ୍ର ରଭସ, ତାହାଙ୍କର ପୁତ୍ର ଗମ୍ଭୀର, ଗମ୍ଭୀରଙ୍କର ପୁତ୍ର ଅକ୍ରିୟ, ଏବଂ ଅକ୍ରିୟଙ୍କର ପୁତ୍ର ବ୍ରହ୍ମବତ୍ । ହେ ରାଜନ୍ ! ତଦନନ୍ତର ଅନେନାଙ୍କର ବଂଶ ବିଷୟ ଶ୍ରବଣ କରନ୍ତୁ ।୧୦।

ଅନେନାଙ୍କର ପୁତ୍ର ଶୁଦ୍ଧ, ଶୁଦ୍ଧଙ୍କଠାରୁ ଶୁଚି, ତାଙ୍କଠାରୁ ଧର୍ମ ସାରଥି ଚିତ୍ରକୃତ୍, ଚିତ୍ରକୃତ୍‌ଙ୍କଠାରୁ ଶାନ୍ତରଜା ଜନ୍ମଗ୍ରହଣ କରିଥିଲେ । ସେ କୃତକୃତ୍ୟ ଓ ଆତ୍ମବାନ୍ ଥିଲେ ।୧୧।

ହେ ରାଜନ୍ ! ରଜିରାଜାଙ୍କର ଅମିତ ବଳଶାଳୀ ପାଞ୍ଚଶତ ପୁତ୍ର ଜନ୍ମିଥିଲେ । ରଜି ଏକ ସମୟରେ ଅସୁରଗଣଙ୍କ ଦ୍ୱାରା ପ୍ରପୀଡ଼ିତ ଇନ୍ଦ୍ରାଦି ଦେବଗଣଙ୍କ ପ୍ରାର୍ଥନା ପୂରଣ କରି ଦୈତ୍ୟମାନଙ୍କୁ ବଧ କରି ଇନ୍ଦ୍ରଙ୍କୁ ସ୍ୱର୍ଗରାଜ୍ୟ ପ୍ରଦାନ କରିଥିଲେ । କିନ୍ତୁ କାଳେ ପ୍ରହ୍ଲାଦ ପ୍ରଭୃତି ଅସୁର ଶତ୍ରୁମାନେ ପୁନର୍ବାର ସ୍ୱର୍ଗରାଜ୍ୟ ଅଧିକାର କରିନେବେ ଏହି ଆଶଙ୍କାରେ ତାହାଙ୍କୁ ପୁନର୍ବାର ସ୍ୱର୍ଗରାଜ୍ୟ ପ୍ରଦାନ କରିଥିଲେ ଏବଂ ତାହାଙ୍କ ଚରଣରେ ଆଶ୍ରୟ ଗ୍ରହଣ କରି ଆତ୍ମସମର୍ପଣ କରିଥିଲେ । ୧୨, ୧୩ ।

---

ରଭସ ଗମ୍ଭୀର ଏ ବେନି
ରମ୍ଭର ସୁତ ବୋଲି ଜାଣି
ଅକ୍ରିୟ ଗମ୍ଭୀରର ସୁତ
ତା କ୍ଷେତ୍ରେ ବିପ୍ରେ ହେଲେ ଜାତ ।୧୦।
ଅନେନା ଆୟୁର କୁମର
ଶୁଣ କହିବା ବଂଶ ତାର
ଶୁଦ୍ଧ ଯେ ଅନେନାର ସୁତ
ଶୁଚି ତାହାର ଗର୍ଭୁ ଜାତ

ଚିତ୍ରକୃତ୍ ଯେ ଧର୍ମ ସାରଥି
ଏ ତିନି ସୁତ ଉତପତ୍ତି । ୧୧ ।
ତାଠାରୁ ଶାନ୍ତରଜା ଜାତ
ସେ କୃତକୃତ୍ୟ ଆତ୍ମବନ୍ତ
ରଜିର ପୁତ୍ର ପାଞ୍ଚଶତ
ତେଜ ପ୍ରଭାବେ ଅପ୍ରମିତ ।୧୨।
ଅସୁରେ ଆସି ଅନ୍ତରିଲେ
ଇନ୍ଦ୍ରକୁ ଉଦ୍ଧରିଲେ ବଳେ

ଇନ୍ଦ୍ର ଦେବଙ୍କ ଭୁଲେ ଆସି
ରଜିକୁ କହିଲେ ବିଶ୍ୱାସି
ହେ ରାଜା ! ତୋର ପୁତ୍ରଗଣେ
ଜିଣିବେ ଅସୁରଙ୍କୁ ରଣେ
ମୋତେ କହିଲେ ବୃହସ୍ପତି
ଅନ୍ୟଥା ନାହିଁ ଜୟ ଗତି
ଏମନ୍ତ ଆସି ଦେବପଥେ
ଘେନାଇ ପାଞ୍ଚଶତ ସୁତେ

ପିତର୍ଯ୍ୟୁପରତେ ପୁତ୍ରା ଯାଚମାନାୟ ନୋ ଦଦୁଃ ।
ତ୍ରିବିଷ୍ଟପଂ ମହେନ୍ଦ୍ରାୟ ଯଜ୍ଞଭାଗାନ୍ ସମାଦଦୁଃ । ୧୪ ।
ଗୁରୁଣା ହୂୟମାନେଽଗ୍ନୌ ବଳଭିତ୍ ତନୟାନ୍ ରଜେଃ ।
ଅବଧୀଦ୍‌ଭ୍ରଂଶିତାନ୍ ମାର୍ଗାନ୍ ନ କଶ୍ଚିଦବଶେଷିତଃ । ୧୫ ।
କୁଶାତ୍ ପ୍ରତିଃ କ୍ଷାତ୍ରବୃଦ୍ଧାତ୍ ସଞ୍ଜୟସ୍ତତ୍‌ସୁତୋ ଜୟଃ ।
ତତଃ କୃତଃ କୃତସ୍ୟାପି ଜଜ୍ଞେ ହର୍ଯ୍ୟବଲୋ ନୃପଃ । ୧୬ ।
ସହଦେବସ୍ତତୋ ହୀନୋ ଜୟସେନସ୍ତୁ ତତ୍‌ସୁତଃ ।
ସଂକୃତିସ୍ତସ୍ୟ ଚ ଜୟଃ କ୍ଷତ୍ରଧର୍ମା ମହାରଥଃ ।
କ୍ଷତ୍ରବୃଦ୍ଧାନ୍ୱୟା ଭୂପା ଇମେ ଶୃଣ୍ୱଥ ନାହୁଷାନ୍ । ୧୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଆୟୁର୍ବଂଶୋ ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

---

ରଜିଙ୍କର ମୃତ୍ୟୁ ଉତ୍ତାରୁ ତାହାଙ୍କର ପାଞ୍ଚଶତ ପୁତ୍ରଙ୍କୁ ସ୍ୱର୍ଗରାଜ୍ୟ ଫେରାଇ ଦେବାଲାଗି ଇନ୍ଦ୍ର ପ୍ରାର୍ଥନା କଲେ ମଧ୍ୟ ସେମାନେ ତାହା ଫେରାଇ ଦେଲେ ନାହିଁ । ଶେଷ କଲେ ସ୍ୱର୍ଗାଧିପତ୍ୟ ପ୍ରତିଷ୍ଠିତ କରି ଦେବତାମାନଙ୍କର ଯଜ୍ଞଭାଗ ଗ୍ରହଣ କରିଥିଲେ ।୧୪।

ଦେବଗୁରୁ ବୃହସ୍ପତି ରଜିଙ୍କର ମଦମତ୍ତ ପୁତ୍ରମାନଙ୍କର ମତିଭ୍ରମ ଘଟାଇବା ଲାଗି ଅଭିଚାରକ ମନ୍ତ୍ରରେ ହୋମ କରିଥିଲେ । ସେହି ମନ୍ତ୍ର ପ୍ରଭାବରେ ଇନ୍ଦ୍ର, ନୀତି ପଥଭ୍ରଷ୍ଟ ହୋଇ ରଜି ତନୟମାନଙ୍କୁ ବଧ କରିଥିଲେ, କେହି ଗୋଟିଏ ଅବଶିଷ୍ଟ ରହିଲେ ନାହିଁ ।୧୫।

କ୍ଷେତ୍ରବୃଦ୍ଧଙ୍କର ପୌତ୍ରଙ୍କଠାରୁ କୁଶ, କୁଶଙ୍କଠାରୁ ପ୍ରତି, ପ୍ରତିଙ୍କଠାରୁ ସଞ୍ଜୟ ଜାତ ହୋଇଥିଲେ । ସଞ୍ଜୟଙ୍କର ପୁତ୍ର ଜୟ, ଜୟଙ୍କର ପୁତ୍ର କୃତ, କୃତଙ୍କର ପୁତ୍ର ନୃପତି ହର୍ଷ, ହର୍ଷଙ୍କର ପୁତ୍ର ସହଦେବ, ସହଦେବଙ୍କର ପୁତ୍ର ହୀନ, ହୀନଙ୍କର ପୁତ୍ର ଜୟସେନ, ଜୟସେନଙ୍କର ପୁତ୍ର ସଂସ୍କୃତି, ସଂସ୍କୃତିଙ୍କର ଜୟନାମରେ ଏକପୁତ୍ର ଜାତ ହୋଇଥିଲେ । ସେ ଯୁଦ୍ଧ ନିପୁଣ ଥିଲେ, ଏବଂ କ୍ଷତ୍ରିୟଧର୍ମ ପାଳନ କରି ପ୍ରଜାପାଳନ କରିଥିଲେ, କ୍ଷେତ୍ରବୃଦ୍ଧଙ୍କର ବଂଶ ପରମ୍ପରା କୁହାଗଲା, ବର୍ତ୍ତମାନ ନହୁଷବଂଶ ପ୍ରସଙ୍ଗ ଶୁଣନ୍ତୁ ।

---

ସୈନ୍ୟ ଆବୋର ଯୁଦ୍ଧକରି
ଅନେକ ଅସୁର ସଂହାରି
ଇନ୍ଦ୍ରରହିଲେ ତାର ସୁତେ
ସ୍ୱର୍ଗ ରହିଲେ ଧନାକେତେ
ପିତାର ମରଣ ଅନ୍ତର
ଇନ୍ଦ୍ର ମାଗିଲେ ସ୍ୱର୍ଗପୁର
ରଜିର ପୁତ୍ରେ ତା ନ ଦେଲେ
ଯାଗର ଭାଗମାନ ନେଲେ
ରଜି ତନୟଙ୍କର ମତି
ନାଶ କରିଲେ ବୃହସ୍ପତି

ସ୍ଥାପିଲେ ଇନ୍ଦ୍ର ଅଧିକାରେ
ସ୍ୱଧର୍ମ୍ମ ସଂସାର ବେଭାରେ ୧୩।୧୫
କ୍ଷତ୍ରବୃଦ୍ଧର କୁଶ ନାତି
ତାହାର ସୁତ ନାମ ପ୍ରତି
ତହୁଁ ସଞ୍ଜୟ ତହୁଁ ଜୟ
କୃତ ନାମେ ତାର ତନୟ
କୃତର ପୁତ୍ର ହର୍ଯ୍ୟବଳ
ସହଦେବ ତାର କୁମର
ତାହାର ପୁତ୍ର ଜାଣ ହୀନ
ତାହାର ସୁତ ଜୟସେନ

ସଂକୃତି ତାହାର ତନୟ
ତାହାର ପୁତ୍ର ନାମ ଜୟ ।।୧୬,୧୭
ବୋଲଇ ବିପ୍ର ଜଗନ୍ନାଥ
ନବମସ୍କନ୍ଧେ ଭାଗବତ
ବଂଶାନୁଚରିତ ଏ ବାଣୀ
ସୁଜନେ ତର ଏହା ଶୁଣି



## ଅଷ୍ଟାଦଶୋଽଧ୍ୟାୟଃ

ଅଷ୍ଟାଦଶେ ଯଯାତେସ୍ତୁ ନାହୁଷସ୍ୟ କଥୋଚ୍ୟତେ ।
ଯସ୍ୟ ପଞ୍ଚସୁ ପୁତ୍ରେଷୁ କନୀୟାନଗ୍ରହୀଜ୍ଜରାମ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ଯତିର୍ଯଯାତିଃ ସଂଯାତିରାୟତିର୍ବିୟତିଃ କୃତିଃ ।
ଷଡ଼ିମେ ନହୁଷସ୍ୟାସନ୍ନିନ୍ଦ୍ରିୟାଣୀବ ଦେହିନଃ । ୧ ।
ରାଜ୍ୟଂ ନୈଚ୍ଛଦ୍ଯତିଃ ପିତ୍ରା ଦତ୍ତଂ ତତ୍ପରିଣାମବିତ୍ ।
ଯତ୍ର ପ୍ରବିଷ୍ଟଃ ପୁରୁଷ ଆତ୍ମାନଂ ନାବବୁଧ୍ୟତେ । ୨ ।

---

### ଯଯାତି ପ୍ରସଙ୍ଗ

ଅଷ୍ଟାଦଶ ଅଧ୍ୟାୟରେ ନହୁଷ ପୁତ୍ର ଯଯାତିଙ୍କର ପ୍ରସଙ୍ଗ ଏବଂ ତାଙ୍କର ଜରାବସ୍ଥାକୁ କନିଷ୍ଠ ପୁତ୍ର ଗ୍ରହଣ କରିବା ବର୍ଣ୍ଣନା ହୋଇଅଛି । ୦ ॥

ଶ୍ରୀ ଶୁକଦେବ କହିଲେ :—

ଦେହଧାରୀ ମନୁଷ୍ୟ ଷଡ଼ିନ୍ଦ୍ରିୟ ତୁଲ୍ୟ ରାଜା ନହୁଷଙ୍କର ଯତି, ଯଯାତି, ସଂଯାତି, ଆୟତି, ବିୟତି ଓ କୃତି ନାମରେ ଛଅପୁତ୍ର ଜନ୍ମଗ୍ରହଣ କରିଥିଲେ ।୧।

ଏମାନଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର ଯତିଙ୍କୁ ପିତା ରାଜ୍ୟଭାର ଦେଇଥିଲେ । କିନ୍ତୁ ଯତି ରାଜପଦର ଅନର୍ଥକର ପରିଣାମ ବୁଝିପାରି ତାହା ଗ୍ରହଣ କଲେ ନାହିଁ । କାରଣ ତାହାଙ୍କର ଧାରଣା ଜନ୍ମିଥିଲା ଯେ ରାଜ୍ୟଭୋଗ ସୁଖଦ୍ୱାରା ମନୁଷ୍ୟ ଆତ୍ମଜ୍ଞାନ ଲାଭ କରିବାକୁ ସମର୍ଥ ହୁଏ ନାହିଁ ।୨।

---

ଯଯାତି ନହୁଷର ସୁତ; ଅଷ୍ଟାଦଶରେ ତା ଚରିତ ।
ତା ପଞ୍ଚପୁତ୍ରେ ଯେ କନିଷ୍ଠ, ସେ ପିତାଅର୍ଥେ ଜରାଗ୍ରସ୍ତ ॥

ଶ୍ରୀ ଶୁକ ଉବାଚ—

କହନ୍ତି ଶୁକ ବ୍ରହ୍ମବେତ୍ତା
ନବମେ ବଂଶାନୁବ୍ୟବସ୍ଥା
ନହୁଷ ରାଜର୍ଷି ଷଡ଼ ସୁତେ
ତାହାଙ୍କ ନାମ କହୁଁ ତୋତେ

ଯତି ଯଯାତି ଯେ ସଂଯାତି
ଆୟତି ବିୟତି ଯେ କୃତି
ଦେହର ଇନ୍ଦ୍ରିୟ ଯେସନ
ଜନ୍ମିଲେ ନହୁଷ ନନ୍ଦନ ॥ ୧
ଯତିକି ରାଜପଣ ଦେଲା
ସେ ରାଜଭୋଗ ନ ଇଚ୍ଛିଲା

ବୋଇଲା ଦୁଃଖମୟ ଏହି
ଏଥେ ମୋହର କାର୍ଯ୍ୟ ନାହିଁ
ଆତ୍ମା ନ ଜାଣେ ରାଜ୍ୟ ସୁଖେ
ଜାଣିତେ ରହେ ମନ ଦୁଃଖେ ॥ ୨

ପିତରି ଭ୍ରଂଶିତେ ସ୍ଥାନାଦିନ୍ଦ୍ରାଣ୍ୟା ଧର୍ଷଣାଦ୍ୱିଜୈଃ ।
ପ୍ରାପିତେଽଜଗରତ୍ୱଂ ବୈ ଯଯାତିରଭବନ୍ନୃପଃ । ୩ ।
ଚତସୃଷ୍ୱାଦିଶଦ୍ଦିକ୍ଷୁ ଭ୍ରାତୃନ୍ ଭ୍ରାତା ଯବୀୟସଃ ।
କୃତଦାରୋ ଜୁଗୋପୋର୍ବୀଂ କାବ୍ୟସ୍ୟ ବୃଷପର୍ବଣଃ । ୪ ।
ଶ୍ରୀରାଜୋବାଚ
ବ୍ରହ୍ମର୍ଷିର୍ଭଗବାନ୍ କାବ୍ୟଃ କ୍ଷତ୍ରବନ୍ଧୁଶ୍ଚ ନାହୁଷଃ ।
ରାଜନ୍ୟବିପ୍ରୟୋଃ କସ୍ମାଦ୍ ବିବାହଃ ପ୍ରାତିଲୋମିକଃ । ୫ ।

---

ଇନ୍ଦ୍ରାଣୀଙ୍କର ସତୀତ୍ୱ ନାଶ କରିବାର ଚେଷ୍ଟା ହେତୁ ଅଗସ୍ତ୍ୟ ପ୍ରଭୃତି ମୁନିମାନେ ନହୁଷଙ୍କୁ ସ୍ୱର୍ଗଚ୍ୟୁତ କରନ୍ତେ ସେ ଅଜଗର ସର୍ପରୂପ ଧାରଣ କରିଥିଲେ ଏବଂ ଯଯାତି ରାଜା ହୋଇଥିଲେ ।୩।

ରାଜା ହୋଇ ସେ ଅନ୍ୟ ଚାରିଭାଇଙ୍କ ଉପରେ ଶାସନଭାର ଅର୍ପଣ କରିଥିଲେ ଓ ନିଜେ ଶୁକ୍ରାଚାର୍ଯ୍ୟ ଓ ବୃଷପର୍ବାଙ୍କର କନ୍ୟା ଦ୍ୱୟଙ୍କୁ ବିବାହ କରି ପୃଥିବୀ ପାଳନ କରିଥିଲେ ।୪।

ରାଜା ପରୀକ୍ଷିତ କହିଲେ :—

ହେ ବ୍ରହ୍ମନ୍ ! ଭଗବାନ୍ ଶୁକ୍ରାଚାର୍ଯ୍ୟ ବ୍ରାହ୍ମଣ, ନହୁଷପୁତ୍ର ଯଯାତି କ୍ଷତ୍ରିୟ । ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟରେ ପ୍ରତିଲୋମ ବିବାହ କିପରି ହେଲା ତାହା କୁହନ୍ତୁ ।୫।

---

ଜାଣଇ ପିତାର ଅସ୍ତର
ଋଷିଙ୍କି ବୁହାଇଲା ଭାର
ଇନ୍ଦ୍ରାଣୀ ଅର୍ଥେ ପଥେ ଯାନ୍ତେ
କୋପ ଉପୁଜିଲା ତାଙ୍କ ଚିତ୍ତେ
ବହି ନ ପାରି ମହାଭାର
ହୋଇଲେ ହୁଅ ଅଜଗର
ଏମନ୍ତେ ଅଜଗର ମତେ
ନିର୍ଜ୍ଜନ ଗହନ ବନସ୍ତେ
ପଡ଼ି ଡାକିଲା ଅତି ଶୋକ
ହେ ଋଷିଗଣ ! ମୋତେ ରଖ
ତାର ବଚନେ ମୁନିଗଣ
ବୋଇଲେ ହେ ରାଜନ ! ଶୁଣ
ଦ୍ୱାପର ଯୁଗ ଅବଶେଷେ
ଧର୍ମ୍ମନନ୍ଦନ କୁରୁବଂଶେ
ଭୀମକୁ ବନ ଖୋଜି ଯାନ୍ତେ
ଭେଟ ହୋଇବ ତୋ ସଙ୍ଗତେ

ଭୀମକୁ ବାନ୍ଧିଥିବୁ ତୁହି
ସେ ପୁଣି ତୋର ପାଶେ ଯାଇଁ
ଧର୍ମ୍ମ କହିବେ ତୋତେ ଯେବେ
ନିସ୍ତାର ତୋର ହେବ ତେବେ
ଏମନ୍ତ କହି ମୁନି ଗଲେ
ସେ ପୁଣି ଯୁଧିଷ୍ଠିର ଭୂଲେ
ଧର୍ମ୍ମ ବିଚାର କରି ଭଲେ
ଏକାନ୍ତେ ନହୁଷରି ଭୁଲେ
ସର୍ପ ଯୋନିରୁ ମୋକ୍ଷ ହୋଇ
ନିଜ ମନ୍ଦିରେ ମିଳେ ଯାଇଁ
ସେ କଥା ସ୍ମରି ଯତି ମନେ
ନ ବସି ନୃପତି ଆସନେ
ଯଯାତି ଭୂ ଭୂଗରେ ଭୂଲେ
ରାଜା ହୋଇଲା ପିତୃ ବୋଲେ ।୩
ସକଳ ସଜ୍ୟେ ହୋଇ ରାଜା
ଧର୍ମ୍ମେ ପାଳିଲା ଜନ ପ୍ରଜା

କାବ୍ୟ ଦୁହିତା ଦେବଯାନୀ
ଶର୍ମ୍ମିଷ୍ଠା ବୃଷପର୍ବାତ୍ମଜୀ
ଯଯାତି ବରି ବରପଣେ
ବିବାହ କଲେ ଶୁଭକ୍ଷଣେ ॥ ୪
ଏମନ୍ତେ ଶୁକ-ବାକ୍ୟ ଶୁଣି
ବୋଲନ୍ତେ ପରୀକ୍ଷ ନୃପମଣି
ହେ ମୁନି ! ଅସମ୍ଭବ ବାଣୀ
ସଂଶୟ ଲାଗିଲାଟି ଶୁଣି
ଶୁକ୍ର ସ୍ୱଭାବେ ବ୍ରହ୍ମଋଷି
ଜନ୍ମ ସ୍ୱଭାବେ ଭୃଗୁବଂଶୀ
ବ୍ରାହ୍ମଣ କ୍ଷତ୍ରିୟ କେମନ୍ତେ
ବିବାହ କଲେ ବେଦମତେ
ଏ ପ୍ରତିଲୋମ ପ୍ରାୟ ମଣି
ଶୁକ କହନ୍ତି ତାହା ଶୁଣି ॥ ୫

ଶ୍ରୀଶୁକ ଉବାଚ

ଏକଦା ଦାନବେନ୍ଦ୍ରସ୍ୟ ଶର୍ମିଷ୍ଠା ନାମ କନ୍ୟକା ।
ସଖୀସହସ୍ରସଂଯୁକ୍ତା ଗୁରୁପୁତ୍ର୍ୟା ଚ ଭାମିନୀ । ୬ ।
ଦେବଯାନ୍ୟା ପୁରୋଦ୍ୟାନେ ପୁଷ୍ପିତଦ୍ରୁମସଙ୍କୁଳେ ।
ବ୍ୟଚରତ୍ କଳଗୀତାଳିନଳିନୀପୁଳିନେଽବଳା । ୭ ।
ତା ଜଳାଶୟମାସାଦ୍ୟ କନ୍ୟାଃ କମଳଲୋଚନାଃ ।
ତୀରେ ନ୍ୟସ୍ୟ ଦୁକୂଳାନି ବିଜହ୍ରୁଃ ସିଞ୍ଚତୀର୍ମିଥଃ । ୮ ।
ବୀକ୍ଷ୍ୟ ବ୍ରଜନ୍ତଂ ଗିରିଶଂ ସହ ଦେବ୍ୟା ବୃଷସ୍ଥିତମ୍ ।
ସହସୋତ୍ତୀର୍ଯ୍ୟ ବାସାଂସି ପର୍ଯ୍ୟଧୁର୍ବ୍ରୀଡ଼ିତାଃ ସ୍ତ୍ରିୟଃ । ୯ ।

ଶ୍ରୀ ଶୁକଦେବ କହିଲେ :—

ଏକଦା ଦୈତ୍ୟରାଜ ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠା-ତାହାଙ୍କର ସହସ୍ର ସଖୀ ପରିବୃତ ହୋଇ ଗୁରୁ ଶୁକ୍ରାଚାର୍ଯ୍ୟଙ୍କର କନ୍ୟା ଦେବଯାନୀ ସହିତ ଅସଂଖ୍ୟ ପୁଷ୍ପିତବୃକ୍ଷ ପରିପୂର୍ଣ୍ଣ ପୁରୋଦ୍ୟାନରେ ପରିଭ୍ରମଣ କରୁଥିଲା ବେଳେ ପଦ୍ମ ସରୋବର ତୀରରେ ଭ୍ରମରମାନେ ସୁମିଷ୍ଟ ଝଙ୍କାରରେ ଅସ୍ଫୁଟ ମଧୁରସ୍ୱରରେ ଗାନ କରୁଥିଲେ ।୬, ୭।

ପଦ୍ମଲୋଚନା କନ୍ୟାଗଣ ଜଳାଶୟ ନିକଟରେ ଉପସ୍ଥିତ ହୋଇ ଜଳକ୍ରୀଡ଼ା ମାନସରେ ନିଜ ନିଜର ବସ୍ତ୍ରମାନ ଜଳାଶୟ କୂଳରେ ରଖି ଜଳରେ ପ୍ରବେଶ କଲେ ଏବଂ ପରସ୍ପର ପ୍ରତି ଜଳ ନିକ୍ଷେପ କରି ଜଳକ୍ରୀଡ଼ା କଲେ ।୮।

ଦୈବାତ୍ ଉମାପତି ଶିବ ଉମାଙ୍କ ସହିତ ଗମନ କରିବାର ଦେଖି ସେମାନେ ଲଜ୍ଜିତା ହୋଇ ବ୍ୟସ୍ତଭାବରେ ଜଳରୁ ଉଠିଆସି ନିଜ ନିଜର ବସ୍ତ୍ରପରିଧାନ କଲେ ।୯।

ଦାନବ ବୃଷପର୍ବା ଘରେ
ଶର୍ମିଷ୍ଠା କନ୍ୟା ଅନ୍ତଃପୁରେ
ସଖୀ ସହସ୍ରେ ଘେନି ସଙ୍ଗେ
ଜଳେ କ୍ରୀଡ଼ନ୍ତି ନାନାରଙ୍ଗେ
ଶୁକ୍ରଦେବ ନନ୍ଦାଘର କାଳି
ଗୁରୁ ଦୁହିତା ସଙ୍ଗମେଳି
କୃତ୍ରିମ ବନମଧ୍ୟେ ମିଳେ
ପୁଷ୍ପିତ ଦ୍ରୁମ ଶୀତ ଜଳେ

କହ୍ଲାର ପଦ୍ମପୁଷ୍ପ ଗନ୍ଧେ
ଭ୍ରମରଗଣ ମକରନ୍ଦେ
ପୁଷ୍ପର ଗନ୍ଧେ ବାୟୁ ପୂରେ
ଶୀତଳ ଲାଗଇ ଶରୀରେ
ଯେ ଜଳେ ପଶି ସେତେ କନ୍ୟା
ସୁନ୍ଦରେ କମଳଲୋଚନା
ବସ୍ତ୍ର ପାଳନ୍ତି ହ୍ରଦ କୂଳେ
ଝାସି ପଶିଲେ ଶୀତ ଜଳେ

କ୍ରୀଡ଼ନ୍ତି ଜଳେ ନାନା ରଙ୍ଗେ
ଜଳ ସିଞ୍ଚନ୍ତି ଅଙ୍ଗ ଅଙ୍ଗେ ।।୬, ୮
ଏମନ୍ତେ ଉମା ମହେଶ୍ୱର
ଆରୋହି ବୃଷଭ ଉପର
ବନେ ଚଳନ୍ତେ ତାଙ୍କୁ ଦେଖି
ବେଗେ ଉଠିଲେ ଶଶୀମୁଖୀ
ସକଳେ ଉଠି ତୀର ଛୁଇଁଲେ
ସମ୍ଭ୍ରମେ ବସନ ପିନ୍ଧିଲେ

ଶର୍ମ୍ମିଷ୍ଠାଽଜାନତୀ ବାସୋ ଗୁରୁପୁତ୍ର୍ୟା ସମବ୍ୟୟତ୍ ।
ସ୍ୱୀୟଂ ମତ୍ୱା ପ୍ରକୁପିତା ଦେବଯାନୀଦମବ୍ରବୀତ୍ । ୧୦ ।
ଅହୋ ନିରୀକ୍ଷ୍ୟତାମସ୍ୟା ଦାସ୍ୟାଃ କର୍ମ୍ମ ହ୍ୟସାମ୍ପ୍ରତମ୍ ।
ଅସ୍ମଦ୍ଧାର୍ଯ୍ୟଂ ଧୃତବତୀ ଶୁନୀବ ହବିରଧ୍ୱରେ । ୧୧ ।
ଯୈରିଦଂ ତପସା ସୃଷ୍ଟଂ ମୁଖଂ ପୁଂସଃ ପରସ୍ୟ ଯେ ।
ଧାର୍ଯ୍ୟତେ ଯୈରିହ ଜ୍ୟୋତିଃ ଶିବଃ ପନ୍ଥା ପ୍ରଦର୍ଶିତଃ । ୧୨ ।
ଯାନ୍ ବନ୍ଦନ୍ତ୍ୟୁପତିଷ୍ଠନ୍ତେ ଲୋକନାଥାଃ ସୁରେଶ୍ୱରାଃ ।
ଭଗବାନପି ବିଶ୍ୱାତ୍ମା ପାବନଃ ଶ୍ରୀନିକେତନଃ । ୧୩ ।
ବୟଂ ତତ୍ରାପି ଭୃଗବଃ ଶିଷ୍ୟୋଽସ୍ୟା ନଃ ପିତାସୁରଃ ।
ଅସ୍ମଦ୍ଧାର୍ଯ୍ୟଂ ଧୃତବତୀ ଶୂଦ୍ରୋ ବେଦମିବାସତୀ । ୧୪ ।

---

ଶର୍ମିଷ୍ଠା ନିଜ ବସ୍ତ୍ର ବୋଲି ଜାଣି ନପାରି ଗୁରୁକନ୍ୟାଙ୍କର ବସ୍ତ୍ର ପରିଧାନ କରିଥିଲେ, ତହୁଁ ଦେବଯାନୀ କୁପିତ ହୋଇ କହିଲେ ।୧୦।

ଅହୋ ! ଏହି ଦାସୀର ଅନ୍ୟାୟ୍ୟ କାର୍ଯ୍ୟ ଦେଖ, କୁକୁରୀ ଯେପରି ଯଜ୍ଞଘୃତ ଭୋଜନ କରେ; ସେହିପରି ଏହିଦାସୀ ମୋର ବସ୍ତ୍ର ପରିଧାନ କରିଅଛି ।୧୧।

ଯେଉଁ ବ୍ରାହ୍ମଣମାନେ ତପସ୍ୟା ପ୍ରଭାବରେ ଏହି ବିଶ୍ୱସୃଷ୍ଟି କରିଅଛନ୍ତି, ଯେଉଁମାନେ ପରମପୁରୁଷ ବିଷ୍ଣୁଙ୍କର ମୁଖ ସ୍ୱରୂପ, ଯେଉଁମାନେ ପବିତ୍ର ବ୍ରହ୍ମତେଜ ଧାରଣ କରିଅଛନ୍ତି, ଯେଉଁମାନେ ମଙ୍ଗଳ-ଦାୟକ, ବେଦପଥ ପ୍ରବର୍ତ୍ତକ, ଯେଉଁମାନଙ୍କୁ ଲୋକନାଥ ଦେବତାମାନେ ଏବଂ ବିଶ୍ୱାତ୍ମା ଲକ୍ଷ୍ମୀକାନ୍ତ ଭଗବାନ୍ ବିଷ୍ଣୁ ବନ୍ଦନ ଓ ପୂଜା କରନ୍ତି ସେହି ବ୍ରାହ୍ମଣଜାତି ସମସ୍ତଙ୍କର ପୂଜ୍ୟ । ବିଶେଷତଃ ଭୃଗୁବଂଶରେ ମୋର ଜନ୍ମ, ଏହି ଶର୍ମିଷ୍ଠାର ପିତା ଅସୁର, ଆମ୍ଭମାନଙ୍କର ଶିଷ୍ୟ, ଶୂଦ୍ର ବେଦାଧ୍ୟୟନ କଲାପରି ଏହି ଅସତୀ ମୋର ବସ୍ତ୍ର ପରିଧାନ କରିଅଛି । ୧୨, ୧୪ ।

---

ଶର୍ମ୍ମିଷ୍ଠା ସମ୍ଭ୍ରମେ ନ ଜାଣି
ଦେବଯାନୀର ବସ୍ତ୍ର ଆଣି
ସମ୍ଭ୍ରମେ କଲା ପରିଧାନ
ତା ଦେଖି ଦେବଯାନୀ ମନ
କୋପେ କମ୍ପଇ ଥର ଥର
କଠୋର ବୋଲଇ ଉତ୍ତର ୯,୧୦
ଦେଖ ଏ ଦାସୀ ମାତ୍ର ହୋଇ
ବସ୍ତ୍ର ପିନ୍ଧିଲା ମୋର ନେଇ

ଅବଜ୍ଞା କରି ମୋ ବସନ
ଯଜ୍ଞର ହବିଃ ଯେସନ୍ତେ ଶ୍ୱାନ ॥୧୧
ବିପ୍ରେ ସର୍ଜ୍ଜନ୍ତି ତପବଳେ
ବିଷ୍ଣୁ ଭଜନ୍ତି ମହୀତଳେ
ବ୍ରହ୍ମା ମୁଖରୁ ଜାତ ହେଲେ
ସର୍ବେ ତରନ୍ତି ତାଙ୍କ ବୋଲେ ।
ଗୋବିନ୍ଦ ଯାହାର ବଚନେ
ନିତ୍ୟେ ବସନ୍ତି ସନ୍ନିଧାନେ

ତହିଁ ମୁଁ ଭୃଗୁବଂଶେ ଜାତ
ଆମ୍ଭର ଶିଷ୍ୟ ଏହା ତାତ
ମୋବସ୍ତ୍ର ପିନ୍ଧେ ଗର୍ବମନେ
ଶୂଦ୍ରକୁ ବେଦବାକ୍ୟ ଯେହ୍ନେ ॥୧୨-୧୪

ଏବଂ କ୍ଷିପନ୍ତୀଂ ଶର୍ମ୍ମିଷ୍ଠା ଗୁରୁପୁତ୍ରୀମଭାଷତ ।
ରුଷା ଶ୍ୱସନ୍ତ୍ୟୁରଙ୍ଗୀବ ଧର୍ଷିତା ଦଷ୍ଟଦଚ୍ଛଦା । ୧୫ ।
ଆତ୍ମବୃତ୍ତମବିଜ୍ଞାୟ କତ୍‌ଥସେ ବହୁଭିକ୍ଷୁକି ।
କିଂ ନ ପ୍ରତୀକ୍ଷସେଽସ୍ମାକଂ ଗୃହାନ୍ ବଲିଭୁଜୋ ଯଥା । ୧୬ ।
ଏବଂ ବିଧୈଃ ସୁପରୁଷୈଃ କ୍ଷିପ୍ତ୍ୱାଽଽଚାର୍ଯ୍ୟସୁତାଂ ସତୀମ୍ ।
ଶର୍ମ୍ମିଷ୍ଠା ପ୍ରାକ୍ଷିପତ୍ କୂପେ ବାସଶ୍ଚାଦାୟ ମନ୍ୟୁନା । ୧୭ ।
ତସ୍ୟାଂ ଗତାୟାଂ ସ୍ୱଗୃହଂ ଯଯାତିର୍ମୃଗୟାଂ ଚରନ୍ ।
ପ୍ରାପ୍ତୋ ଯଦୃଚ୍ଛୟା କୂପେ ଜଳାର୍ଥୀ ତାଂ ଦଦର୍ଶ ହ । ୧୮ ।



ଶର୍ମିଷ୍ଠା ଦେବଯାନୀକୁ କୂପରେ ପକାଇବା

ହେ ରାଜନ୍ ! ଶୁକ୍ରକନ୍ୟା ଦେବଯାନୀ ଶର୍ମିଷ୍ଠାଙ୍କୁ ଏହିପରି ଭାବରେ ଭର୍ତ୍ସନା କରନ୍ତେ ଶର୍ମିଷ୍ଠା ଓଷ୍ଠାଧର ଦଂଶନ କରି ପଦାହତା ସର୍ପତୁଲ୍ୟ ଘନ ଘନ ଶ୍ୱାସତ୍ୟାଗ କଲେ ।୧୫।

ଶର୍ମିଷ୍ଠା କହିଲେ :—

ହେ ଭିକ୍ଷୁକି ! ନିଜ ବୃତ୍ତାନ୍ତ ନ ଜାଣି ତୁ ମୋତେ ନିନ୍ଦାସୂଚକ ଏବଂ ଏପରି ଦମ୍ଭ ପ୍ରକାଶ କରୁଅଛୁ କାକପରି ତୁମ୍ଭେମାନେ କ'ଣ ଅମ୍ଭମାନଙ୍କ ଗୃହର ଦ୍ରବ୍ୟାଦି ପାଇବାର ପ୍ରତ୍ୟାଶା କରନାହଁ ।୧୬।

ଶର୍ମିଷ୍ଠା କ୍ରୋଧରେ ଗୁରୁକନ୍ୟାଙ୍କୁ ଏପରି ନାନାପ୍ରକାର ତିରସ୍କାର କରି ତାଙ୍କଠାରୁ ଲୁଗା ଛଡ଼ାଇ ନେଲେ ଏବଂ ତାଙ୍କୁ କୂଅ ମଧ୍ୟରେ ପକାଇ ଦେଲେ । ୧୭ ।

ଶର୍ମିଷ୍ଠା ଗୃହକୁ ଗମନ କରନ୍ତେ ଈଶ୍ୱରେଚ୍ଛାରେ ରାଜା ଯଯାତି ମୃଗୟା କରିବାକୁ ବାହାରି ସେଠାରେ ଆସି ଉପସ୍ଥିତ ହୋଇଥିଲେ ଏବଂ ଜଳପାନ କରିବାକୁ ଇଚ୍ଛାକରି କୂପ ମଧ୍ୟରେ ପତିତା ଦେବଯାନୀଙ୍କୁ ଦେଖିଲେ । ୧୮ ।

ଏମନ୍ତେ ଦେବଯାନୀ କଥା
ଶୁଣି ଶର୍ମ୍ମିଷ୍ଠା ମନେ ବ୍ୟଥା
ବୋଲଇ ପରୁଷ ବଚନ
ସିଂହକୁ ଶୃଗାଳ ଯେସନ ॥ ୧୫
ଆପଣା ବୃତ୍ତାନ୍ତ ନ ଜାଣି
ମୋ ଆଗେ କହୁ କଟୁବାଣୀ
ସ୍ୱଭାବେ ଭିକ୍ଷୁକୀ ବୋଲାଉ
ଲଜ୍ଜା ତୋ ମୁଖେ ନାହିଁ ଆଉ

କାକମାନଙ୍କ ପ୍ରାୟେ ହୋଇ
ଥାଉ ତୁ ଅମ୍ଭ ଘରେ ରହି
ରାଜାର ଦୁହିତା ମୁଁ ହୋଇ
ମୋ ଆଗେ କହୁ ଗର୍ବ ବହି ॥୧୬
ଏମନ୍ତେ ବହୁ କୋପ କଲା
ସଖୀଙ୍କି ରହି ଆଜ୍ଞା ଦେଲା
ମାର ବୋଇଲା କୋପମନେ
ଶର୍ମ୍ମିଷ୍ଠା ଧରି ତା ବଦନେ

ଓଷ୍ଠ କାମୋଡ଼ି ଅତି କୋପେ
ତା ବସ୍ତ୍ର ପକାଇଲା କୂପେ
ପୁଣି ତାହାର ଭୁଜ ଧରି
କୂପେ କ୍ଷେପିଲା ବଳ କରି
ଗଲା ସେ ଆପଣା ମନ୍ଦିର
ଏବେ ହୋ ଶୁଣ ନୃପବର ! ୧୭
ଯଯାତି ମୃଗୟାର ଅର୍ଥେ
ଥିଲା ଯେ ନିର୍ଜ୍ଜନ ବନସ୍ତେ

ଦତ୍ତ୍ୱା ସ୍ୱମୁତ୍ତରଂ ବାସସ୍ତସ୍ୟୈ ରାଜା ବିବାସସେ ।
ଗୃହୀତ୍ୱା ପାଣିନା ପାଣିମୁଜ୍ଜହାର ଦୟାପରଃ । ୧୯ ।
ତଂ ବୀରମାହୌଶନସୀ ପ୍ରେମନିର୍ଭରୟା ଗିରା ।
ରାଜଂସ୍ତ୍ୱୟା ଗୃହୀତୋ ମେ ପାଣିଃ ପରପୁରଞ୍ଜୟ । ୨୦ ।
ହସ୍ତଗ୍ରାହୋଽପରୋ ମାଭୂଦ୍‌ଗୃହୀତାୟାସ୍ତ୍ୱୟା ହି ମେ ।
ଏଷ ଈଶକୃତୋ ବୀର ସମ୍ବନ୍ଧୋ ନୌ ନ ପୌରୁଷଃ । ୨୧ ।
ଯଦିଦଂ କୂପମଗ୍ନାୟା ଭବତୋ ଦର୍ଶନଂ ମମ ।
ନ ବ୍ରାହ୍ମଣୋ ମେ ଭବିତା ହସ୍ତଗ୍ରାହୋ ମହାଭୁଜ ।
କଚସ୍ୟ ବାର୍ହସ୍ପତ୍ୟସ୍ୟ ଶାପାଦ୍ୟମଶପଂ ପୁରା । ୨୨ ।

---

ରାଜା ଯଯାତି ଦୟାପରବଶ ହୋଇ ବିବସ୍ତ୍ରା ଦେବଯାନୀଙ୍କୁ ନିଜର ଉତ୍ତରୀୟ ବସ୍ତ୍ରଦାନ କରିଥିଲେ ଏବଂ ହାତ ଧରି କୂଅରୁ ଉଠାଇ ଆଣିଥିଲେ । ୧୯ ।

ଦେବଯାନୀ ସପ୍ରେମ ବଚନରେ ରାଜା ଯଯାତିଙ୍କୁ କହିଲେ—ହେ ପରପୁରଞ୍ଜୟ ! ଆପଣ ମୋର ପାଣିଗ୍ରହଣ କରିଅଛନ୍ତି ସୁତରାଂ ମୁଁ ଆପଣଙ୍କର । ଆପଣଙ୍କ ବ୍ୟତୀତ ମୋର ପାଣି ଯେପରି ଅନ୍ୟ କେହି ଗ୍ରହଣ କରି ନ ପାରେ, ତାହା ଆପଣ ଦେଖିବେ । ହେ ବୀର ! ଆପଣଙ୍କ ସହିତ ମୋର ଏ ସମ୍ବନ୍ଧ ଭଗବଦ୍ ଇଚ୍ଛାରେ ଘଟିଅଛି, କାରଣ ମୁଁ କୂଅରେ ପଡ଼ିଥିଲି ବେଳେ ଆପଣ ଆସି ଏଠାରେ ମୋତେ ଦେଖିବା ଈଶ୍ୱର ଇଚ୍ଛା ଭିନ୍ନ ଘଟି ନ ପାରେ ।୨୦, ୨୧।

ହେ ବୀର ! ବୃହସ୍ପତିଙ୍କର ପୁତ୍ର କଚ ମୋତେ ଶାପ ଦେଇଥିଲେ ଯେ ମୋର ବ୍ରାହ୍ମଣ ପତି ହେବ ନାହିଁ । ମୁଁ ମଧ୍ୟ ତାଙ୍କର ବିଦ୍ୟା ନିଷ୍ଫଳ ହେବା ଲାଗି ଅଭିଶାପ ଦେଇଥିଲି ।୨୨।

---

ବୃଷ୍ଟିତେ ଜଳ ଅନ୍ୱେଷଣେ
କୂପେ ମିଳିଲେ ତତକ୍ଷଣେ
କୂପେ ଚାହିଁଲେ ନୃପମଣି
ଦେଖିଲେ ଶୁକ୍ରର ନନ୍ଦିନୀ
ଉଲଗ୍ନେ ବସ୍ତ୍ର ଖୋଜେ ଜଳେ
ତା ଦେଖି ରାଜା ଦୟା ବଳେ
ଉତ୍ତରୀ ବସ୍ତ୍ର ତାକୁ ଦେଲେ
କନ୍ୟାକୁ ତହୁଁ ଉଦ୍ଧରିଲେ
ଆନନ୍ଦେ ହସ୍ତେ ହସ୍ତ ଧରି
କୂପୁଁ ଆଣିଲେ ଦୟାକରି ॥ ୧୮, ୧୯
ସେ କନ୍ୟା ରାଜା ମୁଖ ଚାହିଁ
ଗଦ୍‌ଗଦେ ପ୍ରେମଭର ହୋଇ

ବୋଲଇ ଶୁଣ ନୃପମଣି
ତୁ ଯେ ଧରିଲୁ ମୋର ପାଣି
ତୁ ଅଟୁ ମୋ ବର ନିଶ୍ଚୟ
ଶୁଣ ତୁ ନିଗମ ନିର୍ଣ୍ଣୟ
ଯେ କନ୍ୟା ହସ୍ତ ହସ୍ତେ ଧରି
ସେ ନିଶ୍ଚେ ତାର ହୁଏ ନାରୀ
ହସ୍ତ ତୁ କଲୁ ମୋର ହସ୍ତ
ମୋ ସ୍ୱାମୀ ଅନ୍ୟ କେ ଜଗତେ
ଏ ଯେ ସମ୍ବନ୍ଧ କନ୍ୟା ବର
ନିଶ୍ଚୟେ ସର୍ଜିଲ ଈଶ୍ୱର ।୨୦, ୨୧
ମୁଁ କନ୍ୟା ଥିଲି କୂପ ଜଳେ
ତୁ ମୋତେ ହସ୍ତ ଧରି ବଳେ

କୂଳେ ସ୍ଥାପିଲୁ ଦୟା ବହି
ତୋ ତହୁଁ ଅନ୍ୟ ବର ନାହିଁ
ଏ ଶାସ୍ତ୍ରମତେ ବିଚାରନ୍ତେ
ବ୍ରାହ୍ମଣେ ନ ବରିବେ ମୋତେ
କଚ ସେ ବୃହସ୍ପତି ବଳା
ସେ ମୋତେ ପୂର୍ବେ ଶାପ ଦେଲା
ସେ ଶାପ ନୋହିଲା ଅନ୍ତର
ଏଣୁ କ୍ଷତ୍ରିୟ ମୋର ବର
ଦଇବ ସର୍ଜିତ ଏ କଥା
କେ କରି ପାରିବ ଅନ୍ୟଥା ॥୨୨

ଯଯାତିରନଭିପ୍ରେତଂ ଦୈବୋପହୃତମାତ୍ମନଃ ।
ମନସ୍ତୁ ତଦ୍‌ଗତଂ ବୁଦ୍ଧ୍ୱା ପ୍ରତିଜଗ୍ରାହ ତଦ୍‌ବଚଃ । ୨୩ ।
ଗତେ ରାଜନି ସା ଧୀରେ ତତ୍ର ସ୍ମ ରୁଦତୀ ପିତୁଃ ।
ନ୍ୟବେଦୟତ୍ ତତଃ ସର୍ବମୁକ୍ତଂ ଶର୍ମିଷ୍ଠୟା କୃତମ୍ । ୨୪ ।
ଦୁର୍ମନା ଭଗବାନ୍ କାବ୍ୟଃ ପୌରୋହିତ୍ୟଂ ବିଗର୍ହୟନ୍ ।
ସ୍ତୁବନ୍ ବୃତ୍ତିଞ୍ଚ କାପୋତୀଂ ଦୁହିତ୍ରା ସ ଯଯୌ ପୁରାତ୍ । ୨୫ ।
ବୃଷପର୍ବା ତମାଜ୍ଞାୟ ପ୍ରତ୍ୟନୀକବିବକ୍ଷିତମ୍ ।
ଗୁରୁଂ ପ୍ରସାଦୟନ୍ମୂର୍ଦ୍ଧ୍ନା ପାଦୟୋଃ ପତିତଃ ପଥି । ୨୬ ।

---

ଯଯାତି ଏହା ଦୈବଙ୍ଘଟିତ ଏବଂ ସେ ଯାହା ଖୋଜୁ ନ ଥିଲେ ତାହା ହଠାତ୍ ପ୍ରାପ୍ତ ହୋଇଅଛନ୍ତି ଏପରି ଭାବି ଦେବଯାନୀଙ୍କ ବାକ୍ୟରେ ସ୍ୱୀକୃତ ହୋଇଥିଲେ ।୨୩।

ରାଜା ଯଯାତି ଗୃହଗମନପରେ ଦେବଯାନୀ ରୋଦନ କରୁ କରୁ ପିତା ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହୋଇ ଶର୍ମିଷ୍ଠାଙ୍କକୃତ କାର୍ଯ୍ୟମାନ ନିବେଦନ କରିଥିଲେ । ୨୪ ।

ଶକ୍ତିମାନ୍ ଶୁକ୍ରାଚାର୍ଯ୍ୟ କନ୍ୟାର ବାକ୍ୟ ଶ୍ରବଣକରି କ୍ଷୁର୍ଣ୍ଣମନରେ ପୌରହିତ୍ୟ ବ୍ୟବସାୟକୁ ନିନ୍ଦା ଉଞ୍ଛବୃତ୍ତିକୁ ପ୍ରଶଂସା କରୁ କରୁ କନ୍ୟା ସହିତ ପୁରରୁ ବାହାରିଲେ ।୨୫।

ଗୁରୁ ଶୁକ୍ରାଚାର୍ଯ୍ୟ ଦେବତାମାନଙ୍କୁ ଜିତାଇ ଦେଇ ଅସୁରମାନଙ୍କର ପରାଜୟ କରାଇଦେବେ ଏହି ଅଭିପ୍ରାୟ କରିଅଛନ୍ତି ବୋଲି ଅସୁରରାଜ ବୃଷପର୍ବା, ଜାଣିପାରି ତତ୍‌କ୍ଷଣେ ପଥ ମଧ୍ୟରେ ତାହାଙ୍କ ଚରଣ ତଳେ ନିପତିତ ହେଲେ ଏବଂ ତାଙ୍କର ପ୍ରସନ୍ନତା ଭିକ୍ଷା କରିଥିଲେ ।୨୬।

---

ତାର ବଚନ ରାଜା ଶୁଣି
ସମ୍ମତ କରି ହୋଏ ତୁନି
ଯଯାତି ନିଜ ପୁରେ ଗଲା
ସେ କନ୍ୟାମନେ ବିଚାରିଲା
କହିବି ପିତା ଆଗେ ମୁହିଁ
ଯେମନ୍ତେ ବର ମୁଁ ଲଭିଲି
ରୋଦନ କରି ମନ ଦୁଃଖେ
କହିଲା ପିତାର ସମ୍ମୁଖେ

ଶର୍ମିଷ୍ଠା ଯେତେ କର୍ମ କଲା
ଯେମନ୍ତେ କୂପେପକାଇଲା
ରାଜା ଉଦ୍ଧରିଲା ଯେମନ୍ତେ
କୂପୁଁ ତୋଳିଲା ହସ୍ତେ ହସ୍ତେ
ଏ କଥା ଯେମନ୍ତ ବିଧାନେ
କହିଲା ପିତା ସନ୍ନିଧାନେ ।୨୩,୨୪
ଶୁକ୍ର ଯେ ତାର କଥା ଶୁଣି
ଭବିଷ୍ୟ କଥା ମନେ ଗୁଣି

ବୋଲଇ ମୁଣ୍ଡେ ଦେଇ ହସ୍ତ
ଧିକ ମୋହର ପୌରହିତ୍ୟ
ଏମନ୍ତ ମନେ କୋପକରି
ଦୁହିତା କରି କରେ ଧରି
ବୃଷପର୍ବାର ପୁରୁଁ ଗଲା
ବେଗେ ଅସୁର ତା ଜାଣିଲା
ଅନେକ ସ୍ତୁତିମତେ କହି
ଚରଣେ ଗଡ଼ିଗଲା ଶୋଇ ।୨୫,୨୬

କ୍ଷଣଂ ବର୍ମମନ୍ୟୁର୍ଭଗବାନ୍ ଶିଷ୍ୟଂ ବ୍ୟାଚଷ୍ଟ ଭାର୍ଗବଃ ।
କାମୋଽସ୍ୟାଃ କ୍ରିୟତାଂ ରାଜନ୍ନୈନାଂ ତ୍ୟକ୍ତୁମିହୋତ୍ସହେ । ୨୭ ।
ତଥେତ୍ୟବସ୍ଥିତେ ପ୍ରାହ ଦେବଯାନୀ ମନୋଗତମ୍ ।
ପିତ୍ରା ଦତ୍ତା ଯତୋ ଯାସ୍ୟେ ସାନୁଗା ଯାତୁ ମାମନୁ । ୨୮ ।
ପିତ୍ରା ଦତ୍ତା ଦେବଯାନ୍ୟୈ ଶର୍ମିଷ୍ଠା ସାନୁଗା ତଦା ।
ସ୍ୱାନାଂ ତତ୍ ସଙ୍କଟଂ ବୀକ୍ଷ୍ୟ ତଦର୍ଥସ୍ୟ ଚ ଗୌରବମ୍ ।
ଦେବଯାନୀଂ ପର୍ଯ୍ୟଚରତ୍ ସ୍ତ୍ରୀସହସ୍ରେଣ ଦାସବତ୍ । ୨୯ ।
ନାହୁଷାୟ ସୁତାଂ ଦତ୍ତ୍ୱା ସହ ଶର୍ମିଷ୍ଠୟୋଶନା ।
ତମାହ ରାଜନ୍ ଶର୍ମିଷ୍ଠାମାଧାସ୍ତଳ୍ପେ ନ କର୍ହିଚିତ୍ । ୩୦ ।

---

ଭଗବାନ୍ ଶୁକ୍ରାଚାର୍ଯ୍ୟ କ୍ଷଣକୋପୀ । ସେ କ୍ରୋଧ ସମ୍ବରଣ କରି ଶିଷ୍ୟ ବୃଷପର୍ବାଙ୍କୁ କହିଲେ, "ହେ ଦୈତ୍ୟରାଜ ! ମୋର କନ୍ୟା ଦେବଯାନୀ ଯାହା କହୁଅଛି, ତୁମ୍ଭେ ତାହାର ଅଭିଳାଷ ପୂରଣ କର, ମୁଁ କୌଣସି ପ୍ରକାରେ ମୋର କନ୍ୟାକୁ ପରିତ୍ୟାଗ କରି ନ ପାରେ" । ୨୭।

ବୃଷପର୍ବା ଶୁକ୍ରାଚାର୍ଯ୍ୟଙ୍କ ବାକ୍ୟ ସ୍ୱୀକାର କରି ଦେବଯାନୀଙ୍କର ମନୋଗତଭାବ ଜାଣିବାକୁ ଅପେକ୍ଷା କଲେ । ଦେବଯାନୀ କହିଲେ, "ପିତା ମୋତେ ଯେଉଁଠାରେ ପ୍ରଦାନ କରିବେ ଶର୍ମିଷ୍ଠା ସଖୀମାନଙ୍କ ସହିତ ମୋ ସହିତ ସେଠାକୁ ଗମନ କରିବ" ।୨୮।

ଦୈତ୍ୟପତି ବୃଷପର୍ବା ଭାବିଲେ, 'ଗୁରୁ ଶୁକ୍ରାଚାର୍ଯ୍ୟ ଚାଲିଗଲେ, ତାଙ୍କର ସମୂହ ବିପଦ ଘଟିବାର ସମ୍ଭାବନା, ଏଠାରେ ରହିଲେ ତାଙ୍କର ପ୍ରୟୋଜନ ସିଦ୍ଧିର ସମ୍ଭାବନା, ତେଣୁ କନ୍ୟା ଶର୍ମିଷ୍ଠାକୁ ଦେବଯାନୀ ହସ୍ତରେ ଅର୍ପଣ କଲେ । ସେହିଦିନ ଶର୍ମିଷ୍ଠା ଗୁରୁ କନ୍ୟା ଦେବଯାନୀଙ୍କର ଅନୁଗାମିନୀ ହେଲେ ଏବଂ ସହସ୍ର ସଖୀ ପରିବୃତ ହୋଇ ସେ ଦେବଯାନୀଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲେ ।୨୯।

ଶୁକ୍ରାଚାର୍ଯ୍ୟ ଶର୍ମିଷ୍ଠା ସହିତ ନିଜ କନ୍ୟା ଦେବଯାନୀକୁ ଯଯାତିଙ୍କ ହସ୍ତରେ ଅର୍ପଣ କରି କହିଲେ, "ହେ ରାଜନ୍ ! ତୁମ୍ଭେ କଦାପି କଦାପି ଶର୍ମିଷ୍ଠାକୁ ତୁମ୍ଭର ଶୟନ ସଙ୍ଗିନୀ କରିବ ନାହିଁ" ।୩୦।

---

କ୍ଷଣକ ବ୍ରାହ୍ମଣର କୋପ
ତକ୍ଷଣେ ତୁଟି ହାସ୍ୟମୁଖ
ବୋଇଲେ ତାର ମୁଖ ଚାହିଁ
ଅମ୍ଭର ଦୁହିତା ଯେ ଏହି
ଏ କନ୍ୟା ବାକ୍ୟ ତୁମ୍ଭେ ଘେନ
ଏହାର ଇଚ୍ଛା କର ପୂର୍ଣ୍ଣ
ଯଯାତି କୁପେଁ ଉଦ୍ଧରିଲା
ଏ କନ୍ୟା ହସ୍ତେ ହସ୍ତ ଦେଲା

ମୁଁ ଏବେ ବେଦ ବାକ୍ୟମତେ
ବ୍ରାହ୍ମଣେ ବରିବ କେମନ୍ତେ ।୨୭
ବୋଲଇ ଶୁକ୍ରର ଦୁହିତା
ଶୁଣ ହେ ଅସୁର ବାରତା
ମୋ ପିତା ଯହିଁ ମୋତେ ଦେବ
ଶର୍ମିଷ୍ଠା ମୋର ସଙ୍ଗେ ଥିବ
ରାଜନ୍ତ ବୃଷପର୍ବା ରାଜ୍ୟେ
ବିପଦ ପଡ଼ିଲା ଥୋକାଏ

ସଖୀ ସହିତେ କନ୍ୟା ଆଣି
ବୋଇଲା ନିଅ ଦେବଯାନୀ ।
ଏମନ୍ତେ ଶର୍ମିଷ୍ଠା ଅଇଲା
ଦେବଯାନୀର ଦାସୀ ହେଲା
ଶର୍ମିଷ୍ଠା ଦେବଯାନୀ ତୁଲେ
ଯଯାତି କରେ କର ଦେଲେ
ଶୁକ୍ର କହନ୍ତି ରାଜା ଚାହିଁ
ଶର୍ମିଷ୍ଠା ନ ରମିବୁ ତୁହି ।୨୮-୩୦

ଋତୌ କେଷୌଶନଯୀଂ ରାଜନ୍ ଶର୍ମ୍ମିଷ୍ଠା ସୁପ୍ରଜାଂ ବୃତଃ ।
ତମେବ ବବ୍ରେ ରହସି ସଖ୍ୟା ପତୟୃତୌ ସତୀ । ୩୧ ।
ରାଜପୁତ୍ର୍ୟାର୍ଥିତୋଽପତ୍ୟେ ଧର୍ମ୍ମଜ୍ଞୋଽବେକ୍ଷ୍ୟ ଧର୍ମ୍ମବିତ୍ ।
ସ୍ମରନ୍ ଶୁକ୍ରବଚଃ କାଲେ ଦିଷ୍ଟମେବାଭ୍ୟପଦ୍ୟତ । ୩୨ ।
ଯଦୁଞ୍ଚ ତୁର୍ବସୁଞ୍ଚୈବ ଦେବଯାନୀ ବ୍ୟଜାୟତ ।
ଦ୍ରୁହ୍ୟୁଞ୍ଚାନୁଞ୍ଚ ପୂରୁଞ୍ଚ ଶର୍ମ୍ମିଷ୍ଠା ବାର୍ଷପର୍ବଣୀ । ୩୩ ।
ଗର୍ଭସମ୍ଭବମାସୁର୍ଯ୍ୟା ଭର୍ତ୍ତୁର୍ବିଜ୍ଞାୟ ମାନିନୀ ।
ଦେବଯାନୀ ପିତୁର୍ଗେହଂ ଯଯୌ କ୍ରୋଧବିମୂର୍ଚ୍ଛିତା । ୩୪ ।
ପ୍ରିୟାମନୁଗତଃ କାମୀ ବଚୋଭିରୁପମନ୍ତ୍ରୟନ୍ ।
ନ ପ୍ରସାଦୟିତୁଂ ଶେକେ ପାଦସଂବାହନାଦିଭିଃ । ୩୫ ।

---

ହେ ରାଜନ୍ ! ସତୀ ଶର୍ମିଷ୍ଠା ଦେବଯାନୀଙ୍କର ପୁତ୍ରଲାଭ ଦେଖି କୌଣସି ସଖୀଦ୍ୱାରା ଯଯାତିଙ୍କୁ ଋତୁକାଳରେ ପୁତ୍ରଲାଭ ପ୍ରାର୍ଥନା କରିଥିଲେ ।୩୧।

ଧର୍ମଜ୍ଞ ଯଯାତି ପୁତ୍ରଲାଭାର୍ଥ ରାଜକନ୍ୟା କର୍ତ୍ତୃକ ପ୍ରାର୍ଥିତ ହୋଇ ଏବଂ ଏହା ଧର୍ମସମ୍ମତ ବୋଲି ବିବେଚନା କରି ଶୁକ୍ରାଚାର୍ଯ୍ୟଙ୍କ ବାକ୍ୟ ସ୍ମରଣ ଥିଲେ ମଧ୍ୟ ଏହା ଦୈବପ୍ରେରିତ ମନେକରି ଶର୍ମିଷ୍ଠାଙ୍କ ସହିତ ସହବାସ କରିବାକୁ ସ୍ୱୀକୃତ ହୋଇଥିଲେ ।୩୨।

ଦେବଯାନୀଙ୍କ ଗର୍ଭରୁ ଯଯାତିଙ୍କର ଯଦୁ ଓ ତୁର୍ବସୁ ନାମଧେୟ ଦୁଇପୁତ୍ର ଜାତ ହୋଇଥିଲେ ଏବଂ ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ ଏବଂ ପୁରୁ ଏହି ତିନିପୁତ୍ର ଜାତ ହୋଇଥିଲେ ।୩୩।

ଅତ୍ୟନ୍ତ ଅଭିମାନିନୀ ଦେବଯାନୀ ଯେତେବେଳେ ଜାଣିପାରିଲେ ଶର୍ମିଷ୍ଠାଙ୍କ ଗର୍ଭରୁ ନିଜ ସ୍ୱାମୀଙ୍କର ତିନିପୁତ୍ର ଜାତ ହୋଇଅଛନ୍ତି ସେତେବେଳେ ସେ କ୍ରୋଧପୂର୍ଣ୍ଣ ହୃଦୟରେ ପିତୃଗୃହକୁ ଗମନ କରିଥିଲେ ।୩୪।

ରାଜା ଯଯାତି କାମୁକ ଥିଲେ, ସେ ପ୍ରିୟତମା ଦେବଯାନୀଙ୍କୁ ଅନୁସରଣ କରି ତାହାଙ୍କୁ ବିନୟ-ବାକ୍ୟଦ୍ୱାରା ପ୍ରସନ୍ନ କରାଇ ତାହାଙ୍କ ଅନୁଗମନ କରିଥିଲେ ଏବଂ ତାହାଙ୍କ ପାଦସ୍ପର୍ଶ ଦ୍ୱାରା ତାହାଙ୍କୁ ସାନ୍ତ୍ୱନା ଦେଇଥିଲେ ।୩୫।

---

ଶର୍ମ୍ମିଷ୍ଠା ଭୁଲେ ଦିବ୍ୟ ନାରୀ
ଯେଣୁ ଶତେକ ପରିବାରୀ
ଛାଡ଼ି ଦେବଯାନୀ ଭୁଲେ
ଯଯାତି ସଙ୍ଗେ ରାବ ଖେଳେ
ଶର୍ମ୍ମିଷ୍ଠା ରୂପ ଗୁଣ ଦେଖେ
ଯଯାତି ହୃଦେ କାମ ମୋହେ
ଦେବଯାନୀର ପୁତ୍ର ଦେଖି
ଶର୍ମ୍ମିଷ୍ଠା ଅତ୍ୟେ ମନେ ଦୁଃଖୀ

ମିଳିଲା ରାଜାର ଏକାନ୍ତେ
ପ୍ରାର୍ଥନା କଲା ପୁତ୍ର ଅର୍ଥେ
ତେଣୁ ସେ ହୋଇଲା ମୋହିତ
ଦଇବ ବଶେ ବୁଦ୍ଧି ହତ
ଶର୍ମ୍ମିଷ୍ଠା ସଙ୍ଗେ ଏକମେଳେ
ରାଜା ଶୟନ ଋତୁକାଳେ
ଶୁକ୍ରଙ୍କ ବାକ୍ୟେ ହେଳା କଲା
ଶର୍ମ୍ମିଷ୍ଠା ସଙ୍ଗେ ସଙ୍ଗ କଲା ।୩୧,୩୨

ଯଦୁ ତୁର୍ବସୁ ବେନି ଭାଇ
ଦେବଯାନୀର ଗର୍ଭେ ହୋଇ
ଆବର ଶର୍ମ୍ମିଷ୍ଠା ଗର୍ଭରୁ
ଜନ୍ମିଲେ ଦ୍ରୁହ୍ୟୁ ଅନୁ ପୁରୁ ।୩୩।
ସେ ଦେବଯାନୀ କୋପଭରେ
କହିଲା ପିତାର ଅଗରେ ।୩୪।
ପିତା ଚରଣତଳେ ପଡ଼ି
କାନ୍ଦଇ ବେନିକର ଯୋଡ଼ି

ଶୁକ୍ରସ୍ତମାହ କୁପିତଃ ସ୍ତ୍ରୀକାମାନୃତପୂରୁଷ ।
ତ୍ୱାଂ ଜରା ବିଶତାଂ ମନ୍ଦ ବିରୂପକରଣୀ ନୃଣାମ୍ । ୩୬ ।

ଶ୍ରୀ ଯଯାତିରୁବାଚ ।

ଅତୃପ୍ତୋଽସ୍ମ୍ୟଦ୍ୟ କାମାନାଂ ବ୍ରହ୍ମନ୍ ଦୁହିତରି ସ୍ମ ତେ ।
ବ୍ୟତ୍ୟସ୍ୟତାଂ ଯଥାକାମଂ ବୟସା ଯୋଽଭିଧାସ୍ୟତି । ୩୭ ।
ଇତି ଲବ୍ଧବ୍ୟବସ୍ଥାନଃ ପୁତ୍ରଂ ଜ୍ୟେଷ୍ଠମବୋଚତ ।
ଯଦୋ ତାତ ପ୍ରତୀଚ୍ଛେମାଂ ଜରାଂ ଦେହି ନିଜଂ ବୟଃ । ୩୮ ।

---

କନ୍ୟାଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ଶୁକ୍ରାଚାର୍ଯ୍ୟ କ୍ରୁଦ୍ଧ ହୋଇ ଯଯାତିଙ୍କୁ ଅଭିଶାପ ଦେଇ କହିଲେ, "ରେ ମୂଢ଼ ! ତୁ ସ୍ତ୍ରୀ କାମନାରେ ମିଥ୍ୟାଚାରୀ ହୋଇଅଛୁ । ସୁତରାଂ ବିରୂପକାରିଣୀ ଜରା ତୋତେ ଆକ୍ରମଣ କରୁ ।୩୬।

ଯଯାତି କହିଲେ, "ହେ ବ୍ରହ୍ମନ୍ ! ଆପଣଙ୍କ ଦୁହିତାଙ୍କୁ ସମ୍ଭୋଗ କରି ଅଦ୍ୟାପି ମୁଁ ପୂର୍ଣ୍ଣ ତୃପ୍ତି ଲାଭ କରିପାରି ନାହିଁ" । ଏହା ଶୁଣି ଶୁକ୍ରାଚାର୍ଯ୍ୟ କହିଲେ, "ଯଦି ତୋହର ଜରା କେହି ଗ୍ରହଣ କରି ତୋତେ ତାହାର ଯୌବନ ପ୍ରଦାନ କରେ ତେବେ ତୁ ଯଥେଚ୍ଛା କାମ ଉପଭୋଗ କରିପାରିବୁ" ।୩୭।

ଯଯାତି ଶୁକ୍ରାଚାର୍ଯ୍ୟଙ୍କଠାରୁ ଜରା ଦୂର କରିବାର ବ୍ୟବସ୍ଥା ପାଇ ଜ୍ୟେଷ୍ଠପୁତ୍ର ଯଦୁଙ୍କୁ କହିଲେ, "ହେ ବତ୍ସ ଯଦୁ ! ତୁମେ ମୋର ଜରା ଗ୍ରହଣ କରି ମୋତେ ତୁମର ଯୌବନ ପ୍ରଦାନ କର ।୩୮।

---

ଶର୍ମିଷ୍ଠା ତୁଳେ ରାଜା କଲେ
ରାତ୍ର ଦିବସ ତା ସଙ୍ଗତେ
ତାହାର ବଶ ପ୍ରାୟେ ରହେ
କୋପ ନୟନେ ମୋତେ ଚାହେଁ
ଶର୍ମିଷ୍ଠା ପ୍ରେମ ବନ୍ଧ ଆଶେ
କେବେହେଁ ନ ମିଳେ ମୋ ପାଶେ
ଏମନ୍ତେ ଦୁହିତା ବଚନେ
କୋପ ବଳିଲା ଶୁକ୍ର ମନେ
ମିଳିଲା ରାଜାର ସମୀପେ
ଗରୁଡ଼ ମିଳେ ଯେହ୍ନେ ସର୍ପେ
ବୋଇଲା କୋପଭରେ ହୋଇ
ଅଧର୍ମ ଆଚରିଲୁ ତୁହି
ମୋର ଦୁହିତା କଲୁ ଦୂର
ଶର୍ମିଷ୍ଠା ମନ ହରେ ତୋର

ତୁ ଏବେ ଜରା ରୂପ ହୋଇ
ଶୟନେ କରିଥାଅ ତୁହି
ଏମନ୍ତେ ଶାପ ଦେଲେ ମୁନି
ତକ୍ଷଣେ ବୃଦ୍ଧ ରୂପ ଘେନି
ଯଯାତି ଶୋଇଲା ଶୟନେ
ଉଠି ନ ପାରି ରାତ୍ର ଦିନେ
ଏମନ୍ତ ତାର ପାଇଁ ସୁତ
ଦେନି କନ୍ୟାର ମଧ୍ୟେ ଜାତ
ହୋଇ ବଢ଼ିଲେ ଦିନେ ଦିନେ
ପ୍ରଚଣ୍ଡ ସୂର୍ଯ୍ୟ ତେଜ ଯେହ୍ନେ
।୩୪,୩୬।

କାହିଣ ଯଯାତି ବିକଳେ
ପଡ଼ିଲା ଭୃଗୁ ପାଦତଳେ

ସ୍ୱଭାବେ ଦୁହିତାର ପତି
ଉପାୟ କହେ ଶୁକ୍ର ଶ୍ରୁତି
ସୁତକୁ ଜରା ରୂପ ଦେଇ
ସଂସାର ଭୋଗ କର ତୁହି ।୩୭।
ସେ ରାଜା ପୁତ୍ରଙ୍କୁ ଅଣାଇ
ବୋଲଇ ସମୀପେ ବସାଇ
ହେ ପୁତ୍ରେ ଦେଖ ମୋର ରୂପ
ଗୁରୁ ଯେ ମୋତେ ଦେଲେ ଶାପ
ବୃଦ୍ଧ ହୋଇଲି ଯୁବା କାଳେ
ଘନ ଯେସନେ ଅନ୍ତରାଳେ
ଦେଖ ଏ ମନୁଷ୍ୟ ଶରୀର
ଏ ବସ୍ତୁ ଭୋଗର ମନ୍ଦିର
ଇନ୍ଦ୍ରିୟ ଭୋଗେ ଜୀବ ରହେ
ଯଙ୍କ ପୁରୁଷ ବଶେ ଦେହେ

ମାତାମହକୃତାଂ ବତ୍ସ ନ ତୃପ୍ତୋ ବିଷୟେଷ୍ୱହମ୍ ।
ବୟସା ଭବଦୀୟେନ ରଂସ୍ୟେ କତିପୟାଃ ସମାଃ । ୩୯ ।

ଶ୍ରୀଯଦୁରୁବାଚ ।

ନୋତ୍ସହେ ଜରସା ସ୍ଥାତୁମନ୍ତରା ପ୍ରାପ୍ତୟା ତବ ।
ଅବିଦିତ୍ୱା ସୁଖଂ ଗ୍ରାମ୍ୟଂ ବୈତୃଷ୍ଣ୍ୟଂ ନୈତି ପୂରୁଷଃ । ୪୦ ।
ତୁର୍ବସୁଶ୍ଚୋଦିତଃ ପିତ୍ରା ଦ୍ରୁହ୍ୟୁଶ୍ଚାନୁଶ୍ଚ ଭାରତ ।
ପ୍ରତ୍ୟାଚଖ୍ୟୁରଧର୍ମଜ୍ଞା ହ୍ୟନିତ୍ୟେ ନିତ୍ୟବୁଦ୍ଧୟଃ । ୪୧ ।
ଅପୃଚ୍ଛତ୍ ତନୟଂ ପୂରୁଂ ବୟସୋନଂ ଗୁଣାଧିକମ୍ ।
ନ ତ୍ୱମଗ୍ରଜବଦ୍‌ବତ୍ସ ମାଂ ପ୍ରତ୍ୟାଖ୍ୟାତୁମର୍ହସି । ୪୨ ।

---

ହେ **ବତ୍ସ** ! ତୁମର ମାତାମହଙ୍କ ଶାପରେ ମୋର ଏ ଜରା ଉପସ୍ଥିତ ହୋଇଅଛି । କିନ୍ତୁ ଅଦ୍ୟାପି ମୋର ଭୋଗବାସନା ତୃପ୍ତ ହୋଇନାହିଁ, ତେଣୁ କିଛିକାଳ ତୁମର ଯୌବନ ଦ୍ୱାରା ଉପଭୋଗ କରିବାକୁ ଇଚ୍ଛା କରେ । ୩୯ ।

ଯଦୁ କହିଲେ, "ହେ ପିତଃ ! ଆପଣଙ୍କର ଜରା ଗ୍ରହଣ କରିବାକୁ ଇଚ୍ଛା କରୁନାହିଁ, କାରଣ ମନୁଷ୍ୟ ବିଷୟ ଭୋଗ ନ କରି ନିସ୍ପୃହ ହୋଇ ରହି ନ ପାରେ" । ୪୦ ।

ହେ **ଭାରତ** ! ପିତା ଯଯାତି ଏହିପରି ତୁର୍ବସୁ, ଦ୍ରୁହ୍ୟୁ, ଅନୁ ତିନିପୁତ୍ରଙ୍କୁ କହିଥିଲେ । ସେମାନେ କେହି ନିଜ ନିଜର ଯୌବନ ବିନିମୟରେ ଜରା ଗ୍ରହଣ କରିବାକୁ ଚାହିଁଲେ ନାହିଁ କାରଣ ଅଧର୍ମଜ୍ଞ ସେମାନେ ଅନିତ୍ୟ ଯୌବନ ସୁଖକୁ ନିତ୍ୟ ବୋଲି ମନେ କରୁଥିଲେ । ୪୧ ।

ତଦନନ୍ତର ସର୍ବକନିଷ୍ଠ ମାତ୍ର ସର୍ବଗୁଣ ଶ୍ରେଷ୍ଠ ପୁରୁଙ୍କୁ ଯଯାତି କହିଲେ, ହେ ବତ୍ସ ! ତୁମ୍ଭେ, ଅଗ୍ରଜମାନଙ୍କ ତୁଲ୍ୟ ମୋର ଅନୁରୋଧ ଏଡ଼ିବାଅ ନାହିଁ । ୪୨ ।

---

ଦେବେ ବାଞ୍ଛିନ୍ତି ଯେ ଶରୀର
ନିସ୍ତେଜ ହୋଇଲା ମୋହର
ଯଦୁକୁ ବୋଲେ ନୃପବର
ତୁ ପୁତ୍ର ମୋର ବୋଲ କର
ମୋ ଜରା-ଶରୀର ତୁ ନିଅ
ତୋର ବୟସ ମୋତେ ଦିଅ
ଭୋଗ ମୁଁ କରି ଦିନାକେତେ
ପୁଣି ବୟସ ଦେବି ତୋତେ । ୩୮, ୩୯
ଏମନ୍ତ ରାଜାର ବଚନେ
ଯଦୁ ବୋଇଲା କୋପ ମନେ

ଦୁର୍ଲଭ ମନୁଷ୍ୟ ଶରୀର
ବିଷ୍ଣୁର ପୂଜାର ମନ୍ଦିର
ଯଜ୍ଞ ପୁରୁଷ ଏହା ମଧ୍ୟେ
ବିଷୟ ଭୁଞ୍ଜିଲ ଆନନ୍ଦେ
ଦେବେ ନ ପାନ୍ତି ଯାହା ଭବ
ମୁଁ ଏହା କେମନ୍ତେ ଛାଡ଼ିବି
ଏମନ୍ତେ ଯଦୁ ମୁଖୁଁ ଶୁଣି
କୋପେ ବୋଲଇ ନୃପମଣି
ମୋର ବଚନ ତୁ ନ କଲୁ
ରାଜ ଭୋଗକୁ ନ ଛାଡ଼ିଲୁ

ତୋ ବଂଶେ ରାଜା ଯେ ହୋଇବ
ମୂର୍ଦ୍ଧନା ଫାଟି ସେ ମରିବ
ଏମନ୍ତ ଶାପ ତାକୁ ଦେଇ
ପୁତ୍ରଙ୍କୁ ଜଣେ ଜଣେ ରାଇ
ତୁର୍ବସୁ, ଦ୍ରୁହ୍ୟୁ, ଅନୁ ତିନି
ରାଜା ବଚନେ ନ ହୋଏ ତୁନି । ୪୦-୪୨

ଶ୍ରୀପୂରୁରୁବାଚ ।

କୋ ନୁ ଲୋକେ ମନୁଷ୍ୟେନ୍ଦ୍ର ପିତୁରାତ୍ମକୃତଃ ପୁମାନ୍ ।
ପ୍ରତିକର୍ତ୍ତୁଂ କ୍ଷମୋ ଯସ୍ୟ ପ୍ରସାଦାଦ୍‌ବିନ୍ଦତେ ପରମ୍ । ୪୩ ।
ଉତ୍ତମଶ୍ଚିନ୍ତିତଂ କୁର୍ଯ୍ୟାତ୍ ପ୍ରୋକ୍ତକାରୀ ତୁ ମଧ୍ୟମଃ ।
ଅଧମୋଽଶ୍ରଦ୍ଧୟା କୁର୍ଯ୍ୟାଦକର୍ତ୍ତୋଚ୍ଚରିତଂ ପିତୁଃ । ୪୪ ।
ଇତି ପ୍ରମୁଦିତଃ ପୂରୁଃ ପ୍ରତ୍ୟଗୃହ୍ଣାଜ୍ଜରାଂ ପିତୁଃ ।
ସୋଽପି ତଦ୍‌ବୟସା କାମାନ୍ ଯଥାବଜ୍ଜୁଜୁଷେ ନୃପ । ୪୫ ।
ସପ୍ତଦ୍ୱୀପପତିଃ ସମ୍ୟକ୍ ପିତୃବତ୍ ପାଳୟନ୍ ପ୍ରଜାଃ ।
ଯଥୋପଜୋଷଂ ବିଷୟାନ୍ ଜୁଜୁଷେଽବ୍ୟାହତେନ୍ଦ୍ରିୟଃ । ୪୬ ।
ଦେବଯାନ୍ୟପ୍ୟନୁଦିନଂ ମନୋବାଗ୍‌ଦେହବସ୍ତୁଭିଃ ।
ପ୍ରେୟସଃ ପରମାଂ ପ୍ରୀତିମୁବାହ ପ୍ରେୟସୀ ରହଃ । ୪୭ ।

---

ପୁରୁ କହିଲେ, ଯେଉଁ ପିତାଙ୍କଠାରୁ ଏହି ଦେହ ସମ୍ଭବ ଅଛି ସେହି ପିତାଙ୍କର ପ୍ରତ୍ୟୁପକାର କରିବାକୁ କିଏ ଅସ୍ୱୀକାର କରିପାରେ, ପିତାଙ୍କର ଅନୁଗ୍ରହରୁ ପରମ ମଙ୍ଗଳ ଲାଭ ହୁଏ ।୪୩।

ଯେଉଁ ପୁତ୍ର ପିତାଙ୍କର ଅଭିପ୍ରାୟ ବୁଝି କାର୍ଯ୍ୟ କରେ ସେ ଉତ୍ତମ, ଯେ ପିତାଙ୍କ ବାକ୍ୟ ଶ୍ରବଣ କରି କାର୍ଯ୍ୟ କରେ ସେ ମଧ୍ୟମ । ଯେ ପିତାଙ୍କର ଆଦେଶ ଅଶ୍ରଦ୍ଧାର ସହିତ ଗ୍ରହଣ କରେ ସେ ଅଧମ । ଯେଉଁ ପୁତ୍ର ପିତାଙ୍କ ଆଜ୍ଞା ପାଳନ କରେନାହିଁ ସେ ମଳମୂତ୍ର ତୁଲ୍ୟ ।୪୪।

ହେ ମହାରାଜ ! ପୁରୁ ଏହିପରି କହି ଆନନ୍ଦରେ ପିତାଙ୍କର ଜରା ଗ୍ରହଣ କଲେ ଏବଂ ଯଯାତି ପୁରୁଙ୍କର ଯୌବନ ଗ୍ରହଣ କରି ଦେବଯାନୀଙ୍କୁ ସମ୍ଭୋଗ କରିବାକୁ ଲାଗିଲେ ।୪୫।

ସପ୍ତଦ୍ୱୀପାଧିପତି ଯଯାତି ସବଳେନ୍ଦ୍ରିୟ ହୋଇ ଯଥାଯୋଗ୍ୟ ଭାବରେ ପିତୃବତ୍ ପ୍ରଜାପାଳନ କରିବାକୁ ଲାଗିଲେ ।୪୬।

ପ୍ରେୟସୀ ଦେବଯାନୀ ମଧ୍ୟ ପତିଙ୍କର ମନତୁଷ୍ଟି କରିବାଲାଗି ଏକାନ୍ତ ଭାବରେ ମନ ବାକ୍ୟ ଦେହ ଓ ବିବିଧ ଦ୍ରବ୍ୟାଦି ଦ୍ୱାରା ପ୍ରିୟତମ ପତିଙ୍କର ପ୍ରୀତି ସମ୍ପାଦନ କରିଥିଲେ ।୪୭।

---

ପୁରୁ ଯେ ଥିଲା ରାଜା ପଛେ
ତକ୍ଷଣେ ମିଳିଲା ପ୍ରତ୍ୟକ୍ଷେ
କହେ ତାତ ! ମୋତେ ଆଜ୍ଞା ଦିଅ
ମୋର ବୟସ ତୁମ୍ଭେ ନିଅ
ତୋ ବୃଦ୍ଧ ରୂପ ଦିଅ ମୋତେ
ମୋ ରୂପେ ବର୍ଷ ହଜାରକେ
ଏ ଦେହେ ଶୁଣ ନରବର !
କେ ଶୁଝିପାରେ ପିତୃଋଣ
ପିତାର ମନ ଜାଣି କରେ
ଉତ୍ତମ ପୁତ୍ର ସେ ବେଦରେ
ଶ୍ରଦ୍ଧାରେ ଆଜ୍ଞା ଯେ ପାଳଇ
ମଧ୍ୟମ ପୁତ୍ର ସେ ବୋଲଇ
ଶ୍ରଦ୍ଧା ବିହୀନେ ଯେହୁ ପାଳେ
ଅଧମ ପୁତ୍ର ସେ ଶାସ୍ତ୍ରକେ
ପିତାଙ୍କୁ ଲଙ୍ଘେ ଯେ ଅଜ୍ଞାନ
ସେ ପିତା ମଳମୂତ୍ର ଜାଣ ।୪୩,୪୪
ଏମନ୍ତେ କହି ନୃପବାଳା
ପିତାଙ୍କୁ ନିଜ ରୂପ ଦେଲା
ନିଷ୍ଠାଳେ ରହିଲା ତା ମନ
ଏମନ୍ତେ ଗଲା କେତେ ଦିନ
ପୁରୁକୁ ଜରା ରୂପ ଦେଇ
ରାଜା ହୋଇଲା ଦିବ୍ୟ ଦେହି
ଭୋଗ ସେ କଲା ନାନା ମତେ
ଇନ୍ଦ୍ରିୟ ଲାଳସ ଆୟତେ

ଅଯଜଦ୍ୟଜ୍ଞପୁରୁଷଂ କ୍ରତୁଭିର୍ଭୂରିଦକ୍ଷିଣୈଃ ।
ସର୍ବଦେବମୟଂ ଦେବଂ ସର୍ବବେଦମୟଂ ହରିମ୍ । ୪୮ ।
ଯସ୍ମିନ୍ନିଦଂ ବିରଚିତଂ ବ୍ୟୋମ୍ନୀବ ଜଳଦାବଳିଃ ।
ନାନେବ ଭାତି ନାଭାତି ସ୍ୱପ୍ନମାୟାମନୋରଥଃ । ୪୯ ।
ତମେବ ହୃଦି ବିନ୍ୟସ୍ୟ ବାସୁଦେବଂ ଗୁହାଶୟମ୍ ।
ନାରାୟଣମଣୀୟାଂସଂ ନିରାଶୀରଯଜତ୍ ପ୍ରଭୁଃ । ୫୦ ।
ଏବଂ ବର୍ଷସହସ୍ରାଣି ମନଃଷଷ୍ଠୈର୍ମନଃସୁଖମ୍ ।
ବିଦଧାନୋଽପି ନାତୃପ୍ୟତ୍ ସାର୍ବଭୌମଃ କଦିନ୍ଦ୍ରିୟୈଃ । ୫୧ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଯଯାତେରୁପାଖ୍ୟାନଂ
ନାମାଷ୍ଟାଦଶୋଽଧ୍ୟାୟଃ ।

---

ରାଜା ଯଯାତି ବହୁ ଦକ୍ଷିଣାଯୁକ୍ତ ବହୁସଂଖ୍ୟକ ଯଜ୍ଞଦ୍ୱାରା ସର୍ବ ବେଦମୟ ଯଜ୍ଞେଶ୍ୱର ଭଗବାନ ଶ୍ରୀହରିଙ୍କର ଅର୍ଚ୍ଚନା କରିଥିଲେ ।୪୮।

ଆକାଶରେ ମେଘଶ୍ରେଣୀ ତୁଲ୍ୟ ଏହି ବିଶ୍ୱ ଯାହାଙ୍କ ରଚିତ ଓ ନାନା ରୂପରେ ପ୍ରକାଶିତ, ଯାହାଙ୍କର ମାୟାଦ୍ୱାରା କଳ୍ପିତ ସ୍ୱପ୍ନମାୟା ଏବଂ ମନୋରଥ ପ୍ରଭୃତି ପ୍ରକାଶିତ ହୁଏନାହିଁ ସେହି ନିତ୍ୟ ଶୁଦ୍ଧ ସର୍ବାନ୍ତର୍ଯାମୀ ବାସୁଦେବ ନାରାୟଣଙ୍କୁ ହୃଦୟରେ ସ୍ଥାପନ କରି ଯଯାତି ଯଜ୍ଞ କାର୍ଯ୍ୟ ସମ୍ପାଦନ । କରିଥିଲେ ।୪୯, ୫୦।

ରାଜଚକ୍ରବର୍ତ୍ତୀ ଯଯାତି ଏହିପରି ସହସ୍ର ସହସ୍ର ବର୍ଷ ଇନ୍ଦ୍ରିୟ ସୁଖ ସମ୍ଭୋଗ କରି ତୃପ୍ତିଲାଭ କରିପାରିଲେ ନାହିଁ । ୫୧ ।

---

ହୋଇଲା ସାତଦ୍ୱୀପେ ରାଜା
ସୁଖେ ପାଳଇ ଜନ ପ୍ରଜା
କଣ୍ଟିଲେ ଦେବଯାନୀ ସଙ୍ଗେ
ଭୋଗ ସେ କଲା ନାନା ରଙ୍ଗେ
ଅନେକ ଯଜ୍ଞ ଦାନ ମତେ
ସେବିଲା ବିଷ୍ଣୁ ପାଦଗତେ

ଯେ ହରି ଦେହେ ଏ ଜଗତ
ଆକାଶେ ଜଳଧର ମତ
ସେ ହରି ପାଦେ ମନ ଚିନ୍ତି
ବିଷୟ ଭୋଗକୁ ନ ଚିନ୍ତି
ଇନ୍ଦ୍ରିୟ ନ ପାରିଲା ଜିଣି
ଏ ଭୋଗେ ତୃପତ କାହିଁ ପୁଣି ।୪୮-୫୧

କହଇ ବିପ୍ର ଜଗନ୍ନାଥ
ନବମ ବଂଶାନୁ ଚରିତ
ସୁଜନ ଜନେ ଏହା ଶୁଣି
ତରିବ ଭବ ତରଙ୍ଗିଣୀ ॥

# ଊନବିଂଶୋଽଧ୍ୟାୟଃ

ଊନବିଂଶେ ଯଯାତିଃ ସ୍ୱଂ ଚେଷ୍ଟିତଂ ନନ୍ଦ୍ୱଜୋପମ୍ ।
ଦେବଯାନୀଂ ସମାଶ୍ରାବ୍ୟ ବିରକ୍ତମୁକ୍ତିମାପ୍ତବାନ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

ସ ଇତ୍ଥମାଚରନ୍ କାମାନ୍ ସ୍ତ୍ରୈଣୋପହ୍ନବମାତ୍ମନଃ ।
ବୁଦ୍ଧ୍ୱାପ୍ରିୟାୟୈ ନିର୍ବିଣ୍ଣୋ ଗାଥାମେତାମଗାୟତ । ୧ ।
ଶୃଣୁ ଭାର୍ଗବ୍ୟମୂଂ ଗାଥାଂ ମଦ୍ୱିଧାଚରିତଂ ଭୁବି ।
ଧୀରା ଯସ୍ୟାନୁଶୋଚନ୍ତି ବନେ ଗ୍ରାମନିବାସିନଃ । ୨ ।
ବସ୍ତ ଏକୋ ବନେ କଶ୍ଚିଦ୍ବିଚିନ୍ୱନ୍ ପ୍ରିୟମାତ୍ମନଃ ।
ଦଦର୍ଶ କୂପେ ପତିତାଂ ସ୍ୱକର୍ମବଶଗାମଜାମ୍ । ୩ ।

---

## ପୂରୁଙ୍କର ରାଜ୍ୟାଭିଷେକ ଓ ଯଯାତିଙ୍କର ମୁକ୍ତି

ଊନବିଂଶ ଅଧ୍ୟାୟରେ ଯଯାତି ନିଜର ପୁତ୍ରର ଯୁବକତ୍ୱ ନେଇ ଅନେକଦିନ ଦେବଯାନୀଙ୍କ ସହିତ ବିଷୟ ଭୋଗ କରି ବିରକ୍ତ ହୋଇ ଶେଷରେ ରାଜ୍ୟତ୍ୟାଗ ପୂର୍ବକ ବନଗମନ କରିଥିଲେ ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

କାମ ଉପଭୋଗରେ ଅତୃପ୍ତ, ଏକାନ୍ତ ସ୍ତ୍ରୈଣ ରାଜା ଯଯାତି ବିଷୟ ସୁଖଭୋଗ କରୁ କରୁ ବୁଝିଲେ ତାଙ୍କର ଅଧଃପତନ ଘଟୁଅଛି । ତେଣୁ ସେ ନିର୍ବେଦ ହୋଇ ନିଜ ପ୍ରିୟା ଦେବଯାନୀ ନିକଟରେ ତାଙ୍କର ବକ୍ତବ୍ୟ ପ୍ରକାଶ କରିଥିଲେ । ୧ ।

ରାଜା କହିଲେ :—

ହେ ଭୃଗୁନନ୍ଦନୀ ! ମୁଁ ଯେଉଁ ଇତିହାସ ବର୍ଣ୍ଣନା କରୁଅଛି ତାହା ଶୁଣ । ସେହି ପ୍ରସଙ୍ଗରେ ସଂସାରରେ ଜ୍ଞାନୀମାନେ କାମୀଜନର କାମ ସେବାଦିର ଭୋଗ ବିବରଣ ଉଲ୍ଲେଖ କରିଅଛନ୍ତି । ୨ ।

ଗୋଟିଏ ଛେଳି ଅରଣ୍ୟ ମଧ୍ୟରେ ନିଜର ଅଭିଷ୍ଟବସ୍ତୁ ଖୋଜି ଖୋଜି ନିଜର ଭାଗ୍ୟ ଦୋଷରେ କୂପ ମଧ୍ୟରେ ପତିତ ଗୋଟିଏ ଛାଗୀକୁ ଦେଖିଲା । ୩ ।

---

ଊନବିଂଶରେ ସେ ଯଯାତି,　　ବିରକ୍ତ ହୋଇ ଲଭେ ମୁକ୍ତି ॥ ୦ ॥

ଶ୍ରୀ ଶୁକ ଉବାଚ—
ଯଯାତି ବସି ଏକଦିନେ
ଜ୍ଞାନ ପ୍ରକାଶିଲା ତା ମନେ
ଦେବଯାନୀର ନିକଟେ ଥାଇ
ବୋଲଇ ତାର ମୁଖ ଚାହିଁ ।୧।

ଶୁଣ ସୁନ୍ଦରି ! ତୋ ଅଧୀନ
ବିଷୟ ରସେ ମୋର ମନ
ପଶିଲି କାମ ଅନ୍ଧକାରେ
ଭାସ୍କର ଯେସନେ ତମ ଘୋରେ
ଶୁଣ ଭାର୍ଗବି ମୋର କଥା
ପୂର୍ବେ ଯେ ଇତିହାସ ଗାଥା

କହନ୍ତି ତତ୍ତ୍ୱଜ୍ଞାନୀ ଜନେ
ଗ୍ରାମ୍ୟ ଭୋଗକୁ ନିନ୍ଦି ମନେ
ସେ କଥା କହୁଁ ତୋର ଆଗେ
ଯେବା ବିଷୟ ଅନୁରାଗେ । ୨ ।
ଛାଗ ଯେ ଛାଗୀ ସଙ୍ଗେ ଦିନେ
ଚରିବା ଅର୍ଥେ ଗଲେ ବନେ

ତସ୍ୟା ଉଦ୍ଧରଣୋପାୟଂ ବସ୍ତଃ କାମୀ ବିଚିନ୍ତୟନ୍ ।
ବ୍ୟଧତ୍ତ ତୀର୍ଥମୁଦ୍ଧୃତ୍ୟ ବିଷାଣାଗ୍ରେଣ ରୋଧସି । ୪ ।
ସୋତ୍ତୀର୍ଯ୍ୟ କୂପାତ୍ ସୁଶ୍ରୋଣୀ ତମେବ ଚକମେ କିଲ ।
ତୟା ବୃତଂ ସମୁଦ୍ବୀକ୍ଷ୍ୟ ବହ୍ୱୋଽଜାଃ କାନ୍ତକାମିନୀଃ । ୫ ।
ପୀବାନଂ ଶ୍ମଶ୍ରୁଲଂ ପ୍ରେଷ୍ଠଂ ମୀଢ୍ୱାଂସଂ ଯାଭକୋବିଦମ୍ ।
ସ ଏକୋଽଜବୃଷସ୍ତାସାଂ ବହ୍ୱୀନାଂ ରତିବର୍ଦ୍ଧନଃ ।
ରେମେ କାମଗ୍ରହଗ୍ରସ୍ତ ଆତ୍ମାନଂ ନାବବୁଧ୍ୟତ । ୬ ।
ତମେବ ପ୍ରେଷ୍ଠତମୟା ରମମାଣମଜାନ୍ୟୟା ।
ବିଲୋକ୍ୟ କୂପସଂବିଗ୍ନା ନାମୃଷ୍ୟଦ୍ବସ୍ତକର୍ମ ତତ୍ । ୭ ।
ତଂ ଦୁର୍ହୃଦଂ ସୁହୃଦ୍ରୂପଂ କାମିନଂ କ୍ଷଣସୌହୃଦମ୍ ।
ଇନ୍ଦ୍ରିୟାରାମମୁତ୍ସୃଜ୍ୟ ସ୍ୱାମିନଂ ଦୁଃଖିତା ଯଯୌ । ୮ ।

---

ସେହି କାମୀ ଛାଗ କୂପ ମଧ୍ୟରେ ପତିତ ଛାଗୀର ଉଦ୍ଧାର ଉପାୟ ଚିନ୍ତାକରି କୂପ ତୀରରେ ଆପଣାର ଶୃଙ୍ଗର ଅଗ୍ରଭାଗ ଦ୍ୱାରା ମୃତ୍ତିକାଦି ଉତ୍ଖନନ କରି ତାହାର ଉପରକୁ ଉଠିବାର ପଥ ପ୍ରସ୍ତୁତ କଲା । ୪ ।

ସୁସ୍ତନୀ ସେହି ଛାଗୀ କୂପ ମଧ୍ୟରୁ ଉପରକୁ ଉଠି ସେହି ଛାଗ ସହିତ ମୈଥୁନ କରିବାର ଅଭିଳାଷବତୀ ହେଲା । ସେହି ଛାଗୀ କର୍ତ୍ତୃକ କାମ ବ୍ୟାପାରରେ ନିବଦ୍ଧ ହୃଷ୍ଟପୁଷ୍ଟ ଶ୍ମଶ୍ରୁବହୁଳ, ରେତଃ ସେଚକ ମୈଥୁନାଭିଜ୍ଞ ସେହି ଛାଗକୁ ସନ୍ତୁଷ୍ଟ ନୟନରେ ଲକ୍ଷ୍ୟ କରି ଅନ୍ୟାନ୍ୟ ଛାଗୀ ତାହା ସହିତ ରମଣ କରିବାର ଅଭିଳାଷୀ ହେଲେ । ସେହି ଛାଗ ଏକାକୀ ବହୁ ଛାଗୀଙ୍କର ରତିବର୍ଦ୍ଧନ କରି ତାହା ସହିତ ବିହାର କରିବାକୁ ଲାଗିଲା । ସେ ଛାଗ କାମ କୁମ୍ଭୀର କବଳରେ ପଡ଼ି ନିଜକୁ ଭୁଲିଗଲା କିନ୍ତୁ କୂପ ପତିତା ଛାଗୀ ଅପର ଏକ ଛାଗୀ ସହିତ ତାହାକୁ ରମଣ କରୁଥିବାର ଦେଖି ସେ ଆଉ ସହି ପାରିଲା ନାହିଁ । ସେ ଭାବିଲା, ସେହି ଛାଗ ଅନ୍ୟ ଛାଗୀକୁ ତାହା ଅପେକ୍ଷା ଅଧିକ ସ୍ନେହ କରେ । ୫, ୬ ।

ସେହି ଛାଗୀ ମିତ୍ର ବେଶଧାରୀ ଛାଗକୁ ଛାଡ଼ି ଦୁଃଖିତ ମନରେ ଅଧିସ୍ୱାମୀ ନିକଟକୁ ଗମନ କଲା । ସେହି ଛାଗୀ ଯଥାର୍ଥରେ ଅଳ୍ପକାଳ ସୌହାର୍ଦ୍ଦ୍ୟ କାମୀ, ଇନ୍ଦ୍ରିୟ ସୁଖ ସେବୀ, ଯଥାର୍ଥରେ ଦେହରୁଗୀ ।୮।

---

ଛାଗୀ ଯେ ଜଳ ପାନ ଅର୍ଥେ
କୂପେ ପଡ଼ିଲା ଅନାୟତ୍ତେ
ସ୍ୱଭାବେ କାମୀ ଛାଗଜାତ
ତାର ଉଦ୍ଧାରେ କଲା ମତ

କେବେହେଁ ଉଦ୍ଧରି ନ ପାରେ
ଆସି ମିଳିଲା ନିଜ ଘରେ
ସେ ବନେ ବୃଦ୍ଧ ଛାଗେ ଥିଲା
କୂପରେ ଛାଗୀ ସେ ଦେଖିଲା

ବିଷାଣ ଅଗ୍ରେ ତା ଉଦ୍ଧରି
କୂଳେ ସ୍ଥାପିଲା ଯତ୍ନ କରି

ସୋଽପି ଚାନୁଗତଃ ସ୍ତ୍ରୈଣଃ କୃପଣସ୍ତାଂ ପ୍ରସାଦିତୁମ୍ ।
କୁର୍ବନ୍ନିଡ଼ବିଡ଼ାକାରଂ ନାଶକ୍ନୋତ୍ ପଥି ସନ୍ଧିତୁମ୍ । ୯ ।
ତସ୍ୟ ତତ୍ର ଦ୍ୱିଜଃ କଶ୍ଚିଦଜାସ୍ୱାମ୍ୟଚ୍ଛିନଦ୍ରୁଷା ।
ଲମ୍ବନ୍ତଂ ବୃଷଣଂ ଭୂୟଃ ସନ୍ଦଧେଽର୍ଥାୟ ଯୋଗବିତ୍ । ୧୦ ।
ସଂବଦ୍ଧବୃଷଣଃ ସୋଽପି ହ୍ୟଜୟା କୂପଲବ୍ଧୟା ।
କାଲଂ ବହୁତିଥଂ ଭଦ୍ରେ କାମୈର୍ନାଦ୍ୟାପି ତୁଷ୍ୟତି । ୧୧ ।
ତଥାହଂ କୃପଣଃ ସୁଭ୍ରୂ ଭବତ୍ୟାଃ ପ୍ରେମଯନ୍ତ୍ରିତଃ ।
ଆତ୍ମାନଂ ନାଭିଜାନାମି ମୋହିତସ୍ତବ ମାୟୟା । ୧୨ ।
ଯତ୍ ପୃଥିବ୍ୟାଂ ବ୍ରୀହିଯବଂ ହିରଣ୍ୟଂ ପଶବଃ ସ୍ତ୍ରିୟଃ ।
ନ ଦୁହ୍ୟନ୍ତି ମନଃପ୍ରୀତିଂ ପୁଂସଃ କାମହତସ୍ୟ ତେ । ୧୩ ।
ନ ଜାତୁ କାମଃ କାମାନାମୁପଭୋଗେନ ଶାମ୍ୟତି ।
ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ । ୧୪ ।

---

ଏହି ଦୀନ ଚପଳ ସ୍ତ୍ରୈଣ ଛାଗ ଛାଗୀକୁ ସନ୍ତୁଷ୍ଟ କରିବା ନିମନ୍ତେ ଇଡ଼ବିଡ଼ ଶବ୍ଦ କରୁ କରୁ ତାହା ପଛେ ପଛେ ଗଲା, ମାତ୍ର ତାକୁ ଧରି ପାରିଲା ନାହିଁ ।୯।

ଛାଗୀର ଅଧିସ୍ୱାମୀ ବ୍ରାହ୍ମଣ କ୍ରୋଧରେ କାମୁକ ଛାଗର ଲମ୍ବମାନ ଅଣ୍ଡକୋଷ କାଟି ପକାଇଲା । କିନ୍ତୁ ଅନ୍ୟ ଏକ ଉପାୟଜ୍ଞ ବ୍ରାହ୍ମଣ ନିଜ ପ୍ରୟୋଜନ ବଶତଃ ପୁଣି ତାକୁ ସଂଯୋଜିତ କରିଦେଲା ।୧୦।

ହେ କଲ୍ୟାଣୀ ! ସେହି ଛାଗର ଛିନ୍ନ ଅଣ୍ଡକୋଷ ପୁଣି ସଂଯୋଜିତ ହେଲା ପରେ ସେ ରତିଶକ୍ତି ସମ୍ପନ୍ନ ହୋଇ କୂପ ମଧ୍ୟ ଛାଗୀ ସହିତ ବହୁକାଳ କାମ ସେବାରେ ଲାଗିଲା । କିନ୍ତୁ ଅଦ୍ୟାପି ତାହାର ଆକାଂକ୍ଷା ତୃପ୍ତ ହେଲା ନାହିଁ ।୧୧।

ହେ ସୁଲୋଚନେ ! ମୁଁ ଛାଗ ତୁଲ୍ୟ, ମୋର ପ୍ରଣୟ ଶୃଙ୍ଖଳରେ ଆବଦ୍ଧ ହୋଇ ଅତ୍ୟନ୍ତ ଦୀନ ହୋଇଅଛି ଏବଂ ତୁମ୍ଭର ମାୟାମୋହିତ ହୋଇ ନିଜକୁ ଭୁଲି ଯାଇଅଛି ।୧୨।

ପୃଥିବୀରେ ଧାନ୍ୟ, ସୁବର୍ଣ୍ଣ, ପଶୁ, ରମଣୀ ଯେତେ ପ୍ରକାର ପଦାର୍ଥ ଅଛି ସେମାନେ କେହି କାମ ମୁଗ୍ଧ ପୁରୁଷର ମନ ତୃପ୍ତ କରିପାରନ୍ତି ନାହିଁ । ବସ୍ତୁତଃ କାମବାସନା କଦାପି ତୃପ୍ତି ହୁଏନାହିଁ, ପକ୍ଷାନ୍ତରେ ଘୃତ ସହିତ ଅଗ୍ନି ସଂଯୋଗ ହେଲାପରି ଅତ୍ୟନ୍ତ ବର୍ଦ୍ଧିତ ହୁଏ । ୧୩, ୧୪ ।

---

ସେ ଛାଗ ତାର ସଙ୍ଗ ମେଳି
ରମଣ କରେ ଅତି ହେଳି
ଦିନ ରଜନୀ ନ ଜାଣଇ
ନିରତେ ତାହାସଙ୍ଗେ ରହି ।୯-୧୧
ସେ ଛାଗ ପ୍ରାୟେ ତୋର ସଙ୍ଗେ
ମୁଁ ଯେ ବୁଡ଼ିଲି ପ୍ରେମ ରଙ୍ଗେ

ସପତ ଦ୍ୱୀପେ ରାଜା ହୋଇ
ଅଜ୍ଞାନେ ବସିଁଛିଲି ଦେହି ।୧୨।
ଭୂମିରେ ଯେତେ ଶସ୍ୟ ଥାନ୍ତି
ସୁବର୍ଣ୍ଣ ସ୍ତ୍ରିୟ ପଶୁ ଜାତି
ଯେ ପ୍ରାଣୀ କାମବଶ ହୋଇ
ଏ ସବୁ ତାକୁ ନ ଅଣ୍ଟଇ

କାମୀ ପୁରୁଷଙ୍କର ମନ
କେବେହେଁ ନୋହେ ସଂଯମନ
ନିତ୍ୟେ ବଢନ୍ତି କାମ ବେଗେ
ଅଗ୍ନି ଯେସନେ ଘୃତଯୋଗେ ୧୩,୧୪

ଯଦା ନ କୁରୁତେ ଭାବଂ ସର୍ବଭୂତେଷ୍ୱମଙ୍ଗଳମ୍ ।
ସମଦୃଷ୍ଟେସ୍ତଦା ପୁଂସଃ ସର୍ବାଃ ସୁଖମୟା ଦିଶଃ । ୧୫ ।
ଯା ଦୁସ୍ତ୍ୟଜା ଦୁର୍ମ୍ମତିଭିର୍ଜୀର୍ଯ୍ୟତୋ ଯା ନ ଜୀର୍ଯ୍ୟତେ ।
ତାଂ ତୃଷ୍ଣାଂ ଦୁଃଖନିବହାଂ ଶର୍ମ୍ମକାମୋ ଦ୍ରୁତଂ ତ୍ୟଜେତ୍ । ୧୬ ।
ମାତ୍ରା ସ୍ୱସ୍ରା ଦୁହିତ୍ରା ବା ନାବିବିକ୍ତାସନୋ ଭବେତ୍ ।
ବଲବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି । ୧୭ ।
ପୂର୍ଣ୍ଣଂ ବର୍ଷସହସ୍ରଂ ମେ ବିଷୟାନ୍ ସେବତୋଽସକୃତ୍ ।
ତଥାପି ଚାନୁସବନଂ ତୃଷ୍ଣା ତେଷୂପଜାୟତେ । ୧୮ ।
ତସ୍ମାଦେତାମହଂ ତ୍ୟକ୍ତ୍ୱା ବ୍ରହ୍ମଣ୍ୟାଧାୟ ମାନସମ୍ ।
ନିର୍ଦ୍ୱନ୍ଦ୍ୱୋ ନିରହଙ୍କାରଶ୍ଚରିଷ୍ୟାମି ମୃଗୈଃ ସହ । ୧୯ ।
ଦୃଷ୍ଟଂ ଶ୍ରୁତମସଦ୍‌ବୁଦ୍ଧ୍ୱା ନାନୁଧ୍ୟାୟେନ୍ନ ସଂଦିଶେତ୍ ।
ସଂସୃତିଞ୍ଚାତ୍ମନାଶଞ୍ଚ ତତ୍ର ବିଦ୍ୱାନ୍ ସ ଆତ୍ମଦୃକ୍ । ୨୦ ।

---

ପୁରୁଷ ଯେତେବେଳେ ସର୍ବପ୍ରାଣୀରେ ରାଗ ଦ୍ୱେଷାଦି ବୈଷମ୍ୟ ଭାବ ପରିତ୍ୟାଗ କରେ ସେତେବେଳେ ତାହାର ସମସ୍ତ ପ୍ରକାର ସୁଖ ଉଦୟ ହୁଏ ।୧୫।

ଜରାଜୀର୍ଣ୍ଣ ବ୍ୟକ୍ତି ଯାହା ତ୍ୟାଗ କରି ନ ପାରେ, ଦୁର୍ମତି ପକ୍ଷରେ ଯାହା ଦୁସ୍ତ୍ୟଜ୍ୟ, ମଙ୍ଗଳାକାଂକ୍ଷୀ ମନୁଷ୍ୟ ସେହି ଦୁଃଖର କାରଣ ସ୍ୱରୂପ ତୃଷ୍ଣାକୁ ସତ୍ୱର ପରିତ୍ୟାଗ କରିବା ଉଚିତ ।୧୬।

ମାତା, ଭଗିନୀ, କନ୍ୟା ସହିତ ନିର୍ଜ୍ଜନ ସ୍ଥାନରେ ଏକାସନରେ ଉପବେଶନ କରିବ ନାହିଁ । କାରଣ ପ୍ରବଳ ଇନ୍ଦ୍ରିୟମାନେ ଜ୍ଞାନୀ ବ୍ୟକ୍ତିକୁ ପୂଦ୍ଧା ଆକର୍ଷଣ କରି କୁକାର୍ଯ୍ୟରେ ରତ କରାନ୍ତି ।୧୭।

ସର୍ବଦା ବିଷୟସେବା କରୁ କରୁ ମୋର ପୂର୍ଣ୍ଣ ସହସ୍ର ବର୍ଷ ଅତୀତ ହୋଇଗଲା । ତଥାପି ସେହି ରୂପ ରସ ଆଦି ବିଷୟ ବାସନା ପ୍ରତି ମୋର ତୃଷ୍ଣା ଜନ୍ମୁଅଛି ।୧୮।

ବିଷୟ ବାସନାର ଯେତେବେଳେ ଏତେ ଦୋଷ, ମୁଁ ସେହି ବିଷୟ ବାସନା ବର୍ଜନ କରି ସୁଖ ଦୁଃଖର ଅତୀତ ନିରହଙ୍କାର ହୋଇ ହୃଦୟ ମଧ୍ୟରେ ପରମାତ୍ମାଙ୍କର ଧ୍ୟାନ କରୁ କରୁ ମୃଗମାନଙ୍କ ସହିତ ବନ ମଧ୍ୟରେ ବିଚରଣ କରିବ ।୧୯।

---

ସକଳ ଭୂତ ସଙ୍ଗ ଛାଡ଼ି
ଆତ୍ମାର ଭାବେ ସୁଖ ବଢ଼ି
ଆତ୍ମାକୁ ଦେଖେ ସର୍ବ ଦେହେ
ତା' ସର୍ବ ଦିଗ ସୁଖମୟେ ।୧୫।
ଦୁର୍ମ୍ମତିଜନଙ୍କର ମତି
ତୃଷ୍ଣାକୁ ଛାଡ଼ି ନ ପାରନ୍ତି
ଯେ ଜାଣି ପାରେ ସର୍ବଭକ୍ଷ୍ୟ
ତୃଷ୍ଣା କାରଣେ ନୋହେ ଦକ୍ଷ ।୧୬

ମାତା ଭଗିନୀ କନ୍ୟା ମେଳେ
କେବେହେଁ ନ ଥିବ ନିରୋଳେ
ମନ ଯେ ଇନ୍ଦ୍ରିୟଙ୍କ ଗ୍ରାମ
ବଳେ ତାହାକୁ ନାହିଁ ସମ
ପଣ୍ଡିତଜନ ମନ ହରେ
ଏଣୁ କେ ନାରୀ ସଙ୍ଗ ତରେ ।୧୭
ଦେଖ ମୁଁ ସହସ୍ର ବରଷେ
ନିତ୍ୟେ ରମିଲି କାମବଶେ

ନିରତେ ବିଷୟ ବ୍ୟସନେ
ମନ ରହିଲା ଗଚ୍ଛ ଭଳେ ।୧୮।
ମୁଁ ଏବେ ତୃଷ୍ଣା ଦୂର କରି
ବିଷ୍ଣୁ ଚରଣ ମନେ ଧରି
ନିର୍ମ୍ମୋହ ହୋଇ ମନ ସ୍ଥିରେ
ରହିବ ପଶୁଗଣ ମେଳେ ।୧୯।
ଦୃଷ୍ଟ ଶ୍ରୁତକୁ ମିଥ୍ୟା କରେ
ଧ୍ୟାନ ତହିଁରେ ଦୂର କରେ

ଇତ୍ୟୁକ୍ତ୍ୱା ନାହୁଷୋ ଜାୟାଂ ତଦୀୟଂ ପୂରବେ ବୟଃ ।
ଦତ୍ତ୍ୱା ସ୍ୱଜରସଂ ତସ୍ମାଦାଦଦେ ବିଗତସ୍ପୃହଃ । ୨୧ ।
ଦିଶି ଦକ୍ଷିଣପୂର୍ବସ୍ୟାଂ ଦ୍ରୁହ୍ୟୁଂ ଦକ୍ଷିଣତୋ ଯଦୁମ୍ ।
ପ୍ରତୀଚ୍ୟାଂ ତୁର୍ବସୁଂ ଚକ୍ରେ ଉଦୀଚ୍ୟାମନୁମୀଶ୍ୱରମ୍ । ୨୨ ।
ଭୂମଣ୍ଡଳସ୍ୟ ସର୍ବସ୍ୟ ପୂରୁମର୍ହତ୍ତମଂ ବିଶାମ୍ ।
ଅଭିଷିଚ୍ୟାଗ୍ରଜାଂସ୍ତସ୍ୟ ବଶେ ସ୍ଥାପ୍ୟ ବନଂ ଯଯୌ । ୨୩ ।
ଆସେବିତଂ ବର୍ଷପୂଗାନ୍ ଷଡ୍‌ବର୍ଗଂ ବିଷୟେଷୁ ସଃ ।
କ୍ଷଣେନ ମୁମୁଚେ ନୀଡଂ ଜାତପକ୍ଷ ଇବ ଦ୍ୱିଜଃ । ୨୪ ।
ସ ତତ୍ର ନିର୍ମୁକ୍ତସମସ୍ତସଙ୍ଗ ଆତ୍ମାନୁଭୂତ୍ୟା ବିଧୁତତ୍ରିଲିଙ୍ଗଃ ।
ପରେଽମଲେ ବ୍ରହ୍ମଣି ବାସୁଦେବେ ଲେଭେ ଗତିଂ ଭାଗବତୀଂ ପ୍ରତୀତଃ ।୨୫।

---

ଯେ ବିଷୟ ବସ୍ତୁକୁ ଅସତ୍ୟ ଜାଣି ତାହାର ଚିନ୍ତା ବା ଉପଭୋଗ ନ କରେ ଏବଂ ବିଷୟ ଭୋଗ-ଦ୍ୱାରା ସଂସାର ବନ୍ଧନ ଓ ଆତ୍ମନାଶ ଘଟିଥାଏ ବୋଲି ଜାଣିପାରେ ସେହି ଏକା ଆତ୍ମଦର୍ଶୀ ।୨୦।

ହେ ରାଜନ୍ ! ବିଗତସ୍ପୃହ ରାଜା ଯଯାତି ପତ୍ନୀ ଦେବଯାନୀଙ୍କୁ ଏହି କଥା କହି ପୁତ୍ର ପୁରୁଙ୍କୁ ତାଙ୍କର ଯୌବନଦାନ ଏବଂ ନିଜର ଜରା ଗ୍ରହଣ କରିଥିଲେ ।୨୧।

ରାଜା ଯଯାତିଙ୍କର ବିଷୟ ସ୍ପୃହା ଏକାବେଳକେ ଦୂରୀଭୂତ ହେଲା । ସେ ଦ୍ରୁହ୍ୟୁଙ୍କୁ ଦକ୍ଷିଣ ପୂର୍ବ ଦିଗର, ଯଦୁଙ୍କୁ ଦକ୍ଷିଣଦିଗର, ତୁର୍ବସୁଙ୍କୁ ପୂର୍ବଦିଗର ଏବଂ ଅନୁଙ୍କୁ ଉତ୍ତର ଦିଗର ରାଜ୍ୟ ପ୍ରଦାନ କରିଥିଲେ ।୨୨।

ଏହି ସମସ୍ତଙ୍କ ଉପରେ ସର୍ବ ଜଗତର ଆଧିପତ୍ୟ ପ୍ରିୟ ପୁତ୍ର ପୂରୁଙ୍କୁ ଅର୍ପଣ କରିଥିଲେ । ଏହିପରି ଦେବଯାନୀଙ୍କ ପୁତ୍ରମାନେ ପୁରୁବଂଶରେ ପ୍ରତିଷ୍ଠିତ ହୋଇଥିଲେ ଯଯାତି ତଦନନ୍ତର ବନଗମନ କରିଥିଲେ ।୨୩

ଯେଉଁ ଇନ୍ଦ୍ରିୟମାନେ ବହୁବର୍ଷ ଧରି ରାଜାଙ୍କୁ ବିଷୟ ସୁଖ ପ୍ରଦାନ କରିଥିଲେ ସେମାନେ ରାଜାଙ୍କର ଜ୍ଞାନୋଦୟ ସଙ୍ଗେ ସଙ୍ଗେ ତାଙ୍କୁ ତ୍ୟାଗକରି ଚାଲିଗଲେ, ଯେପରି ପକ୍ଷ ଉଠିଲେ ପକ୍ଷୀ ଶାବକ-ମାନେ ନୀଡ଼ ତ୍ୟାଗକରି ଉଡ଼ିଯାନ୍ତି ।୨୪।

ବାନପ୍ରସ୍ଥାଶ୍ରମରେ ଆତ୍ମଜ୍ଞାନ ଦ୍ୱାରା ସେ ଭଗବଦ୍ ବିଶ୍ୱାସୀ ହୋଇଥିଲେ । ତାଙ୍କର ତ୍ରିଗୁଣାତ୍ମକ ଉପାଧି ବିଲୁପ୍ତ ହୋଇଥିଲା, ସେ ନିଷ୍କାମ ହୋଇ ନିର୍ମଳ ପରଂବ୍ରହ୍ମ ବାସୁଦେବଙ୍କୁ ହୃଦୟରେ ଧାରଣ କରି ମୁକ୍ତିଲାଭ କରିଥିଲେ ।୨୫।

---

କହୁଁ ଜୀବ ଆତ୍ମନାଶ
ଯେ ଜାଣେ ସେହୁ ଆତ୍ମଦର୍ଶ ।୨୦
ଏମନ୍ତ ପ୍ରିୟା ଆଗେ କହି
ପୁତ୍ରକୁ ସମର୍ପିଣ ବସାଇ
ତାର ଯୌବନ ତାକୁ ଦେଇ
ବୃଦ୍ଧ ଜରାକୁ ଆପେ ନେଇ ।୨୧।

ପୂରୁକୁ ରାଜ୍ୟ କଲ ରାଜା
ହୋଇଲେ ତା ଅଧୀନେ ପ୍ରଜା
ଦ୍ରୁହ୍ୟୁଙ୍କୁ ପୂର୍ବ ଦିଗ ଦେଲ
ଅନୁକୁ ଉତ୍ତରେ ସ୍ଥାପିଲ
ଯଦୁକୁ ଦକ୍ଷିଣେ ବସାଇ
ପଶ୍ଚିମ ତୁର୍ବସୁକୁ ଦେଇ

ଆନନ୍ଦ କରି ସର୍ବମନେ
ତପସେ ପଶିଲ ଅରଣ୍ୟେ ।୨୨, ୨୩
ଅନ୍ତରେ ଆତ୍ମା ଧ୍ୟାନ କରି
ଯୋଗ ଅଭ୍ୟାସେ ମନ ଧରି
ପରମ ବ୍ରହ୍ମେ ସେ ପଶିଲ
ଶୁଣ ହେ ଅଭିମନ୍ୟୁ ତନା ।

ଶ୍ରୁତ୍ୱା ଗାଥାଂ ଦେବଯାନୀ ମେନେ ପ୍ରସ୍ତୋଭମାତ୍ମନଃ ।
ସ୍ତ୍ରୀପୁଂସୋଃ ସ୍ନେହବୈକ୍ଲବ୍ୟାତ୍ ପରିହାସମିବେରିତମ୍ । ୨୭ ।
ସା ସନ୍ନିବାସଂ ସୁହୃଦାଂ ପ୍ରପାୟାମିବ ଗଚ୍ଛତାମ୍ ।
ବିଜ୍ଞାୟେଶ୍ୱରତନ୍ତ୍ରାଣାଂ ମାୟାବିରଚିତଂ ପ୍ରଭୋଃ । ୨୭ ।
ସର୍ବତ୍ର ସଙ୍ଗମୁତ୍ସୃଜ୍ୟ ସ୍ୱପ୍ନୌପମ୍ୟେନ ଭାର୍ଗବୀ ।
କୃଷ୍ଣେ ମନଃ ସମାବେଶ୍ୟ ବ୍ୟଧୁନୋଲ୍ଲିଙ୍ଗମାତ୍ମନଃ । ୨୮ ।
ନମସ୍ତୁଭ୍ୟଂ ଭଗବତେ ବାସୁଦେବାୟ ବେଧସେ ।
ସର୍ବଭୂତାଧିବାସାୟ ଶାନ୍ତାୟ ବୃହତେ ନମଃ । ୨୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଯାଯାତଂ ନାମୈକୋନବିଂଶୋଽଧ୍ୟାୟଃ ।

---

ଭୃଗୁନନ୍ଦନୀ ଦେବଯାନୀ ବୁଝିଲେ ଯେପରି ପରିହାସ ଛଳରେ ସ୍ତ୍ରୀ ପୁରୁଷଙ୍କର ସ୍ନେହ ବିଚ୍ଛେଦ ବିଷୟକ ଇତିହାସ କୀର୍ତ୍ତନକରି ତାଙ୍କୁ ନିବୃତ୍ତି ପଥରେ ଉତ୍ସାହିତ କରା ହେଉଅଛି ।୨୬।

ଭୃଗୁନନ୍ଦନୀ ଦେବଯାନୀ ଭଗବଦ୍ ପ୍ରଦର୍ଶିତ କର୍ମପଥରେ ଚାଳିତ ହୋଇ ପ୍ରବାହଗାମୀ ଜନ୍ତୁମାନଙ୍କର ସହବାସ ଯେପରି ଭଗବତ୍ ମାୟା ବିରଚିତ ବୋଲି ବୋଧ ହୋଇଥିଲେ । ସେ ସ୍ୱପ୍ନ ତୁଲ୍ୟ ତାହା ଏକାବେଳକେ ଭୁଲିଯାଇଥିଲେ । ସମସ୍ତ କାମନା ବାସନା ପରିତ୍ୟାଗ କରି ନମସ୍କାରାଦି ଦ୍ୱାରା ଶ୍ରୀକୃଷ୍ଣଙ୍କଠାରେ ମନୋନିବେଶ ଦ୍ୱାରା ସ୍ୱୀୟ ଉପାଧି ପରିତ୍ୟାଗ କରିଥିଲେ । ୨୭, ୨୮।

ଦେବଯାନୀ କହିଲେ :—

ଅସୀମ ଅଖିଳାତ୍ମା ନିର୍ବିକାର ପରଂବ୍ରହ୍ମ ଭଗବାନ ବାସୁଦେବଙ୍କୁ ମୁଁ ନମସ୍କାର କରୁଅଛି ।୨୯।

---

ଏ କଥା ଦେବଯାନୀ ଶୁଣି
ସ୍ୱାମିର ପଥ ମନେ ଗୁଣି
ସଂସାର ସ୍ୱପ୍ନ ପ୍ରାୟେ ମଣି
ଏମନ୍ତେ ଛାଡ଼ି ସେ ତରୁଣୀ

କୃଷ୍ଣ ଚରଣେ ମନ ଦେଲା
ବିଷ୍ଣୁ ମାୟାରୁ ସେ ତରିଲା । ୨୬-୨୯
ବ୍ରାହ୍ମଣ ଜଗନ୍ନାଥ କହେ
ସୁଜନେ ଏବେଣ କର ଲୟେ

ନବମସ୍କନ୍ଧେ ଭାଗବତ
ଯେ ଧର୍ମ ବଂଶାନୁଚରିତ
ଭାଷା ପ୍ରବନ୍ଧେ ହରି କଥା
ଶୁଣନ୍ତେ ତୁଟେ ଭବ ବ୍ୟଥା



## ବିଂଶୋଽଧ୍ୟାୟଃ ।

ବିଂଶେ ପିତୃପ୍ରସାଦାପ୍ତ ରାଜାସନମହୋନ୍ନତେଃ ।
ପୂରୋର୍ବଂଶେ ତୁ ଦୌଷ୍ମନ୍ତେର୍ଭରତସ୍ୟୋର୍ଯ୍ୟତେ ଯଶଃ ( ଶ୍ରୀଧରସ୍ୱାମୀ )

ଶ୍ରୀବାଦରାୟଣିରୁବାଚ ।

ପୂରୋର୍ବଂଶଂ ପ୍ରବକ୍ଷ୍ୟାମି ଯତ୍ର ଜାତୋଽସି ଭାରତ ।
ଯତ୍ର ରାଜର୍ଷୟୋ ବଂଶ୍ୟା ବ୍ରହ୍ମବଂଶ୍ୟାଶ୍ଚ ଜଜ୍ଞିରେ । ୧ ।
ଜନମେଜୟୋ ହ୍ୟଭୂତ୍ପୂରୋଃ ପ୍ରଚନ୍ୱାଂସ୍ତତ୍ସୁତସ୍ତତଃ ।
ପ୍ରବୀରୋଽଥମନସ୍ୟୁର୍ବୈ ତସ୍ମାଚ୍ଚାରୁପଦୋଽଭବତ୍ । ୨ ।
ତସ୍ୟ ସୁଦ୍ୟୁରଭୂତ୍ ପୁତ୍ରସ୍ତସ୍ମାଦ୍ବହୁଗବସ୍ତତଃ ।
ସଂଯାତିସ୍ତସ୍ୟାହଂଯାତୀ ରୌଦ୍ରାଶ୍ୱସ୍ତତ୍ସୁତଃ ସ୍ମୃତଃ । ୩ ।

---

### ଭରତ ଉପାଖ୍ୟାନ

ବିଂଶ ଅଧ୍ୟାୟରେ ପିତାଙ୍କର ଅନୁଗ୍ରହରୁ ରାଜ୍ୟଲାଭ କରିଥିବା ପୂରୁଙ୍କର ବଂଶରେ ଦୁଷନ୍ତଙ୍କ ପୁତ୍ର ରୂପେ ମହାମନା ଭରତ ଜନ୍ମଗ୍ରହଣ କରିବା ବର୍ଣ୍ଣିତ ହୋଇଅଛି ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ହେ ଭାରତ ! ଯେଉଁ ବଂଶରେ ତୁମ୍ଭେ ଜନ୍ମିଅଛ ଏବଂ ଯେଉଁ କୁଳରେ ବହୁ ରାଜର୍ଷି ଓ ବ୍ରହ୍ମର୍ଷିମାନେ ଜନ୍ମଗ୍ରହଣ କରିଥିଲେ ସେହି ପୂରୁ ବଂଶର ବିବରଣୀ କହୁଅଛି ଶ୍ରବଣ କର ।୧।

ପୂରୁଙ୍କଠାରୁ ଜନମେଜୟ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପୁତ୍ର ପ୍ରଚନ୍ୱାନ, ତାହାଙ୍କଠାରୁ ମନସ୍ୟୁ ଏବଂ ମନସ୍ୟୁଙ୍କଠାରୁ ଚାରୁପଦ ଜାତ ହୋଇଥିଲେ ।୨।

ଅନନ୍ତର ଚାରୁପଦଙ୍କର ପୁତ୍ର ସୁଦ୍ୟୁ, ସୁଦ୍ୟୁଙ୍କର ପୁତ୍ର ବହୁଗବ, ବହୁଗବଙ୍କର ପୁତ୍ର ସଂଯାତି, ତାହାଙ୍କର ପୁତ୍ର ଅହଂଯାତି ଏବଂ ଅହଂଯାତିଙ୍କର ପୁତ୍ର ରୌଦ୍ରାଶ୍ୱ ।୩।

---

ବିଂଶରେ ପୂରୁବଂଶ ଜାତ, ଦୁଷ୍ମନ୍ତ ଭରତ ଚରିତ

ଶ୍ରୀ ଶୁକ ଉବାଚ—

ଶୁଣ ପରୀକ୍ଷ ନୃପମଣି
ସେ ପୂରୁ ବଂଶର କାହାଣୀ
ଯେଉଁ ବଂଶେ ଜନ୍ମ ଲଭିଲ
ଯେ ବଂଶମଧ୍ୟେ ତୋର ଜନ୍ମ
ସେ ବଂଶେ ରାଜର୍ଷି ଯେତେ
ବ୍ରହ୍ମର୍ଷି ଜନ୍ମି ତା ଅନେକ ।୧।

ଯେ ପୁତ୍ର ଜନ୍ମେଜୟ ନାମ
ସେ ପୂରୁ ବଂଶ ଗୁଣ ଧାମ
ତାହାର ହୋଇଲା ନନ୍ଦନ
ନାମ ତାହାର ପ୍ରଚନ୍ୱାନ
ପ୍ରବୀର ତାହାର କୁମର
ମନସ୍ୟୁ ତାର ବଂଶଧର
ତାର ତନୟ ଚାରୁପଦ
ସୁଦ୍ୟୁ ତା ପୁତ୍ର ମହାଯୋଧ

ତାର କୁମର ବହୁଗବ
ସଂଯାତି ତାଠାରୁ ସମ୍ଭବ
ରୌଦ୍ରାଶ୍ୱ ତାହାର ତନୟେ
ତା ଠାରୁ ଦଶପୁତ୍ର ହୋଏ ।୨,୩

ଋତେୟୁସ୍ତସ୍ୟ କକ୍ଷେୟୁଃ ସ୍ଥଣ୍ଡିଳେୟୁଃ କୃତେୟୁକଃ ।
ଜଳେୟୁଃ ସନ୍ନତେୟୁଶ୍ଚ ଧର୍ମସତ୍ୟବ୍ରତେୟବଃ । ୪ ।
ଦଶୈତେଽପ୍ସରସଃ ପୁତ୍ରା ବନେୟୁଶ୍ଚାବମାଃ ସ୍ମୃତଃ ।
ଘୃତାଚ୍ୟାମିନ୍ଦ୍ରିୟାଣୀବ ମୁଖ୍ୟସ୍ୟ ଜଗଦାତ୍ମନଃ । ୫ ।
ଋତେୟୋରନ୍ତିନାବୋଽଭୂତ୍ ତ୍ରୟସ୍ତସ୍ୟାତ୍ମଜା ନୃପ ।
ସୁମତିର୍ଧ୍ରୁବୋଽପ୍ରତିରଥଃ କଣ୍ୱୋଽପ୍ରତିରଥାତ୍ମଜଃ । ୬ ।
ତସ୍ୟ ମେଧାତିଥିସ୍ତସ୍ମାତ୍ ପ୍ରସ୍କନ୍ନାଦ୍ୟା ଦ୍ୱିଜାତୟଃ ।
ପୁତ୍ରୋଽଭୂତ୍ ସୁମତେରେଭିର୍ଦୁଷ୍ମନ୍ତସ୍ତତ୍ସୁତୋ ମତଃ । ୭ ।
ଦୁଷ୍ମନ୍ତୋ ମୃଗୟାଂ ଯାତଃ କଣ୍ୱାଶ୍ରମପଦଂ ଗତଃ ।
ତତ୍ରାସୀନାଂ ସ୍ୱପ୍ରଭୟା ମଣ୍ଡୟନ୍ତୀଂ ରମାମିବ । ୮ ।

---

ରୌଦ୍ରାଶ୍ୱଙ୍କର ଦଶୋଟି ପୁତ୍ର ଜନ୍ମିଥିଲେ । ସେମାନଙ୍କର ମାତା ଘୃତାଚୀ ନାମ୍ନୀ ଅପ୍ସରା । ପୁତ୍ରମାନଙ୍କର ନାମ ଋତେୟୁ, କକ୍ଷେୟୁ, ସ୍ଥଣ୍ଡିଳେୟୁ, କୃତେୟୁ, ଜଳେୟୁ, ସନ୍ନତେୟୁ, ଧର୍ମେୟୁ, ସତ୍ୟେୟୁ, ବ୍ରତେୟୁ ଏବଂ ବନେୟୁ । ଇନ୍ଦ୍ରିୟମାନେ ଯେପରି ପ୍ରାଣର ନିତ୍ୟ ବଶୀଭୂତ ଏହି ଦଶପୁତ୍ର ରୌଦ୍ରାଶ୍ୱଙ୍କର ସେହିପରି ବଶୀଭୂତ ଥିଲେ । ୪, ୫ ।

ସୁମତି, ଧ୍ରୁବ ଓ ଅପ୍ରତିରଥ ନାମକ ତିନିପୁତ୍ର ଋତେୟୁଙ୍କଠାରୁ ଜନ୍ମିଥିଲେ । ଅପ୍ରତିରଥଙ୍କର ଏକମାତ୍ର ପୁତ୍ର କଣ୍ୱ, କଣ୍ୱଙ୍କର ପୁତ୍ର ମେଧାତିଥି, ତାହାଙ୍କର ପ୍ରସ୍କନ୍ନ ପ୍ରମୁଖ ତିନିପୁତ୍ର । ହେ ରାଜନ୍ ! ସୁମତିଙ୍କର ଜ୍ୟେଷ୍ଠପୁତ୍ର ରନ୍ତିନାବ, ତାଙ୍କଠାରୁ ରେଭି ଜନ୍ମଗ୍ରହଣ କରିଥିଲେ । ରେଭିଙ୍କର ପୁତ୍ର ସର୍ବମାନ୍ୟ ଦୁଷ୍ମନ୍ତ । ୬, ୭ ।

ହେ ରାଜନ୍ ! ଦିନେ ରାଜା ଦୁଷ୍ମନ୍ତ ସୈନ୍ୟସହ ମୃଗୟା କରିବାକୁ ବନ ମଧ୍ୟରେ ପ୍ରବେଶ କରି କଣ୍ୱମୁନିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ସେଠାରେ ଲକ୍ଷ୍ମୀଙ୍କ ତୁଲ୍ୟ ସୁନ୍ଦରୀ ଆଶ୍ରମପଦ ଆଲୋକିତ କରି

---

ଘୃତାଚୀ ଅପସରା ଗର୍ଭେ
ପୁତ୍ରେ ହୋଇଲେ ବହୁଭବେ
ଏକୁ ଆରେକ ଅନୁପମ
ଶୁଣ ହେ ତାହାଙ୍କର ନାମ
ଋତେୟୁ କକ୍ଷେୟୁ ଏ ବେନି
ସ୍ଥଣ୍ଡିଳେୟୁ କୃତେୟୁ ଘେନି
ଜଳେୟୁ ସନ୍ନତେୟୁ ହୁଇ
ଧର୍ମେୟୁ ସତ୍ୟେୟୁ ବୋଲାଇ
ବ୍ରତେୟୁ ବନେୟୁ ଏ ଦଶ
ଅପ୍ସରା ଗର୍ଭେ ପୂରୁ ବଂଶ

ବିଷ୍ଣୁର ଅଂଶେ ଜାତ ହୋଇ
ସ୍ୱଧର୍ମ ପାଳିଲେ ସେ ମହୀ ।୪,୫
ଋତେୟୁ ସୁତ ରନ୍ତିନାବ
ତହୁଁ ସୁମତି ଆଉ ଧ୍ରୁବ
ଅପ୍ରତି ରଥ ତିନି ଜାଣ
ଅପ୍ରତିରଥ ସୁତ କଣ୍ୱ ।୬।
ତାର ତନୟ ମେଧାତିଥି
ପ୍ରସ୍କନ୍ନ ତାହାର ସନ୍ତତି
କଣ୍ୱର ବଂଶେ ଜାତ ହୋଇ
ସଂସାରେ ବ୍ରାହ୍ମଣ ବୋଲାଇ

ରେଭି ଯେ ସୁମତିର ପୁତ୍ର
ଦୁଷ୍ମନ୍ତ ତାର ବୀର୍ଯ୍ୟେ ଜାତ
ସୁନ୍ଦରେ ନାହିଁ ରୁପସୀମା
ଶୁଣ ହେ ତାହାଙ୍କ ମହିମା ।୭।
ଦୁଷ୍ମନ୍ତ ରାଜା ଏକ ଦିନେ
ମୃଗୟା ଅର୍ଥେ ଗଲେ ବନେ
କଣ୍ୱର ଆଶ୍ରମେ ମିଳିଲେ
ଅଦ୍ଭୁତ କନ୍ୟାଏ ଦେଖିଲେ
ନାନା ଭୂଷଣେ ଝଟକନ୍ତ
ରମାର ପ୍ରାୟେ ଦିଶେ କାନ୍ତ

ବିଲୋକ୍ୟ ସଦ୍ୟୋ ମୁମୁହେ ଦେବମାୟାମିବ ସ୍ତ୍ରିୟମ୍ ।
ବଭାଷେ ତାଂ ବରାରୋହାଂ ଭଟୈଃ କତିପୟୈର୍ବୃତଃ । ୯ ।
ତଦ୍ଦର୍ଶନପ୍ରମୁଦିତଃ ସଂନିବୃତ୍ତପରିଶ୍ରମଃ ।
ପପ୍ରଚ୍ଛ କାମସନ୍ତପ୍ତଃ ପ୍ରହସନ୍ ଶ୍ଳକ୍ଷ୍ଣୟା ଗିରା । ୧୦ ।
କା ତ୍ୱଂ କମଳପତ୍ରାକ୍ଷି କସ୍ୟାସି ହୃଦୟଙ୍ଗମେ ।
କିଂ ସ୍ୱିଚ୍ଚିକୀର୍ଷିତଂ ତ୍ୱତ୍ର ଭବତ୍ୟା ନିର୍ଜନେ ବନେ । ୧୧ ।
ବ୍ୟକ୍ତଂ ରାଜନ୍ୟତନୟାଂ ବେଦ୍ମ୍ୟହଂ ତ୍ୱାଂ ସୁମଧ୍ୟମେ ।
ନ ହି ଚେତଃ ପୌରବାଣାମଧର୍ମ୍ମେ ରମତେ କ୍ୱଚିତ୍ । ୧୨ ।

ଶ୍ରୀଶକୁନ୍ତଳୋବାଚ ।

ବିଶ୍ୱାମିତ୍ରାତ୍ମଜୈବାହଂ ତ୍ୟକ୍ତା ମେନକୟା ବନେ ।
ବେଦୈତଦ୍ଭଗବାନ୍ କଣ୍ୱୋ ବୀର କିଂ କରବାମ ତେ । ୧୩ ।

---

ଗୋଟିଏ ନାସ୍ତ ଅବସ୍ଥାନ କରୁଥିଲେ, ସେ ଦେବ ମାୟାରୂପୀ ଏହି ରମଣୀଙ୍କୁ ଦର୍ଶନ କରି ତତ୍କ୍ଷଣାତ୍ ମୋହାଚ୍ଛନ୍ନ ହୋଇ ତାହାଙ୍କ ସହିତ ସମ୍ଭାଷଣ କଲେ । ୮, ୯ ।

ତାଙ୍କୁ ଦର୍ଶନ କରି ରାଜା ଆନନ୍ଦିତ ହେଲେ ଏବଂ ତାଙ୍କର ପଥଶ୍ରାନ୍ତି ଦୂରୀଭୂତ ହେଲା । ସେ କାମପୀଡ଼ିତ ହୋଇ ସହାସ୍ୟ ବଦନରେ ମଧୁର ସମ୍ଭାଷଣରେ ତାଙ୍କୁ ପ୍ରଶ୍ନ କଲେ । ହେ ପଦ୍ମପତ୍ରାକ୍ଷି ! ହେ ମନୋହାରିଣି ! ତୁମେ କିଏ, କାହାର କନ୍ୟା, କି ହେତୁ ଏହି ନିର୍ଜ୍ଜନ ବନରେ ବାସ କରୁଅଛ ? । ୧୦, ୧୧ ।

ହେ ସୁମଧ୍ୟମେ ! ପୁରୁବଂଶୀୟମାନଙ୍କର ମନ କଦାପି ଅଧର୍ମରେ ରତ ହୁଏନାହିଁ । କିନ୍ତୁ ମୋର ମନ ତୁମ୍ଭଠାରେ ଆସକ୍ତ ହୋଇଅଛି, ମୁଁ ସ୍ପଷ୍ଟ ଜାଣିପାରୁଅଛି ତୁମେ କ୍ଷତ୍ରିୟ କନ୍ୟା ।୧୨।

ଶକୁନ୍ତଳା କହିଲେ :—

ମୁଁ ବିଶ୍ୱାମିତ୍ରଙ୍କର କନ୍ୟା, ମୋର ମାତା ମେନକା, ମୋତେ ବନ ମଧ୍ୟରେ ପରିତ୍ୟାଗ କରିଯାଇ-ଥିବାରୁ ଜାଣିପାରି ଭଗବାନ୍ କଣ୍ୱ ମୋତେ ଆଣି ଅଛନ୍ତି । ହେ ବୀର ! ମୁଁ ଆପଣଙ୍କର କି ପ୍ରିୟକାର୍ଯ୍ୟ ସାଧନ କରିପାରେ କୁହନ୍ତୁ ।୧୩।

---

ତାହାଙ୍କୁ ଦେଖି କାମବଶେ
ସମ୍ଭୋଗ କରିବାର ଆଶେ
ତା ରୂପ ଦେବ-ମାୟା-ମୟୀ
ଦେଖିଣ ମନ ନ ରହଇ
ଅଳପ ବଳ ସେନା ସଙ୍ଗେ
ଦୁଷ୍ମନ୍ତ ଗଲେ ତାର ଆଗେ
ଆନନ୍ଦେ ତାର ଦରଶନେ
ବୋଲଇ ପରିହାସ ମନେ

ହାସ୍ୟବଦନେ ତାର ପାଶେ
ମଧୁର ବାକ୍ୟ ମନ ତୋଷେ
ହେ ଶୁଭେ ! କମଳନୟନା !
କହ ତୁ କାହାର ନନ୍ଦନା
ନିର୍ଜ୍ଜନ ବନେ କିପାଁ ଅଛୁ
କହ କାହାକୁ ବର ଇଚ୍ଛୁ
ତୋ ରୂପେ ଅଛି କେବା ସମ
କହ ତୋହର କିବା ନାମ

କିଶୋରୀ ତୁ ରାଜାର ନନ୍ଦନୀ
ଜାଣିଲି ତୋର ରୂପ ଚିହ୍ନି
ମୁଁ ଯେ ପୁରୁର ବଂଶେ ଜାତ
ଅଧର୍ମ୍ମେ ନ ବଳେ ମୋ ଚିତ୍ତ ।୮-୧୨

ଶକୁନ୍ତଳୋବାଚ—

ଶୁଣ ରାଜନ ଚୂଡ଼ାମଣି !
ମୁଁ ବିଶ୍ୱାମିତ୍ରଙ୍କ ନନ୍ଦନୀ

ଆସ୍ୟତାଂ ହ୍ୟରବିନ୍ଦାକ୍ଷ ଗୃହ୍ୟତାମର୍ହଣଞ୍ଚ ନଃ ।
ଭୁଜ୍ୟତାଂ ସନ୍ତି ନୀବାରା ଉଷ୍ୟତାଂ ଯଦି ରୋଚତେ । ୧୪ ।

ଶ୍ରୀଦୁଷ୍ମନ୍ତଉବାଚ

ଉପପନ୍ନମିଦଂ ସୁଭ୍ରୁ ଜାତାୟାଃ କୁଶିକାନ୍ୱୟେ ।
ସ୍ୱୟଂ ହି ବୃଣତେ ରାଜ୍ଞାଂ କନ୍ୟକାଃ ସଦୃଶଂ ବରମ୍ । ୧୫ ।
ଓମିତ୍ୟୁକ୍ତେ ଯଥାଧର୍ମ୍ମମୁପୟେମେ ଶକୁନ୍ତଳାମ୍ ।
ଗାନ୍ଧର୍ବବିଧିନା ରାଜା ଦେଶକାଳ ବିଧାନବିତ୍ । ୧୬ ।
ଅମୋଘବୀର୍ଯ୍ୟୋ ରାଜର୍ଷିର୍ମହିଷ୍ୟାଂ ବୀର୍ଯ୍ୟମାଦଧେ ।
ଶ୍ୱୋଭୂତେ ସ୍ୱପୁରଂ ଯାତଃ କାଳେନାସୂତ ସା ସୁତମ୍ । ୧୭ ।

---

ହେ କମଳଲୋଚନ ! ଆପଣ ଆସନରେ ଉପବେଶନ କରି ଆମ୍ଭମାନଙ୍କର ପୂଜା ଗ୍ରହଣ କରନ୍ତୁ । ଏଠାରେ ନୀବାର ଧାନ୍ୟର ଗ୍ରାମ୍ୟ ଅନ୍ନ ଭୋଜନ କରନ୍ତୁ, ଯଦି ଇଚ୍ଛା ହୁଏ ଏଠାରେ ଅବସ୍ଥାନ କରନ୍ତୁ ।୧୪

ରାଜା ଦୁଷ୍ମନ୍ତ କହିଲେ :—

ହେ ସୁଭ୍ରୁ ! ତୁମେ କୁଶୀକ ବଂଶରେ ଜାତ, ତୁମର ଏହି ଆଚରଣ ବଂଶୋଚିତ । ରାଜକନ୍ୟାମାନେ ଆପଣା ର ଇଚ୍ଛାନୁସାରେ ନିଜର ପତିବରଣ କରିଥାନ୍ତି ।୧୫

ଶକୁନ୍ତଳା ତହିଁରେ ସମ୍ମତ ହୋଇ କହିଲେ, ତଥାସ୍ତୁ, ଦେଶକାଳ ବିଧାନଜ୍ଞ ରାଜା ଦୁଷ୍ମନ୍ତ ଗନ୍ଧର୍ବ ବିଧାନରେ ତାହାଙ୍କୁ ଯଥାବିଧି ବିବାହ କରିଥିଲେ ।୧୬

ଅମୋଘବୀର୍ଯ୍ୟ ରାଜର୍ଷି ଦୁଷ୍ମନ୍ତ ଶକୁନ୍ତଳାଙ୍କର ଗର୍ଭାଧାନ କରି ପରଦିନ ନିଜ ରାଜଧାନୀକୁ ଗମନ କରିଥିଲେ । ଏଣେ ଯଥାକାଳରେ ଶକୁନ୍ତଳାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମିଥିଲା ।୧୭

---

ମେନକା ନାମେ ମୋ ଜନନୀ
ମୋର ଦଇବ କର୍ମ ଘେନି
ମୋତେ ପକାଇ ଗଲା ବନେ
ପକ୍ଷିଏ ମୋହର ଜୀବନେ
ପାଳିଲେ କଣ୍ୱ ସ୍ନେହ ବହି
ଏ ବନେ ଭକ୍ଷ୍ୟ ଭୋଜ୍ୟ ଦେଇ
ମୁଁ ଯେ ଶକୁନ୍ତ ପକ୍ଷି ବଳା
ତେଣୁ ମୋ ନାମ ଶକୁନ୍ତଳା
ଜନ୍ମ ମୋ ଭରଦ୍ୱାଜ କୁଳେ
ମୁଁ ଏହା ଜାଣେ ଯୋଗବଳେ

ତୁ ଯେବେ ମୋହର ବିଶ୍ୱାସ
ଆସ ମୋହର ପାଶେ ବସ
ମୋହର ପୂଜା ଘେନ ତୁହି
ନୀବାର ଭୁଞ୍ଜି ଏଥି ରହି ।୧୩,୧୪
ଏମନ୍ତ ତାର ମଞ୍ଜୁ ବାଣୀ
ଆନନ୍ଦ ମନେ ରାଜା ଶୁଣି
ତୁ ଜାତ କୌଶିକର ବଂଶେ
ତୋହର ଇଚ୍ଛା ମନ ତୋଷେ
ଯେବେ ବରିବୁ ତୁହି ମୋତେ
ଏ ମୋର ସତ୍ୟ ବେଦମତେ

ଏସନ କହି ତାକୁ କରି
ଗନ୍ଧର୍ବ ମତେ କନ୍ୟା ବରି
ସ୍ୱପ୍ନରେ ଶ୍ରୋତ୍ରିତ ଗଞ୍ଜନ
ତାହାରେ ସକଳ ବିଧାନ
ବିବାହ କରି ତାର ସଙ୍ଗେ
ରହିଲେ ବର୍ଷେ ରତି ରଙ୍ଗେ
ଅମୋଘ ବୀର୍ଯ୍ୟ ତା ସ୍ୱଭାବେ
ହେଲା ଶକୁନ୍ତଳା ଗର୍ଭେ
ଚଳିଗଲା ରାଜା ଗଜ ପୁର
କାଳେକେ ଜନ୍ମିଲା କୁମର ।୧୫-୧୭

କଣ୍ୱଃ କୁମାରସ୍ୟ ବନେ ଚକ୍ରେ ସମୁଚତାଃ କ୍ରିୟାଃ ।
ବଦ୍ଧ୍ୱା ମୃଗେନ୍ଦ୍ରଂ ତରସା କ୍ରୀଡ଼ତି ସ୍ମ ସ ବାଳକଃ । ୧୮ ।
ତଂ ଦୁରତ୍ୟୟବିକ୍ରାନ୍ତମାଦାୟ ପ୍ରମଦୋତ୍ତମା ।
ହରେରଂଶାଂଶସମ୍ଭୂତଂ ଭର୍ତ୍ତୁରନ୍ତିକମାଗମତ୍ । ୧୯ ।
ଯଦା ନ ଜଗୃହେ ରାଜା ଭାର୍ଯ୍ୟାପୁତ୍ରାବନିନ୍ଦିତୌ ।
ଶୃଣ୍ୱତାଂ ସର୍ବଭୂତାନାଂ ଖେ ବାଗାହାଶରୀରିଣୀ । ୨୦ ।
ମାତା ଭସ୍ତ୍ରା ପିତୁଃ ପୁତ୍ରୋ ଯେନ ଜାତଃ ସ ଏବ ସଃ ।
ଭରସ୍ୱ ପୁତ୍ରଂ ଦୁଷ୍ମନ୍ତ ମାବମଂସ୍ଥାଃ ଶକୁନ୍ତଳାମ୍ । ୨୧ ।
ରେତୋଧାଃ ପୁତ୍ରୋ ନୟତି ନରଦେବ ଯମକ୍ଷୟାତ୍ ।
ତ୍ୱଂ ଚାସ୍ୟ ଧାତା ଗର୍ଭସ୍ୟ ସତ୍ୟମାହ ଶକୁନ୍ତଳା । ୨୨ ।

---

ମହର୍ଷି କଣ୍ୱ କୁମାରଙ୍କର ଜାତକାଦି ଜାତକର୍ମାଦି ସଂସ୍କାର ସମ୍ପାଦନ କରିଥିଲେ । ଏହି ବାଳକ ବନମଧ୍ୟରେ ସିଂହକୁ ଆବଦ୍ଧ କରି କ୍ରୀଡ଼ା କରିବାକୁ ଲାଗିଲା ।୧୮।

ବରାଙ୍ଗନା ଶକୁନ୍ତଳା ବିଷ୍ଣୁ ଅଂଶରେ ଜାତ ଅମିତବିକ୍ରମ ସେହି ବାଳକକୁ ନେଇ ସ୍ୱାମୀ ସନ୍ନିଧିକୁ ଗମନ କରିଥିଲେ । ରାଜା ଦୁଷ୍ମନ୍ତ ସେହି ଅନିନ୍ଦିତା ପତ୍ନୀ ଓ ପୁତ୍ରଙ୍କୁ ଗ୍ରହଣ କଲେ ନାହିଁ ସେତେବେଳେ ସମସ୍ତଙ୍କ ସମକ୍ଷରେ ଆକାଶବାଣୀ ହେଲା, ମାତା ପୁତ୍ରର ଆଧାରମାତ୍ର, ପିତାଙ୍କରହିଁ ପୁତ୍ର କାରଣ ଯାହା ପୁତ୍ରରୂପେ ଉତ୍ପନ୍ନ ହୁଏ । ହେ ରାଜନ୍ ! ଏହି ପୁତ୍ରକୁ ପାଳନ କର, ଶକୁନ୍ତଳାଙ୍କୁ ଅପମାନିତ କରନାହିଁ । ଯେଉଁ ବ୍ୟକ୍ତି ବୀର୍ଯ୍ୟସେକ କରେ ପୁତ୍ର ସେହି ପିତାକୁହିଁ ଯମଦ୍ୱାରରୁ ଉଦ୍ଧାର କରେ । ଶକୁନ୍ତଳା ସତ୍ୟ କହୁଅଛନ୍ତି, ତୁମ୍ଭେ ଏହାର ଗର୍ଭାଧାନ କରିଅଛ ।୧୯-୨୨

---

ସେ ବନେ କଣ୍ୱ ଋଷି ଥିଲେ
ବିଧିନେ ଜାତ କର୍ମ କଲେ
କ୍ରମଶେ ବଢି ରାଜ ବାଳା
ସ୍ୱଚ୍ଛନ୍ଦେ ତେଜ ଅନର୍ଗଳା
ସିଂହକୁ କାନ ଭୁଜେ ଧରି
କ୍ରୀଡ଼ା କନ୍ଦୁକ ପ୍ରାୟେ କରି
ଉକ୍ଷୁ ଉପେକ୍ଷି ଭାରି ଘନେ
କ୍ରୀଡ଼ା କଉତ ପ୍ରାୟେ ଖେଳେ ।୧୮

ପୁତ୍ରର ଦେଖି ବାଳ ଲୀଳା
ଅତ୍ୟନ୍ତ ତେଜ ଅନର୍ଗଳା
ବିଷ୍ଣୁର ଅଂଶ ପ୍ରାୟେ ମଣି
ତକ୍ଷଣେ ଭଟ୍ଟିଙ୍କ ଭୁଲଣି
ପୁତ୍ରର ହସ୍ତ ଧରି ବେଗେ
ମିଳିଲା ନିଜ ସ୍ୱାମୀ ଆଗେ
ରାଜା ସେ ମାତା ପୁତ୍ର ଦେଖି
ତକ୍ଷଣେ ବୁଜେ ଦେଲା ଆଖି

ମାତା ପୁତ୍ରଙ୍କୁ ନ ଚିହ୍ନିଲା
ଭବ ନ ଜାଣି ଉପେକ୍ଷିଲା
ତକ୍ଷଣେ ଆକାଶର ବାଣୀ
କର୍ଣ୍ଣେ ଶୁଣିଲା ନୃପମଣି
ଅମ୍ଭର ରୂପେ ପୁତ୍ର ଜାତ
ଏଜନ୍ମେ ତୋର ଦାରସୂତ ।୧୯,୨୨

ପିତର୍ୟ୍ୟୁପରତେ ସୋଽପି ଚକ୍ରବର୍ତ୍ତୀ ମହାଯଶାଃ ।
ମହିମା ଗୀୟତେ ତସ୍ୟ ହରେରଂଶଭୁବୋ ଭୁବି । ୨୩ ।
ଚକ୍ରଂ ଦକ୍ଷିଣହସ୍ତେଽସ୍ୟ ପଦ୍ମକୋଷୋଽସ୍ୟ ପାଦୟୋଃ ।
ଈଜେ ମହାଭିଷେକେଣ ସୋଽଭିଷିକ୍ତୋଽଧିରାଡ୍‌ବିଭୁଃ । ୨୪ ।
ପଞ୍ଚପଞ୍ଚାଶତା ମେଧ୍ୟୈର୍ଗଙ୍ଗାୟାମନୁ ବାଜିଭିଃ ।
ମାମତେୟଂ ପୁରୋଧାୟ ଯମୁନାମନୁ ଚ ପ୍ରଭୁଃ । ୨୫ ।
ଅଷ୍ଟସପ୍ତତିମେଧ୍ୟାଶ୍ୱାନ୍ ବବନ୍ଧ ପ୍ରଦଦଦ୍ୱସୁ ।
ଭରତସ୍ୟ ହି ଦୌଷ୍ମନ୍ତେରଗ୍ନିଃ ସାଚୀଗୁଣେ ଚିତଃ ।
ସହସ୍ରଂ ବଦ୍ୱଶୋ ଯସ୍ମିନ୍ ବ୍ରାହ୍ମଣା ଗା ବିଭେଜିରେ । ୨୬ ।
ତ୍ରୟସ୍ତ୍ରିଂଶଚ୍ଛତଂ ହ୍ୟଶ୍ୱାନ୍ ବଦ୍ଧ୍ୱା ବିସ୍ମାପୟନ୍ ନୃପାନ୍ ।
ଦୌଷ୍ମନ୍ତିରତ୍ୟଗାନ୍ମାୟାଂ ଦେବାନାଂ ଗୁରୁମାୟଯୌ । ୨୭ ।

---

ଆକାଶ ବାଣୀରେ ବିଶ୍ୱାସ କରି ରାଜା ଦୁଷ୍ମନ୍ତ ପତ୍ନୀ ଓ ପୁତ୍ରଙ୍କୁ ଗ୍ରହଣ କରିଥିଲେ । ଦୁଷ୍ମନ୍ତ ପରଲୋକ ଗମନ କରନ୍ତେ ସେହି ପୁତ୍ର ଭରତ ନାମରେ ସମଗ୍ର ପୃଥିବୀରେ ରାଜା ହୋଇଥିଲେ । ସେ ବିଷ୍ଣୁବଂଶ ସମ୍ଭୂତ ବୋଲି ପୃଥିବୀରେ ଖ୍ୟାତି ଅର୍ଜ୍ଜନ କରିଥିଲେ । ୨୩ ।

ତାହାଙ୍କର ଦକ୍ଷିଣ କରରେ ଚକ୍ର, କରଦ୍ୱୟରେ ପଦ୍ମ ଚିହ୍ନ ଥିଲା । ସେ ମହାଭିଷେକ ହୋଇ ସମ୍ରାଟ୍ ହେଲେ । ମମତା ତନୟ ଭରଦ୍ୱାଜଙ୍କୁ ପୁରୋହିତରୂପେ ବରଣ କରି ଗଙ୍ଗା ଓ ଯମୁନା ତୀରରେ ପଞ୍ଚ ପଞ୍ଚାଶତ ପବିତ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିଥିଲେ । ୨୪, ୨୫ ।

ଦୁଷ୍ମନ୍ତଙ୍କର ପୁତ୍ର ଭରତ ଉପଯୁକ୍ତ ଧନଦାନ ଦ୍ୱାରା ଅଷ୍ଟସପ୍ତତି ଅଶ୍ୱଗ୍ରହଣ କରି ଯଜ୍ଞ କରିଥିଲେ । ପବିତ୍ରାଦି ଗୁଣଯୁକ୍ତ ସ୍ଥାନରେ ତାହାଙ୍କର ଯଜ୍ଞାଗ୍ନି ପ୍ରୀତ ହେଲା, ସେ ସେଠାରେ ବ୍ରାହ୍ମଣମାନଙ୍କୁ ତେର ହଜାର ଚଉରାଅଶୀ ଗୋଦାନ କରିଥିଲେ ଏବଂ ବ୍ରାହ୍ମଣମାନେ ତାହା ବାଣ୍ଟି ନେଇଥିଲେ । ୨୬ ।

ଭରତ ତେତିଶଶତ ଅଶ୍ୱ ଯଜ୍ଞ ନିମିତ୍ତ ରକ୍ଷା କରି ଅନ୍ୟ ନୃପତିମାନଙ୍କୁ ବିସ୍ମିତ କରିଥିଲେ । ଦେବତାମାନଙ୍କ ଅପେକ୍ଷା ତାହାଙ୍କର ଐଶ୍ୱର୍ଯ୍ୟ ଅଧିକ ହୋଇଥିଲା । ସେ ଶ୍ରୀହରିଙ୍କୁ ଲାଭ କରିଥିଲେ । ୨୭ ।

---

ଆକାଶ ବାଣୀ ଶୁଣି କର୍ଣ୍ଣେ
ତକ୍ଷଣେ ରାଜା ତୋଷ ମନେ
ଆଶ୍ୱାସ କରି ପୁତ୍ର ନାରୀ
ଗୃହେ ସ୍ଥାପିଲା ଦଣ୍ଡଧାରୀ

ଏମନ୍ତେ ଦୁଷ୍ମନ୍ତର ଅନ୍ତେ
ସେ ରାଜା ହୋଇଲା ଜଗତେ
ବିଷ୍ଣୁର ଅଂଶ ସେ ରାଜନ
ଶରୀରେ ଦିଶେ ବିଷ୍ଣୁ ଚିହ୍ନ

ଚକ୍ର ଦକ୍ଷିଣ ହସ୍ତେ ବସେ
ଚରଣେ କମଳ ପ୍ରକାଶେ । ୨୩-୨୪
ତାହାଙ୍କୁ ମିଳି ଋଷି ଯୂଥେ
ସ୍ଥାପିଲେ ଅଭିଷେକ ମତେ

ମୃଗାନ୍ ଶୁକ୍ଳଦତଃ କୃଷ୍ଣାନ୍ ହିରଣ୍ୟେନ ପରୀବୃତାନ୍ ।
ଅଦାତ୍ କର୍ମଣି ମଷ୍ଣାରେ ନିୟୁତାନି ଚତୁର୍ଦ୍ଦଶ । ୨୮ ।
ଭରତସ୍ୟ ମହତ୍ କର୍ମ ନ ପୂର୍ବେ ନାପରେ ନୃପାଃ ।
ନୈବାପୁର୍ନୈବ ପ୍ରାପ୍ସ୍ୟନ୍ତି ବାହୁଭ୍ୟାଂ ତ୍ରିଦିବଂ ଯଥା । ୨୯ ।
କିରାତହୂଣାନ୍ ଯବନାନ୍ ପୌଣ୍ଡ୍ରାନ୍ କଙ୍କାନ୍ ଖଶାଞ୍ଛକାନ୍ ।
ଅବ୍ରହ୍ମଣ୍ୟନୃପାଂଶ୍ଚାହନ୍ ମ୍ଳେଚ୍ଛାନ୍ ଦିଗ୍ବିଜୟେଽଖିଳାନ୍ । ୩୦ ।
ଜିତ୍ୱା ପୁରାସୁରା ଦେବାନ୍ ଯେ ରସୌକାଂସି ଭେଜିରେ ।
ଦେବସ୍ତ୍ରିୟୋ ରସାଂ ନୀତାଃ ପ୍ରାଣିଭିଃ ପୁନରାହରତ୍ । ୩୧ ।
ସର୍ବାନ୍ କାମାନ୍ ଦୁଦୁହତୁଃ ପ୍ରଜାନାଂ ତସ୍ୟ ରୋଦସୀ ।
ସମାସ୍ତ୍ରିଣବସାହସ୍ରୀର୍ଦିକ୍ଷୁ ଚକ୍ରମବର୍ତ୍ତୟତ୍ । ୩୨ ।
ସ ସମ୍ରାଡ୍ ଲୋକପାଲାଖ୍ୟମୈଶ୍ୱର୍ଯ୍ୟମଧିରାଟ୍ ଶ୍ରିୟମ୍ ।
ଚକ୍ରଞ୍ଚାସ୍ଖଳିତଂ ପ୍ରାଣାନ୍ ମୃଷେତ୍ୟୁପରରାମ ହ । ୩୩ ।

---

ସେ ମଷ୍ଣାର ନାମକ କାର୍ଯ୍ୟରେ ସୁବର୍ଣ୍ଣମଣ୍ଡିତ ଶ୍ୱେତଦନ୍ତ ବିଶିଷ୍ଟ ଚତୁର୍ଦ୍ଦଶ ନିୟୁତ କୃଷ୍ଣ ଗଜଦାନ କରିଥିଲେ ।୨୮।

ଯେପରି ଦୁଇବାହୁ ଊର୍ଦ୍ଧ୍ୱକୁ ପ୍ରସାରିତ କଲେ କେହି ସ୍ୱର୍ଗଲୋକ ପ୍ରାପ୍ତ ହୁଏ ନାହିଁ ସେହିପରି ମହାପ୍ରାଣ ରାଜା ଭରତଙ୍କର ଅନୁଷ୍ଠିତ ମହତ୍ କର୍ମମାନ ତାଙ୍କର ପୂର୍ବବର୍ତ୍ତୀ କୌଣସି ନୃପତି ପାଇ ନ ଥିଲେ ।୨୯।

ସେ ଦିଗ୍ବିଜୟ କରିବାକୁ ବାହାରି କିରାତ, ହୂନ, ଯବନ, ପୌଣ୍ଡ୍ର, କଙ୍କ, ଖସ, ଶକ ଏବଂ ଅପରାପର ସମସ୍ତ ମ୍ଳେଚ୍ଛ ଜାତିଙ୍କୁ ଓ ନୃପତିମାନଙ୍କୁ ସମ୍ମୁଖରେ ବିନାଶ କରିଥିଲେ ।୩୦।

ପୂର୍ବକାଳରେ ବଳବାନ୍ ଅସୁରମାନେ ଦେବତାମାନଙ୍କୁ ପରାଜିତ କରି ସେମାନଙ୍କ ସ୍ତ୍ରୀମାନଙ୍କୁ ସହିତ ରସାତଳରେ ବାସ କରୁଥିଲେ । ମହାତ୍ମା ଭରତ ସେମାନଙ୍କୁ ସଂହାର କରି ଅପହୃତା ଦେବକନ୍ୟା-ମାନଙ୍କୁ ଉଦ୍ଧାର କରିଥିଲେ ।୩୧।

ମହାମନା ଭରତଙ୍କ ସମୟରେ ସ୍ୱର୍ଗ ଓ ପୃଥିବୀ ପ୍ରଜାମାନଙ୍କର ସମସ୍ତ କାମନା ପୂରଣ କରୁଥିଲେ ସେ ସତେଇଶହଜାର ବର୍ଷ ପର୍ଯ୍ୟନ୍ତ ଦିଗ୍ବାସୀମାନଙ୍କ ରାଜ୍ୟପାଳନ କରିଥିଲେ ।୩୨।

ସମ୍ରାଟ୍ ଭରତ ଇନ୍ଦ୍ରାଦି ଲୋକପାଳମାନଙ୍କ ତୁଲ୍ୟ ଐଶ୍ୱର୍ଯ୍ୟ, ରାଜଲକ୍ଷ୍ମୀ, ଅବ୍ୟର୍ଥ ଶାସନଶକ୍ତି ଏପରିକି ପ୍ରାଣକୁ ସୁଦ୍ଧା ମିଥ୍ୟା ବୋଲି ମନେ କରି ବିଷୟ ବାସନାରୁ ନିବୃତ୍ତ ହୋଇଥିଲେ ।୩୩।

---

ଅନେକ ଯଜ୍ଞ ଦାନ କଲା
ଧେନୁ ବାଜିକ ବସ୍ତ୍ର ଦେଲା
ଭରତ କର୍ମ କଲା ଯେତେ
କୋହିବ ରାଜା ତାକୁ ସେତେ ।୨୮ ୨୯।
କିରାତ କଙ୍କ ଖସ ହୂଣ
ପୌଣ୍ଡ୍ର, ଶକ ଆଦି ଯବନ

ଏ ଆଦି ବିପ୍ରବାଧୀ ଯେତେ
ସବୁ ଛେଦିଲା ଏ ଏ ଜଗତେ ।୩୦
ଦାନବମଧ୍ୟୁଁ ଦେବ ସ୍ତ୍ରୀଙ୍କି
ପାତାଳୁ ଆଣିଲା ଉଦ୍ଧରି
ଭରତ ରାଜା ରାଜ୍ୟ କାଳେ
ପୃଥିବୀ ସ୍ୱର୍ଗ ଏକ ତୁଲେ

ପୃଥିବୀ ସର୍ବ ଶସ୍ୟ ଦେଲା
ସତେଶ ଅନେକ ଯଜ୍ଞ କଲା
ସତେଇଶ ସହସ୍ର ବର୍ଷ
ଭରତ ପାଳିଲେକ ଦେଶ ।୩୧ ୩୨।
ସୈନ୍ୟ ସମ୍ପତ୍ତି ନିଜ ପ୍ରାଣ
ସମସ୍ତ କଲା ମିଥ୍ୟା ଜ୍ଞାନ

ତସ୍ୟାସନ୍ନୃପ ବୈଦର୍ଭ୍ୟଃ ପତ୍ନ୍ୟସ୍ତିସ୍ରଃ ସୁସମ୍ମତାଃ ।
ଜଘ୍ନୁସ୍ତ୍ୟାଗଭୟାତ୍ ପୁତ୍ରାନ୍ ନାନୁରୂପା ଇତୀରିତେ । ୩୪ ।
ତସ୍ୟୈବଂ ବିତଥେ ବଂଶେ ତଦର୍ଥଂ ଯଜତଃ ସୁତମ୍ ।
ମରୁତ୍‌ସୋମେନ ମରୁତୋ ଭରଦ୍ୱାଜମୁପାଦଦୁଃ । ୩୫ ।
ଅନ୍ତର୍ବତ୍ନ୍ୟାଂ ଭ୍ରାତୃ ପତ୍ନ୍ୟାଂ ମୈଥୁନାୟ ବୃହସ୍ପତିଃ ।
ପ୍ରବୃତ୍ତୋ ବାରିତୋ ଗର୍ଭଂ ଶପ୍ତ୍ୱା ବୀର୍ଯ୍ୟମୁପାସୃଜତ୍ । ୩୬ ।
ତଂ ତ୍ୟକ୍ତୁକାମାଂ ମମତାଂ ଭର୍ତ୍ତୁସ୍ତ୍ୟାଗବିଶଙ୍କିତାମ୍ ।
ନାମନିର୍ବଚନଂ ତସ୍ୟ ଶ୍ଳୋକମେନଂ ସୁରା ଜଗୁଃ । ୩୭ ।

---

ରାଜା ଭରତଙ୍କର ବିଦର୍ଭ ଦେଶଜାତ ତିନୋଟି ପ୍ରିୟପତ୍ନୀ ଥିଲେ । ସେମାନଙ୍କ ଗର୍ଭରେ ବହୁ-ପୁତ୍ର ଜନ୍ମି ଥିଲେ ମଧ୍ୟ ସେମାନେ ରାଜାଙ୍କର ଅନୁରୂପ ହେଲେ ନାହିଁ । ହେ ମହାରାଜ ! କାଳେ ଏହା ଜାଣି ପାରିଲେ ରାଜା ସେମାନଙ୍କୁ ବ୍ୟଭିଚାର ଦୋଷରେ ଦୋଷୀ କରିବେ ଏହି ଭୟରେ ସେମାନେ ସେହି ପୁତ୍ରମାନଙ୍କୁ ପ୍ରସବ ହେଲା ମାତ୍ରେ ମାରି ପକାଇଥିଲେ । ରାଜା ବଂଶଲୋପ ଆଶଙ୍କା ଦେଖି ପୁତ୍ର ନିମିତ୍ତ ମରୁତ୍ ସୋମ ଯଜ୍ଞ କରିଥିଲେ । ତାହାଙ୍କର ଏହି ଯଜ୍ଞରେ ପ୍ରୀତ ହୋଇ ମରୁତ୍‌ଗଣ ତାହାଙ୍କୁ ଭରଦ୍ୱାଜ ନାମକ ଏକପୁତ୍ର ପ୍ରଦାନ କରିଥିଲେ ।୩୪, ୩୫।

ବୃହସ୍ପତି ଏକଦା ଗର୍ଭବତୀ ଭ୍ରାତୃପତ୍ନୀ ହରଣ କରିବାକୁ ଉପସ୍ଥିତ ହୋଇଥିଲେ କିନ୍ତୁ ଗର୍ଭସ୍ଥ ଶିଶୁ ତାଙ୍କୁ ଏହି କାର୍ଯ୍ୟରେ ନିଷେଧ କରନ୍ତେ ସେ ଅନ୍ଧ ହୁଅ ବୋଲି ତାହାଙ୍କୁ ଅଭିଶାପ ଦେଇ ସେହି-ଠାରେ ଶୁକ୍ରତ୍ୟାଗ କରିଥିଲେ ।୩୬।

କାଳେ ସ୍ୱାମୀ ବ୍ୟଭିଚାର ଦୋଷରେ ତାଙ୍କୁ ପରିତ୍ୟାଗ କରିବେ ଏ ଆଶଙ୍କାରେ ଉତଥ୍ୟ ପତ୍ନୀ ମମତା ସେହି ଶୁକ୍ର ପରିତ୍ୟାଗ ଇଚ୍ଛୁକ ହୁଅନ୍ତେ ବୃହସ୍ପତି ଓ ମମତା ମଧ୍ୟରେ ଘଟିଥିବା ବୃତ୍ତାନ୍ତକୁ ଲକ୍ଷ୍ୟ କରି ଦେବତାମାନେ ଗୋଟିଏ ଶ୍ଳୋକ କୀର୍ତ୍ତନ କରିଥିଲେ ।୩୭।

---

ତାହାର ଥିଲେ ତିନି ପତ୍ନୀ
ବହୁ ହୋଇଲେ ପୁତ୍ର ତିନି
ରାଜା ବୋଲଇ ପୁତ୍ର ନୁହିଁ
ମୋ ପୁତ୍ର ପରି ନ ଦିଶଇ

ରାଣୀଏ ଶୁଣି ଭୟଚିତ୍ତ
ବାଳ ପୁତ୍ରଙ୍କୁ କଲେ ହତ
ରାଜା ବିଚାରି ବଂଶ ରକ୍ଷା
ମରୁତସୋମଯାଗଦୀକ୍ଷା ।୩୩,୩୪

ମରୁତଗଣ ତୋଷ ହୋଇ
ଭରଦ୍ୱାଜକୁ ଆଣି ଦେଇ
ଭ୍ରାତୃବଧୂ ସେ ଗର୍ଭବତୀ
ପୂର୍ବେ ରମିଲେ ବୃହସ୍ପତି

ମୂଢ଼େ ଭର ଦ୍ୱାଜମିମଂ ଭର ଦ୍ୱାଜଂ ବୃହସ୍ପତେ ।
ଯାତୌ ଯଦୁକ୍ତ୍ୱା ପିତରୌ ଭରଦ୍ୱାଜସ୍ତତସ୍ତ୍ୱୟମ୍ । ୩୮ ।
ଚୋଦ୍ୟମାନା ସୁରୈରେବଂ ମତ୍ୱା ବିତଥମାତ୍ମଜମ୍ ।
ବ୍ୟସୃଜନ୍ମରୁତୋଽବିଭ୍ରନ୍ ଦତ୍ତୋଽୟଂ ବିତଥେଽନ୍ୱୟେ । ୩୯ ।

**ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ**
**ବୈୟାସିକ୍ୟାଂ ନବମସ୍କନ୍ଧେ ପୁରୁବଂଶ କୀର୍ତ୍ତନଂ**
**ନାମ ବିଂଶୋଽଧ୍ୟାୟଃ ।**

---

ହେ ମୂଢେ ! ତୁମେ ଏହି ଦ୍ୱାଜ ( ଜଣଙ୍କର କ୍ଷେତ୍ରରେ ଅନ୍ୟର ବୀର୍ଯ୍ୟଦ୍ୱାରା ଜାତ ପୁତ୍ରକୁ ) ପାଳନ କର । ହେ ବୃହସ୍ପତି ! ତେଣୁ ଏହି ପୁତ୍ରର ନାମ ହେଲା ଭରଦ୍ୱାଜ ।୩୮।

ହେ ରାଜନ୍ ! ଦେବତାମାନେ ଏହିପରି କହିଲେ ବ୍ୟଭିଚାର ଜାତ ଏ ପୁତ୍ରକୁ ନିରର୍ଥକ ମନେ କରି ମମତା ପରିତ୍ୟାଗ କରିଥିଲେ । ପରିତ୍ୟକ୍ତ ପୁତ୍ରକୁ ମରୁଦ୍‌ଗଣ ପାଳନ କରିଥିଲେ, ଭରତଙ୍କ ରାଜବଂଶ ଶୂନ୍ୟ ହେବାକୁ ବସିବାରୁ ମରୁତ୍‌ଗଣ ଏହି ପୁତ୍ରଟିକୁ ରାଜାଙ୍କୁ ପ୍ରଦାନ କରିଥିଲେ ।୩୯।

---

ଗର୍ଭେ ଯେ ଶିଶୁ ଥାଇଥିଲା
ବୃହସ୍ପତିଙ୍କି ନିକ୍ଷେପିଲ
ଶିଶୁର ପାଦ ଘାତେ ରେତ
ଗର୍ଭେ ନ ରହି ଭୂମି ଗତ

ତହୁଁ ଯେ ଭରଦ୍ୱାଜ ଜାତ
ତାହାଙ୍କୁ ପାଳିଲେ ମରୁତ
ଭରତ ଯଜ୍ଞେ ତୋଷ ହୋଇଲେ
ସେ ପୁତ୍ର ଏବେ ତାଙ୍କୁ ଦେଲେ ।୩୮-୩୯।

ଭରତ କର୍ମ୍ମ ଶୁଣି ପ୍ରାଣୀ
ତରିବେ ଭବ ତରଙ୍ଗିଣୀ
କହଇ ବିପ୍ର ଜଗନ୍ନାଥ
ନବମେ ବଂଶାନୁଚରିତ



# ଏକବିଂଶୋଽଧ୍ୟାୟଃ

ଏକବିଂଶେ ତୁ ଦୌଷ୍ମନ୍ତେଃ ସୁତସ୍ୟାନ୍ୱୟ ଉଚ୍ୟତେ ।
ରନ୍ତିଦେବାଜମୀଢ଼ାଦେର୍ଯତ୍ର କୀର୍ତ୍ତିଃ ପ୍ରତନ୍ୟତେ । ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ବିତଥସ୍ୟ ସୁତାନ୍ମନ୍ୟୋର୍ବୃହତ୍‌କ୍ଷତ୍ରୋ ଜୟସ୍ତତଃ ।
ମହାବୀର୍ଯ୍ୟୋ ନରୋ ଗର୍ଗଃ ସଂକୃତିସ୍ତୁ ନରାତ୍ମଜଃ । ୧ ।
ଗୁରୁଶ୍ଚ ରନ୍ତିଦେବଶ୍ଚ ସଂକୃତେଃ ପାଣ୍ଡୁନନ୍ଦନ ।
ରନ୍ତିଦେବସ୍ୟ ମହିମା ଇହାମୁତ୍ର ଚ ଗୀୟତେ । ୨ ।
ବିୟଦ୍‌ବିତ୍ତସ୍ୟ ଦଦତୋ ଲବ୍‌ଧଂ ଲବ୍‌ଧଂ ବୁଭୁକ୍ଷତଃ ।
ନିଷ୍କିଞ୍ଚନସ୍ୟ ଧୀରସ୍ୟ ସକୁଟୁମ୍ବସ୍ୟ ସୀଦତଃ । ୩ ।

---

## ରନ୍ତିଦେବାଦିଙ୍କ ବଂଶ ବର୍ଣ୍ଣନା

ଏକବିଂଶ ଅଧ୍ୟାୟରେ ଦୁଷ୍ମନ୍ତଙ୍କର ପୁତ୍ରମାନଙ୍କର ବଂଶ ବର୍ଣ୍ଣନା ପ୍ରସଙ୍ଗରେ ରନ୍ତିଦେବ ଅଜମୀଢ଼ ବଂଶର ବର୍ଣ୍ଣନା କରାଯାଇଅଛି ॥ • ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଭରତଙ୍କର ପୁତ୍ର ଥିଲେ ବିତଥ, ପ୍ରସିଦ୍ଧ ବଂଶରେ ଗୃହୀତ ହୋଇ ତାଙ୍କର ନାମ ହୋଇଥିଲା ବିତଥ । ବିତଥଙ୍କର ପୁତ୍ର ମନ୍ୟୁ, ମନ୍ୟୁଙ୍କର ପାଞ୍ଚପୁତ୍ର ଜନ୍ମିଥିଲେ । ବୃହତ୍‌କ୍ଷତ୍ର, ଜୟ, ମହାବୀର୍ଯ୍ୟ, ନର ଓ ଗର୍ଗ, ସେମାନଙ୍କ ମଧ୍ୟରୁ ନରଙ୍କର ପୁତ୍ର ସଂକୃତି, ସଂକୃତିଙ୍କର ଦୁଇପୁତ୍ର ଗୁରୁ ଓ ରନ୍ତିଦେବ । ସେହି ରନ୍ତିଦେବଙ୍କର ମହାତ୍ମ୍ୟ ଇହଲୋକ ଓ ପରଲୋକରେ କୀର୍ତ୍ତିତ ହୋଇଥିଲା ।୧, ୨।

ତାହାଙ୍କର ଅଜସ୍ର ଧନାଗମ ହେଉଥିଲେ ମଧ୍ୟ ସେ କେବେ ନ ଖାଇ ଧନ ଆସିବାମାତ୍ରେ ତାହା ଦାନ କରି ଦେଉଥିଲେ । ତେଣୁ ସେ ନିର୍ଦ୍ଧନ ହୋଇ ପଡୁଥିଲେ । ଏହିରି କି ସେ ସପରିବାରରେ ପାନ-

---

ଦୁଷ୍ମନ୍ତ ପୁତ୍ରଙ୍କର ବଂଶ । ଚରିତ ବର୍ଣ୍ଣି ଏକବିଂଶ ।

ଶ୍ରୀ ଶୁକ ଉବାଚ—

ଶୁକ କହନ୍ତି ଶୁଣ ରାଜା
ଭରତ ବଂଶ ଶୁଣ ଏବେ
ଭରଦ୍ୱାଜ ତା ଧର୍ମପୁତ୍ର
ପୁଣ ବିତଥ ନାମେ ଖ୍ୟାତ
ବିତଥ ପୁତ୍ର ମନ୍ୟୁ ଜାତ
ତା ସୁତ ଜୟ ବୃହତ୍‌କ୍ଷତ୍ର
ନର ଗର୍ଗାଦି ପଞ୍ଚ ଜନ
ନରୁଁ ସଂକୃତି ଉତ୍ପନ୍ନ

ସଂକୃତି ସୁତ ଉଦଭବ
ଗୁରୁ ଆବର ରନ୍ତିଦେବ ।୧।
ଯା ଯଶ ଇହ ପରଲୋକେ
ବିପ୍ରେ କହନ୍ତି ଏକେ ଏକେ
ସ୍ୱଧର୍ମେ ଲଭେ ଧନ ଯେତେ
ନିତ୍ୟେ ଭୁଞ୍ଜାଏ ବୁଭୁକ୍ଷିତେ
କରନ୍ତେ ଅକିଞ୍ଚନପ୍ରିୟ
କୁଟୁମ୍ବେ ନ କରେ ସେ ସ୍ନେହ
କୁଟୁମ୍ବ କ୍ଲେଶେ ଦିନ ବଞ୍ଚି
ଧନ ଅତିଥି ଅର୍ଥେ ସଞ୍ଚି

ଘୃତ ପାୟସ ରସ ପାଣି
ନିତ୍ୟେ ପ୍ରୀତିରେ ସଞ୍ଚି ଆଣି
ଅତିଥି ଅର୍ଥେ ଧନ ସଞ୍ଚି
କ୍ଷୁଧାର୍ତ୍ତ ଦେହେ ସ୍ନେହେ ବଞ୍ଚି
ଘୃତ ପାୟସ ଫଳ ପାଣି
ନାନା ପ୍ରକାରେ ସ୍ନେହେ ଆଣି
ନିତ୍ୟେ ସଞ୍ଚଇ ପ୍ରାତଃକାଳେ
ଯେବା ମିଳଇ ଯେତେବେଳେ
କୁଟୁମ୍ବ ନିତ୍ୟେ ଦୁଃଖେ ବଞ୍ଚି
ନିତ୍ୟେ ଅତିଥି ଅର୍ଥେ ସଞ୍ଚି ।୨,୩

ବ୍ୟତୀୟୁରଷ୍ଟଚତ୍ୱାରିଂଶଦହାନ୍ୟପିବତଃ କିଲ ।
ଘୃତପାୟସସଂଯାବଂ ତୋୟଂ ପ୍ରାତରୁପସ୍ଥିତମ୍ ।୪।
କୃଚ୍ଛ୍ରପ୍ରାପ୍ତ କୁଟୁମ୍ବସ୍ୟ କ୍ଷୁତ୍ତୃଡ୍‌ଭ୍ୟାଂ ଜାତବେପଥୋଃ ।
ଅତିଥିର୍ବ୍ରାହ୍ମଣଃ କାଲେ ଭୋକ୍ତୁକାମସ୍ୟ ଚାଗମତ୍ ।୫।
ତସ୍ମୈ ସଂବ୍ୟଭଜତ୍ ସୋଽନ୍ନମାଦୃତ୍ୟ ଶ୍ରଦ୍ଧୟାନ୍ୱିତଃ ।
ହରିଂ ସର୍ବତ୍ର ସଂପଶ୍ୟନ୍ ସ ଭୁକ୍ତ୍ୱା ପ୍ରୟଯୌ ଦ୍ୱିଜଃ ।୬।
ଅଥାନ୍ୟୋ ଭୋକ୍ଷ୍ୟମାଣସ୍ୟ ବିଭକ୍ତସ୍ୟ ମହୀପତେଃ ।
ବିଭକ୍ତଂ ବ୍ୟଭଜତ୍ ତସ୍ମୈ ବୃଷଳାୟ ହରିଂ ସ୍ମରନ୍ ।୭।
ଯାତେ ଶୂଦ୍ରେ ତମନ୍ୟୋଽଗାଦତିଥିଃ ଶ୍ୱଭିରାବୃତଃ ।
ରାଜନ୍ ମେ ଦୀୟତାମନ୍ନଂ ସଗଣାୟ ବୁଭୁକ୍ଷତେ ।୮।

---

ଭୋଜନାଦି ନ କରି କ୍ଲେଶ ସ୍ୱୀକାର କରିବାକୁ ମଧ୍ୟ କୁଣ୍ଠିତ ନ ଥିଲେ । ତଥାପି ତାଙ୍କର ଧୈର୍ଯ୍ୟଚ୍ୟୁତ ଘଟି ନ ଥିଲା । ଏହିପରି ଭାବରେ ଅଠଚାଳିଶ ଦିନ ଅତୀତ ହେଲା ପରେ ଊନଚାଳିଶ ଦିନ ପ୍ରାତଃକାଳରେ ଘୃତସିକ୍ତ ଯବ ପାୟସ ଓ ପାଣି ତାଙ୍କ ଭୋଜନାର୍ଥେ ଅଣା ହେଲା ମାତ୍ରେ ଜଣେ ଅତିଥି ବ୍ରାହ୍ମଣ ତାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ ।୩ ୫।

ସର୍ବଠାରେ ହରି ବିଦ୍ୟମାନ, ରାଜର୍ଷି ରନ୍ତିଦେବ ଏହା ବିଶ୍ୱାସ କରି ଅତିଥିଙ୍କୁ ସାଦରରେ ତାଙ୍କର ଭୋଜନୀୟ ଅନ୍ନାଦିରୁ ଅଂଶ ପ୍ରଦାନ କରିଥିଲେ, ବ୍ରାହ୍ମଣ ଏହା ଭୋଜନ କରି ପ୍ରସ୍ଥାନ କଲେ ।୬

ପରିବାରବର୍ଗ ନିଜ ନିଜର ଅନ୍ନାଦି ଭୋଜନ କଲାପରେ ରାଜା ରନ୍ତିଦେବ ନିଜର ଅଂଶ ଭୋଜନ କରିବାକୁ ଉଦ୍ୟତ ହେବା ସମୟରେ ଜଣେ ଶୂଦ୍ର ଅତିଥି ଆସି ଉପସ୍ଥିତ ହେଲା । ରାଜା ମଧ୍ୟ ହରିଙ୍କୁ ସ୍ମରଣ କରି ତାହାଙ୍କୁ ସେହି ଭାଗ ପ୍ରଦାନ କରିଥିଲେ ।୭।

ସେହି ଶୂଦ୍ର ଅତିଥି ଭୋଜନ କରି ପ୍ରସ୍ଥାନ କଲାପରେ ଜଣେ ଅତିଥି ଦଳେ କୁକ୍କୁର ଘେନି ଉପସ୍ଥିତ ହେଲା ଏବଂ କୁକ୍କୁରମାନଙ୍କ ନିମିତ୍ତ ଓ ନିଜ ନିମିତ୍ତ ଅନ୍ନ ପ୍ରାର୍ଥନା କରିଥିଲା ।୮।

---

ଶୁଣ ସଜ୍ଜନ ଶୁଦ୍ଧ ମନେ
ତାର ମଧ୍ୟରେ ଏକ ଦିନେ
ବିପ୍ର ମିଳିଲା ସାୟଂକାଳେ
ତାର ଅତିଥି ପୂଜା ବେଳେ
ଅନନ୍ତେ ଭିକ୍ଷା ତାକୁ ଦେଲା
ଏମନ୍ତେ ଶୂଦ୍ରେକ ମିଳିଲା
ଯେ ଅବଶେଷ ତାର ଅନ୍ନ
କୁଟୁମ୍ବ କରନ୍ତେ ଭୋଜନ

ତାହାଙ୍କୁ ବିଷ୍ଣୁ ପ୍ରାୟେ ମଣି
ବେଗେ ସେ ଭିକ୍ଷା ଦେଲା ଆଣି
ସେ ପୁଣି ଗୃହେ ଭୁଞ୍ଜି ଯାନ୍ତେ
ଶବର ଶ୍ୱାନର ସଙ୍ଗତେ
ଦ୍ୱାରେ ମିଳିଲା ରାତ୍ରେ ଆସି
ବୋଲଇ ତାର ଦ୍ୱାରେ ବସି
ହେ ରାଜା ! ଭକ୍ଷ୍ୟ ଦିଅ ମୋତେ
ଭୁଞ୍ଜିବି ଶ୍ୱାନର ସଙ୍ଗତେ

ଯେ ଅବା ଅବଶେଷ ଥିଲା
ତକ୍ଷଣେ ତାର ହସ୍ତେ ଦେଲା
ଶ୍ୱାନ ସଙ୍ଗତେ ଅନ୍ନ ଖାଇ
ସେ ପୁଣି ଯାନ୍ତେ ତୋଷ ହୋଇ ।୪-୮

ସ ଆଦୃତ୍ୟାବଶିଷ୍ଟଂ ଯଦ୍ବହୁମାନପୁରସ୍କୃତମ୍ ।
ତଚ୍ଚ ଦତ୍ୱା ନମଶ୍ଚକ୍ରେ ଶ୍ୱଭ୍ୟଃ ଶ୍ୱପତୟେ ବିଭୁଃ । ୯ ।
ପାନୀୟମାତ୍ରମୁଚ୍ଛେଷଂ ତଚ୍ଚୈକପରିତର୍ପଣମ୍ ।
ପାସ୍ୟତଃ ପୁଲ୍କଶୋଽଭ୍ୟାଗାଦପୋ ଦେହ୍ୟଶୁଭସ୍ୟ ମେ । ୧୦ ।
ତସ୍ୟ ତାଂ କରୁଣାଂ ବାଚଂ ନିଶମ୍ୟ ବିପୁଲଶ୍ରମମ୍ ।
କୃପୟା ଭୃଶସନ୍ତପ୍ତ ଇଦମାହାମୃତଂ ବଚଃ । ୧୧ ।
ନ କାମୟେଽହଂ ଗତିମୀଶ୍ୱରାତ୍ ପରାମଷ୍ଟର୍ଦ୍ଧିଯୁକ୍ତାମପୁନର୍ଭବଂ ବା ।
ଆର୍ତ୍ତିଂ ପ୍ରପଦ୍ୟେଽଖିଳଦେହଭାଜାମନ୍ତଃସ୍ଥିତୋ ଯେନ ଭବନ୍ତ୍ୟଦୁଃଖାଃ ।୧୨।
କ୍ଷୁତ୍ତୃଟ୍ଶ୍ରମୋ ଗାତ୍ରପରିଭ୍ରମଶ୍ଚ ଦୈନ୍ୟଂ କ୍ଲମଃ ଶୋକବିଷାଦମୋହାଃ ।
ସର୍ବେ ନିବୃତ୍ତାଃ କୃପଣସ୍ୟ ଜନ୍ତୋର୍ଜିଜୀବିଷୋର୍ଜୀବଜଳାର୍ପଣାନ୍ମେ । ୧୩ ।
ଇତି ପ୍ରଭାଷ୍ୟ ପାନୀୟଂ ମ୍ରିୟମାଣଃ ପିପାସୟା ।
ପୁଲ୍କଶାୟାଦଦାଦ୍ଧୀରୋ ନିସର୍ଗକରୁଣୋ ନୃପଃ । ୧୪ ।

---

ଅତିଥି ବତ୍ସଳ ରାଜା ରନ୍ତିଦେବ ବହୁ ସମ୍ମାନସହ ଅବଶିଷ୍ଟ ଅନ୍ନକୁ ତାଙ୍କୁ ଓ କୁକ୍କୁରମାନଙ୍କୁ ପ୍ରଦାନ କରି ନମସ୍କାର କରିଥିଲେ ।୯।

କୁକ୍କୁର ସ୍ୱାମୀ ଭୋଜନ କଲାପରେ ଜଣକ ପାଇଁ ଯଥେଷ୍ଟ ଜଳମାତ୍ର ଅବଶିଷ୍ଟ ଥିଲା । ରାଜା ତାହା ପାନ କରିବାକୁ ଉଦ୍ୟତ ହେବା ସମୟରେ ଜଣେ ପୁଲ୍କଶ ଅତିଥି ଆସି କହିଲା, ହେ ରାଜନ୍ ! ମୁଁ ହୀନଜାତି ମୋତେ ଏ ପାନୀୟ ଜଳ ପ୍ରଦାନ କରନ୍ତୁ ।୧୦।

ସେହି ପୁଲ୍କଶର କାତର ବାକ୍ୟ ଶୁଣି ଏବଂ ତାର ଅତ୍ୟନ୍ତ ଶ୍ରାନ୍ତ ଜାଣି ରାଜା ମଧୁର ବାକ୍ୟରେ କହିଲେ, ମୁଁ ପରମେଶ୍ୱରଙ୍କ ନିକଟରେ ଅଣିମାଦି ଅଷ୍ଟସିଦ୍ଧି ଯୁକ୍ତ ମୋକ୍ଷ କାମନା କରେନାହିଁ । ମୁଁ ଜଗତର ସମସ୍ତ ପ୍ରାଣୀଙ୍କ ହୃଦୟର ବେଦନା ଅନୁଭବ କରି ତାହା ଦୂରକରି ପାରିବି ଏହାହିଁ ମୋର କାମନା ।୧୧, ୧୨।

ଏହି ଜଳପାନାର୍ଥୀମାନଙ୍କର ଜୀବନରକ୍ଷା ପାଇଁ ମୁଁ ଜଳଦାନ କରିପାରିଲେ ମୋର କ୍ଷୁଧା, ତୃଷା, ଶ୍ରମ, ଭ୍ରମ, ଦୈନ୍ୟ, କ୍ଲାନ୍ତି, ଶୋକ, ବିଷାଦ ଏବଂ ମୋହ ଦୂର ହେବ ।୧୩।

କାରୁଣ୍ୟ ସ୍ୱଭାବ ରନ୍ତିଦେବ ନିଜେ ପିପାସାରେ ମ୍ରିୟମାଣ ହେଲେ ମଧ୍ୟ ଏହିକଥା କହି ନିଜର ପାନୀୟ ଜଳକୁ ପୁଲ୍କଶକୁ ପ୍ରଦାନ କରିଥିଲେ ।୧୪।

---

ଥିଲାକ ଜଳମାତ୍ର ଶେଷ
ଜଣେ ହୋଇବ ଜଣେ ତୋଷ
ତାହାକୁ ପିଇବା ନିମନ୍ତେ
ବିଷ୍ଟୁ ମିଳିଲେ ଜଳ ଅର୍ଥେ

ବୋଇଲେ ଜାତି ମୋ ଚଣ୍ଡାଳ
କର ପ୍ରଦାନ ମୋତେ ଜଳ
ଯାଉଛି ତୃଷାରେ ଯେ ପ୍ରାଣ
ଏମନ୍ତ ତାହାର ବଚନ

ଶୁଣି ତକ୍ଷଣେ ନୃପବର
ଚଣ୍ଡାଳେ ଦେଲା ସେହି ନୀର
ଏମନ୍ତେ ତାର ଭାବ ସ୍ନେହେଁ
ସନ୍ତୋଷ ଚିତ୍ତେ ଭାବଗ୍ରାହୀ

ତସ୍ୟ ତ୍ରିଭୁବନାଧୀଶାଃ ଫଳଦାଃ ଫଳମିଚ୍ଛତାମ୍ ।
ଆତ୍ମାନଂ ଦର୍ଶୟାଞ୍ଚକ୍ରୁର୍ମାୟା ବିଷ୍ଣୁବିନିର୍ମିତାଃ । ୧୫ ।
ସ ବୈ ତେଭ୍ୟୋ ନମସ୍କୃତ୍ୟ ନିଃସଙ୍ଗୋ ବିଗତସ୍ପୃହଃ ।
ବାସୁଦେବେ ଭଗବତି ଭକ୍ତ୍ୟା ଚକ୍ରେ ମନଃ ପରମ୍ । ୧୬ ।
ଈଶ୍ୱରାଲମ୍ବନଂ ଚିତ୍ତଂ କୁର୍ବତୋଽନନ୍ୟରାଧସଃ ।
ମାୟା ଗୁଣମୟୀ ରାଜନ୍ ସ୍ୱପ୍ନବତ୍ ପ୍ରତ୍ୟଲୀୟତ । ୧୭ ।
ତତ୍ପ୍ରସଙ୍ଗାନୁଭାବେନ ରନ୍ତିଦେବାନୁବର୍ତ୍ତିନଃ ।
ଅଭବନ୍ ଯୋଗିନଃ ସର୍ବେ ନାରାୟଣପରାୟଣାଃ । ୧୮ ।
ଗର୍ଗାଚ୍ଛିନିସ୍ତତୋ ଗାର୍ଗ୍ୟଃ କ୍ଷତ୍ରାଦ୍‌ବ୍ରହ୍ମ ହ୍ୟବର୍ତ୍ତତ ।
ଦୁରିତକ୍ଷୟୋ ମହାବୀର୍ଯ୍ୟାତ୍ ତସ୍ୟ ତ୍ରୟ୍ୟାରୁଣିଃ କବିଃ । ୧୯ ।

---

ଫଳକାମୀ ମାନବଗଣଙ୍କର ଫଳଦାତା ବ୍ରହ୍ମାଦି ଦେବଗଣ ଓ ବିଷ୍ଣୁମାୟା ବ୍ରାହ୍ମଣାଦି ଶରୀର ଧାରଣ କରି ମହାରାଜ ରନ୍ତିଦେବଙ୍କୁ ପରୀକ୍ଷା କରିବା ନିମନ୍ତେ ଅତିଥି ବେଶରେ ସମାଗତ ହୋଇଥିଲେ, ତାଙ୍କ ବ୍ୟବହାରରେ ପରିତୁଷ୍ଟ ହୋଇ ତାହାଙ୍କୁ ନିଜରୂପ ପ୍ରଦର୍ଶନ କରିଥିଲେ ।୧୫।

ବିଗତ ସ୍ପୃହ ନିଷ୍କାମ ନୃପତି ମାୟା ମୂର୍ତ୍ତିମାନଙ୍କୁ ନମସ୍କାର କରିଥିଲେ । କୌଣସି ପ୍ରକାର ବର ପ୍ରାର୍ଥନା କରି ନ ଥିଲେ । ମାତ୍ର ଅତ୍ୟନ୍ତ ଭକ୍ତି ଭାବରେ ଭଗବାନ ବାସୁଦେବଙ୍କଠାରେ ମନୋନିବେଶ କରିଥିଲେ ।୧୬।

ହେ ମହାରାଜ ! ମହୀପତି ରନ୍ତିଦେବଙ୍କର ଚିତ୍ତ ଏକମାତ୍ର ଈଶ୍ୱରଙ୍କଠାରେ ନିବଷ୍ଟ ଥିଲା । ତାଙ୍କର କୌଣସି ପ୍ରକାର ଫଳ କାମନା ନ ଥିଲା । ସୁତରାଂ ଗୁଣମୟୀ ମାୟା ତାଙ୍କୁ ସ୍ପର୍ଶ କରି ନ ଥିଲା ।୧୭

ହେ ମହାରାଜ ! ରନ୍ତିଦେବଙ୍କର ଅନୁଗାମୀ ଲୋକମାନେ ତାଙ୍କ ପ୍ରଭାବ ଦ୍ୱାରା ନାରାୟଣ ପରାୟଣ ଯୋଗୀ ହୋଇଥିଲେ ।୧୮।

ଗର୍ଗଙ୍କଠାରୁ ଜନ୍ମିଥିଲେ ଶିନି, ଶିନିଙ୍କର ପୁତ୍ର ଗାର୍ଗ୍ୟ, ସେ କ୍ଷତ୍ରିୟ କୁଳରେ ଜନ୍ମିଲେ ମଧ୍ୟ ବ୍ରାହ୍ମଣ ହୋଇଥିଲେ । ମହାବୀର୍ଯ୍ୟଙ୍କର ପୁତ୍ର ଦୁରିତକ୍ଷୟ, ତାହାଙ୍କର ତନୟତ୍ରୟ, ତ୍ରୈୟ୍ୟାରୁଣୀ, କବି

---

ହୋଇଲେ ଅତି ଆନନ୍ଦରେ
ତୋ ଯଶ ରହୁ ଏ ଜଗତେ
ଅନ୍ତେ ପାଇବୁ ମୋତେ ତୁହି
ଏମନ୍ତେ ବିଷ୍ଣୁ ବର ଦେଇ
ଶୂନ୍ୟେ ସେ ଗଲେ ଚକ୍ରଧର
ଏମନ୍ତେ ଶୁଣ ନୃପବର ।୧-୧୭।

ମନ୍ୟୁ ନୃପରୁ ଗର୍ଗ ସୁତ
ତା ଠାରୁ ଶିନି ହେଲା ଜାତ
ତାହାର ପୁତ୍ର ଗାର୍ଗ୍ୟ ଜାଣ
ସେ ପୁଣି ହୋଇଲା ବ୍ରାହ୍ମଣ
ମନ୍ୟୁ ନୃପର ଆଉ ପୁତ୍ର
ଯା ନାମ ମହାବୀର୍ଯ୍ୟ ଖ୍ୟାତ

ତାହାର ହୋଇଲା କୁମର
ଦୁରିତକ୍ଷୟ ନାମ ତାର
ତାଠାରୁ କବି ତ୍ରୟ୍ୟାରୁଣି
ପୁଷ୍କରାରୁଣି ପୁତ୍ର ତିନି ।୧୮-୧୯

ପୁଷ୍କରାରୁଣିରତ୍ୟତ୍ର ଯେ ବ୍ରାହ୍ମଣଗତିଂ ଗତାଃ ।
ବୃହତ୍‌କ୍ଷେତ୍ରସ୍ୟ ପୁତ୍ରୋଽଭୂଦ୍ଧସ୍ତୀ ଯଦ୍ଧସ୍ତିନାପୁରମ୍ । ୨୦ ।
ଅଜମୀଢ଼ୋ ଦ୍ୱିମୀଢ଼ଶ୍ଚ ପୁରୁମୀଢ଼ଶ୍ଚହସ୍ତିନଃ ।
ଅଜମୀଢ଼ସ୍ୟ ବଂଶ୍ୟାଃ ସ୍ୟୁଃ ପ୍ରିୟମେଧାଦୟୋ ଦ୍ୱିଜାଃ । ୨୧ ।
ଅଜମୀଢାଦ୍‌ବୃହଦିଷୁସ୍ତସ୍ୟ ପୁତ୍ରୋ ବୃହଦ୍ଧନୁଃ ।
ବୃହତ୍କାୟସ୍ତତସ୍ତସ୍ୟ ପୁତ୍ର ଆସୀଜ୍ଜୟଦ୍ରଥଃ । ୨୨ ।
ତସ୍ତୁତୋ ବିଶଦସ୍ତସ୍ୟ ସେ୍ୟନଜିତ୍ ସମଜାୟତ ।
ରୁଚିରାଶ୍ୱୋଦୃଢ଼ହନୁଃ କାଶ୍ୟୋ ବସ୍ରଶ୍ଚ ତସ୍ତୁତାଃ । ୨୩ ।
ରୁଚିରାଶ୍ୱସୁତଃ ପାରଃ ପୃଥୁସେନସ୍ତଦାତ୍ମଜଃ ।
ପାରସ୍ୟ ତନୟୋ ନୀପସ୍ତସ୍ୟ ପୁତ୍ରଶତଂ ତ୍ୱଭୂତ୍ । ୨୪ ।

---

ଓ ପୁଷ୍କରାରୁଣୀ । ଏହି ତିନିପୁତ୍ର ବ୍ରାହ୍ମଣ ହୋଇଥିଲେ, ବୃହତ୍ କ୍ଷେତ୍ରଙ୍କର ପୁତ୍ର ହସ୍ତୀ, ଏ ହସ୍ତିନାପୁର ନିର୍ମାଣ କରିଥିଲେ । ୧୯-୨୦ ।

ହସ୍ତୀଙ୍କର ଅଜମୀଢ, ଦ୍ୱିମୀଢ ଓ ପୁରୁମୀଢ ନାମକ ତିନିପୁତ୍ର ଜନ୍ମିଥିଲେ, ପ୍ରିୟମେଧାଦି ଦ୍ୱିଜଗଣ ଅଜମୀଢ ବଂଶରେ ଜନ୍ମ ।୨୧।

ଅଜମୀଢଙ୍କଠାରୁ ବୃହଦିଷୁ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୁତ୍ର ବୃହଦ୍‌ଧନୁ, ବୃହଦ୍‌ଧନୁଙ୍କର ପୁତ୍ର ବୃହତ୍‌କାୟ, ତାହାଙ୍କର ପୁତ୍ର ଜୟଦ୍ରଥ, ଜୟଦ୍ରଥଙ୍କର ପୁତ୍ର ବିଶଦ, ବିଶଦଙ୍କର ପୁତ୍ର ସେ୍ୟନଜିତ୍, ସେ୍ୟନଜିତ୍‌ଙ୍କର ଚାରିପୁତ୍ର ରୁଚିରାଶ୍ୱ, ଦୃଢ ଧନୁ, କାଶ୍ୟ ଓ ବସ୍ର ।୨୨,୨୩।

ରୁଚିରାଶ୍ୱଙ୍କର ପୁତ୍ର ପାର, ତାହାଙ୍କର ପୁତ୍ର ପୃଥୁସେନ, ପାରଙ୍କର ଅନ୍ୟପୁତ୍ର ନୀପ, ନୀପଙ୍କର ଏକଶତ ପୁତ୍ର ଜନ୍ମିଥିଲେ, ନୀପଙ୍କଠାରୁ ଶୁକକନ୍ୟା କୃତ୍ୱୀଙ୍କ ଗର୍ଭରେ ବ୍ରହ୍ମଦତ୍ତ ନାମକ ଏକପୁତ୍ର

---

ମନ୍ୟୁର ଯେତକ ପଞ୍ଚ ପୁତ୍ର
ଜ୍ୟେଷ୍ଠ ତହିଁରେ ବୃହତ୍‌କ୍ଷତ୍ର
ହସ୍ତୀ ଯେ ତାହାର କୁମର
ବସାଇ ହସ୍ତିନା ନଗର
ହସ୍ତୀର ପୁତ୍ର ଅଜମୀଢ
ଦ୍ୱିମୀଢ ଆଉ ପୁରୁମୀଢ ।୨୦।
ବୃହଦିଷ ଅଜମୀଢର
ତା ସୁତ ବୃହଦ୍ଧନୁ ଯାର

ତାର କୁମର ବୃହତ୍କାୟ
ଜୟଦ୍ରଥ ତାର ତନୟ ।୨୧।
ବିଶଦ ତାର ବୀର୍ଯ୍ୟେ ଜାତ
ତାର ତନୟ ସେ୍ୟନଜିତ
ସେ୍ୟନଜିତରୁ ରୁଚିରାଶ୍ୱ
ବସ୍ର ଯେ ଦୃଢହନୁ କାଶ୍ୟ ।୨୨।
ରୁଚିରାଶ୍ୱର ପାର ସୁତ
ପୃଥୁସେନ ତାଠାରୁ ଜାତ

ପାରର ନୀପ ନାମେ ପୁତ୍ର
ତାହାର ହେଲେ ଶତେ ସୁତ ।୨୩।
ଶୁକ କନ୍ୟାର ଗର୍ଭେ ଜାତ
ତା ପୁତ୍ର ନାମ ବ୍ରହ୍ମଦତ୍ତ ।୨୪।

ସ କୃତ୍ୱ୍ୟାଂ ଶୁକକନ୍ୟାୟାଂ ବ୍ରହ୍ମଦତ୍ତମଜୀଜନତ୍ ।
ଯୋଗୀ ସ ଗବିଭାର୍ଯ୍ୟାୟାଂ ବିଷ୍ୱକ୍‌ସେନମଧାତ୍ ସୁତମ୍ । ୨୫ ।
ଜୈଗୀଷବ୍ୟୋପଦେଶେନ ଯୋଗତନ୍ତ୍ରଂ ଚକାର ହ ।
ଉଦକ୍‌ସେନସ୍ତତସ୍ତସ୍ମାଦ୍ଭଲ୍ଲାଟୋ ବାର୍ହଦୀଷବାଃ । ୨୬ ।
ଯବୀନରୋ ଦ୍ୱିମୀଢ଼ସ୍ୟ କୃତମାଂସ୍ତତ୍‌ସୁତଃ ସ୍ମୃତଃ ।
ନାମ୍ନା ସତ୍ୟଧୃତସ୍ତସ୍ୟ ଦୃଢ଼ନେମିଃ ସୁପାର୍ଶ୍ୱକୃତ୍ । ୨୭ ।
ସୁପାର୍ଶ୍ୱାତ୍ ସୁମତସ୍ତସ୍ୟ ପୁତ୍ରଃ ସନ୍ନତିମାଂସ୍ତତଃ ।
କୃତୀ ହିରଣ୍ୟନାଭାଦ୍‌ଯୋ ଯୋଗଂ ପ୍ରାପ୍ୟ ଜଗୌ ସ୍ମ ଷଟ୍ । ୨୮ ।
ସଂହିତା ପ୍ରାଚ୍ୟସାମ୍ନାଂ ବୈ ନୀପୋହ୍ୟୁଗ୍ରାୟୁଧସ୍ତତଃ ।
ତସ୍ୟ କ୍ଷେମ୍ୟଃ ସୁବୀରୋଽଥ ସୁବୀରସ୍ୟ ରିପୁଞ୍ଜୟଃ । ୨୯ ।

---

ଜନ୍ମିଥିଲେ । ବ୍ରହ୍ମଦତ୍ତ ଯୋଗୀ ଥିଲେ, ତାଙ୍କଠାରୁ ସରସ୍ୱତୀଙ୍କ ଗର୍ଭରେ ବିଶ୍ୱକ୍‌ସେନ ଜନ୍ମଗ୍ରହଣ କରିଥିଲେ ।୨୪, ୨୫।

ବିଶ୍ୱକ୍‌ସେନ ଜୈଗୀଷବ୍ୟଙ୍କ ଉପଦେଶ ଅନୁସାରେ ଯୋଗଶାସ୍ତ୍ର ପ୍ରଣୟନ କରିଥିଲେ, ବିଶ୍ୱକ୍‌ସେନଙ୍କଠାରୁ ଉଦକ୍‌ସେନ ଓ ତାଙ୍କଠାରୁ ଭଲ୍ଲାଟ ଜନ୍ମଗ୍ରହଣ କରିଥିଲେ । ଏମାନେ ବୃହଦିଷୁଙ୍କର ବଂଶଧର ।୨୬।

ଦ୍ୱିମୀଢଙ୍କର ପୁତ୍ର ଯବୀନର, ତାହାଙ୍କର ପୁତ୍ର କୃତମାନ, ତାହାଙ୍କର ପୁତ୍ର ସତ୍ୟଧୃତ, ତାହାଙ୍କର ପୁତ୍ର ଦୃଢନେମୀ, ତାହାଙ୍କର ପୁତ୍ର ସୁପାର୍ଶ୍ୱ, ତାହାଙ୍କରପୁତ୍ର ସୁମତ, ତାହାଙ୍କରପୁତ୍ର ସନ୍ନତିମାନ, ତାହାଙ୍କର ପୁତ୍ର କୃତୀ, କୃତୀ ହିରଣ୍ୟନାଭଙ୍କଠାରୁ ଯୋଗ ଉପଦେଶ ପାଇ ପ୍ରାଚ୍ୟସାମ ନାମକ ଛଅଖଣ୍ଡ ସଂହିତା ରଚନା କରି ଅଧ୍ୟାପନା କରିଥିଲେ, ନୀପବଂଶୀୟ କୃତୀଙ୍କର ପୁତ୍ର ଉଗ୍ରାୟୁଧ, ତାହାଙ୍କର ପୁତ୍ର କ୍ଷେମ୍ୟ, କ୍ଷେମ୍ୟଙ୍କର ପୁତ୍ର ସୁବୀର, ତାଙ୍କଠାରୁ ରିପୁଞ୍ଜୟ ଜନ୍ମଗ୍ରହଣ କରିଥିଲେ ।୨୭, ୨୯।

---

ବ୍ରହ୍ମଦତ୍ତର ଯେ ନନ୍ଦନ
ତାହାର ନାମ ବିଷ୍ୱକ୍‌ସେନ
ତାହାର ସୁତ ଉଦକ୍‌ସେନ
ଭଲ୍ଲାଟ ତାଠାରୁ ଜନମ ।୨୫।
ହସ୍ତୀ ନୃପତି ଆର ସୁତ
ଦ୍ୱିମୀଢ ନାମରେ ଯେ ଖ୍ୟାତ
ଯବୀନର ତାର କୁମର
କୃତମାନ ଯେ ସୁତ ତାର

ସତ୍ୟଧୃତ ତାର ନନ୍ଦନ
ଦୃଢନେମୀ ତା ତହୁଁ ଜନ୍ମ ।୨୬
ସୁପାର୍ଶ୍ୱ ତାହାର କୁମର
ସୁମତି ନାମେ ସୁତ ତାର
ତାର ସୁତ ସନ୍ନତିମାନ
କୃତୀ ଯେ ତାହାର ନନ୍ଦନ
ତାଠାରୁ ନୀପ ତହୁଁ କ୍ଷେମ୍ୟ
ସୁବୀର ଯାହାର ନନ୍ଦନ

ରିପୁଞ୍ଜୟ ଯେ ତାର ସୁତ
ପୁରଞ୍ଜୟ ଯେ ତାର ପୁତ୍ର
ତା ପୁତ୍ର ନାମ ବହୁରଥ
ଶୁଣ ରାଜନ ସମ୍ବିହିତ ।୨୭-୨୯

ତତୋ ବୃହଦ୍ରଥୋ ନାମ ପୁରୁମୀଢୋଽପ୍ରଜୋଽଭବତ୍ ।
ନଳିନ୍ୟାମଜମୀଢ଼ସ୍ୟ ନୀଳଃ ଶାନ୍ତିସ୍ତୁ ତତ୍‌ସୁତଃ । ୩୦ ।
ଶାନ୍ତେଃ ସୁଶାନ୍ତିସ୍ତତ୍‌ପୁତ୍ରଃ ପୁରୁଜୋଽର୍କସ୍ତତୋଽଭବତ୍ ।
ଭର୍ମ୍ୟାଶ୍ୱସ୍ତନୟସ୍ତସ୍ୟ ପଞ୍ଚାସନ୍ ମୁଦ୍ଗଳାଦୟଃ । ୩୧ ।
ଯବୀନରୋ ବୃହଦ୍‌ବିଶ୍ୱଃ କାମ୍ପିଲ୍ୟଃ ସଞ୍ଜୟଃ ସୁତାଃ ।
ଭର୍ମ୍ୟାଶ୍ୱଃ ପ୍ରାହ ପୁତ୍ରା ମେ ପଞ୍ଚାନାଂ ରକ୍ଷଣାୟ ହି । ୩୨ ।
ବିଷୟାଣାମଲମିମେ ଇତି ପଞ୍ଚାଳସଂଜ୍ଞିତାଃ ।
ମୁଦ୍ଗଳାଦ୍‌ବ୍ରହ୍ମନିର୍ବୃତ୍ତଂ ଗୋତ୍ରଂ ମୌଦ୍‌ଗଲ୍ୟସଂଜ୍ଞିତମ୍ । ୩୩ ।
ମିଥୁନଂ ମୁଦ୍ଗଳାଦ୍‌ଭାର୍ମ୍ୟାଦ୍ଦିବୋଦାସଃ ପୁମାନଭୂତ୍ ।
ଅହଲ୍ୟା କନ୍ୟକା ଯସ୍ୟାଂ ଶତାନନ୍ଦସ୍ତୁ ଗୌତମାତ୍ । ୩୪ ।

---

ରନ୍ତିଦେବଙ୍କର ବୃହଦ୍ରଥ ନାମକ ପୁତ୍ର ଥିଲେ । ପୁରୁମୀଢ ନିଃସନ୍ତାନ ଥିଲେ, ନଳିନୀଙ୍କ ଗର୍ଭରେ ଅଜମୀଢଙ୍କର ନୀଳ ନାମରେ ଏକପୁତ୍ର ଜାତ ହୋଇଥିଲେ । ନୀଳଙ୍କରପୁତ୍ର ଶାନ୍ତି, ତାଙ୍କର ପୁତ୍ର ସୁଶାନ୍ତି, ସୁଶାନ୍ତିଙ୍କର ପୁତ୍ର ପୁରୁଜ, ପୁରୁଜଙ୍କଠାରୁ ଅର୍କ, ତାଙ୍କଠାରୁ ଭର୍ମ୍ୟାଶ୍ୱଜାତ ହୋଇଥିଲେ । ଭର୍ମ୍ୟାଶ୍ୱଙ୍କର ପାଞ୍ଚପୁତ୍ର, ମୁଦ୍ଗଲ, ଯବୀନର, ବୃହଦ୍‌ବିଶ୍ୱ, କାମ୍ପିଲ୍ୟ ଓ ସଞ୍ଜୟ । ୩୦, ୩୧ ।

ଏକଦା ଭର୍ମ୍ୟାଶ୍ୱ କହିଥିଲେ ମୋର ପାଞ୍ଚପୁତ୍ର ପାଞ୍ଚବିଷୟ ରକ୍ଷା କରିବାକୁ ସମର୍ଥ ତେଣୁ ସେମାନେ ପଞ୍ଚାଳନାମରେ ଅଭିହିତ ହେବେ । ମୁଦ୍ଗଲଙ୍କଠାରୁ ବ୍ରାହ୍ମଣଜାତୀୟ ମୌଦ୍ଗଲ୍ୟ ଗୋତ୍ରର ସୃଷ୍ଟି ହୋଇଥିଲା ।୩୨, ୩୩।

ଭର୍ମ୍ୟାଶ୍ୱଙ୍କପୁତ୍ର ମୁଦ୍ଗଲଙ୍କଠାରୁ ଯମଜ ସନ୍ତାନ ଜନ୍ମିଥିଲେ ପୁତ୍ରଙ୍କର ନାମ ଦିବୋଦାସ ଏବଂ କନ୍ୟାର ନାମ ଅହଲ୍ୟା, ଅହଲ୍ୟା ଗର୍ଭରେ ଗୌତମଙ୍କଠାରୁ ଶତାନନ୍ଦ ଜନ୍ମ ଗ୍ରହଣ କରିଥିଲେ ।୩୪।

---

ଅଜମୀଢର ଭାର୍ଯ୍ୟା ଆନ
ନଳିନୀ ଗର୍ଭେ ନୀଳ ଜନ୍ମ
ନୀଳର ପୁତ୍ର ନାମ ଶାନ୍ତି
ତାଠାରୁ ଜନମ ସୁଶାନ୍ତି
ସୁଶାନ୍ତି ତନୟ ପୁରୁଜ
ଅର୍କ ଯେ ତାହାର ତନୁଜ

ଭର୍ମ୍ୟାଶ୍ୱ ନାମେ ତାର ସୁତ
ମୁଦ୍‌ଗଲ ଆଦି ପଞ୍ଚ ଜାତ
ପଞ୍ଚ ବିଷୟେ ସେ ସମର୍ଥ
ତେଣୁ ପଞ୍ଚାଳ ନାମେ ଖ୍ୟାତ ।୩୦-୩୨
ମୁଦ୍ଗଲ ପୁତ୍ର ଦିବୋଦାସ
କନ୍ୟା ଏ ଅହଲ୍ୟା ପ୍ରକାଶ

ଅହଲ୍ୟା ଗର୍ଭେ ଜନ୍ମ ଜାତ
ଗୌତମ ବୀର୍ଯ୍ୟେ ଯେଉଁ ପୁତ୍ର
ଶତାନନ୍ଦ ଯେ ତାର ନାମ
ସତ୍ୟଧୃତ ତାର ନନ୍ଦନ ।୩୩-୩୪।

ତସ୍ୟ ସତ୍ୟଧୃତଃ ପୁତ୍ରୋ ଧନୁର୍ବେଦ ବିଶାରଦଃ ।
ଶରଦ୍ୱାଂସ୍ତତ୍ସୁତୋ ଯସ୍ମାଦୁର୍ବଶୀଦର୍ଶନାତ୍ କିଲ । ୩୫ ।
ଶରସ୍ତମ୍ବେଽପତଦ୍ରେତୋ ମିଥୁନଂ ତଦଭୂତ୍ ଶୁଭମ୍ ।
ତଦ୍ଦୃଷ୍ଟ୍ୱା କୃପୟାଗୃହ୍ଣାତ୍ ଶାନ୍ତନୁର୍ମୃଗୟାଂ ଚରନ୍ ।
କୃପଃ କୁମାରଃ କନ୍ୟା ଚ ଦ୍ରୋଣପତ୍ନ୍ୟଭବତ୍ କୃପୀ । ୩୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ଭରତବଂଶାନୁକୀର୍ତ୍ତନେ ନାମ ଏକବିଂଶୋଽଧ୍ୟାୟଃ ।

---

ଶତାନନ୍ଦଙ୍କର ସତ୍ୟଧୃତ ନାମକ ଏକ ଧନୁର୍ବିଦ୍ୟା ବିଶାରଦ ପୁତ୍ର ଜନ୍ମିଥିଲା । ତାହାର ନାମ ଶରଦ୍ୱାନ, ଏକ ସମୟରେ ଉର୍ବଶୀଙ୍କୁ ଦେଖି ତାଙ୍କର ଶୁକ୍ର ସ୍ଖଳିତ ହୋଇ ଶରସ୍ତମ୍ବରେ ପତିତ ହୋଇ-ଥିଲା, ଏହାଙ୍କଠାରୁ ସୁନ୍ଦର ଯମଜ ପୁତ୍ର ଉତ୍ପନ୍ନ ହୋଇଥିଲେ । ମହାମନା ଶାନ୍ତନୁ ମୃଗୟାକୁ ଯାଇ ବନ ମଧ୍ୟରେ ବିଚରଣ କରୁ କରୁ ଏହି ଯମଜ ସନ୍ତାନଙ୍କୁ ଦେଖି ତାଙ୍କ ହୃଦୟରେ ଦୟାର ସଞ୍ଚାର ହୋଇଥିଲା ଏବଂ ସେ ସେମାନଙ୍କୁ ଘେନି ଆସିଥିଲେ, ସେହି ପୁତ୍ରର ନାମ କୃପ ଓ କନ୍ୟାର ନାମ କୃପୀ, ପରେ କୃପୀ ଦ୍ରୋଣାଚାର୍ଯ୍ୟଙ୍କର ପତ୍ନୀ ହୋଇଥିଲେ ।୩୫, ୩୬।

---

ତାର କୁମର ଶରଦ୍ୱାନ
ଅତି ସୁନ୍ଦର ବିଦ୍ୟମାନ
ଉର୍ବଶୀ ଦେଖି ବନଦେଶେ
ତାହାର ରେତ କାମବଶେ
ଧରି ନ ପାରିଲା ଅବଶେ
ତକ୍ଷଣେ ପଡ଼ି ଶରସ୍ତମ୍ବେ
ପୁତ୍ର ଦୁହିତା ହୋଇ ଜାତ
ବନେ ହୋଇଲେ ଅରକ୍ଷିତ ।୩୫
ଏମନ୍ତେ ପାହିଲା ରଜନୀ
ଶାନ୍ତନୁ କରେ ଧନୁ ଘେନି

ମୃଗୟା ଅର୍ଥେ ବନେ ଗଲା
ସେ କନ୍ୟା ପୁତ୍ରଙ୍କୁ ଦେଖିଲା
ମନ ସନ୍ଦେହେ ବିସ୍ମରଇ
ଅଦ୍ଭୁତ କନ୍ୟା ପୁତ୍ର ଏହି
କିଏ କାହାର କନ୍ୟା ସୁତ
ବନେ ଅଛନ୍ତି ଅରକ୍ଷିତେ
ଏମନ୍ତେ ଚିତ୍ତେ କୃପା କରି
କନ୍ୟା କୁମର କୋଳେ ଧରି
ମନ୍ଦିରେ ମିଳି ସେ ରାଜନ
କନ୍ୟା କୁମରେ ଦେଲା ନାମ

କୃପାରୁ ବଶୁ କୃପନାମ
ଅତି ସୁନ୍ଦର ଅନୁପମ
କନ୍ୟାକୁ କୃପୀ ନାମ ଦେଲା
ଦ୍ରୋଣେ ତାହାକୁ ବିଭା କଲା ।୩୬
ବୋଲଇ ବିପ୍ର ଜଗନ୍ନାଥ
ନବମେ ବଂଶାନୁଚରିତ
ଶୁଣ ସୁଜନେ ଏକଚିତ୍ତେ
ସଂସାରୁ ତରିବ ଯେମନ୍ତେ
କୃଷ୍ଣ ଚରିତ ଅତି ସାର
ଦୁର୍ଲଭ ମନୁଷ୍ୟ ଶରୀର ॥



# ଦ୍ୱାବିଂଶୋଽଧ୍ୟାୟଃ ।

ଦ୍ୱାବିଂଶେ ତୁ ଦିବୋଦାସବଂଶମୁକ୍ତ୍ୱାର୍ଥବର୍ଣ୍ଣିତାଃ ।
ଋକ୍ଷବଂଶେ ଜରାସନ୍ଧପାର୍ଥଦୁର୍ଯ୍ୟୋଧନାଦୟଃ । ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକଉବାଚ ।

ମିତ୍ରାୟୁଶ୍ଚ ଦିବୋଦାସାଚ୍ୟବନସ୍ତତ୍‌ସୁତୋ ନୃପ ।
ସୁଦାସଃ ସହଦେବୋଽଥ ସୋମକୋ ଜନ୍ତୁଜନ୍ମକୃତ୍ । ୧ ।
ତସ୍ୟପୁତ୍ରଶତଂ ତେଷାଂ ଯବୀୟାନ୍ ପୃଷତଃ ସୁତଃ ।
ସ ତସ୍ମାଦ୍‌ଦ୍ରୁପଦୋ ଜଜ୍ଞେ ସର୍ବସମ୍ପତ୍‌ସମନ୍ୱିତଃ । ୨ ।
ଦ୍ରୁପଦାତ୍‌ଦ୍ରୌପଦୀ ତସ୍ୟ ଧୃଷ୍ଟଦ୍ୟୁମ୍ନାଦୟଃ ସୁତାଃ ।
ଧୃଷ୍ଟଦ୍ୟୁମ୍ନାଦ୍ଧୃଷ୍ଟକେତୁର୍ଭାର୍ମ୍ୟାଃ ପାଞ୍ଚାଳକା ଇମେ । ୩ ।

---

## ଜରାସନ୍ଧ ଓ ପାଣ୍ଡବବଂଶ

ଦ୍ୱାବିଂଶ ଅଧ୍ୟାୟରେ ଦିବୋଦାସ ପ୍ରସଙ୍ଗ ଜରାସନ୍ଧ ପ୍ରସଙ୍ଗ ଏବଂ କୌରବ ପାଣ୍ଡବବଂଶ ବର୍ଣ୍ଣନା କରାଯାଇଅଛି ॥ • ॥

ଶ୍ରୀ ଶୁକଦେବ କହିଲେ :—

ହେ ନୃପ ପରୀକ୍ଷିତ ! ଦିବୋଦାସଙ୍କର ପୁତ୍ର ମିତ୍ରାୟୁ, ତାହାଙ୍କର ପୁତ୍ର ଚ୍ୟବନ । ଚ୍ୟବନଙ୍କର ପୁତ୍ର ସୁଦାସ, ତାହାଙ୍କର ପୁତ୍ର ସୋମକ, ସୋମକଙ୍କର ଏକଶତ ପୁତ୍ର ଜନ୍ମି ଥିଲେ । ସେମାନଙ୍କ ମଧ୍ୟରେ ଜନ୍ତୁ ଜ୍ୟେଷ୍ଠ ଏବଂ ପୃଷତ କନିଷ୍ଠ, ସେହି ପୃଷତଙ୍କଠାରୁ ସର୍ବସମୃଦ୍ଧି ଯୁକ୍ତ ପ୍ରସିଦ୍ଧ ଦ୍ରୁପଦ ଜନ୍ମ-ଗ୍ରହଣ କରିଥିଲେ ।୧, ୨।

ଦ୍ରୁପଦଙ୍କର କନ୍ୟା ଦ୍ରୌପଦୀ ଓ ପୁତ୍ର ଧୃଷ୍ଟଦ୍ୟୁମ୍ନ ପ୍ରଭୃତି; ଧୃଷ୍ଟଦ୍ୟୁମ୍ନଙ୍କଠାରୁ ଧୃଷ୍ଟକେତୁ ପ୍ରଭୃତି ଜନ୍ମଗ୍ରହଣ କରିଥିଲେ, ଏମାନେ ଭର୍ମ୍ୟାଶ୍ୱ ବଂଶ ଜାତ ପାଞ୍ଚାଳ ନାମରେ ପ୍ରସିଦ୍ଧ ।୩।

---

ଦ୍ୱାବିଂଶେ ଦିବୋଦାସ ବଂଶ, ପୁଣି ବର୍ଣ୍ଣିତ ଋକ୍ଷବଂଶ ॥

ଶ୍ରୀ ଶୁକ ଉବାଚ—
ମିତ୍ରାୟୁ ଦିବୋଦାସ ସୁତ
ଚ୍ୟବନ ତାର ତନୁଁ ଜାତ
ସୁଦାସ ତାହାର ନନ୍ଦନ
ତା ସୁତ ସହଦେବ ଘେନ

ସୋମକ ସହଦେବ ସୁତ
ଜନ୍ତୁ ତାହାର ଜ୍ୟେଷ୍ଠ ପୁତ୍ର ।୧।
ସୋମକ ବୀର୍ଯ୍ୟେ ଶତ ସୁତ
ପୃଷତ ତାଙ୍କ ସାନ ଭ୍ରାତ
ଦ୍ରୁପଦ ତାହାର ନନ୍ଦନ
ତାର ତନୟ ଧୃଷ୍ଟଦ୍ୟୁମ୍ନ

ଦ୍ରୌପଦୀ କନ୍ୟା ତାଙ୍କ ଘରେ
ସେ ଆଦିଶକ୍ତି ଜନ୍ମାନ୍ତରେ
ସେ ଧୃଷ୍ଟଦ୍ୟୁମ୍ନଙ୍କ ଠାରୁ
ଜନ୍ମ ଲଭିଲ ଧୃଷ୍ଟକେତୁ
ପାଞ୍ଚାଳଦେଶେ ରାଜା ପଣେ
ପ୍ରଜା ପାଳିଲେ ଶୁଭକ୍ଷଣେ ।୨,୩

ଯୋଽଜମୀଢ଼ସୁତୋ ହ୍ୟନ୍ୟ ଋକ୍ଷଃ ସଂବରଣସ୍ତତଃ ।
ତପତ୍ୟାଂ ସୂର୍ଯ୍ୟକନ୍ୟାୟାଂ କୁରୁକ୍ଷେତ୍ରପତିଃ କୁରୁଃ । ୪ ।
ପରୀକ୍ଷିଃ ସୁଧନୁର୍ଜହ୍ନୁର୍ନିଷଧଶ୍ଚ କୁରୋଃ ସୁତାଃ ।
ସୁହୋତ୍ରୋଽଭୂତ୍ ସୁଧନୁଷଶ୍ଚ୍ୟବନୋଽଥ ତତଃ କୃତୀ । ୫ ।
ବସୁସ୍ତସ୍ୟୋପରିଚରୋ ବୃହଦ୍ରଥମୁଖାସ୍ତତଃ ।
କୁଶାମ୍ବମତ୍ସ୍ୟପ୍ରତ୍ୟଗ୍ରାଶ୍ଚେଦିପାଦ୍ୟାଶ୍ଚ ଚେଦିପାଃ । ୬ ।
ବୃହଦ୍ରଥାତ୍ କୁଶାଗ୍ରୋଽଭୂଦୃଷଭସ୍ତସ୍ୟ ତତ୍‌ସୁତଃ ।
ଜଜ୍ଞେ ସତ୍ୟହିତୋଽପତ୍ୟଂ ପୁଷ୍ପବାଂସ୍ତତ୍‌ସୁତୋ ଜହୁଃ । ୭ ।

---

ହେ ନୃପ ! ପୂର୍ବେ ଯେଉଁ ଅଜମୀଢଙ୍କର କଥା କହିଅଛି ତାହାଙ୍କର ଅନ୍ୟ ଏକପୁତ୍ର ଋକ୍ଷ, ତାଙ୍କଠାରୁ ସମ୍ବରଣ ଜନ୍ମଗ୍ରହଣ କରିଥିଲେ । ସୂର୍ଯ୍ୟତନୟା ତପତୀଙ୍କ ଗର୍ଭରେ ଏହି ସମ୍ବରଣଙ୍କର ପୁତ୍ର କୁରୁଜାତ ହୋଇଥିଲେ । କୁରୁ ଥିଲେ କୁରୁକ୍ଷେତ୍ରର ଅଧୀଶ୍ୱର, କୁରୁଙ୍କର ପରୀକ୍ଷି, ସୁଧନ୍ୟୁ, ଜହ୍ନୁ ଏବଂ ନିଷେଧ ଏହି ଚାରିପୁତ୍ର । ସୁଧନ୍ୟୁଙ୍କଠାରୁ ସୁହୋତ୍ର ଜନ୍ମଗ୍ରହଣ କରିଥିଲେ, ତାଙ୍କଠାରୁ ଚ୍ୟବନ ଏବଂ ଚ୍ୟବନଙ୍କଠାରୁ କୃତଜାତ ହୋଇଥିଲେ । କୃତଙ୍କର ପୁତ୍ର ଉପରିଚର ବସୁ, ତାହାଙ୍କଠାରୁ ବୃହଦ୍ରଥ ପ୍ରମୁଖ ଅର୍ଥାତ୍ ବୃହଦ୍ରଥ, କୁଶାମ୍ବ, ମତ୍ସ୍ୟ, ପ୍ରତ୍ୟଗ୍ର ଓ ଚେଦିପାଦି ପୁତ୍ରମାନେ ଜନ୍ମଗ୍ରହଣ କରିଥିଲେ । ଏମାନେ ଚେଦିଦେଶର ରାଜା ହୋଇଥିଲେ । ୪, ୬।

ବୃହଦ୍ରଥଙ୍କଠାରୁ କୁଶାଗ୍ର ଜନ୍ମିଥିଲେ, ତାହାଙ୍କର ପୁତ୍ର ଋଷଭ । ତାହାଙ୍କର ପୁତ୍ର ସତ୍ୟହିତ, ତାହାଙ୍କର ପୁତ୍ର ପୁଷ୍ପବାନ, ତାହାଙ୍କର ପୁତ୍ର ଯହୁ । ହେ ନୃପ ! ପୂର୍ବୋକ୍ତ ବୃହଦ୍ରଥଙ୍କର ଅନ୍ୟ ଏକପତ୍ନୀ ଗର୍ଭରେ ଦ୍ୱିଖଣ୍ଡୀକୃତ ଏକ ସନ୍ତାନ ଜନ୍ମିଥିଲା । ସେହି ସନ୍ତାନର ଜନନୀ ଘୃଣାରେ ସେହି

---

ଅଜମୀଢର ସୁତ ଋକ୍ଷ
ତହୁଁ ସମ୍ବରଣ ପ୍ରତ୍ୟକ୍ଷ
ସେ ପୁଣି କାଳନ୍ଦୀର ଜଳେ
ସୂର୍ଯ୍ୟର କନ୍ୟା-ସଙ୍ଗ ମେଳେ
କୁରୁ ହୋଇଲା ତାର ବଂଶେ
ଏ କଥା ଶୁଣିଛୁଁ ଭବତ୍ତ୍ୱେ ।୪।
କୁରୁର ପୁତ୍ର ହୋଏ ଚାରି
ପରୀକ୍ଷି ସୁଧନୁ ଆହୁରି

ଜହ୍ନୁ ନିଷଧ ଚାରି ସୁତ
ସୁଧନୁ ନନ୍ଦନ ସୁହୋତ୍ର
ତାହାର ସୁତ ଯେ ଚ୍ୟବନ
ଚ୍ୟବନ ସୁତ କୃତୀ ନାମ । ୫ ।
ବସୁ ତାହାର ଖ୍ୟାତ ଜାତ
ତାର ତନୟ ବୃହଦ୍ରଥ
କୁଶାମ୍ବ ମତ୍ସ୍ୟାଦି ପ୍ରତ୍ୟଗ୍ର
ଚେଦିପ ଆଦି ସୁତେ ଉଗ୍ର । ୬ ।

କୁଶାଗ୍ର ବୃହଦ୍ରଥ ସୁତ
ଋଷଭ ତାର ତହୁଁ ଜାତ
ସତ୍ୟହିତ ତାର ନନ୍ଦନ
ତାହାର ପୁତ୍ର ପୁଷ୍ପବାନ । ୭ ।

ଅନ୍ୟସ୍ୟାମପି ଭାର୍ଯ୍ୟାୟାଂ ସକଳେ ଦ୍ୱେ ବୃହଦ୍ରଥାତ୍ ।
ଯେ ମାତ୍ରା ବହିରୁତ୍ସୃଷ୍ଟେ ଜରୟା ଚାଭିସନ୍ଧିତେ ।
ଜୀବ ଜୀବେତ କ୍ରୀଡ଼ନ୍ତ୍ୟା ଜରାସନ୍ଧୋଽଭବତ୍ ସୁତଃ । ୮ ।
ତତଶ୍ଚ ସହଦେବୋଽଭୂତ୍ ସୋମାପିର୍ଯତ୍ ଶ୍ରୁତଶ୍ରବାଃ ।
ପରୀକ୍ଷିରନପତ୍ୟୋଽଭୂତ୍ ସୁରଥୋ ନାମ ଜାହ୍ନବଃ । ୯ ।
ତତୋ ବିଦୂରଥସ୍ତସ୍ମାତ୍ ସାର୍ବଭୌମସ୍ତତୋଽଭବତ୍ ।
ଜୟସେନୋସ୍ତତ୍ତନୟୋ ରାଧିକୋଽତୋୟୁତାୟ୍ୱଭୂତ୍ । ୧୦ ।

---

ସନ୍ତାନକୁ ପଦାରେ ଫୋପାଡ଼ଦେଇଥିଲେ, ଜରାନାମ୍ନୀ ଏକରାକ୍ଷସୀ କ୍ରୀଡ଼ାଛଳରେ ବଞ୍ଚିରହ,ବଞ୍ଚିରହ ବୋଲି ସେହି ସନ୍ତାନକୁ ଏକତ୍ର କରି ମିଳାଇ ଦେଇଥିଲା । ସେ ଜରାସନ୍ଧ ନାମରେ ଅଭିହିତ ହେଲା ।୭, ୮ ।

ଜରାସନ୍ଧର ପୁତ୍ର ସହଦେବ, ତାହାଙ୍କର ପୁତ୍ର ସୋମାତି ଓ ତାହାଙ୍କର ପୁତ୍ର ଶ୍ରୁତଶ୍ରବା । ପରୀକ୍ଷି ଅପୁତ୍ରିକ ଥିଲେ । ଜହ୍ନୁଙ୍କର ପୁତ୍ର ଥିଲେ ସୁରଥ, ତାଙ୍କଠାରୁ ବିଦୂରଥ, ବିଦୂରଥଙ୍କର ପୁତ୍ର ଜୟସେନ, ଜୟସେନଙ୍କର ପୁତ୍ର ରାଧିକ ଓ ରାଧିକଙ୍କଠାରୁ ଅୟୁତାୟୁ ଜନ୍ମ ଗ୍ରହଣ କରିଥିଲେ ।୯, ୧୦ ।

---

ବୃହଦ୍ରଥର ବେନି ନାରୀ
ଦୁର୍ବାସା ପାଦେ ସେବା କରି
ଗର୍ଭର ଅର୍ଥେ ଚୁତ ଫଳ
ବାଣ୍ଟି ଖାଇଲେ ବେନି ଫାଳ
ଋଷି ବଚନେ ତାଙ୍କ ବାଳେ
ଜନ୍ମ ହୋଇଲେ ବେନିଫାଳେ
ଜୀବନ ନାହିଁ ତାଙ୍କ ଦେହେ
କେ ଛାଡ଼ ପାରି ପୁତ୍ର ସ୍ନେହେ
କରି ପର୍ଯ୍ୟନ୍ତେ କୋଳେ ବହି
ଶ୍ମଶାନେ ପକାଇଲେ ନେଇ
ଏମନ୍ତ ଶୁଣ ନରନାଥ
ଜରା ରାକ୍ଷସୀ ଉଦଗତ
କ୍ଷୁଧା ପୀଡ଼ନେ ଦେଶବନେ
ବୁଲଇ ଦୁର୍ଗମ ଶ୍ମଶାନେ
ସ୍ୱଭାବେ ନର ମାଂସ ଖାଇ
ଶ୍ମଶାନେ ମିଳିଲାକ ଯାଇଁ
ଆନନ୍ଦେ ବେନି ଖଣ୍ଡ ଧରି
ଏକତ୍ର ବଦନ ବିସ୍ତାରି

ଦେଖେ ବାଳକ ବେନିଖଣ୍ଡ
ତେତେ ବିରାଜେ ମାରତଣ୍ଡ
ବେନି ଫାଳକୁ ଏକ କଲା
ସ୍ୱମନ୍ତେ ଜୀବନ୍ୟାସ ଦେଲା
ଡାକଇ "ଜୀବ" "ଜୀବ" ରବେ
ସେ ବେନିଖଣ୍ଡ ଏକଭାବେ
ତକ୍ଷଣେ କୁମର ହୋଇଲା
ସୁନ୍ଦରେ ଜଗତ ମୋହିଲା
ପୁଣି ସେ ତାର ମୁଖ ଚାହିଁ
ବୋଲଇ ମୁଣ୍ଡେ ହସ୍ତ ଦେଇ
ଅଜେୟ ହୁଅ ନରଲୋକେ
ଅନେକ ରାଜା ଜିଣ ଏକେ
ଯେ ତୋତେ କରି ଛେଦି ଫାଳ
କ୍ଷେପିବ ଭୂମି ଅନ୍ତରାଳ
ଖଣ୍ଡେ ପଡ଼ିବ ସିନ୍ଧୁ ଜଳେ
ଦହିବ ବଡ଼ବା ଅନଳେ
ତେବେ ପୂରିବ କାଳ ତୋର
ଏବେ ତୁ ଅଜର ଅମର

ଏମନ୍ତେ ଅସୁରୀ ସନ୍ଧାନେ
ସେ ଜରାସନ୍ଧ ଅନୁଦିନେ
ଅନେକ ରାଜ୍ୟ ଭୋଗ କଲା
ତା ପୁତ୍ର ସହଦେବ ହେଲା
ସୋମାପି ସହଦେବ ସୁତ
ଶ୍ରୁତଶ୍ରବା ଯେ ତାର ସୁତ ।୮,୯
ପରୀକ୍ଷି ହେଲା ନିସନ୍ତାନ
କହିବା ଜହ୍ନୁ-ବଂଶ ଶୁଣ
ଜହ୍ନୁର ତନୟ ସୁରଥ
ରୂପେ ଗଞ୍ଜାଇ ମନମଥ
ତାର ତନୟ ବିଦୁରଥ
ସ୍ୱଭାବେ ତେଜ ଅପ୍ରମିତ
ତାର କୁମର ସାର୍ବଭୌମ
ତେଜରେ ତା କେହି ନୋହେସମ ।୧୦

ଅନ୍ୟସ୍ୟାମପି ଭାର୍ଯ୍ୟାୟାଂ ସକଳେ ଦ୍ୱେ ବୃହଦ୍ରଥାତ୍ ।
ଯେ ମାତ୍ରା ବହିରୁତ୍ସୃଷ୍ଟେ ଜରୟା ଚାଭିସନ୍ଧିତେ ।
ଜୀବ ଜୀବେତି କ୍ରୀଡ଼ନ୍ତ୍ୟା ଜରାସନ୍ଧୋଽଭବତ୍ ସୁତଃ । ୮ ।
ତତଶ୍ଚ ସହଦେବୋଽଭୂତ୍ ସୋମାପିର୍ଯଚ୍ଛ୍ରୁତଶ୍ରବାଃ ।
ପରୀକ୍ଷିରନପତ୍ୟୋଽଭୂତ୍ ସୁରଥୋ ନାମ ଜାହ୍ନବଃ । ୯ ।
ତତୋ ବିଦୂରଥସ୍ତସ୍ମାତ୍ ସାର୍ବଭୌମସ୍ତତୋଽଭବତ୍ ।
ଜୟସେନସ୍ତତ୍ତନୟୋ ରାଧିକୋଽତୋୟୁତାୟ୍ୱଭୂତ୍ । ୧୦ ।

---

ସନ୍ତାନଙ୍କୁ ପଦାଟରେ ଫୋପାଡ଼ିଦେଇଥିଲେ, ଜରାନାମ୍ନୀ ଏକ ରାକ୍ଷସୀ କ୍ରୀଡ଼ାଛଳରେ ବଞ୍ଚିରହ,ବଞ୍ଚିରହ ବୋଲି ସେହି ସନ୍ତାନଙ୍କୁ ଏକତ୍ର କରି ମିଳାଇ ଦେଇଥିଲେ । ସେ ଜରାସନ୍ଧ ନାମରେ ଅଭିହିତ ହେଲେ ।୭, ୮ ।

ଜରାସନ୍ଧର ପୁତ୍ର ସହଦେବ, ତାହାଙ୍କର ପୁତ୍ର ସୋମାପି ଓ ତାହାଙ୍କର ପୁତ୍ର ଶ୍ରୁତଶ୍ରବା । ପରୀକ୍ଷି ଅପୁତ୍ରିକ ଥିଲେ । ଜହ୍ନୁଙ୍କର ପୁତ୍ର ଥିଲେ ସୁରଥ, ତାଙ୍କଠାରୁ ବିଦୂରଥ, ବିଦୂରଥଙ୍କର ପୁତ୍ର ଜୟସେନ, ଜୟସେନଙ୍କର ପୁତ୍ର ରାଧିକ ଓ ରାଧିକଙ୍କଠାରୁ ଅୟୁତାୟୁ ଜନ୍ମ ଗ୍ରହଣ କରିଥିଲେ ।୯, ୧୦ ।

---

ବୃହଦ୍ରଥର ଦେହ ନାରୀ
ଦୁର୍ବାସା ପାଦେ ସେବା କରି
ଗର୍ଭର ଅର୍ଥେ ଚୂତ ଫଳ
ବାଣ୍ଟି ଖାଇଲେ ଦେହ ଫାଳ
ଋଷି ବଚନେ ତାଙ୍କ ବାଳେ
ଜନ୍ମ ହୋଇଲେ ଦେହଫାଳେ
ଜୀବନ ନାହିଁ ତାଙ୍କ ଦେହେ
କେ ଛାଡ଼ି ପାରି ପୁତ୍ର ସ୍ନେହେ
କାଶି ପର୍ଯ୍ୟନ୍ତେ କୋଳେ ବହି
ଶ୍ମଶାନେ ପକାଇଲେ ନେଇ
ଏମନ୍ତ ଶୁଣ ନରନାଥ
ଜରା ରାକ୍ଷସୀ ଉଦଗତ
କ୍ଷୁଧା ପୀଡ଼ନେ ଦେଶବନେ
ବୁଲଇ ଦୁର୍ଗମ ଶ୍ମଶାନେ
ସ୍ୱଭାବେ ନର ମାଂସ ଖାଇ
ଶ୍ମଶାନେ ମିଳିଲାକ ଯାଇଁ
ଆନନ୍ଦେ ଦେହ ଖଣ୍ଡ ଧରି
କ୍ଷେପନ୍ତେ ବଦନ ବିସ୍ତାରି

ଦେଖେ ବାଳକ ଦେହଖଣ୍ଡ
ତେତେ ବିରାଜେ ମାରତଣ୍ଡ
ଦେହ ଫାଳକୁ ଏକ କଲା
ସ୍ୱମନ୍ତ୍ରେ ଜୀବନ୍ୟାସ ଦେଲା
ଡାକଇ "ଜୀବ" "ଜୀବ" ରବେ
ସେ ଦେହଖଣ୍ଡ ଏକଭାବେ
ତକ୍ଷଣେ କୁମର ହୋଇଲା
ସୁନ୍ଦର ଜଗତ ମୋହିଲା
ପୁଣି ସେ ତାର ମୁଖ ଚାହିଁ
ବୋଲଇ ମୁଣ୍ଡେ ହସ୍ତ ଦେଇ
ଅଜୟ ହୁଅ ନରଲୋକେ
ଅନେକ ରାଜା ଜିଣ ଏକେ
ଯେ ତୋତେ କରି ଦେହ ଫାଳ
କ୍ଷେପିବ ଭୂମି ଅନ୍ତରାଳ
ଖଣ୍ଡେ ପଡ଼ିବ ସିନ୍ଧୁ ଜଳେ
ଦହିବ ବଡ଼ବା ଅନଳେ
ତେବେ ପୂରିବ କାଳ ତୋର
ଏବେ ତୁ ଅଜର ଅମର

ଏମନ୍ତେ ଅସୁରୀ ସନ୍ଧାନେ
ସେ ଜରାସନ୍ଧ ଅନୁଦ୍ଦିନେ
ଅନେକ ରାଜ୍ୟ ଭୋଗ କଲା
ତା ପୁତ୍ର ସହଦେବ ହେଲା
ସୋମାପି ସହଦେବ ସୁତ
ଶ୍ରୁତଶ୍ରବା ଯେ ତାର ପୁତ୍ର ।୮,୯
ପରୀକ୍ଷି ହେଲା ନିଃସନ୍ତାନ
କହିବା ଜହ୍ନୁ-ବଂଶ ଶୁଣ
ଜହ୍ନୁର ତନୟ ସୁରଥ
ରୂପେ ଗଞ୍ଜାଇ ମନମଥ
ତାର ତନୟ ବିଦୁରଥ
ସ୍ୱଭାବେ ତେଜ ଅପ୍ରମିତ
ତାର କୁମର ସାର୍ବଭୌମ
ତେତେତା କେହି ନୋହେସମ ।୧୦

ତତସ୍ତାକ୍ରୋଧନସ୍ତସ୍ମାଦ୍ଦେବାତଥିରମୁଷ୍ୟ ଚ ।
ଋକ୍ଷସ୍ତସ୍ୟ ଦଲୀପୋଽଭୂତ୍ ପ୍ରତୀପସ୍ତସ୍ୟ ଚାତ୍ମଜଃ । ୧୧ ।
ଦେବାପିଃ ଶାନ୍ତନୁସ୍ତସ୍ୟ ବାହ୍ଲୀକ ଇତି ଚାତ୍ମଜାଃ ।
ପିତୃ ରାଜ୍ୟଂ ପରିତ୍ୟଜ୍ୟ ଦେବାପିସ୍ତୁ ବନଂ ଗତଃ । ୧୨ ।
ଅଭବଚ୍ଛାନ୍ତନୂ ରାଜା ପ୍ରାଙ୍ମହାଭିଷସଂଜ୍ଞିତଃ ।
ଯଂ ଯଂ କରାଭ୍ୟାଂ ସ୍ପୃଶତି ଜୀର୍ଣ୍ଣଂ ଯୌବନମେତି ସଃ । ୧୩ ।
ଶାନ୍ତି ମାପ୍ନୋତି ଚୈବାଗ୍ର୍ୟାଂ କର୍ମ୍ମଣା ତେନ ଶାନ୍ତନୁଃ ।
ସମା ଦ୍ୱାଦଶ ତଦ୍ରାଜ୍ୟେ ନ ବବର୍ଷ ଯଦା ବିଭୁଃ । ୧୪ ।

---

ତାହାଙ୍କର ପୁତ୍ର ଅକ୍ରୋଧନ, ଅକ୍ରୋଧନଙ୍କର ପୁତ୍ର ଦେବାତଥି, ତାହାଙ୍କର ପୁତ୍ର ଋକ୍ଷ, ତାହାଙ୍କର ପୁତ୍ର ଦଲୀପ, ଦଲୀପଙ୍କର ପୁତ୍ର ପ୍ରତୀପ, ପ୍ରତୀପଙ୍କର ତିନିପୁତ୍ର ଦେବାପି, ଶାନ୍ତନୁ ଓ ବାହ୍ଲିକ । ଦେବାପି ପିତୃରାଜ୍ୟ ପରିତ୍ୟାଗ କରି ବନଗମନ କରିଥିଲେ । ଶାନ୍ତନୁ ରାଜା ହୋଇଥିଲେ, ସେ ପୂର୍ବେ ମହାଭିଷ ନାମରେ ପ୍ରସିଦ୍ଧ ଥିଲେ । ପୁଣ୍ୟବମୀ ଶାନ୍ତନୁ କୌଣସି ଜରାଜୀର୍ଣ୍ଣ ବ୍ୟକ୍ତିକୁ କର ଦ୍ୱାରା ସ୍ପର୍ଶ କଲେ ସେ ପରମଯୌବନ ଲାଭ କରୁଥିଲା ।୧୧, ୧୩।

ସମସ୍ତଙ୍କୁ ଉତ୍କୃଷ୍ଟ ଶାନ୍ତି ପ୍ରଦାନ କରିଥିବାରୁ ସେ ଶାନ୍ତନୁ ନାମରେ ବିଖ୍ୟାତ ହୋଇଥିଲେ । ଅନନ୍ତର ଏକଦା ତାହାଙ୍କର ରାଜ୍ୟରେ ବାରବର୍ଷ ଅନାବୃଷ୍ଟି ଘଟିବାରୁ ଈଶ୍ୱର ଶକ୍ତି ସମ୍ପନ୍ନ ସେହି ଶାନ୍ତନୁ ବ୍ରାହ୍ମଣମାନଙ୍କୁ ତହିଁର କାରଣ ଜିଜ୍ଞାସା କରନ୍ତେ ସେମାନେ କହିଲେ ଜ୍ୟେଷ୍ଠଭ୍ରାତା ଥାଉଁ ଥାଉଁ ଆପଣ

---

ତାର କୁମର ଜୟସେନ
ରାଧିକ ତାହାର ନନ୍ଦନ
ତାଠାରୁ ଅୟୁତାୟୁ ହୋଏ
ଅକ୍ରୋଧନ ତାର ତନୟେ
ତାର କୁମର ଦେବାତଥି
ଋକ୍ଷ ତା ତହୁଁ ଉତପତ୍ତି
ତାହାର ଆତ୍ମଜ ଦଲୀପ
ତା ପୁତ୍ର ନାମଟି ପ୍ରତୀପ
ପ୍ରତୀପ ଭାର୍ଯ୍ୟେ ପୁତ୍ର ତିନି
ହୋଇଲେ ନିଜ ରୂପ ଘେନି

ଦେବାପି ଶାନ୍ତନୁ ବାହ୍ଲୀକ
ସ୍ୱଭାବେ ସୁଜ୍ଞାନୀ ବିବେକ ।୧୧,୧୨
ଦେବାପି ସର୍ବ ଜାତ ସରି
ରାଜ୍ୟ ନୋହିଲା ଅଧିକାରୀ
ସଂଯତମ ଯୋଗ ଅଭ୍ୟାସନେ
ଇଷ୍ଟଲେ ରହିଲା ସେ ବନେ
ପିତାର ବଚନ ନ କଲା
କଳାପି ଗ୍ରାମେ ସେ ରହିଲା
ସେ ପୁଣ କଳିଯୁଗ ଶେଷେ
ରାଜା ହୋଇବ ସୋମବଂଶେ

ଶାନ୍ତନୁ ରାଜ୍ୟେ ହୋଏ ରାଜା
ଧର୍ମ୍ମେ ପାଳଇ ଜନ ପ୍ରଜା
ତାର ମହିମା ଶୁଣ ରାଏ
ସେ ଯାକୁ ହସ୍ତ ଘେନି ଛୁଏଁ
ଯେବେବେ ସେ ହୋଇଥିବ ଜୀର୍ଣ୍ଣ
ତକ୍ଷଣେ ଲଭଇ ଯୌବନ .
ଶାନ୍ତି ଲଭି ସେ ସୁଖେ ରହେ
ତେଣୁସେଶାନ୍ତନୁବୋଲାଏ ।୧୩,୧୪

ଶାନ୍ତନୁର୍ବ୍ରାହ୍ମଣୈରୁକ୍ତଃ ପରିବେତ୍ତାଽୟମଗ୍ରଭୁକ୍ ।
ରାଜ୍ୟଂ ଦେହ୍ୟଗ୍ରଜାୟାଶୁ ପୁରରାଷ୍ଟ୍ରବିବୃଦ୍ଧୟେ । ୧୫ ।
ଏବମୁକ୍ତୋ ଦ୍ୱିଜୈର୍ଜ୍ୟେଷ୍ଠଂ ଛନ୍ଦୟାମାସ ସୋଽବ୍ରବୀତ୍ ।
ତନ୍ମନ୍ତ୍ରିପ୍ରହିତୈର୍ବିପ୍ରୈର୍ବେଦାଦ୍‌ବିଭ୍ରଂଶିତୋ ଗିରା । ୧୬ ।
ବେଦବାଦାତିବାଦାନ୍ ବୈ ତଦା ଦେବୋ ବବର୍ଷ ହ ।
ଦେବାପିର୍ଯୋଗମାସ୍ଥାୟ କଳାପଗ୍ରାମମାଶ୍ରିତଃ । ୧୭ ।

---

ରାଜ୍ୟ ଗ୍ରହଣ କରିଥିବାରୁ ଏପରି ଘଟିଅଛି । ରାଜ୍ୟର ମଙ୍ଗଳ ନିମନ୍ତେ ଅଗ୍ରଜଙ୍କୁ ସିଂହାସନ ଓ ରାଜ୍ୟ ପ୍ରଦାନ କରନ୍ତୁ ।୧୪, ୧୫।

ବ୍ରାହ୍ମଣମାନେ ଶାନ୍ତନୁଙ୍କୁ ଏହି କଥା କହିବାରୁ ସେ ଅଗ୍ରଜ ଦେବାପିଙ୍କୁ ରାଜା ହେବାଲାଗି ପ୍ରାର୍ଥନା କରିଥିଲେ । କିନ୍ତୁ ଇତି ପୂର୍ବରୁ ଶାନ୍ତନୁଙ୍କର ମନ୍ତ୍ରୀ ପ୍ରେରିତ ପାଷଣ୍ଡ ମତବାଦୀ ଦ୍ୱିଜମାନଙ୍କ ବାକ୍ୟରେ ଦେବାପି ବେଦମାର୍ଗ ଭ୍ରଷ୍ଟ ହୋଇ ବେଦନିନ୍ଦା ସୂଚକ ବାକ୍ୟ କହିବାରୁ ପତିତ ଓ ରାଜ୍ୟଭ୍ରଷ୍ଟ ହୋଇ-ଥିଲେ । ସୁତରାଂ ଶାନ୍ତନୁଙ୍କୁ ଦୋଷଶୂନ୍ୟ ଜାଣି ଦେବତାମାନେ ତାଙ୍କୁ ରାଜ୍ୟରେ ବରଣ କରିଥିଲେ । ଦେବାପି ସେହିଦିନୁ ଯୋଗମାର୍ଗାବଲମ୍ବନ କରି କଳାପ ଗ୍ରାମରେ ବାସ କରୁଥିଲେ ।୧୬, ୧୭।

---

ଏମନ୍ତେ ତାର ରାଜ୍ୟ କାଳେ
ମେଘ ନ ବର୍ଷେ ଅନ୍ତରାଳେ
ଶାନ୍ତନୁ ବ୍ରାହ୍ମଣଙ୍କୁ ପୃଚ୍ଛି
ବୋଲଇ ଶିରେ କର ଦେଇ
ଦେଖ ଦୁଃଖିତ ନରଲୋକ
ଜଳ ନ ମୁଞ୍ଚେ ବଳାହକ
କିବା କଳୁଷ ମୋର ଅଛି
ଇନ୍ଦ୍ର ନ ବରଷେ ତା ଲକ୍ଷି
ଏମନ୍ତେ ଶୁଣି ତାର ବାଣୀ
ବିପ୍ରେ କହନ୍ତି ପରମାଣି
ବୋଇଲେ ପରିବେତ୍ତା ଦୋଷେ
ଇନ୍ଦ୍ର ନ ବରଷେ ତୋ ଦେଶେ
ଜ୍ୟେଷ୍ଠେ ନ ଦେଇ ରାଜ୍ୟ ଶିରି
କନିଷ୍ଠ ଯେବେ ରାଜ୍ୟ କରି

ତା ହୋଇ ପରିବେତ୍ତା ଦୋଷେ
ତା ଦେଶେ ଇନ୍ଦ୍ର ନ ବରଷେ ।୧୫
ଏମନ୍ତ ବିପ୍ରମୁଖୁ ଶୁଣି
ଭୂପେ ବୋଲଇ ନୃପମଣି
ରାଜ୍ୟ ମୁଁ ଜ୍ୟେଷ୍ଠଭ୍ରାତେ ଦେଇ
ତପ ସାଧିବି ବନେ ଯାଇ
ସୁଖେ ଜୀଅନ୍ତୁ ଜନ ପ୍ରଜା
ଦେବାପି ରାଜ୍ୟ ହେଉ ରାଜା
ସଙ୍ଗେ ଘେନାଇ ବିପ୍ରଗଣେ
ଦେବାପି ରାଜ୍ୟ ସମର୍ପଣେ
ଶାନ୍ତନୁ ଜ୍ୟେଷ୍ଠ ଭ୍ରାତ ପାଦେ
ପଡ଼ି ବୋଲଇ ଶୋକ ନାଦେ
"ହେ ଭ୍ରାତ ! ହୁଅ ରାଜ୍ୟେ ରାଜା
ସୁଖେ ଜୀଅନ୍ତୁ ଜନ ପ୍ରଜା"

ଦେବାପି ତାର ବୋଲ ଶୁଣି
କହିଲା ଧର୍ମ ପରମାଣି
"ବେଦୁଁ ବାହାର ହୋଇ ମୁହିଁ
ରାଜ୍ୟ ମୋ ପ୍ରୟୋଜନ ନାହିଁ"
ବ୍ରାହ୍ମଣେ ମିଳି ତାର ବୋଲେ
ତାହାକୁ ବେଦୁଁ ବାହ୍ୟ କଲେ
ତକ୍ଷଣେ ନିଗମ ବଚନେ
ଜୀମୂତେ ମିଳିଲେ ଗଗନେ
ଗମ୍ଭୀର ଘୋର ନାଦ କରି
ତକ୍ଷଣେ ବରଷିଲେ ବାରି
ଦେବାପି ମନେ ଖିନ୍ନ ଭରି
କଳାପ ଗ୍ରାମ ଆଶ୍ରେ କରି
ବିଶ୍ୱ ସଂସାର କାଜ ବନେ
ସୋମ ବଂଶ ବିନାଶ ହେନେ

ସୋମବଂଶେ କଲୌ ନଷ୍ଟେ କୃତାଦୌ ସ୍ଥାପୟିଷ୍ୟତି ।
ବାହ୍ଲୀକାତ୍ ସୋମଦତ୍ତୋଽଭୂଦ୍‌ଭୂରିଭୂରିଶ୍ରବାସ୍ତତଃ । ୧୮ ।
ଶଳଶ୍ଚ ଶାନ୍ତନୋରାସୀଦ୍‌ଗଙ୍ଗାୟାଂ ଭୀଷ୍ମ ଆତ୍ମବାନ୍ ।
ସର୍ବଧର୍ମବିଦାଂ ଶ୍ରେଷ୍ଠୋ ମହାଭାଗବତଃ କବିଃ । ୧୯ ।
ବୀରଯୂଥାଗ୍ରଣୀର୍ଯେନ ରାମୋଽପି ଯୁଧି ତୋଷିତଃ ।
ଶାନ୍ତନୋର୍ଦାସକନ୍ୟାୟାଂ ଜଜ୍ଞେ ଚିତ୍ରାଙ୍ଗଦଃ ସୁତଃ । ୨୦ ।
ବିଚିତ୍ରବୀର୍ଯ୍ୟଶ୍ଚାବରଜୋ ନାମ୍ନା ଚିତ୍ରାଙ୍ଗଦୋ ହତଃ ।
ଯସ୍ୟାଂ ପରାଶରାତ୍ ସାକ୍ଷାଦବତୀର୍ଣ୍ଣୋ ହରେଃ କଳା । ୨୧ ।
ବେଦଗୁପ୍ତୋ ମୁନିଃ କୃଷ୍ଣୋ ଯତୋଽହମିଦମଧ୍ୟଗାମ୍ ।
ହିତ୍ୱା ସ୍ୱଶିଷ୍ୟାନ୍ ପୈଲାଦୀନ୍ ଭଗବାନ୍ ବାଦରାୟଣଃ । ୨୨ ।

---

କଳିଯୁଗରେ ଚନ୍ଦ୍ରବଂଶ ବିଲୁପ୍ତ ହେଲାପରେ ସତ୍ୟଯୁଗ ଆରମ୍ଭରେ ଏହି ଦେବାପି ପୁନର୍ବାର ଚନ୍ଦ୍ରବଂଶ ସ୍ଥାପନ କରିବେ । ବାହ୍ଲିକଙ୍କଠାରୁ ସୋମଦତ୍ତ ଜନ୍ମ ଗ୍ରହଣ କରିଥିଲେ । ତାହାଙ୍କର ତିନିପୁତ୍ର, ଭୂରି, ଭୂରିଶ୍ରବା ଓ ଶଳ । ଗଙ୍ଗାଙ୍କ ଗର୍ଭରେ ଶାନ୍ତନୁଙ୍କଠାରୁ ଭୀଷ୍ମ ଜନ୍ମି ଥିଲେ । ସେ ଆତ୍ମତତ୍ତ୍ୱଜ୍ଞ, ଧାର୍ମିକ ପ୍ରବର, ଭଗବଦ୍‌ଭକ୍ତ ଓ ଅଗ୍ରତଦର୍ଶୀ ।୧୮, ୧୯।

ବୀରାଗ୍ରଣୀ ଭୀଷ୍ମ ଯୁଦ୍ଧରେ ଜମଦଗ୍ନି ପୁତ୍ର ପରଶୁରାମଙ୍କୁ ଜୟ କରିଥିଲେ । ଶାନ୍ତନୁଙ୍କଠାରୁ କୈବର୍ତ୍ତ ପାଳିତ କନ୍ୟା ସତ୍ୟବତୀଙ୍କ ଗର୍ଭରେ ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦ ଜନ୍ମଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ଚିତ୍ରାଙ୍ଗଦ ଜ୍ୟେଷ୍ଠ ଓ ବିଚିତ୍ରବୀର୍ଯ୍ୟ କନିଷ୍ଠ, ଚିତ୍ରାଙ୍ଗଦ ଚିତ୍ରାଙ୍ଗଦନାମକ ଗନ୍ଧର୍ବ କର୍ତ୍ତୃକ ଯୁଦ୍ଧରେ ନିହତ ହୋଇଥିଲେ, ପରାଶରଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭରେ ଭଗବାନଙ୍କ ଅଂଶରେ କୃଷ୍ଣ ଦ୍ୱୈପାୟନ ବ୍ୟାସ ଜନ୍ମଗ୍ରହଣ କରିଥିଲେ ।୨୦, ୨୧।

ସେହି କୃଷ୍ଣ ଦ୍ୱୈପାୟନ ବ୍ୟାସ ବେଦରକ୍ଷା କରିଥିଲେ, ମୁଁ ତାଙ୍କର ନିକଟରୁ ଏହି ଭାଗବତ ଶିକ୍ଷା କରିଅଛି । ମୁଁ ତାଙ୍କର ପୁତ୍ର, ଭଗବାନ୍ ବ୍ୟାସଦେବ ତାହାଙ୍କର ପୈଲାଦି ଶିଷ୍ୟମାନଙ୍କୁ ଏହି ପରମ ଗୁହ୍ୟ ଭାଗବତ ଧର୍ମ ଶିକ୍ଷା ନ ଦେଇ ମୋତେ ଶାନ୍ତ ଜାଣି ମୋ ନିକଟରେ ଏହାର ବ୍ୟାଖ୍ୟା କରିଥିଲେ ।୨୨।

---

କଳିର ଥିବ ଅବଶେଷ
ସେ ପୁଣି ସ୍ଥାପି ସୋମ ବଂଶ
ରାଜା ହୋଇବ ଇନାକେତ
ପ୍ରଜା ପାଳିବ ଧର୍ମ ରତେ
ମର୍ତ୍ତ୍ୟେ ସ୍ଥାପିବ ସୋମବଂଶ
ଯେ ଅବା ଥିବ ଅବଶେଷ ।୧୭-୧୮
ବାହ୍ଲୀକ ବୀର୍ଯ୍ୟେ ସୋମଦତ୍ତ
ଭୂରି ଭୂରିଶ୍ରବା ତା ସୁତ

ଶଳକୁ ଘେନି ତିନି ପୁତ୍ର—
ଶାନ୍ତନୁ ବୀର୍ଯ୍ୟେ ଜାତ ପୁତ୍ର
ଗଙ୍ଗାର ଗର୍ଭେ ଭୀଷ୍ମ ନାମ
ସେ ସାଧୁ ସର୍ବ ଗୁଣଧାମ
ସେ ସର୍ବବୀର ଶିରୋମଣି
ପରଶୁରାମେ ଯୁଦ୍ଧେ ଜିଣି ।୧୯-୨୦
ଶାନ୍ତନୁ ଦାସ କନ୍ୟା ଗର୍ଭେ
ଚିତ୍ରାଙ୍ଗଦ ଉପୁଜେ ପୂର୍ବେ

ଯେ ଚିତ୍ରାଙ୍ଗଦ ନାମେ ସୁତ
ସେହି ଗନ୍ଧର୍ବେ ହେଲା ହତ
ବିଚିତ୍ରବୀର୍ଯ୍ୟ ଅବରଜ
ଏବେ ହୋ ଶୁଣ କୁରୁରାଜ ।୨୧
ସେ କନ୍ୟା ଗର୍ଭେ ଗଙ୍ଗାଜଳେ
ଧରି ଯେ ପରାଶର ବଳେ
ବ୍ୟାସ ମୁନିଙ୍କି ଜନ୍ମ କରି
ସନ୍ତ୍ରମେ ଗୋଡେ ତାକୁ ଧରି

ମହ୍ୟଂ ପୁତ୍ରାୟ ଶାନ୍ତାୟ ପରଂ ଗୁହ୍ୟମିଦଂ ଜଗୌ ।
ବିଚିତ୍ରବୀର୍ଯ୍ୟୋଽଥୋବାହ କାଶିରାଜସୁତେ ବଳାତ୍ । ୨୩ ।
ସ୍ୱୟମ୍ବରାଦୁପାନୀତେ ଅମ୍ବିକାମ୍ବାଲିକେ ଉଭେ ।
ତୟୋରାସକ୍ତହୃଦୟୋ ଗୃହୀତୋ ଯକ୍ଷ୍ମଣା ମୃତଃ । ୨୪ ।
କ୍ଷେତ୍ରେଽପ୍ରଜସ୍ୟ ବୈ ଭ୍ରାତୁର୍ମାତ୍ରୋକ୍ତୋ ବାଦରାୟଣଃ ।
ଧୃତରାଷ୍ଟ୍ରଞ୍ଚ ପାଣ୍ଡୁଞ୍ଚ ବିଦୁରଞ୍ଚାପ୍ୟଜୀଜନତ୍ । ୨୫ ।
ଗାନ୍ଧାର୍ଯ୍ୟାଂ ଧୃତରାଷ୍ଟ୍ରସ୍ୟ ଜଜ୍ଞେ ପୁତ୍ରଶତଂ ନୃପ ।
ତତ୍ର ଦୁର୍ଯ୍ୟୋଧନୋ ଜ୍ୟେଷ୍ଠୋ ଦୁଃଶଳା ଚାପି କନ୍ୟକା । ୨୬ ।

---

ବିଚିତ୍ରବୀର୍ଯ୍ୟ ସ୍ୱୟମ୍ବର ସଭାରୁ କାଶୀରାଜକନ୍ୟା ଅମ୍ବା ଓ ଅମ୍ବାଲିକାଙ୍କୁ ବଳପୂର୍ବକ ଗ୍ରହଣ କରି ବିବାହ କରିଥିଲେ । ସେହି ଉଭୟ ପତ୍ନୀଙ୍କଠାରେ ସେ ଅତ୍ୟନ୍ତ ପ୍ରେମାସକ୍ତ ହୋଇ ଯକ୍ଷ୍ମା ରୋଗରେ ମୃତ୍ୟୁ ମୁଖରେ ପତିତ ହୋଇଥିଲେ ।୨୩, ୨୪।

ବିଚିତ୍ରବୀର୍ଯ୍ୟ ପୁତ୍ରହୀନ ଥିଲେ, ମାତାଙ୍କର ନିର୍ଦ୍ଦେଶ ଅନୁସାରେ ନିୟୋଗ ପ୍ରଥା ଅବଲମ୍ବନ କରି ବ୍ୟାସଦେବ ବିଚିତ୍ର ବୀର୍ଯ୍ୟଙ୍କ ପତ୍ନୀଠାରେ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଏହି ତିନିପୁତ୍ର ଉତ୍ପାଦନ କରିଥିଲେ ।୨୫।

ହେ ରାଜା ପରୀକ୍ଷିତ ! ଗାନ୍ଧାରୀଙ୍କ ଗର୍ଭରେ ଧୃତରାଷ୍ଟ୍ରଙ୍କର ଶତପୁତ୍ର ଜନ୍ମିଥିଲେ । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ରଙ୍କର ନାମ ଦୁର୍ଯ୍ୟୋଧନ ଏବଂ କନ୍ୟାର ନାମ ଦୁଃଶଳା ।୨୬।

---

ବିଦର୍ଭ ବନେ ପକାଇଲେ
ଗୋବିନ୍ଦ ତାହାଙ୍କୁ ରଖିଲେ
ସେ ବିଷ୍ଣୁଅଂଶେ ମହାମୁନି
ପ୍ରତ୍ୟକ୍ଷ ବିଷ୍ଣୁ ତେଜ ଘେନି
ପଇଲ ଆଦି ଶିଷ୍ୟଗଣେ
ବିଦ୍ୟା ଅଭ୍ୟାସି ଜଣେ ଜଣେ
ହୋଇଲେ ସର୍ବଂଶ ସ୍ତ୍ର ବେତ୍ତା
ସକଳେ ଗୁଣେ ଗୁଣବନ୍ତା
ସେ ମୋତେ ଦେଭୁଁ ଜାତ କଲେ
ଏ ଭାଗବତଶିଖାଦେଲେ ।୨୨,୨୩।

ଏମନ୍ତେ କାଶୀରାଜ ଘରେ
ଭୀଷ୍ମ ଯେ କନ୍ୟା ସ୍ୱୟମ୍ବରେ
ଦୁର୍ଗମ ଲକ୍ଷ ବିନ୍ଧ କଲେ
ଅନେକ ନୃପତିଙ୍କ ମେଳେ
ରାଜାଙ୍କୁ ଲକ୍ଷ ବିନ୍ଧ ଜିଣି
ଲଭିଲେ ନୃପତି ଦୁଲଣୀ
ଅମ୍ବିକା ଆଉ ଅମ୍ବାଲିକା
କନ୍ୟାଏ ବର ବର ଏକା
ତାହାଙ୍କୁ ନିଜ ପୁରେ ଥୋଇ
ବିଚିତ୍ରବୀର୍ଯ୍ୟେ ବିଭା ହେଇ

ସେ ବେନି କନ୍ୟାଙ୍କର ମେଳେ
ବିଚିତ୍ରବୀର୍ଯ୍ୟ ଅଳ୍ପ କାଳେ
ଯକ୍ଷ୍ମା ରୋଗରେ ନାଶ ଗଲେ
ତେବେ ଯୋଜନଗନ୍ଧା ବୋଲେ
ବ୍ୟାସଙ୍କ ବୀର୍ଯ୍ୟେ ତାଙ୍କ ଗର୍ଭେ
ପୁତ୍ରେ ଉପୁଜିଲେ ସ୍ୱଭାବେ
ଜ୍ୟେଷ୍ଠ କୁମର ଧୃତରାଷ୍ଟ୍ର
ପାଣ୍ଡୁ ଯେ ତାହାର କନିଷ୍ଠ
ଅମ୍ବୁଷା ଉଦରେ ଅନ୍ତର
ଦାସଗର୍ଭେହୋଇଲେବିଦୁର ୨୪,୨୬

ଶାପାନ୍ମୈଥୁନରୁଦ୍ଧସ୍ୟ ପାଣ୍ଡୋଃ କୁନ୍ତ୍ୟାଂ ମହାରଥାଃ ।
ଜାତା ଧର୍ମ୍ମାନିଲେନ୍ଦ୍ରେଭ୍ୟୋ ଯୁଧିଷ୍ଠିରମୁଖାସ୍ତ୍ରୟଃ । ୨୭ ।
ନକୁଳଃ ସହଦେବଶ୍ଚ ମାଦ୍ର୍ୟାଂ ନାସତ୍ୟଦସ୍ରୟୋଃ ।
ଦ୍ରୌପଦ୍ୟାଂ ପଞ୍ଚପଞ୍ଚଭ୍ୟଃ ପୁତ୍ରାସ୍ତେ ପିତରୋଽଭବନ୍ । ୨୮ ।
ଯୁଧିଷ୍ଠିରାତ୍ ପ୍ରତିବିନ୍ଧ୍ୟଃ ଶ୍ରୁତସେନୋ ବୃକୋଦରାତ୍ ।
ଅର୍ଜ୍ଜୁନାଚ୍ଛ୍ରୁତକୀର୍ତ୍ତିସ୍ତୁ ଶତାନୀକସ୍ତୁ ନାକୁଳଃ । ୨୯ ।
ସହଦେବସୁତୋ ରାଜନ୍ ଶ୍ରୁତକର୍ମା ତଥାଽପରେ ।
ଯୁଧିଷ୍ଠିରାତ୍ତୁ ପୌରବ୍ୟାଂ ଦେବକୋଽଥ ଘଟୋତ୍କଚଃ । ୩୦ ।

---

ପାଣ୍ଡୁ ଅରଣ୍ୟ ମଧ୍ୟରେ ମୈଥୁନାସକ୍ତ ମୃଗକୁ ବଧ କରିବାରୁ ଅଭିଶପ୍ତ ହୋଇଥିଲେ ଯେ ସେ ସ୍ତ୍ରୀସଙ୍ଗ କଲେ, ତାହାଙ୍କର ମୃତ୍ୟୁ ଘଟିବ । ନିୟୋଗ ଧର୍ମାନୁସାରେ କୁନ୍ତୀଙ୍କ ଗର୍ଭରେ ଧର୍ମଙ୍କଠାରୁ ଯୁଧିଷ୍ଠିର, ବାୟୁଙ୍କଠାରୁ ଭୀମ ଏବଂ ଇନ୍ଦ୍ରଙ୍କଠାରୁ ଅର୍ଜୁନ ଜନ୍ମି ଥିଲେ । ଅନ୍ୟପତ୍ନୀ ମାଦ୍ରୀଙ୍କ ଗର୍ଭରେ ଅଶ୍ୱିନୀକୁମାର ଦ୍ୱୟଙ୍କଠାରୁ ନକୁଳ ଓ ସହଦେବ ଜନ୍ମି ଥିଲେ । ଏମାନେ ପଞ୍ଚପାଣ୍ଡବ, ଏମାନଙ୍କ ପତ୍ନୀ ଦ୍ରୌପଦୀଙ୍କ ଗର୍ଭରୁ ପଞ୍ଚପାଣ୍ଡବଙ୍କ ଔରସରେ ପଞ୍ଚପୁତ୍ର ଜନ୍ମି ଥିଲେ ।୨୭, ୨୮।

ଦ୍ରୌପଦୀଙ୍କ ଗର୍ଭରେ ଯୁଧିଷ୍ଠିରଙ୍କଠାରୁ ପ୍ରତିବିନ୍ଧ୍ୟ, ଭୀମଙ୍କଠାରୁ ଶ୍ରୁତସେନ, ଅର୍ଜୁନଙ୍କଠାରୁ ଶ୍ରୁତକୀର୍ତ୍ତି, ନକୁଳଙ୍କଠାରୁ ଶତାନୀକ, ସହଦେବଙ୍କଠାରୁ ଶ୍ରୁତକର୍ମା ଜନ୍ମିଥିଲେ । ହେ ରାଜନ୍ ! ପଞ୍ଚପାଣ୍ଡବଙ୍କର ଅନ୍ୟାନ୍ୟ ପତ୍ନୀଙ୍କଠାରୁ ଅନେକ ପୁତ୍ର ଜନ୍ମି ଥିଲେ । ଯୁଧିଷ୍ଠିରଙ୍କଠାରୁ ପୌରବୀଙ୍କ ଗର୍ଭରେ ଦେବକ, ଭୀମଙ୍କଠାରୁ ହିଡ଼ମ୍ବା ଗର୍ଭରେ ଘଟୋତ୍କଚ, କାଳୀଙ୍କଠାରୁ ସର୍ବଗତ ଜନ୍ମିଥିଲେ । ପର୍ବତ ତନୟା ବିଜୟାଙ୍କଠାରୁ ସୁହୋତ୍ର, ନକୁଳଙ୍କଠାରୁ କରେଣୁମତୀଙ୍କ ଗର୍ଭରେ ନରମିତ୍ର, ଅର୍ଜୁନଙ୍କଠାରୁ

---

ଧୃତରାଷ୍ଟ୍ରର ଶତ ପୁତ୍ର
ଗାନ୍ଧାରୀ ଗର୍ଭେ ହୋଏ ଜାତ
ଜ୍ୟେଷ୍ଠ ତହିଁରେ ଦୁର୍ଯ୍ୟୋଧନ
ଦୁଃଶଳା ନାମେ କନ୍ୟା ଜନ୍ମ
ଋଷିର ଶାପେ ପାଣ୍ଡୁ କ୍ଷେତ୍ରେ
ଜାତ ହୋଇଲେ ପଞ୍ଚ ପୁତ୍ରେ
ଧର୍ମ୍ମ ପବନ ଇନ୍ଦ୍ର ବୀର୍ଯ୍ୟ
ତିନି ବାଳକ ମହାତେଜ
ଜନ୍ମିଲେ ଅତି ଗୁଣବନ୍ତ
ତାହାଙ୍କୁ ସହାୟ ଅନନ୍ତ ।୨୭।
ମାଦ୍ରୀର ଗର୍ଭେ ପୁତ୍ର ହୋଇ
ନକୁଳ ସହଦେବ ଦୁଇ

ଅଶ୍ୱିନୀକୁମାରଙ୍କ ବୀର୍ଯ୍ୟ
ଜନ୍ମ ହୋଇଲେ ମହାତେଜେ
ଏ ପେ ହୋଇଲେ ପଞ୍ଚଭ୍ରାତ
ଏହାଙ୍କ ହୋଏ ପଞ୍ଚସୁତ
ଦ୍ରୌପଦୀ ଗର୍ଭେ ହେଲେ ଜନ୍ମ
ଶୁଣ ହେ ତାହାଙ୍କର ନାମ
ଯୁଧିଷ୍ଠି ପୁତ୍ର ପ୍ରତିବିନ୍ଧ୍ୟ
ତାକୁ ନ ଲାଗେ ବ୍ୟାଧି ଦ୍ୱନ୍ଦ୍ୱ
ଶ୍ରୁତସେନ ପୁତ୍ର ଭୀମର
ଶ୍ରୁତକୀର୍ତ୍ତି ଯେ ଅର୍ଜ୍ଜୁନର
ନକୁଳ ସୁତ ଶତାନୀକ
ସେ ଜ୍ଞାନୀ ପଣ୍ଡିତ ବିବେକ

ସହଦେବର ଯେ ନନ୍ଦନ
ତାହାର ଶ୍ରୁତକର୍ମ୍ମା ନାମ ।୨୮, ୨୯
ପୌରବୀ ଗର୍ଭେ ଧର୍ମ୍ମ ସୁତ
ଦେବକ ସୁତ କଲେ ଜାତ
ହିଡ଼ମ୍ବୀ ଗର୍ଭେ ଭୀମ ବୀର୍ଯ୍ୟେ
ଜନ୍ମିଲ ଘଟୋତ୍କଚ ତେଜେ
ପୁଣି ଭୀମର ବୀର୍ଯ୍ୟେ ଜାତ
କାଳୀର ଗର୍ଭେ ସର୍ବଗତ ।୩୦।

ଭୀମସେନାଦ୍ ହିଡ଼ିମ୍ବାୟାଂ କାଲ୍ୟାଂ ସର୍ବଗତସ୍ତତଃ ।
ସହଦେବାତ୍ ସୁହୋତ୍ରନ୍ତୁ ବିଜୟାସୂତ ପାର୍ବତୀ । ୩୧ ।
କରେଣୁମତ୍ୟାଂ ନକୁଲୋ ନରମିତ୍ରଂ ତଥାର୍ଜ୍ଜୁନଃ ।
ଇରାବନ୍ତମୁଲୁପ୍ୟାଂ ବୈ ସୁତାୟାଂ ବଭ୍ରୁବାହନମ୍ ।
ମଣିପୁରପତେ ସୋଽପି ତତ୍‌ପୁତ୍ରଃ ପୁତ୍ରିକାସୁତଃ । ୩୨ ।
ତବ ତାତ ସୁଭଦ୍ରାୟାମଭିମନ୍ୟୁରଜାୟତ ।
ସର୍ବାତିରଥଜିଦ୍‌ବୀର ଉତ୍ତରାୟାଂ ତତୋ ଭବାନ୍ । ୩୩ ।
ପରିକ୍ଷୀଣେଷୁ କୁରୁଷୁ ଦ୍ରୌଣେର୍ବ୍ରହ୍ମାସ୍ତ୍ର ତେଜସା ।
ତ୍ୱଞ୍ଚ କୃଷ୍ଣାନୁଭାବେନ ସଜୀବୋ ମୋଚିତୋଽନ୍ତକାତ୍ । ୩୪ ।
ତବେମେ ତନୟାସ୍ତାତ ଜନମେଜୟପୂର୍ବକାଃ ।
ଶ୍ରୁତସେନୋ ଭୀମସେନ ଉଗ୍ରସେନଶ୍ଚ ବୀର୍ଯ୍ୟବାନ୍ । ୩୫ ।

---

ନାଗକନ୍ୟା ଉଲୁପୀଙ୍କ ଗର୍ଭରେ ଇରାବାନ୍ ଓ ମଣିପୁରପତି କନ୍ୟାଙ୍କ ଗର୍ଭରେ ବଭ୍ରୁବାହନ ଜନ୍ମିଥିଲେ, ମାତାମହ ପୁତ୍ରିକାଧର୍ମ ଅନୁସାରେ ଏହାଙ୍କୁ ପୁତ୍ରରୂପେ ଗ୍ରହଣ କରିଥିଲେ ।୨୯, ୩୨।

ଅର୍ଜୁନ ଶ୍ରୀକୃଷ୍ଣ ଭଗ୍ନୀ ସୁଭଦ୍ରାଙ୍କର ପାଣିଗ୍ରହଣ କରିଥିଲେ । ତାହାଙ୍କ ଗର୍ଭରେ ତୁମ୍ଭର ପିତା ଅଭିମନ୍ୟୁଙ୍କର ଜନ୍ମ, ତୁମ୍ଭେ ଉତ୍ତରା ଗର୍ଭରେ ଅଭିମନ୍ୟୁଠାରୁ ଜନ୍ମିଅଛ ।୩୩।

ଅଶ୍ୱତ୍ଥାମାର ବ୍ରହ୍ମାସ୍ତ୍ରରେ କୁରୁବଂଶ କ୍ଷୟ ହେବାବେଳେ ଶ୍ରୀକୃଷ୍ଣଙ୍କ ଅନୁଗ୍ରହରେ ତୁମ୍ଭେ ମୃତ୍ୟୁ କବଳରୁ ରକ୍ଷାପାଇ ବର୍ତ୍ତମାନ ସଜୀବ ରହିଅଛ ।୩୪।

ହେ ବତ୍ସ ପରୀକ୍ଷିତ ! ତୁମ୍ଭର ଜନମେଜୟ, ଶ୍ରୁତସେନ, ଭୀମସେନ, ଉଗ୍ରସେନ ଏହି ଚାରିପୁତ୍ର ଜାତ ହୋଇଅଛନ୍ତି ।୩୫।

---

ସହଦେବର ପୁତ୍ର ଜାତ
ବିଜୟା ଗର୍ଭରେ ସୁହୋତ୍ର ·
କରେଣୁମତୀ ଗର୍ଭେ ପୁତ୍ର
ନକୁଳ ବୀର୍ଯ୍ୟେ ନରମିତ୍ର ।୩୧।
ଉଲୁପୀ ଗର୍ଭରେ ଅର୍ଜ୍ଜୁନ
ଜାତକଲା ବଭ୍ରୁବାହନ
ପୁତ୍ରିକା ଧର୍ମ୍ମ ଯେଣୁ ବରେ
ତେଣୁ ସେ ରାଜା ମଣିପୁରେ ।୩୨
ସୁଭଦ୍ରା ଗର୍ଭେ ତୋର ତାତ
ହୋଇଲା ଅଭିମନ୍ୟୁ ଜାତ
ସେ ମହାବୀର ବାହୁ ବଳେ
ଜିଣନ୍ତା ଏଥ ଭୂମି ତଳେ ।୩୩।

ଯେ କୁରୁବଂଶ କ୍ଷୟକାଳେ
ଦ୍ରୋଣ ନନ୍ଦନ ମହାବାଣେ
ସେ ଶର ବ୍ରହ୍ମ ଶିର ନାମେ
ତୋ ମାତା ଗର୍ଭେ ଅତି ତମେ
ପେଷିଲ ଅପାଣ୍ଡବ ଅର୍ଥେ
ଉତ୍ତରା ଆସିଥିଲା ପଥେ
ବାଣ ଆସନ୍ତେ ଶୂନ୍ୟ ପଥେ
ତୋ ମାତା ଡାକିଲା ଆରତେ
ତକ୍ଷଣେ ବିଷ୍ଣୁ ଗର୍ଭ ଗତେ
ପଶିଲେ ଚକ୍ର ଘେନି ହସ୍ତେ
ବ୍ରହ୍ମଶିରକୁ ସେ ସଂହରି
ତୋତେ ରଖିଲେ ନରହରି ।୩୪

ଏବେ ହୋ କହୁଁ ତୋ ଅଗ୍ରତେ
ଯେ କର୍ମ୍ମ ହେବ ଭବିଷ୍ୟତେ
ଏ ଯେ ତୋହର ଚାରିସୁତେ
ଜନମେଜୟର ସମେତେ
ଯେ ଶ୍ରୁତସେନ ଭୀମସେନ
କନିଷ୍ଠ ନାମ ଉଗ୍ରସେନ
ଏ ଚାରି ପୁତ୍ରେ ମିଳି ଏକେ
ତେଜ ପ୍ରତାପ ଅତିରେକେ ।୩୫

ଜନମେଜୟସ୍ତ୍ୱାଂ ବଦତ୍ୱା ତକ୍ଷକାନ୍ନିଧନଂ ଗତମ୍ ।
ସର୍ପାନ୍ ବୈ ସର୍ପଯାଗାଗ୍ନୌ ସ ହୋଷ୍ୟତ ରୁଷାନ୍ୱିତଃ । ୩୬ ।
କାଲଷେୟଂ ପୁରୋଧାୟ ତୁରଂ ତୁରଗମେଧଷାଟ୍ ।
ସମନ୍ତାତ୍ ପୃଥିବୀଂ ସର୍ବାଂ ଜିତ୍ୱା ଯକ୍ଷ୍ୟତ ଚାଧ୍ୱରୈଃ । ୩୭ ।
ତସ୍ୟ ପୁତ୍ର ଶତାନୀକୋ ଯାଜ୍ଞବଲ୍କ୍ୟାତ୍ ତ୍ରୟୀ ପଠନ୍ ।
ଅସ୍ତ୍ରଜ୍ଞାନଂ କ୍ରିୟାଜ୍ଞାନଂ ଶୌନକାତ୍ ପରମେଷ୍ୟତ । ୩୮ ।
ସହସ୍ରାନୀକସ୍ତତ୍‌ପୁତ୍ରସ୍ତତଶ୍ଚୈବାଶ୍ୱମେଧଜଃ ।
ଅସୀମକୃଷ୍ଣସ୍ତସ୍ୟାପି ନେମିଚକ୍ରସ୍ତୁ ତତ୍‌ସୁତଃ । ୩୯ ।
ଗଜାହ୍ୱୟେ ହୃତେ ନଦ୍ୟା କୌଶାମ୍ବ୍ୟାଂ ସାଧୁ ବତ୍ସ୍ୟତ ।
ଉକ୍ତସ୍ତତଶ୍ଚିତ୍ରରଥସ୍ତସ୍ମାଚ୍ଛୁଚିରଥଃ ସୁତଃ । ୪୦ ।

---

ହେ ମହାରାଜ ! ତକ୍ଷକ ଦଂଶନରେ ତୁମ୍ଭେ ନିହତ ହେଲ ଏହା ଶୁଣିଲା ପରେ ଜନମେଜୟ ସର୍ପ ଯଜ୍ଞ କରି ସର୍ପ କୁଳକୁ ନିର୍ମୂଳ କରିବେ । ୩୬ ।

ତଦନନ୍ତର ଜନମେଜୟ ସମସ୍ତ ପୃଥିବୀ ଜୟକରି ଅଶ୍ୱମେଧଯଜ୍ଞ କରିବେ ଏବଂ ତୁର ନାମକ ଋଷିଙ୍କୁ ପୁରୋହିତ କରି ବହୁ ଯଜ୍ଞାନୁଷ୍ଠାନ ଦ୍ୱାରା ଦେବତାମାନଙ୍କୁ ପୂଜା କରିବେ ।୩୭।

ସେହି ଜନମେଜୟଙ୍କର ପୁତ୍ର ଶତାନୀକ, ଯାଜ୍ଞବଲ୍କ୍ୟଙ୍କଠାରୁ ବେଦାଧ୍ୟୟନ କରି କ୍ରିୟାଜ୍ଞାନ ଲାଭ କରିବେ । ଶୌନକଙ୍କଠାରୁ ଅତ୍ୟୁତ୍ତମ ଆତ୍ମଜ୍ଞାନ ଲାଭ କରିବେ ଏବଂ କୃପାଚାର୍ଯ୍ୟଙ୍କଠାରୁ ଅସ୍ତ୍ରଜ୍ଞାନ ଲାଭ କରିବେ ।୩୮।

ଶତାନୀକଙ୍କର ପୁତ୍ର ସହସ୍ରାନୀକ, ତାହାଙ୍କର ପୁତ୍ର ଅଶ୍ୱମେଧଜ, ତାହାଙ୍କର ପୁତ୍ର ଅସୀମକୃଷ୍ଣ, ଅସୀମକୃଷ୍ଣଙ୍କର ପୁତ୍ର ନେମିଚକ୍ର ।୩୯।

ନଦୀ ପ୍ରବାହରେ ହସ୍ତୀନାପୁର ବିଧ୍ୱସ୍ତ ହେଲାବେଳେ ନେମିଚକ୍ର କୌଶାମ୍ବୀ ନଗରୀକୁ ଯାଇଁ ସେଠାରେ ସୁଖରେ ବାସ କରିବେ । ତାଙ୍କର ଉପ୍ତ ନାମକ ଏକପୁତ୍ର ଜନ୍ମିବେ, ତାହାଙ୍କର ପୁତ୍ର ଚିତ୍ରରଥ ହେବେ ଏବଂ ତାଙ୍କର ପୁତ୍ର ହେବେ ଶୁଚିରଥ ।୪୦।

---

ବ୍ରାହ୍ମଣ ତେଜ ଶାପଗ୍ରସ୍ତ
ତକ୍ଷକ ଭକ୍ଷିବ ଯେ ତୋତେ
ସେ କୋପେ ସର୍ପ ଯଜ୍ଞ କରି
ଛନ୍ନ ଭୁବନ ସର୍ପ ମାରି
ପୁଣି କରିବେ ଅଶ୍ୱମେଧ
ଆଗମ ନିଗମ ସମ୍ବାଦ
ସପତ ଦ୍ୱୀପେ ହୋଇ ରାଜା
ସୁଖେପାଳିବେ ଜନପ୍ରଜା ।୩୬,୩୭।

ତାର ତନୟ ଶତାନୀକ
ହୋଇବ ସୁଜ୍ଞାନୀ ବିବେକ
ଯାଜ୍ଞବଲ୍କ୍ୟର ଠାରୁ ବେଦ
ପଢିବ ସେ ଉପନିଷଦ
ଶୌନକ ଠାରୁ ଜ୍ଞାନ କ୍ରିୟା
ଅସ୍ତ୍ର ସାଧିବ ପୁଣ୍ୟଦେହା ।୩୮।
ତା ପୁତ୍ର ସହସ୍ରାନୀକ ନାମ
ଅଶ୍ୱମେଧଜ ତା ନନ୍ଦନ

ଅସୀମକୃଷ୍ଣ ତାର ବୀର୍ଯ୍ୟ
ନେମିଚକ୍ର ତହୁଁ ଉପୁଜେ
ହସ୍ତିନା ନଦୀଗ୍ରାସ ହେଲେ
ବସିବ କୌଶାମ୍ବୀ ନଗରେ
ହରିହରଙ୍କ ତୋଷ ଅର୍ଥେ
କରିବ ସାଧୁ କର୍ମ ହେତେ
ଉପ୍ତ ଯେ ନେମିଚକ୍ର ସୁତ
ତାର ସନ୍ତତ ଚିତ୍ରରଥ

ତସ୍ମାଚ୍ଚ ବୃଷ୍ଟିମାଂସ୍ତସ୍ୟ ସୁଷେଣୋଽଥ ମହୀପତିଃ ।
ସୁନୀଥସ୍ତସ୍ୟ ଭବିତା ନୃଚକ୍ଷୁର୍ଯତ୍ ସୁଖୀ ନଲଃ । ୪୧ ।
ପରିପ୍ଲବଃ ସୁତସ୍ତସ୍ମାନ୍ମେଧାବୀ ସୁନୟାତ୍ମଜଃ ।
ନୃପଞ୍ଜୟସ୍ତତୋ ଦୂର୍ବସ୍ତିମିସ୍ତସ୍ମାଜ୍ଜନିଷ୍ୟତି । ୪୨ ।
ତିମେର୍ବୃହଦ୍ରଥସ୍ତସ୍ମାଚ୍ଛତାନୀକଃ ସୁଦାସଜଃ ।
ଶତାନୀକାଦ୍ଦୁର୍ଦ୍ଦମନସ୍ତସ୍ୟାପତ୍ୟଂ ମହୀନରଃ । ୪୩ ।
ଦଣ୍ଡପାଣି ର୍ନିମିସ୍ତସ୍ୟ କ୍ଷେମକୋ ଭବିତା ଯତଃ ।
ବ୍ରହ୍ମ କ୍ଷତ୍ରସ୍ୟ ବୈ ଯୋନିର୍ବଂଶୋ ଦେବର୍ଷିସତ୍କୃତଃ । ୪୪ ।
କ୍ଷେମକଂ ପ୍ରାପ୍ୟ ରାଜାନଂ ସଂସ୍ଥାଂ ପ୍ରାପ୍ସ୍ୟତି ବୈ କଲୌ ।
ଅଥ ମାଗଧ ରାଜାନୋ ଭବିତାରୋ ଯେ ବଦାମି ତେ । ୪୫ ।

---

ଶୁଚିରଥଙ୍କର ପୁତ୍ର ବୃଷ୍ଟିମାନ, ତାଙ୍କର ପୁତ୍ର ସୁଷେଣ, ତାଙ୍କର ପୁତ୍ର ମହୀପତି, ତାଙ୍କର ପୁତ୍ର ସୁନୀଥ, ସୁନୀଥଙ୍କର ପୁତ୍ର ନୃଚକ୍ଷୁ, ନୃଚକ୍ଷୁଙ୍କଠାରୁ ସୁଖୀ ନଳ ଏହିପରି ଜନ୍ମଗ୍ରହଣ କରିବେ ।୪୧।

ସୁଖୀନଳଙ୍କଠାରୁ ପରିପ୍ଲବ, ତାଙ୍କଠାରୁ ମେଧାବୀ, ତାଙ୍କର ପୁତ୍ର ସୁନୟ, ସୁନୟଙ୍କର ପୁତ୍ର ନୃପଞ୍ଜୟ, ତାଙ୍କଠାରୁ ଦୂର୍ବ; ଦୂର୍ବଙ୍କଠାରୁ ତିମି ଜନ୍ମଗ୍ରହଣ କରିବେ ।୪୨।

ତିମିଙ୍କର ପୁତ୍ର ବୃହଦ୍ରଥ, ତାଙ୍କଠାରୁ ସୁଦାସ, ସୁଦାସଙ୍କଠାରୁ ଶତାନୀକ, ତାଙ୍କଠାରୁ ଦୁର୍ଦ୍ଦମନ ଏବଂ ତାଙ୍କର ପୁତ୍ର ମହୀନର ହେବେ ।୪୩।

ମହୀନରଙ୍କର ପୁତ୍ର ଦଣ୍ଡପାଣି, ତାଙ୍କର ପୁତ୍ର ନିମି, ନିମିଙ୍କର ପୁତ୍ର କ୍ଷେମକ ହେବେ । ଦେବର୍ଷି-ମାନଙ୍କର ମାନ୍ୟାସ୍ପଦ ଏହି ବଂଶରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ଉତ୍ପତ୍ତି ହୋଇଥିଲା ।୪୪।

କଳିକାଳରେ ଏ ବଂଶରେ କ୍ଷେମକଙ୍କ ପର୍ଯ୍ୟନ୍ତ ରାଜତ୍ୱ କରିବେ । ତଦନନ୍ତର ଯେଉଁମାନେ ମଗଧରେ ରାଜତ୍ୱ କରିବେ ସେମାନଙ୍କର ନାମ ଶ୍ରବଣ କର ।୪୫।

---

ତାର କୁମର ଶୁଚିରଥ
ବୃଷ୍ଟିମାନ ତାହାର ସୁତ
ସୁଷେଣ ତାର ତନୁଜାତ
ତାହାର କୁମର ସୁନୀଥ
ନୃଚକ୍ଷୁ ତାହାର କୁମର
ତା ପୁତ୍ର ହେବ ସୁଖୀନର
ତାହାର ପୁତ୍ର ପରିପ୍ଲବ
ତା ତନୁ ସୁନୟ ସମ୍ଭବ

ମେଧାବୀ ତାହାର ତନୟ
ତା ପୁତ୍ର ହେବ ନୃପଞ୍ଜୟ
ତାହାର ପୁତ୍ର ନାମ ଦୂର୍ବ
ତାପୁତ୍ର ତିମି ନାମ ହେବ ।୩୯-୪୨
ତିମିର ପୁତ୍ର ବୃହଦ୍ରଥ
ସୁଦାସ ହେବ ତାର ସୁତ
ଶତାନୀକ ଯେ ତାର ସୁତ
ଦୁର୍ଦ୍ଦମନ ଯେ ତନୁଜାତ

ତାହାର ପୁତ୍ର ମହୀନର
ଦଣ୍ଡପାଣି ତାର କୁମର
ତାହାର ପୁତ୍ର ନିମି ନାମ
ତା ତନୁ କ୍ଷେମକ ଜନମ
ଏମନ୍ତେ ବ୍ରହ୍ମକ୍ଷତ୍ର ଯୋନି
ଜନ୍ମ ହୋଇବେ ଦେହ ଘେନି
କ୍ଷେମକଠାଇଁ ସୋମ ବଂଶ
ହୋଇବ କଳିଯୁଗେ ଶେଷ ।୪୩-୪୫

ଭବିତା ସହଦେବସ୍ୟ ମାର୍ଜ୍ଜାରିର୍ୟତ୍ ଶ୍ରୁତଶ୍ରବାଃ ।
ତତୋଽୟୁତାୟୁସ୍ତସ୍ୟାପି ନିରମିତ୍ରୋଽଥ ତତ୍‌ସୁତଃ । ୪୬ ।
ସୁନକ୍ଷତ୍ରଃ ସୁନକ୍ଷତ୍ରାଦ୍‌ବୃହତ୍‌ସେନୋଽଥ କର୍ମଜିତ୍ ।
ତତଃ ସୁତଞ୍ଜୟାଦ୍‌ବିପ୍ରଃ ଶୁଚିସ୍ତସ୍ୟ ଭବିଷ୍ୟତି । ୪୭ ।
କ୍ଷେମୋଽଥ ସୁବ୍ରତସ୍ତସ୍ମାଦ୍ଧର୍ମସୂତ୍ରଃ ସମସ୍ତତଃ ।
ଦ୍ୟୁମତ୍‌ସେନୋଽଥ ସୁମତିଃ ସୁବଲୋ ଜନିତା ତତଃ । ୪୮ ।
ସୁନୀଥଃ ସତ୍ୟଜିଦଥ ବିଶ୍ୱଜିଦ୍‌ଯଦ୍ରିପୁଞ୍ଜୟଃ ।
ବାର୍ହଦ୍ରଥାଶ୍ଚ ଭୂପାଲା ଭାବ୍ୟାଃ ସାହସ୍ରବତ୍‌ସରମ୍ । ୪୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ଶାନ୍ତନୁବଂଶ କୀର୍ତ୍ତନଂ ନାମ ଦ୍ୱାବିଂଶୋଽଧ୍ୟାୟଃ ।

---

ସହଦେବଙ୍କର ପୁତ୍ର ମାର୍ଜ୍ଜାରି, ତାଙ୍କଠାରୁ ଶ୍ରୁତଶ୍ରବା ଜନ୍ମିବେ । ତାଙ୍କର ପୁତ୍ର ଅୟୁତାୟୁ, ତାଙ୍କଠାରୁ ନିରମିତ୍ର ନାମକ ଏକ ପୁତ୍ର ଜନ୍ମିବେ । ତାଙ୍କଠାରୁ ସୁନକ୍ଷତ୍ର ଏବଂ ତାଙ୍କଠାରୁ ବୃହତ୍‌ସେନ ଜନ୍ମିବେ । ବୃହତ୍‌ସେନଙ୍କଠାରୁ କର୍ମଜିତ୍, ତାଙ୍କଠାରୁ ସୁତଞ୍ଜୟ, ତାଙ୍କଠାରୁ ବିପ୍ର ଏବଂ ବିପ୍ରଙ୍କଠାରୁ ଶୁଚୀ ଜନ୍ମିବେ ।୪୬, ୪୭।

ଶୁଚୀଙ୍କର ପୁତ୍ର ସୋମ, ସୋମଙ୍କର ପୁତ୍ର ସୁବ୍ରତ, ତାଙ୍କ ପୁତ୍ର ଧର୍ମସୂତ୍ର, ତାଙ୍କଠାରୁ ସମ, ସମଙ୍କଠାରୁ ଦ୍ୟୁମତ୍‌ସେନ, ଦ୍ୟୁମତ୍‌ସେନଙ୍କର ସୁମତି ଜନ୍ମିବେ, ସୁମତିଙ୍କର ପୁତ୍ର ସୁବଳ ।୪୮।

ସୁବଳଙ୍କର ପୁତ୍ର ସୁନୀଥ, ତାଙ୍କର ପୁତ୍ର ସତ୍ୟଜିତ୍, ସତ୍ୟଜିତ୍‌ଙ୍କ ପୁତ୍ର ବିଶ୍ୱଜିତ୍, ତାଙ୍କଠାରୁ ରିପୁଞ୍ଜୟ ଜନ୍ମ ଗ୍ରହଣ କରିବେ । ଏହି ବୃହଦ୍ରଥ ବଂଶୀୟ ରାଜାମାନେ ସହସ୍ର ବର୍ଷ ରାଜ୍ୟ ପାଳନ କରିବେ ॥

---

ଏବେ ହୋ ଶୁଣ କୁରୁଗଣ !
ମଗଧ ବଂଶ ପରମାଣ
ମାର୍ଜ୍ଜାରି ଗର୍ଭେ ସହଦେବ
ଜାତ କରିବ ଶ୍ରୁତଶ୍ରବ
ଯୁତାୟୁ ତାହାର ନନ୍ଦନ
ତା ସୁତ ନିରମିତ୍ର ନାମ
ତାର ସନ୍ତତି ସୁନକ୍ଷତ୍ର
ବୃହତ୍‌ସେନ ଯେ ତାର ପୁତ୍ର
କର୍ମଜିତ ତାର ତନୟ
ତାହାର ପୁତ୍ର ସୁତଞ୍ଜୟ

ତା ପୁତ୍ର ବିପ୍ର ତାର ସୁତ
ଶୁଚିରୁ ହୋଇବ ସୁବ୍ରତ
ତାହାର ସୁତ ଧର୍ମସୂତ୍ର
ସମ ହୋଇବ ତାର ପୁତ୍ର
ସମର ପୁତ୍ର ଦ୍ୟୁତସେନ
ସୁମତି ତାହାର ନନ୍ଦନ
ସୁବଳ ତାର ପୁତ୍ର ନାମ
ସୁନୀଥ ତାହାର ନନ୍ଦନ
ତାହାର ପୁତ୍ର ସତ୍ୟଜିତ
ତା ପୁତ୍ର ହେବ ବିଶ୍ୱଜିତ

ତାଠାରୁ ରିପୁଞ୍ଜୟ ଜନ୍ମ
ବୃହଦ୍ରଥ ବଂଶ ପ୍ରମାଣ
ଏହି ଯେ ବୃହଦ୍ରଥ ବଂଶ
ଭବିଷ୍ୟେ ସହସ୍ର ବରଷ
ରାଜା ହୋଇବେ ଏ ଜଗତେ
ସଂକ୍ଷେପି କହିଲି ମୁଁ ତୋତେ
।୪୬-୪୯।
କହିଲ ବିପ୍ର ଜଗନ୍ନାଥ
ନବମେ ବଂଶ ନୃପଚରିତ

## ତ୍ରୟୋବିଂଶୋଽଧ୍ୟାୟଃ ।

ତ୍ରୟୋବିଂଶେ ତ୍ୱନୋର୍ଦ୍ରୁହ୍ୟୋସ୍ତୁର୍ବସୋଶ୍ଚାନ୍ୱୟଃ କ୍ରମାତ୍ ।
ଯଦୋଶ୍ଚ ବଂଶୋଽନୁକ୍ରାନ୍ତୋ ଯାବଜ୍ଜ୍ୟାମଘ ସମ୍ଭବଃ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକଉବାଚ । ଅନୋଃ ସଭାନରଶ୍ଚକ୍ଷୁଃ ପରେକ୍ଷୁଶ୍ଚ ତ୍ରୟଃ ସୁତାଃ ।
ସଭାନରାତ୍ କାଳନରଃ ସୃଞ୍ଜୟସ୍ତତ୍ସୁତସ୍ତତଃ । ୧ ।
ଜନମେଜୟସ୍ତସ୍ୟ ପୁତ୍ରୋ ମହାଶାଲୋ ମହାମନାଃ ।
ଉଶୀନରସ୍ତିତିକ୍ଷୁଶ୍ଚ ମହାମନସ ଆତ୍ମଜୌ । ୨ ।
ଶିବବରଃ କୃମିର୍ଦ୍ଦକ୍ଷଶ୍ଚତ୍ୱାରୋଶୀନରାତ୍ମଜାଃ ।
ବୃଷାଦର୍ଭଃ ସୁବୀରଶ୍ଚ ମଦ୍ରଃକେକୟ ଆତ୍ମବାନ୍ । ୩ ।
ଶିବେଶ୍ଚତ୍ୱାର ଏବାସଂସ୍ତିତକ୍ଷୋଶ୍ଚ ରୁଷଦ୍ରଥଃ ।
ତତୋ ହୋମୋଽଥ ସୁତପା ବଳଃ ସୁତପସୋଽଭବତ୍ । ୪ ।

---

### ଯଦୁବଂଶ

ତ୍ରୟୋବିଂଶ ଅଧ୍ୟାୟରେ ଅନୁ, ଦ୍ରୁହ୍ୟ ଏବଂ ତୁର୍ବସୁବଂଶ ବର୍ଣ୍ଣନା କରି ଯଦୁବଂଶ ପ୍ରସଙ୍ଗ ବର୍ଣ୍ଣନା କରାଯାଇଅଛି ॥ ॰ ॥

ଶ୍ରୀ ଶୁକଦେବ କହିଲେ :—

ଅନୁଙ୍କର ସଭାନର, ଚକ୍ଷୁ ଓ ପରେକ୍ଷୁ ତିନିପୁତ୍ର ଜନ୍ମିଥିଲେ, ସଭାନରଙ୍କଠାରୁ କାଳନର, ତାହାଙ୍କ ପୁତ୍ର ସଞ୍ଜୟ, ତାଙ୍କଠାରୁ ଜନମେଜୟ, ତାଙ୍କ ପୁତ୍ର ମହାଶାଳ ଓ ମହାମନା । ମହାମନାଙ୍କର ଦୁଇପୁତ୍ର ଉଶୀନର ଓ ତିତକ୍ଷୁ । ୧, ୨ ।

ଉଶୀନରଙ୍କର ଚାରିପୁତ୍ର, ଶିବି, ବର, କୃମି ଏବଂ ଦକ୍ଷ । ଶିବଙ୍କର ଚାରିପୁତ୍ର ଥିଲେ—ବୃଷାଦର୍ଭ, ସୁବୀର, ମଦ୍ର, ଆତ୍ମବାନ, କେକୟ । ତିତକ୍ଷୁଙ୍କର ପୁତ୍ର ବୃହଦ୍ରଥ, ତାଙ୍କଠାରୁ ହୋମ, ହୋମଙ୍କଠାରୁ ସୁତପା, ସୁତପାଙ୍କଠାରୁ ବଳୀ ଜନ୍ମିଥିଲେ । ୩, ୪ ।

---

ଅନୁତୁର୍ବସୁ ଦ୍ରୁହ୍ୟ ବଂଶ,　　ଯଦୁ ସମେତେ ତ୍ରୟୋବିଂଶ ॥

ଶ୍ରୀ ଶୁକ ଉବାଚ—
ଅନୁର ବଂଶେ ଜନ୍ମ ସୁତ
ଶୁଣ ରାଜନ ପରୀକ୍ଷିତ
ଚକ୍ଷୁ ପରେକ୍ଷୁ ବେନି ସୁତ
ତୃତୀୟ ସଭାନର ଜାତ
ସଭାନରରୁ କାଳନର
ସୃଞ୍ଜୟ ତାହାର କୁମର

ଜନମେଜୟ ତାର ସୁତ
ତାଠାରୁ ମହାଶାଳ ଜାତ
ମହାମନ ପୁତ୍ର ତାହାର
ତହୁଁ ତିତକ୍ଷୁ ଉଶୀନର
ଶିବ ଯେ କୃମି ଦକ୍ଷ ବର
ଉଶୀନର ଚାରି କୁମର
ହୋଇଲେ ଶିବ ବୀର୍ଯ୍ୟେ ଜନ୍ମ
ଅଦ୍ଭୁତ ଯାହାଙ୍କର କର୍ମ୍ମ

ବୃଷାଦର୍ଭ ସୁବୀର ଦୁଇ
ମଦ୍ର କେକୟ ଚାରି ଭାଇ
ତିତକ୍ଷୁ ପୁତ୍ର ରୁଷଦ୍ରଥ
ଅଦ୍ଭୁତ ତାହାର ଚରିତ ।୧-୩।
ତାହାର ପୁତ୍ର ନାମ ହୋମ
ସୁତପା ତାହାର ନନ୍ଦନ
ସୁତପା ପୁତ୍ର ବଳ ହୋଇ
ବନେ ତପସ୍ୱୀ ରୂପ ବହି

ଅଙ୍ଗବଙ୍ଗକଳିଙ୍ଗାଦ୍ୟାଃ ସୁହ୍ମପୁଣ୍ଡ୍ରୌଡ୍ରସଂଜ୍ଞିତାଃ ।
ଜଜ୍ଞିରେ ଦୀର୍ଘତମସୋ ବଳେଃ କ୍ଷେତ୍ରେ ମହୀକ୍ଷିତଃ । ୫ ।
ଚକ୍ରୁଃ ସ୍ୱନାମ୍ନା ବିଷୟାନ୍ ଷଡ଼ିମାନ୍ ପ୍ରାଚ୍ୟକାଂଶ୍ଚ ତେ ।
ଖଳପାନୋଽଙ୍ଗତୋ ଜଜ୍ଞେ ତସ୍ମାଦ୍ଦିବିରଥସ୍ତତଃ । ୬ ।
ସୁତୋ ଧର୍ମ୍ମରଥୋ ଯସ୍ୟ ଯଜ୍ଞେ ଚିତ୍ରରଥୋଽପ୍ରଜାଃ ।
ରୋମପାଦ ଇତି ଖ୍ୟାତସ୍ତସ୍ମୈ ଦଶରଥଃ ସଖା । ୭ ।
ଶାନ୍ତାଂ ସ୍ୱକନ୍ୟାଂ ପ୍ରାୟଚ୍ଛଦୃଷ୍ୟଶୃଙ୍ଗ ଉବାହ ଯାମ୍ ।
ଦେବେଽବର୍ଷତି ଯଂ ରାମା ଆନିନ୍ୟୁର୍ହରିଣୀସୁତମ୍ । ୮ ।
ନାଟ୍ୟସଙ୍ଗୀତବାଦିତ୍ରୈର୍ବିଭ୍ରମାଲିଙ୍ଗନାର୍ହଣୈଃ ।
ସ ତୁ ରାଜ୍ଞୋଽନପତ୍ୟସ୍ୟ ନିରୂପ୍ୟେଷ୍ଟିଂ ମରୁତ୍ୱତେ । ୯ ।

---

ହେ ରାଜନ୍ ! ଅଙ୍ଗ, ବଙ୍ଗ, କଳିଙ୍ଗ, ସୁହ୍ମ, ପୌଣ୍ଡ୍ର, ଓଡ୍ର ନୃପତିମାନେ ନିୟୋଗ ଧର୍ମାନୁସାରେ ବଳୀଙ୍କ ପତ୍ନୀଠାରେ ଦୀର୍ଘତମାଙ୍କ ଔରସରେ ଜନ୍ମଗ୍ରହଣ କରିଥିଲେ ।୫।

ପୂର୍ବୋକ୍ତ ଅଙ୍ଗାଦି ଛଅଜଣ ନୃପତି ନିଜ ନିଜର ନାମାନୁସାରେ ପୃଥିବୀର ପୂର୍ବାଂଶରେ ଛଅଟି ରାଜ୍ୟ ସ୍ଥାପନ କରିଥିଲେ । ଅଙ୍ଗଙ୍କଠାରୁ ଖଳପାନ ଜନ୍ମିଥିଲେ; ତାଙ୍କଠାରୁ ଦିବିରଥ, ତାହାଙ୍କର ପୁତ୍ର ଧର୍ମରଥ, ତାଙ୍କ ପୁତ୍ର ଚିତ୍ରରଥ, ଚିତ୍ରରଥଙ୍କର ପୁତ୍ର ରୋମପାଦ, ଯେ ଅଯୋଧ୍ୟାର ରାଜା ଦଶରଥଙ୍କର ସଖା ଥିଲେ । ୬, ୭ ।

ରୋମପାଦ ଅଯୋଧ୍ୟାପତି ଦଶରଥଙ୍କ ନିଜର କନ୍ୟା ଶାନ୍ତାଙ୍କୁ ପ୍ରଦାନ କରିଥିଲେ, ଋଷ୍ୟଶୃଙ୍ଗ ତାହାଙ୍କୁ ବିବାହ କରିଥିଲେ । ପରେ ଅନାବୃଷ୍ଟି ହେବାରୁ ନାଟ୍ୟ, ସଙ୍ଗୀତ, ବାଦ୍ୟ, ବିଳାସ, ଆଲିଙ୍ଗନ ଓ ସତ୍କାରାଦି ଦ୍ୱାରା ଭୁଲାଇ ପ୍ରମଦାମାନେ ହରିଣ ନନ୍ଦନ ଋଷ୍ୟଶୃଙ୍ଗଙ୍କୁ ନଗରକୁ ଆନୟନ କରିଥିଲେ ।

---

ରହିଲା ସଂସାର ଉପେକ୍ଷି
ସଂସାର ସ୍ୱପ୍ନ ପ୍ରାୟେ ଦେଖି
ବଳିର କ୍ଷେତ୍ରେ ଷଡ଼ାତ୍ମଜେ
ଜନ୍ମିଲେ ଦୀର୍ଘତମା ବୀର୍ଯ୍ୟେ
ଅଙ୍ଗ ବଙ୍ଗ କଳିଙ୍ଗ ତିନି
ସୁହ୍ମ ପୁଣ୍ଡ୍ର ଯେ ଓଡ୍ର ଘେନି
ଆପଣା ନାମେ ରାଜ୍ୟ କରି
ସୁଖେ ପାଳିଲେ ବସୁନ୍ଧରୀ
ଏ ଷଡ଼ ଦେଶେ ହୋଇ ରାଜା
ଧର୍ମ୍ମେ ପାଳିଲେ ଜନ ପ୍ରଜା ।୪,୫

ଅଙ୍ଗ ତନୟ ଖଳପାନ
ଦିବିରଥ ତାର ନନ୍ଦନ
ଧର୍ମ୍ମରଥ ତାହାର ସୁତ
ତାହାର ପୁତ୍ର ଚିତ୍ରରଥ
ରୋମପାଦ ନାମେ ବିଖ୍ୟାତ
ଶୁଣ ରାଜନ ପରୀକ୍ଷିତ
ଦଶରଥର ସଖା ସେହୁ
ଅପୁତ୍ର ତାର ବଂଶ ନାହିଁ
ଶାନ୍ତା କନ୍ୟାକୁ ଦେଲା ନେଇ
ଅତି ଆନନ୍ଦେ ତୋଷ ହୋଇ

ସେ ତାକୁ ଋଷ୍ୟଶୃଙ୍ଗ ଭୁଲେ
ବେଦ ବିଧାନେ ବିଭାହେଲେ
ପୂର୍ବେ ସେ ରୋମପାଦ ଦେଶେ
ତା ଦେଶେ ଇନ୍ଦ୍ର ନ ବରଷେ
ମନ୍ତ୍ରୀ ବଚନେ ଛନ ପାଇ
ହରିଣୀସୁତକୁ ଅଣାଇ
ଗଣିକା ନୃତ୍ୟ ଗୀତ ବଳେ
ଚିତ୍ତ ମଜ୍ଜିଲା ତାର ହେଳେ
ଇନ୍ଦ୍ର ନିମନ୍ତେ ଯଜ୍ଞ ପୁଣ
ସେ ଋଷି କଲେ ନାନା କର୍ମ୍ମ

ପ୍ରଜାମଦାଦ୍ଦଶରଥୋ ଯେନ ଲେଭେଽପ୍ରଜାଃ ପ୍ରଜାଃ ।
ଚତୁରଙ୍ଗୋ ରୋମପାଦାତ୍ ପୃଥୁଲାକ୍ଷସ୍ତୁ ତତ୍ସୁତଃ । ୧୦ ।
ବୃହଦ୍ରଥୋ ବୃହତ୍କର୍ମ୍ମା ବୃହଦ୍ଭାନୁଶ୍ଚ ତତ୍ ସୁତାଃ ।
ଆଦ୍ୟାଦ୍‌ବୃହନ୍ମନାସ୍ତସ୍ମାଜ୍ଜୟଦ୍ରଥ ଉଦାହୃତଃ । ୧୧ ।
ବିଜୟସ୍ତସ୍ୟ ସଂଭୂତ୍ୟାଂ ତତୋ ଧୃତିରଜାୟତ ।
ତତୋ ଧୃତବ୍ରତସ୍ତସ୍ୟ ସତ୍କର୍ମ୍ମାଧିରଥସ୍ତତଃ । ୧୨ ।
ଯୋଽସୌ ଗଙ୍ଗାତଟେ କ୍ରୀଡ଼ନ୍ ମଞ୍ଜୁଷାନ୍ତର୍ଗତଂ ଶିଶୁମ୍ ।
କୁନ୍ତ୍ୟାପବିଦ୍ଧଂ କାନୀନମନପତ୍ୟୋଽକରୋତ୍ ସୁତମ୍ । ୧୩ ।
ବୃଷସେନଃ ସୁତସ୍ତସ୍ୟ କର୍ଣ୍ଣସ୍ୟ ଜଗତୀପତେ ।
ଦ୍ରୁହ୍ୟୋଶ୍ଚ ତନୟୋ ବଭ୍ରୁଃ ସେତୁସ୍ତସ୍ୟାତ୍ମଜସ୍ତତଃ । ୧୪ ।

---

ଋଷ୍ୟଶୃଙ୍ଗ ଅପୁତ୍ରିକ ନରପତି ଲୋମପାଦଙ୍କ ପାଇଁ ପୁତ୍ରେଷ୍ଟି ଯାଗ କରିବାରୁ ତାଙ୍କର ପୁତ୍ରଜାତ ହୋଇଥିଲେ । ରାଜା ଦଶରଥଙ୍କର ମଧ୍ୟ ସେହି ପୁତ୍ରେଷ୍ଟି ଯାଗ ଦ୍ୱାରା ପୁତ୍ରଲାଭ ହୋଇଥିଲା । ଲୋମପାଦଙ୍କର ପୁତ୍ର ଚତୁରଙ୍ଗ ଓ ତାଙ୍କର ପୁତ୍ର ପୃଥୁଳାକ୍ଷ । ୮, ୧୦ ।

ପୃଥୁଳାକ୍ଷଙ୍କର ତିନିପୁତ୍ର ଜନ୍ମିଥିଲେ । ବୃହଦ୍ରଥ, ବୃହତ୍କର୍ମା, ବୃହଦ୍‌ଭାନୁ, ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ବୃହଦ୍ରଥଙ୍କଠାରୁ ବୃହନ୍ମନା ଓ ତାଙ୍କଠାରୁ ଜୟଦ୍ରଥ ଜନ୍ମିଥିଲେ ।୧୧।

ଜୟଦ୍ରଥଙ୍କ ଔରସରେ ସମ୍ଭୂତିଙ୍କ ଗର୍ଭରେ ବିଜୟ ଜନ୍ମିଥିଲେ, ବିଜୟଙ୍କଠାରୁ, ଧୃତି ତାଙ୍କଠାରୁ ଧୃତବ୍ରତ, ତାଙ୍କଠାରୁ ସତ୍କର୍ମା ଓ ତାଙ୍କଠାରୁ ଜନ୍ମିଥିଲେ ଅଧିରଥ । ୧୨ ।

ଥରେ ଗଙ୍ଗାକୂଳରେ ଅଧିରଥ କ୍ରୀଡ଼ା କରୁ କରୁ ମଞ୍ଜୁଷା ମଧ୍ୟରୁ ଗୋଟିଏ ଶିଶୁ ସନ୍ତାନ ପାଇଥିଲେ । କୁନ୍ତୀଙ୍କର କନ୍ୟା କାଳରେ ସେ ସନ୍ତାନ ଜନ୍ମିଥିବାରୁ ସେ ଲୋକଲଜ୍ଜା ଭୟରେ ତାହାକୁ ଏପରି ଭାବରେ ପରିତ୍ୟାଗ କରିଥିଲେ । ଅପୁତ୍ରିକ ରାଜା ସେହି ଶିଶୁକୁ ପୁତ୍ରରୂପେ ପାଳନ କଲେ । ତାହାର ନାମ ହେଲା କର୍ଣ୍ଣ । ୧୩, ୧୪ ।

---

ଏମନ୍ତେ ଇନ୍ଦ୍ର ବରଷିଲା
ରାଜାର ସନ୍ତତି ହୋଇଲା ।୬-୯
ଲୋମପାଦର ଯେଉଁ ସୁତ
ସେ ଚତୁରଙ୍ଗ ନାମେ ଖ୍ୟାତ
ପୃଥୁଳାକ୍ଷ ଯେ ତାର ସୁତ
ତାହାର ପୁତ୍ର ବୃହଦ୍ରଥ
ଅବର ବୃହଦ୍ଭାନୁ ନାମ
ଜନ୍ମିଲେ ପୁଣି ବୃହତ୍କର୍ମ୍ମ । ୧୦ ।

ବୃହଦ୍ରଥରୁ ବୃହନ୍ମନ
ତା ପୁତ୍ର ଜୟଦ୍ରଥ ନାମ
ତାହାର ନନ୍ଦନ ବିଜୟ
ଧୃତି ଯେ ତାହାର ତନୟ
ଧୃତିର ପୁତ୍ର ଧୃତବ୍ରତ
ସତ୍କର୍ମ୍ମା ତାହାର ଯେ ସୁତ
ତାହାର ପୁତ୍ର ଅଧିରଥୀ
ତାହାର ନୋହିଲେ ସନ୍ତତି

ବନେ ଭ୍ରମୁଁ ସେ ଏକ ଦିନ
ପାଇଲା କୁନ୍ତୀ ପୁତ୍ର କର୍ଣ୍ଣ
ତାକୁ ପୁତ୍ର ରୂପେ ପାଳିଲା
ତା ପୁତ୍ର ବୃଷସେନହେଲା ।୧୧-୧୩
ଏବେ ହୋ ଦ୍ରୁହ୍ୟ ବଂଶ ଶୁଣ
ବଭ୍ରୁ ଯେ ତାହାର ନନ୍ଦନ
ତାର ତନୟ ସେତୁ ନାମ
ଆରବ୍ଧ ତାହାର ନନ୍ଦନ

ଆରବ୍ଧସ୍ତସ୍ୟ ଗାନ୍ଧାରସ୍ତସ୍ୟ ଧର୍ମ୍ମସ୍ତତୋ ଧୃତଃ ।
ଧୃତସ୍ୟ ଦୁର୍ମ୍ମଦସ୍ତସ୍ମାତ୍ ପ୍ରଚେତାଃ ପ୍ରାଚେତସଂ ଶତମ୍ । ୧୫ ।
ମ୍ଲେଚ୍ଛାଧିପତୟୋଽଭୂବନ୍ନୁଦୀଚୀଂ ଦିଶମାଶ୍ରିତାଃ ।
ତୁର୍ବସୋଶ୍ଚ ସୁତୋ ବହ୍ନିର୍ବହ୍ନେର୍ଭର୍ଗୋଽଥ ଭାନୁମାନ୍ । ୧୬ ।
ତ୍ରିଭାନୁସ୍ତତ୍ସୁତୋଽସ୍ୟାପି କରନ୍ଧମ ଉଦାରଧୀଃ ।
ମରୁତସ୍ତତ୍ସୁତୋଽପୁତ୍ରଃ ପୁତ୍ରଂ ପୌରବମନ୍ୱଭୂତ୍ । ୧୭ ।
ଦୁଷ୍ମନ୍ତଃ ସ ପୁନର୍ଭେଜେ ସ୍ୱବଂଶଂ ରାଜ୍ୟକାମୁକଃ ।
ଯଯାତେର୍ଜ୍ୟେଷ୍ଠପୁତ୍ରସ୍ୟ ଯଦୋର୍ବଂଶଂ ନରର୍ଷଭ । ୧୮ ।
ବର୍ଣ୍ଣୟାମି ମହାପୁଣ୍ୟଂ ସର୍ବପାପହରଂ ନୃଣାମ୍ ।
ଯଦୋର୍ବଂଶଂ ନରଃ ଶ୍ରୁତ୍ୱା ସର୍ବପାପୈଃ ପ୍ରମୁଚ୍ୟତେ । ୧୯ ।

---

ହେ ରାଜନ୍ ! କର୍ଣ୍ଣଙ୍କର ପୁତ୍ର ବୃଷସେନ, ପୂର୍ବୋକ୍ତ ଦ୍ରୁହ୍ୟୁଙ୍କର ପୁତ୍ର ବଭ୍ରୁ, ତାହାଙ୍କର ପୁତ୍ର ସେତୁ, ତାଙ୍କର ପୁତ୍ର ଆରବ୍ଧ, ତାଙ୍କର ପୁତ୍ର ଗାନ୍ଧାର, ତାଙ୍କର ପୁତ୍ର ଧର୍ମ, ତାଙ୍କଠାରୁ ଧୃତ, ଧୃତଙ୍କର ପୁତ୍ର ଦୁର୍ମଦ, ତାଙ୍କଠାରୁ ପ୍ରଚେତା ଜନ୍ମ ହୋଇଥିଲେ, ପ୍ରଚେତାଙ୍କଠାରୁ ଶତପୁତ୍ର ଜନ୍ମିଥିଲେ ।୧୫।

ପ୍ରଚେତାଙ୍କର ସେହି ଶତପୁତ୍ର ଉତ୍ତରଦିଗର ରାଜା ହୋଇଥିଲେ । ସେମାନେ ସମସ୍ତେ ମ୍ଲେଚ୍ଛ ଅଧିପତି । ତୁର୍ବସୁଙ୍କର ପୁତ୍ର ବହ୍ନି, ବହ୍ନିଙ୍କଠାରୁ ଭର୍ଗ ଏବଂ ଭର୍ଗଙ୍କଠାରୁ ଭାନୁମାନ୍ ଜନ୍ମିଥିଲେ ।୧୬।

ଭାନୁମାନଙ୍କର ପୁତ୍ର ତ୍ରିଭାନୁ, ତାଙ୍କର ଉଦାରମତି କରନ୍ଧମ ନାମକ ଏକପୁତ୍ର ଜନ୍ମିଥିଲେ । ତାହାଙ୍କର ପୁତ୍ର ମରୁତ; ମରୁତ ଅପୁତ୍ରକ ଥିଲେ । ସେ ପୁରୁବଂଶୀୟ ଦୁଷ୍ମନ୍ତଙ୍କୁ ପୁତ୍ରରୂପେ ଗ୍ରହଣ କରିଥିଲେ ।୧୭।

ସେହି ଦୁଷ୍ମନ୍ତ ରାଜ୍ୟାଭିଳାଷୀ ହୋଇ ପୁନର୍ବାର ନିଜବଂଶକୁ ଫେରିଆସିଥିଲେ । ହେ ନରୋତ୍ତମ ପରୀକ୍ଷିତ ! ବର୍ତ୍ତମାନ ଯଯାତିଙ୍କର ଜ୍ୟେଷ୍ଠପୁତ୍ର ଯଦୁବଂଶର ବର୍ଣ୍ଣନା କରୁଅଛି । ଏହା ସର୍ବ ପାପହର ଓ ଅତି ପବିତ୍ର । ଯେଉଁ ମନୁଷ୍ୟ ଯଦୁକୁଳ କାହାଣୀ ଶ୍ରବଣ କରେ ସେ ସର୍ବପାପରୁ ମୁକ୍ତ ହୁଏ ।୧୮, ୧୯ ।

---

ତାହାର ପୁତ୍ର ଯେ ଗାନ୍ଧାର
ଧର୍ମ୍ମ ଯେ କୁମର ତାହାର
ଧର୍ମ୍ମର ପୁତ୍ର ନାମ ଧୃତ
ଦୁର୍ମ୍ମଦ ତାହାର ଯେ ସୁତ
ତାହାର ସୁତ ଯେ ପ୍ରଚେତ
ତାହାର ହେଲେ ଶତେପୁତ୍ର
ଉତ୍ତରେ ସେ ନାନା ଦେଶରେ
ରହିଲେ ମ୍ଲେଚ୍ଛଅଧିକାରେ ।୧୪,୧୫

ତୁର୍ବସୁ ପୁତ୍ର ବହ୍ନି ନାମ
ଭର୍ଗ ଯେ ତାହାର ନନ୍ଦନ
ତାହାର ପୁତ୍ର ଭାନୁମାନ
ତ୍ରିଭାନୁ ତାହାର ନନ୍ଦନ
କରନ୍ଧମ ଯେ ତାର ସୁତ
ତାହାର ତନୟ ମରୁତ ।୧୬,୧୭
ଏମନ୍ତେ ଅନୁ ବଂଶ ଯେତେ
କହିଲି ବଂଶାନୁ ଚରିତେ

ଯହିଁ ଅଶେଷ ନୃପଗଣ
ଏବେ ହୋ ଯଦୁବଂଶ ଶୁଣ
ଯେ ବଂଶେ ପ୍ରଭୁ ଅବତାରି
ଜନ୍ମିଲେ କୃଷ୍ଣ ଦେହ ଧରି
ଏଣୁ ଯଦୁବଂଶ ଶୁଣନ୍ତେ
ପାପ ନ ରହେ ଜଗତେ ।୧୮,୧୯

ଯତ୍ରାବତୀର୍ଣ୍ଣୋ ଭଗବାନ୍ ପରମାତ୍ମା ନରାକୃତିଃ ।
ଯଦୋଃ ସହସ୍ରଜିତ୍ କ୍ରୋଷ୍ଟାନଳୋ ରିପୁରିତି ଶ୍ରୁତାଃ । ୨୦ ।
ଚତ୍ୱାରଃ ସୂନବସ୍ତତ୍ର ଶତଜିତ୍ ପ୍ରଥମାତ୍ମଜଃ ।
ମହାହୟୋ ରେଣୁହୟୋ ହୈହୟଶ୍ଚେତି ତତ୍ସୁତାଃ । ୨୧ ।
ଧର୍ମସ୍ତୁ ହୈହୟସୁତୋ ନେତ୍ରଃ କୁନ୍ତେଃ ପିତା ତତଃ ।
ସୋହଞ୍ଜିରଭବତ୍ କୁନ୍ତେର୍ମହିଷ୍ମାନ୍ ଭଦ୍ରସେନକଃ । ୨୨ ।
ଦୁର୍ମଦୋ ଭଦ୍ରସେନସ୍ୟ ଧନକଃ କୃତବୀର୍ଯ୍ୟସୂଃ ।
କୃତାଗ୍ନିଃ କୃତବର୍ମା ଚ କୃତୌଜା ଧନକାତ୍ମଜାଃ । ୨୩ ।
ଅର୍ଜ୍ଜୁନଃ କୃତବୀର୍ଯ୍ୟସ୍ୟ ସପ୍ତଦ୍ୱୀପେଶ୍ୱରୋଽଭବତ୍ ।
ଦତ୍ତାତ୍ରେୟାଦ୍ଧରେରଂଶାତ୍ ପ୍ରାପ୍ତଯୋଗମହାଗୁଣଃ । ୨୪ ।

---

ହେ ରାଜନ୍ ! ସେହି ଯଦୁବଂଶରେ ମାନବ ଦେହଧାରୀ ପରମାତ୍ମା ଶ୍ରୀକୃଷ୍ଣ ଜନ୍ମ ଗ୍ରହଣ କରିଥିଲେ ଯଦୁଙ୍କର ଚାରିପୁତ୍ର; ସହସ୍ରଜିତ୍, କ୍ରୋଷ୍ଟା, ନଳ ଏବଂ ରିପୁ । ଏମାନେ ପ୍ରତ୍ୟେକେ ବିଖ୍ୟାତ ଥିଲେ ।୨୦

ଯଦୁଙ୍କର ଚାରିପୁତ୍ର ମଧ୍ୟରେ ଜ୍ୟେଷ୍ଠ ସହସ୍ରଜିତ୍‌ଙ୍କର ପୁତ୍ର ଶତଜିତ୍, ଶତଜିତ୍‌ଙ୍କର ତିନିପୁତ୍ର ମହାହୟ, ରେଣୁହୟ, ହୈହୟ । ୨୧ ।

ହୈହୟଙ୍କର ପୁତ୍ର ଧର୍ମ, ତାହାଙ୍କର ପୁତ୍ର ନେତ୍ର, ନେତ୍ରଙ୍କର ପୁତ୍ର କୁନ୍ତୀ, କୁନ୍ତୀଙ୍କର ପୁତ୍ର ସୋହଞ୍ଜି, ତାହାଙ୍କର ପୁତ୍ର ମହିଷ୍ମାନ, ତାହାଙ୍କର ପୁତ୍ର ଭଦ୍ରସେନ । ୨୨ ।

ଭଦ୍ରସେନଙ୍କର ଦୁଇପୁତ୍ର ଥିଲେ ଦୁର୍ମଦ ଓ ଧନକ । ଧନକଙ୍କର ପୁତ୍ର କୃତବୀର୍ଯ୍ୟ, କୃତାଗ୍ନି, କୃତବର୍ମା ଓ କୃତୌଜା ।୨୩।

କୃତବୀର୍ଯ୍ୟଙ୍କର ପୁତ୍ର କାର୍ତ୍ତବୀର୍ଯ୍ୟାର୍ଜୁନ, ସେ ସପ୍ତଦ୍ୱୀପର ଅଧୀଶ୍ୱର ଥିଲେ ଏବଂ ହରିଙ୍କ ଅଂଶ ସମ୍ଭୂତ ଦତ୍ତାତ୍ରେୟଙ୍କଠାରୁ ମହାମହନୀୟ ଯୋଗ ଅଭ୍ୟାସ କରିଥିଲେ ।୨୪।

---

ଯଦୁ ରାଜାର ଚାରି ସୁତ
ଶୁଣ ତାହାଙ୍କ ନାମ ଯେତେ
ସହସ୍ରଜିତ ରିପୁ ବେନି
ଆବର କ୍ରୋଷ୍ଟା ନଳ ଘେନି
ସହସ୍ରଜିତ ପୁତ୍ର ଖ୍ୟାତ
ଶତଜିତର ତିନି ସୁତ
ଯେ ମହାହୟ ରେଣୁ ହୟ
ହୈହୟ ନାମେ ମହାଶୟ
ଧର୍ମ୍ମ ଯେ ହୈହୟର ସୁତ
ନେତ୍ର ତାହାର ବୀର୍ଯ୍ୟେ ଜାତ

କୁନ୍ତି ତାହାର ପୁତ୍ର ହୋଏ
ସୋହଞ୍ଜି କୁନ୍ତିର ତନୟ
ତାହାର ପୁତ୍ର ମହିଷ୍ମାନ
ତାର କୁମର ଭଦ୍ରସେନ
ତାର କୁମର ବେନି ଜାଣ
ଧନକ ଦୁର୍ମ୍ମଦ ଯେ ପୁଣ
କୃତବୀର୍ଯ୍ୟ କୃତାଗ୍ନି ବେନି
କୃତବର୍ମ୍ମା କୃତୌଜା ଘେନି
ଧନକ ପୁତ୍ର ଯେ ଜଗତେ
ବିଷ୍ଣୁର ତେଜ ଅଦ୍ଭୁତେ

କୃତବୀର୍ଯ୍ୟ ସୁତ ଅର୍ଜ୍ଜୁନ
ସପତ ଦ୍ୱୀପେ ସେ ରାଜନ ।୨୦-୨୩
ଦତ୍ତାତ୍ରେୟଙ୍କୁ ସେବା କରି
ଯୋଗେ ହୋଇଲା ଅଧିକାରୀ
ସେ କାର୍ତ୍ତବୀର୍ଯ୍ୟର ମହିମା
କେ କହିପାରେ ଗୁଣ ସୀମା
ହୈହୟ ବଂଶେ ରାଜା ଯେତେ
ତପସ୍ୟା ଯଜ୍ଞ ସନମତେ
ନାନା ପ୍ରକାରେ ଯେତେ ସାଧି
ଅଣିମା ଆଦି ଅଷ୍ଟ ରିଦ୍ଧି

ନ ନୂନଂ କାର୍ତ୍ତବୀର୍ଯ୍ୟସ୍ୟ ଗତିଂ ଯାସ୍ୟନ୍ତି ପାର୍ଥିବାଃ ।
ଯଜ୍ଞଦାନତପୋଯୋଗୈଃ ଶ୍ରୁତବୀର୍ଯ୍ୟଦୟାଦିଭିଃ । ୨୫ ।
ପଞ୍ଚାଶୀତି ସହସ୍ରାଣି ହ୍ୟବ୍ୟାହତବଲଃ ସମାଃ ।
ଅନଷ୍ଟବିତ୍ତସ୍ମରଣୋ ବୁଭୁଜେଽକ୍ଷୟ୍ୟଷଡ୍‌ବସୁ । ୨୬ ।
ତସ୍ୟ ପୁତ୍ରସହସ୍ରେଷୁ ପଞ୍ଚୈବୋର୍ବରିତା ମୃଧେ ।
ଜୟଧ୍ୱଜଃ ଶୂରସେନୋ ବୃଷଭୋ ମଧୁରୁର୍ଜ୍ଜିତଃ । ୨୭ ।
ଜୟଧ୍ୱଜାତ୍ ତାଳଜଙ୍ଘସ୍ତସ୍ୟ ପୁତ୍ରଶତଂ ତ୍ୱଭୂତ୍ ।
କ୍ଷତ୍ରଂ ଯତ୍ତାଳଜଙ୍ଘାଖ୍ୟମୌର୍ବତେଜୋଽପସଂହୃତମ୍ । ୨୮ ।
ତେଷାଂ ଜ୍ୟେଷ୍ଠୋ ବୀତିହୋତ୍ରୋ ବୃଷ୍ଣିଃ ପୁତ୍ରୋ ମଧୋଃ ସ୍ମୃତଃ ।
ତସ୍ୟ ପୁତ୍ରଶତଂ ତ୍ୱାସୀଦ୍‌ବୃଷ୍ଣିଜ୍ୟେଷ୍ଠଂ ଯତଃ କୁଳମ୍ । ୨୯ ।

---

ଯଜ୍ଞ, ଦାନ, ତପସ୍ୟା, ବିଦ୍ୟା, ବୀର୍ଯ୍ୟ ଓ ଦୟାଦି ଗୁଣରେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କ ତୁଲ୍ୟ ଅନ୍ୟ କେହି ନୃପତି ନ ଥିଲେ ଏହା ସୁନିଶ୍ଚିତ । ୨୫ ।

ସେହି ଅବ୍ୟାହତ ପରାକ୍ରମ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ପଞ୍ଚାଅଶି ସହସ୍ରବର୍ଷ ଯାଏ ଅକ୍ଷୟ ଭୋଗରେ ମନୋନିବେଶ କରି ଷଡେନ୍ଦ୍ରିୟ ଭୋଗ୍ୟ ବସ୍ତୁ ଉପଭୋଗ କରିଥିଲେ । ୨୬ ।

ତାହାଙ୍କର ସହସ୍ର ପୁତ୍ର ମଧ୍ୟରେ ଜୟଧ୍ୱଜ, ଶୂରସେନ, ବୃଷଭ, ମଧୁ ଓ ଉର୍ଜ୍ଜିତ ଏହି ପାଞ୍ଚିପୁତ୍ର-ଯୁଦ୍ଧରେ ଅବଶିଷ୍ଟ ଥିଲେ ।୨୭।

ଜୟଧ୍ୱଜଙ୍କଠାରୁ ତାଳଜଙ୍ଘ ଜନ୍ମ ଗ୍ରହଣ କରିଥିଲେ । ତାଳଜଙ୍ଘଙ୍କର ଏକଶତ ପୁତ୍ର ଥିଲେ । ତାଳଜଙ୍ଘଙ୍କର କ୍ଷତ୍ରତେଜ ମହର୍ଷି ଔର୍ବଙ୍କର ଶିଷ୍ୟ ସଗରଙ୍କର ତେଜରେ ନଷ୍ଟ ହୋଇଥିଲା ।୨୮।

ତାଳଜଙ୍ଘଙ୍କର ଶତପୁତ୍ର ମଧ୍ୟରୁ ବୀତିହୋତ୍ର ଜ୍ୟେଷ୍ଠ । ମଧୁଙ୍କର ପୁତ୍ର ବୃଷ୍ଣି ନାମରେ ବିଖ୍ୟାତ, ମଧୁଙ୍କର ଶତପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ବୃଷ୍ଣି ଜ୍ୟେଷ୍ଠ । ହେ ରାଜନ୍ ! ସେହି ମଧୁଙ୍କଠାରୁ

---

ପଞ୍ଚାଶୀ ସହସ୍ର ବରଷ
ସମ୍ପଦ ଭୁଞ୍ଜିଲ ଅଶେଷ
ତାହାର ସମ ଏ ସଂସାରେ
କେହିନୋହିବଅଧିକାରେ ।୨୪,୨୫
ତାହାର ସହସ୍ର ନନ୍ଦନ
ଯୁଦ୍ଧେ ଜିଣି ସେ ବଳବାନ
ତା ମଧ୍ୟେ ପାଞ୍ଚ ଯେ କୁମର
କ୍ଷତ୍ରିୟ କୁଳେ ବଳୀୟର

ଜୟଧ୍ୱଜ ଯେ ଶୂରସେନ
ଉର୍ଜ୍ଜିତ ମଧୁ ବୃଷସେନ । ୨୭ ।
ଜୟଧ୍ୱଜର ଯେ କୁମର
ତାଳିଜଙ୍ଘ ନାମ ତାହାର
ଶତେକ ନନ୍ଦନ ତାର ହୋଏ
ତା ନାମେ ଶତ୍ରୁ କରେ ଭୟେ
ଔର୍ବ ଋଷିଙ୍କ ବ୍ରହ୍ମତେଜେ
ତା କ୍ଷେତ୍ରେ ଯେ ପୁତ୍ର ଉପୁଜେ

ତାହାଙ୍କ ମଧ୍ୟେ ଜ୍ୟେଷ୍ଠ ସୁତ
ନାମ ତାହାର ବୀତିହୋତ୍ର
ମଧୁର ଶତପୁତ୍ର ହୋଇ
ବୃଷ୍ଣି ତା ମଧ୍ୟେ ଜ୍ୟେଷ୍ଠ ଥାଇ
ମାଧବ ବୃଷ୍ଣି ଯେ ଯାଦବ
ଏଣୁ ଏ ଘୋଷନ୍ତି ସାଧବ
କୃଷ୍ଣ ସୁତ ବୃଜିନବାନ
ସ୍ୱାହିତ ତାହାର ନନ୍ଦନ

ମାଧବା ବୃଷ୍ଣୟୋ ରାଜନ୍ ଯାଦବାଶ୍ଚେତି ସଂଜ୍ଞିତାଃ ।
ଯଦୁପୁତ୍ରସ୍ୟ ଚ କ୍ରୋଷ୍ଟୋଃ ପୁତ୍ରୋ ବୃଜିନବାଂସ୍ତତଃ ।୩୦।
ସ୍ୱାହିତୋଽତୋ ବିଶଦ୍ଗୁର୍ବୈ ତସ୍ୟ ଚିତ୍ରରଥସ୍ତତଃ ।
ଶଶବିନ୍ଦୁର୍ମହାଯୋଗୀ ମହାଭାଗୋ ମହାନଭୂତ୍ ।
ଚତୁର୍ଦ୍ଦଶ ମହାରତ୍ନଶ୍ଚକ୍ରବର୍ତ୍ତ୍ୟପରାଜିତଃ । ୩୧ ।
ତସ୍ୟ ପତ୍ନୀସହସ୍ରାଣାଂ ଦଶାନାଂ ସୁମହାଯଶାଃ ।
ଦଶଲକ୍ଷସହସ୍ରାଣି ପୁତ୍ରାଣାଂ ତାସ୍ୱଜୀଜନତ୍ । ୩୨ ।
ତେଷାନ୍ତୁ ଷଟ୍ ପ୍ରଧାନାନାଂ ପୃଥୁଶ୍ରବସ ଆତ୍ମଜଃ ।
ଧର୍ମ୍ମୋ ନାମୋଶନା ତସ୍ୟ ହୟମେଧଶତସ୍ୟ ଯାଟ୍ । ୩୩ ।

---

ମାଧବ ଓ ବୃଷ୍ଣିଙ୍କ ବୃଷ୍ଣି ଓ ଯଦୁଙ୍କଠାରୁ ଯାଦବବଂଶ ଖ୍ୟାତିଲାଭ କରିଥିଲା । ଯଦୁଙ୍କର ପୁତ୍ର କ୍ରୋଷ୍ଟା, ତାହାଙ୍କର ପୁତ୍ର ବୃଜିନବାନ୍, ତାହାଙ୍କର ପୁତ୍ର ସ୍ୱାହିତ, ତାହାଙ୍କର ପୁତ୍ର ବିଷଦ୍ଗୁ, ତାହାଙ୍କର ପୁତ୍ର ଚିତ୍ରରଥ, ତାଙ୍କଠାରୁ ମହାଯୋଗୀ ମହାଭାଗ ଅନୁତ୍ତମ ଶଶବିନ୍ଦୁ ଜନ୍ମଗ୍ରହଣ କରିଥିଲେ । ଶଶବିନ୍ଦୁ ଅଶ୍ୱ ଗଜାଦି ରାଜଯୋଗ୍ୟ ଚତୁର୍ଦ୍ଦଶରତ୍ନର ଅଧୀଶ୍ୱର ହୋଇଥିଲେ । ସେ ସର୍ବଭୂମ୍ୟଧିପତି ଓ ଅପରାଜେୟ ଥିଲେ । ୨୯, ୩୧ ।

ଶଶବିନ୍ଦୁଙ୍କର ଦଶହଜାର ପତ୍ନୀ ଥିଲେ । ପ୍ରତ୍ୟେକ ପତ୍ନୀଙ୍କର ଏକଲକ୍ଷ ସନ୍ତାନ ଜନ୍ମି ଥିଲେ । ଏପରି ତାଙ୍କର ଶତକୋଟି ସନ୍ତାନ ଜନ୍ମିଥିଲେ ।୩୨।

ଶଶବିନ୍ଦୁଙ୍କର ପୂର୍ବୋକ୍ତ ଶତକୋଟି ସନ୍ତାନ ମଧ୍ୟରୁ ପୃଥୁଶ୍ରବା ପ୍ରଧାନ । ପୃଥୁଶ୍ରବାଙ୍କର ପୁତ୍ର ଧର୍ମ, ତାହାଙ୍କର ପୁତ୍ର ଉଶନା । ଉଶନା ଶହେଟି ଅଶ୍ୱମେଧ ଯଜ୍ଞ କରିଥିଲେ । ୩୩ ।

---

ବିଶଦଗୁ ତାହାର ସୁତ
ତାର କୁମର ଚିତ୍ରରଥ
ଶଶବିନ୍ଦୁ ଯେ ତାର ସୁତ
ସେ ଥିଲା ମହା ଭାଗ୍ୟବନ୍ତ
ସେ ମହାଯୋଗୀ ମହାଭାଗ
ଭୁବନଜିତ ତାର ତେଜ
ଦଶସହସ୍ର ତାର ନାରୀ
ଅଶେଷ ଯଶ ଅଧିକାରୀ
ସହସ୍ର ପୁଣ ଦଶଲକ୍ଷ
କୁମାରହୋଇଲେପ୍ରତ୍ୟକ୍ଷ ।୨୭, ୩୧

ତାହାଙ୍କ ମଧ୍ୟେ ଛଅ ସୁତେ
ବିଖ୍ୟାତ ହୋଇଲେ ଜଗତେ
ସହସ୍ର ଅଶ୍ୱମେଧ କଲେ
ବସି ବ୍ରାହ୍ମଣ ଋଷିମାନେ
ରୁଚକ ନାମେ ତାର ସୁତ
ତାର କୁମର ପାଞ୍ଚ ଜାତ
ରୁକ ରୁକ୍ମେଷୁ ପୁରୁଜିତ
ପୃଥୁ ଜ୍ୟାମଘ ପାଞ୍ଚ ସୁତ
ଜ୍ୟାମଘ ପତ୍ନୀ ଶୈବ୍ୟା ହୋଇ
କେବେହେଁ ପୁତ୍ର ନ ଲଭଇ

ସେ ରାଜା ଦିଗବିଜେ କରି
ଅନେକ ରିପୁ ରାଜ୍ୟେ ମାରି
ନାନାପ୍ରକାରେ ରିପୁ ଜିଣି
ଅନେକ ଧନରତ୍ନ ଆଣି
କନ୍ୟାଏ ପାଇ ରୂପରାଶି
ତାହାର ସଙ୍ଗେ ରଥେ ବସି
ମିଳିଲା ଆପଣା ଭୁବନେ
ଅନେକ ବାଦ୍ୟ ନାଦ ସ୍ୱନେ
ଶୈବ୍ୟା ନାମେ ତାହାର ରାଣୀ
ଉତ୍ସବ ବାଦ୍ୟ ନାଦ ଶୁଣି

ତତ୍ସୁତୋ ରୁଚକସ୍ତସ୍ୟ ପଞ୍ଚାସନ୍ନାତ୍ମଜାଃ ଶୃଣୁ ।
ପୁରୁଜିଦ୍ରୁକ୍ମରୁକ୍ମେଷୁପୃଥୁଜ୍ୟାମଘସଂଜ୍ଞିତାଃ । ୩୪ ।
ଜ୍ୟାମଘସ୍ତ୍ୱପ୍ରଜୋଽପ୍ୟନ୍ୟାଂ ଭାର୍ଯ୍ୟାଂ ଶୈବ୍ୟାପତିର୍ଭୟାତ୍ ।
ନାବିନ୍ଦଚ୍ଛତ୍ରୁଭବନାଦ୍ଭୋଜ୍ୟାଂ କନ୍ୟାମହାରଷୀତ୍ ।
ରଥସ୍ଥାଂ ତାଂ ନିରୀକ୍ଷ୍ୟାହ ଶୈବ୍ୟା ପତିମମର୍ଷିତା ।୩୫।
କେୟଂ କୁହକମତ୍ସ୍ଥାନଂ ରଥମାରୋପିତେତି ବୈ ।
ସ୍ନୁଷା ତବେତ୍ୟଭିହିତେ ସ୍ମୟନ୍ତୀ ପତିମବ୍ରବୀତ୍ । ୩୬ ।
ଅହଂ ବନ୍ଧ୍ୟାଽସପତ୍ନୀ ଚ ସ୍ନୁଷା ମେ ଯୁଜ୍ୟତେ କଥମ୍ ।
ଜନୟିଷ୍ୟସି ଯଂ ରାଜ୍ଞି ତସ୍ୟେୟମୁପଯୁଜ୍ୟତେ । ୩୭ ।

---

ଭୀଷ୍ମନାଙ୍କର ପୁତ୍ର ରୁଚକ, ହେ ରାଜନ ! ତାଙ୍କର ପାଞ୍ଚପୁତ୍ର ଯଥା— ପୁରୁଜିତ୍, ରୁକ୍ମ, ରୁକ୍ମେଷୁ, ପୃଥୁ ଓ ଜ୍ୟାମଘ ।୩୪।

ଜ୍ୟାମଘଙ୍କର ପତ୍ନୀ ଶୈବ୍ୟା, ସେ ଅପୁତ୍ର ହୋଇ ଭାର୍ଯ୍ୟା ଭୟରେ ଅନ୍ୟପତ୍ନୀ ଗ୍ରହଣ କରି ନ ଥିଲେ । ଜ୍ୟାମଘ ଥରେ ଶତ୍ରୁ ଗୃହରୁ ବଳପୂର୍ବକ ଗୋଟିଏ କନ୍ୟା ଆଣିଥିଲେ । ଏହି କନ୍ୟାକୁ ପତିଙ୍କ ରଥରେ ଦେଖି ଶୈବ୍ୟା କହିଲେ, ରଥର ଗୁପ୍ତ କକ୍ଷରେ ବସିଅଛି ଏ କିଏ ? ଜ୍ୟାମଘ କହିଲେ, ଏ ମୋର ପୁତ୍ରବଧୂ । ପତିଙ୍କର ଏହି ବାକ୍ୟ ଶ୍ରବଣ କରି ଶୈବ୍ୟା ବିସ୍ମିତ ହୋଇ ଓ କହିଲେ, ମୁଁ ତ ବନ୍ଧ୍ୟା, ମୋର ସପତ୍ନୀ କେହି ନାହାନ୍ତି, ପୁତ୍ରବଧୂ କପରି ହେବ ? ଜ୍ୟାମଘ କହିଲେ ହେ ରାଜ୍ଞୀ ! ତୁମର ଭବିଷ୍ୟତରେ ଯେଉଁ ପୁତ୍ର ହେବ ଏ କନ୍ୟା ସେହି ପୁତ୍ରର ବଧୂ ହେବ ।୩୫, ୩୭।

---

ସୁନ୍ଦର ହୋଇଲା ବାହାର
ଭୂଷିତ ନାନା ଅଳଙ୍କାର
ରଥକୁ ଯେହେଁ ବେଳ ହୋଇଲେ
କନ୍ୟାଏ ଅଛି ତାର କୋଳେ
ଅତି ସୁନ୍ଦର ତାର ତନୁ
ଦେଖି ପାଇଲ ହୃଦେ ମନ୍ୟୁ
କୋପେ ବୋଇଲ ରାଜା ଶୁଣ
ଏ କନ୍ୟା ପାଇଛୁ ତୁ କାହିଁ
ଶୈବ୍ୟା ବଚନ ଶୁଣି ରାଜ୍ୟେ
ହୃଦେ ପାଇଲ ମହାଭୟେ

ବୋଲଇ ମଧୁର ଉତ୍ତର
ଏ କନ୍ୟା ବଧୂ ଅଟେ ତୋର
ଶୈବ୍ୟା ବୋଲଇ କୋପ ବହି
ଏ ଜନ୍ମେ ତୋର ପୁତ୍ର ନାହିଁ
ଆଣିଲୁ ସପତ୍ନୀ ଅର୍ଥେ
ଏବେ ତୁ ଭଣୁ ମୋ ଅଗ୍ରତେ
ଶୁଣି ସେ ଶୈବ୍ୟାର ବଚନ
ମଧୁର ବୋଲଇ ରାଜନ
ଏବେ ଯେ ପୁତ୍ର ଉପୁଜିବ
ଏ କନ୍ୟା ସେ ବଧୂ ହୋଇବ

ଅନେକ ହୋଇବ ମୋ ବଂଶ
ତା ଶୁଣି ଶୈବ୍ୟା ହେଲା ତୋଷ
ଭବନେ କଲା ସେ ପ୍ରବେଶ
ଆନନ୍ଦେ ହୋଇ ହସ ହସ
ସନ୍ତୋଷ ହେଲେ ପିତୃ ଦେବେ
ପୁତ୍ର ହୋଇଲା ଶୈବ୍ୟା ଗର୍ଭେ
ସୁନ୍ଦରେ ଜଗତ ମୋହିଲା
ବିଦର୍ଭ ନାମ ତାକୁ ଦେଲା

ଅନ୍ୱମୋଦନ୍ତ ତଦ୍‌ବିଶ୍ୱେଦେବାଃ ପିତର ଏବ ଚ ।
ଶୈବ୍ୟାଗର୍ଭମଧାତ୍ କାଲେ କୁମାରଂ ସୁଷୁବେ ଶୁଭମ୍ ।
ସ ବିଦର୍ଭ ଇତି ପ୍ରୋକ୍ତ ଉପୟେମେ ସ୍ନୁଷାଂ ସତୀମ୍ । ୩୮ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଯଦୁବଂଶକଥନେ ନାମ
ଚତୁର୍ବିଂଶୋଽଧ୍ୟାୟଃ ।

---

ବିଶ୍ୱଦେବ ଓ ପିତୃଗଣ ଜ୍ୟାମଘଙ୍କର ଏହି ବାକ୍ୟକୁ ତଥାସ୍ତୁ ବୋଲି ଅନୁମୋଦନ କଲେ । ଶୈବ୍ୟା ଗର୍ଭଧାରଣ କଲେ ଓ ଯଥା କାଳରେ ତାଙ୍କର ଗୋଟିଏ ସୁନ୍ଦର ପୁତ୍ରଜାତ ହେଲା । ଯଥା ସମୟରେ ଏହି ପୁତ୍ର ବିଦର୍ଭ ନାମରେ ବିଖ୍ୟାତ ହୋଇ ପିତାଙ୍କର ନିର୍ଦ୍ଦେଶିତ ସାଧ୍ୱୀ କନ୍ୟାର ପାଣିଗ୍ରହଣ କରିଥିଲେ ।୩୮।

---

ସେ କନ୍ୟା ପୁତ୍ରେ ବିଭା କଲା
ଶୁଣ ହେ ଗୋବିନ୍ଦର ଲୀଳା
।୮୨-୩୮।

ବୋଲଇ ଦାସ ଜଗନ୍ନାଥ
ନବମେ ବଂଶାନୁଚରିତ ॥





## ଚତୁର୍ବିଂଶୋଽଧ୍ୟାୟଃ ।

ଚତୁର୍ବିଂଶେ ବିଦର୍ଭସ୍ୟ ପୁତ୍ରତ୍ରୟସମୁଦ୍ଭବାଃ ।
ବଂଶା ନାନାମୁଖାଃ ପ୍ରୋକ୍ତା ରାମକୃଷ୍ଣୋଦ୍ଭବାବଧି । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀଶୁକ ଉବାଚ

ତସ୍ୟାଂ ବିଦର୍ଭୋଽଜନୟତ୍ ପୁତ୍ରୌ ନାମ୍ନା କୁଶକ୍ରଥୌ ।
ତୃତୀୟଂ ରୋମପାଦଞ୍ଚ ବିଦର୍ଭକୁଲନନ୍ଦନମ୍ । ୧ ।
ରୋମପାଦସୁତୋ ବଭ୍ରୁର୍ବଭ୍ରୋଃ କୃତିରଜାୟତ ।
ଉଶିକସ୍ତତ୍ସୁତସ୍ତସ୍ମାଚ୍ଚେଦିଶ୍ଚୈଦ୍ୟାଦୟୋ ନୃପାଃ । ୨ ।
କ୍ରଥସ୍ୟ କୁନ୍ତିଃ ପୁତ୍ରୋଽଭୂଦ୍‌ବୃଷ୍ଣିସ୍ତସ୍ୟାଥ ନିର୍ବୃତିଃ ।
ତତୋ ଦଶାର୍ହୋ ନାମ୍ନାଭୂତ୍ତସ୍ୟ ବ୍ୟୋମ ସୁତସ୍ତତଃ । ୩ ।

---

### ଯଦୁବଂଶ ଓ ଚନ୍ଦ୍ରବଂଶ ବୃତ୍ତାନ୍ତ

ଚତୁର୍ବିଂଶ ଅଧ୍ୟାୟରେ ଯଦୁବଂଶୀୟ ବିଦର୍ଭଙ୍କର ତିନୋଟି ପୁଅ ଜନ୍ମ ହୋଇଥିଲେ । ତାହାଙ୍କଠାରୁ ଶ୍ରୀରାମ, ଶ୍ରୀକୃଷ୍ଣଙ୍କର ପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇଅଛି ॥ ० ॥

ଶ୍ରୀ ଶୁକଦେବ କହିଲେ :—

ହେ ମହାରାଜ ! ବିଦର୍ଭଙ୍କର ସେହି ପତ୍ନୀ ଗର୍ଭରୁ କୁଶ, କ୍ରଥ ଏବଂ ବିଦର୍ଭବଂଶ ବର୍ଦ୍ଧନ ରୋମପାଦ, ଏହି ତିନିପୁତ୍ର ଜନ୍ମିଥିଲେ । ୧ ।

ରୋମପାଦଙ୍କର ପୁତ୍ର ବଭ୍ରୁ, ବଭ୍ରୁଙ୍କର ପୁତ୍ର କୃତି, ତାହାଙ୍କର ପୁତ୍ର ଉଶୀକ, ତାହାଙ୍କର ପୁତ୍ର ଚେଦି । ହେ ରାଜନ୍ ! ଚେଦିଙ୍କଠାରୁ ଚୈଦ୍ୟାଦି ନୃପଗଣ ଜାତ ହୋଇଥିଲେ ।୨।

କ୍ରଥଙ୍କର ପୁତ୍ର କୁନ୍ତି, ତାହାଙ୍କର ପୁତ୍ର ବୃଷ୍ଣି, ବୃଷ୍ଣିଙ୍କର ପୁତ୍ର ନିର୍ବୃତି, ତାଙ୍କଠାରୁ ଦଶାର୍ହ, ଦଶାର୍ହଙ୍କଠାରୁ ବ୍ୟୋମ ଜନ୍ମଗ୍ରହଣ କରିଥିଲେ ।୩।

---

ବିଦର୍ଭ ପୁତ୍ର ବଂଶ କଥା,　　ଚତୁର୍ବିଂଶରେ ଏ ବ୍ୟବସ୍ଥା ॥

ଶ୍ରୀଶୁକଉବାଚ—
ଶୁଣ ରାଜନ କୁରୁସାର
ବିଦର୍ଭ ଜ୍ୟାମଘ କୁମର
ସେ ମହାରାଜ କୁଳ ମଣି
ଯେ କନ୍ୟା ଘରେ ଥିଲା ଆଣି
ସେ କନ୍ୟା ବିଦର୍ଭେ ବରିଲା
ତା ଗର୍ଭେ ପୁତ୍ର ଉପୁଜିଲା

କୁଶ ଯେ କ୍ରଥ ଏହୁ ବେନି
ତୃତୀୟେ ରୋମପାଦ ଘେନି
ବଭ୍ରୁ ଯେ ରୋମପାଦ ସୁତ
କୃତି ତାହାର ବୀର୍ଯ୍ୟେ ଜାତ ।୧।
ଉଶିକ ତାହାର ନନ୍ଦନ
ତା ଠାରୁଁ ଚେଦି ଉତପନ୍ନ
ଚେଦିର ବଂଶ ଜନ୍ମ ହୋଇ
ସ୍ୱଧର୍ମେ ପାଳିଲେ ସେ ମହୀ

କ୍ରଥର ପୁତ୍ର କୁନ୍ତି ନାମ
ବୃଷ୍ଣି ଯେ ତାହାର ନନ୍ଦନ
ନିର୍ବୃତି ତାର ପୁତ୍ର ହୋଏ
ଦଶାର୍ହ ନାମେ ତାର ପୋଏ
ବ୍ୟୋମ ଯେ ତାହାର ଜନିତ
ସୁତ ଜୀମୂତ ଯେ ବିକୃତ
ତାର ସଜିତ ଭୀମରଥ
ତାହାର ପୁତ୍ର ନବରଥ

ଜୀମୂତୋ ବିକୃତସ୍ତସ୍ୟ ଯସ୍ୟ ଭୀମରଥଃ ସୁତଃ ।
ତତୋ ନବରଥଃ ପୁତ୍ରୋ ଜାତୋ ଦଶରଥସ୍ତତଃ । ୪ ।
କରମ୍ଭିଃ ଶକୁନେଃ ପୁତ୍ରୋ ଦେବରାତସ୍ତଦାତ୍ମଜଃ ।
ଦେବକ୍ଷତ୍ରସ୍ତତସ୍ତସ୍ୟ ମଧୁଃ କୁରୁବଶାଦନୁଃ । ୫ ।
ପୁରୁହୋତ୍ରସ୍ତ୍ୱନୋଃ ପୁତ୍ରସ୍ତସ୍ୟାୟୁଃ ସାତ୍ୱତସ୍ତତଃ ।
ଭଜମାନୋ ଭଜିର୍ଦ୍ଦିବ୍ୟୋ ବୃଷ୍ଣିର୍ଦ୍ଦେବାବୃଧୋଽନ୍ଧକଃ । ୬ ।
ସାତ୍ୱତସ୍ୟ ସୁତାଃ ସପ୍ତ ମହାଭୋଜଶ୍ଚ ମାରିଷ ।
ଭଜମାନସ୍ୟ ନିମ୍ଲୋଚଃ କିଙ୍କଣୋ ଧୃଷ୍ଟିରେବ ଚ । ୭ ।
ଏକସ୍ୟାମାତ୍ମଜାଃ ପତ୍ନ୍ୟାମନ୍ୟସ୍ୟାଞ୍ଚ ତ୍ରୟଃ ସୁତାଃ ।
ଶତାଜିଚ ସହସ୍ରାଜିଦଯୁତାଜିଦତି ପ୍ରଭୋ । ୮ ।

---

ବ୍ୟୋମଙ୍କର ପୁତ୍ର ଜୀମୂତ, ତାହାଙ୍କର ପୁତ୍ର ବିକୃତ, ବିକୃତଙ୍କର ପୁତ୍ର ଭୀମରଥ, ଭୀମରଥଙ୍କର ପୁତ୍ର ନବରଥ, ନବରଥଙ୍କଠାରୁ ଦଶରଥ ଜନ୍ମ ଗ୍ରହଣ କରିଥିଲେ ।୪।

ଦଶରଥଙ୍କର ପୁତ୍ର କରମ୍ଭୀ, ତାହାଙ୍କର ପୁତ୍ର ଶକୁନି, ଶକୁନିଙ୍କର ପୁତ୍ର ଦେବରାତ, ତାହାଙ୍କର ପୁତ୍ର ଦେବକ୍ଷତ୍ର, ତାହାଙ୍କର ପୁତ୍ର ମଧୁ , ମଧୁଙ୍କ ପୁତ୍ର କୁରୁବଶ ଏବଂ କୁରୁବଶଙ୍କଠାରୁ ଅନୁର ଜନ୍ମ ଗ୍ରହଣ କରିଥିଲେ ।୫।

ଅନୁରଙ୍କର ପୁତ୍ର ପୁରୁହୋତ୍ର, ତାହାଙ୍କର ପୁତ୍ର ଆୟୁ, ତାଙ୍କଠାରୁ ଶାଶ୍ୱତ ଜନ୍ମଗ୍ରହଣ କରିଥିଲେ। ହେ ଆର୍ଯ୍ୟ ! ଶାଶ୍ୱତଙ୍କର ସାତପୁତ୍ର, ଭଜମାନ, ଭଜି, ଦିବ୍ୟ, ବୃଷ୍ଣି, ଦେବାବୃଧ, ଅନ୍ଧକ ଏବଂ ମହାଭୋଜ ।୬।

ଭଜମାନଙ୍କର ଦୁଇଟି ସ୍ତ୍ରୀ । ନିମ୍ଲୋଚ ଗୋଟିଏ ସ୍ତ୍ରୀର ସନ୍ତାନ ଏବଂ ଅନ୍ୟ ଦୁଇ ସ୍ତ୍ରୀର ସନ୍ତାନ କିଙ୍କଣ ଓ ଧୃଷ୍ଟି, ହେ ରାଜନ ! ଅନ୍ୟ ପତ୍ନୀଙ୍କଠାରେ ଶତାଜିତ, ସହସ୍ରାଜିତ ଓ ଅଯୁତାଜିତ ଜନ୍ମଗ୍ରହଣ କରିଥିଲେ ।୭, ୮।

---

ତା ବଂଶେ ଦଶରଥ ହୋଏ
ଶକୁନି ତାହାର ତନୟେ
କରମ୍ଭି ପୁତ୍ର ତା ଉଦତେ
ଗୋବିନ୍ଦ ବସେ ତାର ଚିତ୍ତେ
ତାର ତନୟ ଦେବରାତ
ତାର ମହିମା ଅପ୍ରମିତ ।୨-୪।
ତା ସୁତ ଦେବକ୍ଷତ୍ର ନାମ
ସୁନ୍ଦର ସକଳ ଗୁଣ ଧାମ
ମଧୁ ତାହାର ବଂଶେ ଜାତ
କୁରୁବଶ ଯେ ତାର ସୁତ

ଅନୁ ଯେ କୁରୁବଂଶ ପୁତ୍ର
ତାହାର ସୁତ ପୁରୁହୋତ୍ର
ଆୟୁ ଯେ ତାର ପୁତ୍ର ନାମ
ସାତ୍ୱତ ତାଠାରୁ ଜନମ । ୫ ।
ତା ବଂଶେ ଭଜି ଭଜମାନ
ଦିବ୍ୟ ବୃଷ୍ଣି ବେନି ନନ୍ଦନ
ଦେବାବୃଧ ଯେ ମହାଭୋଜ
ଅନ୍ଧକ ତାହାର ଅନୁଜ
ସାତ୍ୱତ ସୁତ ସପ୍ତ ନାମ
ଏକେ ଅନେକ ଗୁଣଧାମ

ଭଜମାନର ପତ୍ନୀ ଦୁଇ
ଆଦ୍ୟରେ ତିନି ସୁତ ହୋଇ
ନିମ୍ଲୋଚ ଧୃଷ୍ଟି ଯେ କିଙ୍କଣ
ପରୀକ୍ଷ ତୋତେ କହୁଁ ଶୁଣ
ଦ୍ୱିତୀୟ ପତ୍ନୀ ଗର୍ଭେ ଜାତ
ହୋଇଲେ ତାର ତିନିସୁତ
ଶତଜିତ ସହସ୍ରଜିତ
ଅଯୁତଜିତ ତିନି ଭ୍ରାତ
ବଭ୍ରୁ ଯେ ଦେବାବୃଧ ସୁତ
ଜନେ ଗାଆନ୍ତି ତା ଚରିତ ।୬-୮।

ବଭ୍ରୁର୍ଦେବାବୃଧସୁତସ୍ତୟୋଃ ଶ୍ଲୋକୌ ପଠନ୍ତ୍ୟମୂ ।
ଯଥୈବ ଶୃଣୁମୋ ଦୂରାତ୍ ସଂପଶ୍ୟାମସ୍ତଥାନ୍ତିକାତ୍ ।୯।
ବଭ୍ରୁଃ ଶ୍ରେଷ୍ଠୋ ମନୁଷ୍ୟାଣାଂ ଦେବୈର୍ଦେବାବୃଧଃ ସମଃ ।
ପୁରୁଷାଃ ପଞ୍ଚଷଷ୍ଟିଶ୍ଚ ଷଟ୍‌ସହସ୍ରାଣି ଚାଷ୍ଟ ଚ । ୧୦ ।
ଯେଽମୃତତ୍ୱମନୁପ୍ରାପ୍ତା ବଭ୍ରୋର୍ଦେବା ବୃଧାଦପି ।
ମହାଭୋଜୋଽତିଧର୍ମାତ୍ମା ଭୋଜା ଆସଂସ୍ତଦନ୍ୱୟେ । ୧୧ ।
ବୃଷ୍ଣେଃ ସୁମିତ୍ରଃ ପୁତ୍ରୋଽଭୂଦ୍ୟୁଧାଜିଚ୍ଚ ପରନ୍ତପ ।
ଶିନିସ୍ତସ୍ୟାନମିତ୍ରଶ୍ଚ ନିଘ୍ନୋଽଭୂଦନମିତ୍ରତଃ । ୧୨ ।
ସତ୍ରାଜିତଃ ପ୍ରସେନଶ୍ଚ ନିଘ୍ନସ୍ୟାଥାସତୁଃ ସୁତୌ ।
ଅନମିତ୍ରସୁତୋ ଯୋଽନ୍ୟଃ ଶିନିସ୍ତସ୍ୟ ଚ ସତ୍ୟକଃ । ୧୩ ।
ଯୁୟୁଧାନଃ ସାତ୍ୟକିର୍ବୈ ଜୟସ୍ତସ୍ୟ କୁଣିସ୍ତତଃ ।
ଯୁଗନ୍ଧରୋଽନମିତ୍ରସ୍ୟ ବୃଷ୍ଣିଃ ପୁତ୍ରୋଽପରସ୍ତତଃ । ୧୪ ।

---

ଦେବାବୃଧଙ୍କର ପୁତ୍ର ବଭ୍ରୁ, ଏହି ପିତା ପୁତ୍ରଙ୍କ ସମ୍ବନ୍ଧେ ଲୋକମାନେ ଦୁଇଟି ଗାଥା ପାଠ କରିଥାନ୍ତି, ଯଥା- ଆମ୍ଭେମାନେ ଏମାନଙ୍କ ସମ୍ବନ୍ଧେ ଦୂରରୁ ଯେଉଁ କଥା ଶ୍ରବଣ କରୁ ନିକଟରେ ତାହାହିଁ ପ୍ରତ୍ୟକ୍ଷ କରିଥାଉଁ । ବଭ୍ରୁ ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଦେବାବୃଧ ଦେବତାମାନଙ୍କ ତୁଲ୍ୟ । ଛଅ ସହସ୍ର ତ୍ରିସପ୍ତତି ସଂଖ୍ୟକ ପୁରୁଷ ବଭ୍ରୁ ଓ ଦେବାବୃଧଙ୍କର ଉପଦେଶରେ ମୋକ୍ଷଲାଭ କରିଥିଲେ ।୯, ୧୧।

ହେ ପରନ୍ତପ ! ବୃଷ୍ଣିଙ୍କର ଦୁଇପୁତ୍ର ସୁମିତ୍ର ଓ ଯୁଧାଜିତ୍ । ଯୁଧାଜିତ୍‌ଙ୍କର ଶିନି, ଶିନିଙ୍କର ଅନମିତ୍ର ଏବଂ ଅନମିତ୍ରଙ୍କର ପୁତ୍ର ନିଘ୍ନ ।୧୨।

ନିଘ୍ନଙ୍କର ଦୁଇପୁତ୍ର ଥିଲେ ଶତ୍ରାଜିତ ଓ ପ୍ରସେନ । ଅନମିତ୍ରଙ୍କର ଆଉ ଏକପୁତ୍ର ଥିଲେ ଶିନି । ତାହାଙ୍କର ସତ୍ୟକ ନାମକ ଏକପୁତ୍ର ଥିଲେ ।୧୩।

ସତ୍ୟକଙ୍କର ପୁତ୍ର ଯୁଯୁଧାନ । ତାହାଙ୍କର ପୁତ୍ର ଜୟ, ତାହାଙ୍କଠାରୁ କୁଣି, କୁଣିଙ୍କର ଯୁଗନ୍ଧର । ଅନମିତ୍ରଙ୍କର ଅପରପୁତ୍ର ବୃଷ୍ଣି, ତାହାଙ୍କର ଅନ୍ୟ ପୁତ୍ର ଦ୍ୱୟ ଶଫଲ୍କ ଓ ଚିତ୍ରରଥ । ଶଫଲକଙ୍କଠାରୁ

---

ଦୂରରୁ ଯେତେ ଗୁଣ ଶୁଣି
ଅଧିକ ଦେଖୁଁ ପରମାଣି
ମନୁଷ୍ୟ ମଧ୍ୟେ ବଭ୍ରୁ ଶ୍ରେଷ୍ଠ
ଦେବାବୃଧ ଦେବଙ୍କ ଇଷ୍ଟ
ସେ ଦୁଇ ପୁରୁଷଙ୍କ କୋଳେ
ଯେତେ ଜନ୍ମିଲେ ଭବ ଜଳେ
ତରିଲେ ତାଙ୍କ ସଙ୍ଗ କରି
ଶୁଣ ତୁ କହେ ଯେତେ ସାର

ସହସ୍ର ପଞ୍ଚଷଠି ଛଅ
ଅଧିକ ପୁଣି ଜଣ ଆଠ
ଘୋର ସଂସାରୁ ତରିଗଲେ
ନିଶ୍ଚେ ନିମିଷକେ କୈବଲ୍ୟ ।୯, ୧୦
ଅତି ଧାର୍ମିକ ମହାଭୋଜ
ଅନେକ କାଳ କଲା ରାଜ୍ୟ
ଯେତେ ଉପୁଜିଲେ ତା ବଂଶେ
ଧରିଲେ ଭୋଜ ନାମକୁ ସେ

ବୃଷ୍ଣିର ସୁମିତ୍ର ନନ୍ଦନ
ଅପର ଯୁଧାଜିତ ନାମ ।୧୧।
ତାର ସନ୍ତତି ହୋଏ ଶିନି
ଅନମିତ୍ରକୁ ସଙ୍ଗେ ଘେନି
ତାହାର ନିଘ୍ନ ନାମେ ସୁତ
ତାର ଜନ୍ମିଲେ ବେନି ପୁତ୍ର
ପ୍ରସେନ ସତ୍ରାଜିତ ନାମ
ହୋଇଲେ ତାର ଗୁଣ ଧାମ

ଶ୍ୱଫଲ୍କଶ୍ଚିତ୍ରରଥଶ୍ଚ ଗାନ୍ଦିନ୍ୟାନ୍ତୁ ଶ୍ୱଫଲ୍କତଃ ।
ଅକ୍ରୂରପ୍ରମୁଖା ଆସନ୍ ପୁତ୍ରା ଦ୍ୱାଦଶ ବିଶ୍ରୁତାଃ । ୧୫ ।
ଆସଙ୍ଗଃ ସାରମେୟଶ୍ଚ ମୃଦୁରୋ ମୃଦୁବିଦ୍‌ଗିରିଃ ।
ଧର୍ମ୍ମବୃଦ୍ଧଃ ସୁକର୍ମ୍ମା ଚ କ୍ଷତ୍ରୋପେକ୍ଷୋଽରିମର୍ଦ୍ଦନଃ । ୧୬ ।
ଶତ୍ରୁଘ୍ନୋ ଗନ୍ଧମାଦଶ୍ଚ ପ୍ରତିବାହୁଶ୍ଚ ଦ୍ୱାଦଶ ।
ତେଷାଂ ସ୍ୱସା ସୁଚୀରାଖ୍ୟା ଦ୍ୱାବକ୍ରୂରସୁତାବପି । ୧୭ ।
ଦେବବାନୁପଦେବଶ୍ଚ ତଥା ଚିତ୍ରରଥାତ୍ମଜାଃ ।
ପୃଥୁର୍ବିଦୂରଥାଦ୍ୟାଶ୍ଚ ବହବୋ ବୃଷ୍ଣିନନ୍ଦନାଃ । ୧୮ ।
କୁକୁରୋ ଭଜମାନଶ୍ଚ ଶୁଚିଃ କମ୍ବଳବର୍ହିଷଃ ।
କୁକୁରସ୍ୟ ସୁତୋ ବହ୍ନିର୍ବିଲୋମା ତନୟସ୍ତତଃ । ୧୯ ।

---

ଗାନ୍ଧିନୀଙ୍କ ଗର୍ଭରେ ଅକ୍ରୂର, ଆସଙ୍ଗ, ସାରମେୟ, ମୃଦୁ ମୃଦୁବିତ୍, ଗିରି, ଧର୍ମବୃଦ୍ଧ, ସୁକର୍ମା, କ୍ଷତ୍ରୋପେକ୍ଷ, ଅରିମର୍ଦ୍ଦନ, ଶତ୍ରୁଘ୍ନ, ଗନ୍ଧମାଦ ଏବଂ ପ୍ରତିବାହୁ ଏହି ବାରଟି ପୁତ୍ର ଜନ୍ମଗ୍ରହଣ କରିଥିଲେ । ତାଙ୍କର ଗୋଟିଏ କନ୍ୟା ଥିଲେ ତାହାର ନାମ ସୁଚିରା । ଅକ୍ରୂରଙ୍କର ଦୁଇପୁତ୍ର ଦେବଯାନ ଓ ଉପଦେବ । ଚିତ୍ରରଥଙ୍କର ବିଦୁରଥାଦି ବହୁପୁତ୍ର ଥିଲେ । ଏମାନେ ସମସ୍ତେ ଶୌର୍ଯ୍ୟ, ବୀର୍ଯ୍ୟରେ ବିଖ୍ୟାତ ଓ ବୃଷ୍ଣି-ବଂଶ ଅଳଙ୍କୃତ କରିଥିଲେ । ୧୪, ୧୮ ।

ଅନ୍ଧକଙ୍କର ଚାରିପୁତ୍ର ଥିଲେ, କୁକୁର, ଭଜମାନ, ସୁଚି ଓ କମ୍ବଳାବର୍ହିଷ । ଏମାନଙ୍କ ମଧ୍ୟରେ କୁକୁରଙ୍କର ପୁତ୍ର ବହ୍ନି, ତାହାଙ୍କର ପୁତ୍ର ବିଲୋମା, ତାହାଙ୍କର ପୁତ୍ର କପୋତରୋମା, ତାହାଙ୍କର ପୁତ୍ର ଅନୁ ।

---

ଶିନି ଯେ ଅନମିତ୍ର ସୁତ
ସତ୍ୟକ ତାର ବୀର୍ଯ୍ୟେ ଜାତ
ତାହାର ପୁତ୍ର ଯୁଯୁଧାନ
ଜୟ ତାହାର ପୁତ୍ର ନାମ
କୁଣି ତାହାର ତନୁଁ ଜାତ
ତାହାର ଯୁଗନ୍ଧର ସୁତ
ଅପରେ ବୃଷ୍ଣି ପୁତ୍ର ଦୁଇ
ଜନ୍ମିଲେ ବିଷ୍ଣୁ ତେଜ ବହି
ସଫଲ୍କ ଚିତ୍ରରଥ ବେନି
ଗାନ୍ଧିନୀ ସଫଲ୍କ ଘରଣୀ
ଦ୍ୱାଦଶ ପୁତ୍ର ତାର ଘରେ
ଜନ୍ମିଲେ ଅତି ପୁଣ୍ୟତରେ

ଅକ୍ରୂର ତହିଁ ଜ୍ୟେଷ୍ଠ ଜାଣ
ଶୁଣହୋ ତାହାଙ୍କର ନାମ । ୧୨-୧୫
ଆସଙ୍ଗ ସାରମେୟ ଦୁଇ
ମୃଦୁର ମୃଦୁବିତ୍ ଯେ ହୋଇ
ଗିରି ଧର୍ମ୍ମ ବୃଦ୍ଧ ସୁକର୍ମ୍ମ
କ୍ଷତ୍ରୋପେକ୍ଷ ଅରିମର୍ଦ୍ଦନ
ଗନ୍ଧମାଦ ଯେ ଶତ୍ରୁଘନ
ଦ୍ୱାଦଶେ ପ୍ରତିବାହୁ ନାମ । ୧୬, ୧୭
ଅକ୍ରୂର ପୁତ୍ର ହୋଏ ବେନି
ଦେବବାନ୍ ଉପଦେବ ଘେନି
ଚିତ୍ରରଥର ଯେ ଆତ୍ମଜ
ତିନି ଭୁବନେ ତାର ତେଜ

ପୃଥୁ ଯେ ବିଦୁରଥ ଆଦି
ଏଣେ ବୃଷ୍ଣି ବଂଶ ସମ୍ପାଦି । ୧୮ ।
କୁକୁର ଭଜମାନ ବେନି
ଶୁଚି କମ୍ବଳବର୍ହି ଘେନି
ଏ ଚାରି ଅନ୍ଧକର ସୁତ
ଏବେ ହୋ ଶୁଣ ସଙ୍କ୍ଷିପ୍ତ
କୁକୁର ସୁତ ବହ୍ନି ନାମ
ତାହାର ତନୟ ବିଲୋମ
କପୋତରୋମା ତାର ସୁତ
ଅନୁ ଯେ ତାର ତନୁଁ ଜାତ
ଅନ୍ଧକ ଅନୁଠାରୁ ଜାତ
ଦୁନ୍ଦୁଭି ନାମେ ତାର ସୁତ

କପୋତରୋମା ତସ୍ୟାନୁଃ ସଖା ଯସ୍ୟ ଚ ତୁମ୍ବୁରୁଃ ।
ଅନ୍ଧକାଦ୍ଦୁନ୍ଦୁଭିସ୍ତସ୍ମାଦବିଦ୍ୟୋତଃ ପୁନର୍ବସୁଃ । ୨୦ ।
ତସ୍ୟାହୁକଶ୍ଚାହୁକୀ ଚ କନ୍ୟା ଚୈବାହୁକାତ୍ମଜେ ।
ଦେବକଶ୍ଚୋଗ୍ରସେନଶ୍ଚ ଚତ୍ୱାରୋ ଦେବକାତ୍ମଜାଃ । ୨୧ ।
ଦେବବାନୁପଦେବଶ୍ଚ ସୁଦେବୋ ଦେବବର୍ଦ୍ଧନଃ ।
ତେଷାଂ ସ୍ୱସାରଃ ସପ୍ତାସନ୍ ଧୃତଦେବାଦୟୋ ନୃପ । ୨୨ ।
ଶାନ୍ତିଦେବୋପଦେବା ଚ ଶ୍ରୀଦେବା ଦେବରକ୍ଷିତା ।
ସହଦେବା ଦେବକୀ ଚ ବାସୁଦେବ ଉବାହ ତାଃ । ୨୩ ।
କଂସଃ ସୁନାମା ନ୍ୟଗ୍ରୋଧଃ କଙ୍କଃ ଶଙ୍କୁଃ ସୁହୂସ୍ତଥା ।
ରାଷ୍ଟ୍ରପାଳୋଽଥ ଧୃଷ୍ଟିଶ୍ଚ ତୁଷ୍ଟିମାନୋଗ୍ରସେନୟଃ । ୨୪ ।

---

ଅନୁଙ୍କର ସଖା ଥିଲେ ତୁମ୍ବୁରୁ, ଅନୁଙ୍କର ପୁତ୍ର ଅନ୍ଧକ, ତାହାଙ୍କର ପୁତ୍ର ଦୁନ୍ଦୁଭି, ତାଙ୍କଠାରୁ ଅବିଦ୍ୟ ଓ ଅବିଦ୍ୟାଙ୍କ ଠାରୁ ପୁନର୍ବସୁ ଜନ୍ମଗ୍ରହଣ କରିଥିଲେ । ୧୯, ୨୦ ।

ପୁନର୍ବସୁଙ୍କ ପୁତ୍ର ଆହୁକ ଏବଂ କନ୍ୟା ଆହୁକୀ । ଆହୁକଙ୍କର ଦୁଇପୁତ୍ର ଦେବକ ଓ ଉଗ୍ରସେନ । ଦେବକଙ୍କର ଚାରିପୁତ୍ର ଦେବଯାନ, ଉପଦେବ, ସୁଦେବ ଏବଂ ଦେବବର୍ଦ୍ଧନ । ହେ ରାଜନ୍ ! ଏମାନଙ୍କର ଧୃତଦେବାଦି ସାତ ଭଗ୍ନି ଯଥା :— ଧୃତଦେବା, ଶାନ୍ତିଦେବା, ଉପଦେବା, ଶ୍ରୀଦେବା, ଦେବରକ୍ଷିତା, ସହଦେବା ଓ ଦେବକୀ । ଏହି କନ୍ୟାମାନେ ବସୁଦେବଙ୍କୁ ବିବାହ କରିଥିଲେ । ୨୧, ୨୩ ।

ଉଗ୍ରସେନଙ୍କର ପୁତ୍ର ଥିଲେ କଂସ, ସୁନାମା, ନ୍ୟଗ୍ରୋଧ, କଙ୍କ, ଶଙ୍କୁ, ସୁହୂ, ରାଷ୍ଟ୍ରପାଳ, ଧୃଷ୍ଟି ଏବଂ ତୁଷ୍ଟିମାନ୍ । ୨୪ ।

---

ଅବିଦ୍ୟ ତାର ତନୁଜାତ
ପୁନର୍ବସୁ ଯେ ତାର ସୁତ
ତାହାର ପୁତ୍ର କନ୍ୟା ହୋଏ
ଆହୁକ ଆହୁକୀ ବୋଲାଏ
ଦେବକ ଉଗ୍ରସେନ ଦୁଇ
ବସୁରେ ତେଜେ ଦେନି ଭାଇ
ଦେବକ ପୁତ୍ର ଚାରି ଜେନ
ଉପଦେବ ଯେ ଦେବବାନ
ସୁଦେବ ଯେ ଦେବବର୍ଦ୍ଧନ
ଏମନ୍ତେ ଚାରିପୁତ୍ର ନାମ ।୧୯-୨୧

ପୁଣ ହୋଇଲେ କନ୍ୟା ସାତ
ଯେ ନାମ ଜଗତେ ବିଖ୍ୟାତ
କନ୍ୟାଏ ଧୃତଦେବା ଆଦି
ଯାହାର ଯେ ନାମ ସମ୍ପାଦି
ଯେ ଶାନ୍ତିଦେବା ଉପଦେବା
ଶ୍ରୀଦେବା ପୁଣି ସହଦେବା
ଦେବରକ୍ଷିତା ଆଦି ଯେତେ
ସପତ ଦେବକୀ ସଙ୍ଗତେ
ଏ ସାତ ଭଗିନୀଙ୍କ ସର୍ବ
ବିବାହ ହେଲେ ବସୁଦେବ

କଂସ ସୁନାମା ନ୍ୟଗ୍ରୋଧକ
କଙ୍କ ଶଙ୍କୁ ବେନି ବାଳକ
ସୁହୂ ଯେ ଧୃଷ୍ଟି ରାଷ୍ଟ୍ରପାଳ
ତୁଷ୍ଟି ଏ ଉଗ୍ରସେନ ବାଳ
ଆବର ହେଲେ କନ୍ୟା ପାଞ୍ଚ
ସୁନ୍ଦର ସୁରୂପ ସୁସଞ୍ଚ
କଂସା ଯେ କଂସବତୀ କଙ୍କା
ଶୂରଭୂ ଯେ ରାଷ୍ଟ୍ରପାଳକା
ଏ କନ୍ୟା ବର ବେଦମତେ
ବସୁଦେବର ଭାଇ ଯେତେ

କଂସା କଂସବତୀ କଙ୍କା ଶୂରଭୂ ରାଷ୍ଟ୍ରପାଳିକା ।
ଉଗ୍ରସେନଦୁହିତରୋ ବସୁଦେବାନୁଜସ୍ତ୍ରିୟଃ । ୨୫ ।
ଶୂରୋ ବିଦୂରଥାଦାସୀଦ୍‌ଭଜମାନସ୍ତୁ ତତ୍‌ସୁତଃ ।
ଶିନିସ୍ତସ୍ମାତ୍ ସ୍ୱୟଂ ଭୋଜୋ ହୃଦିକସ୍ତତ୍‌ସୁତୋ ମତଃ । ୨୬ ।
ଦେବମୀଢ଼ଃ ଶତଧନୁଃ କୃତବର୍ମ୍ମେତି ତତ୍‌ସୁତାଃ ।
ଦେବମୀଢ଼ସ୍ୟ ଶୂରସ୍ୟ ମାରିଷା ନାମ ପତ୍ନ୍ୟଭୂତ୍ । ୨୭ ।
ତସ୍ୟାଂ ସ ଜନୟାମାସ ଦଶପୁତ୍ରାନକଲ୍ମଷାନ୍ ।
ବସୁଦେବଂ ଦେବଭାଗଂ ଦେବଶ୍ରବସମାନକମ୍ । ୨୮ ।
ସୃଞ୍ଜୟଂ ଶ୍ୟାମକଂ କଙ୍କଂ ଶମୀକଂ ବତ୍‌ସକଂ ବୃକମ୍ ।
ଦେବଦୁନ୍ଦୁଭୟୋ ନେଦୁରାନକା ଯସ୍ୟ ଜନ୍ମନି । ୨୯ ।

---

କଂସା, କଂସବତୀ, କଙ୍କାଶୂରଭୂ, ରାଷ୍ଟ୍ରପାଳିକା ଏମାନେ ଉଗ୍ରସେନଙ୍କର କନ୍ୟା । ଏମାନେ ଦେବଭାଗାଦି ବସୁଦେବଙ୍କ କନିଷ୍ଠ ଭ୍ରାତାମାନଙ୍କର ଭାର୍ଯ୍ୟା ହୋଇଥିଲେ ।୨୫।

ବିଦୁର୍‌ଥଙ୍କର ଶୂର ନାମରେ ଏକପୁତ୍ର ଥିଲେ । ତାହାଙ୍କର ପୁତ୍ର ଭଜମାନ, ତାହାଙ୍କର ଶିନି ନାମରେ ଏକପୁତ୍ର ଥିଲେ । ଶିନିଙ୍କର ପୁତ୍ର ବିଖ୍ୟାତ ଭୋଜ । ତାହାଙ୍କର ପୁତ୍ର ହୃଦିକ ।୨୬।

ହୃଦିକଙ୍କର ପୁତ୍ର ଦେବମୀଢ଼, ଶତଧନୁ ଓ କୃତବର୍ମା । ଦେବମୀଢ଼ଙ୍କର ଶୂର ନାମକ ଏକପୁତ୍ର ଜନ୍ମିଥିଲେ । ତାହାଙ୍କର ପତ୍ନୀଙ୍କର ନାମ ମାରିଷା ।୨୭।

ମାରିଷାଙ୍କର ଗର୍ଭରେ ଦଶଟି ନିଷ୍ପାପ ପୁତ୍ର ଶୂରଙ୍କଠାରୁ ଜନ୍ମିଥିଲେ, ଯଥା:— ବସୁଦେବ, ଦେବଭାଗ, ଦେବଶ୍ରବା, ଆନକ, ସୃଞ୍ଜୟ, ଶ୍ୟାମକ, କଙ୍କ, ଶମିକ ବତ୍ସକ ଓ ବୃକ । ଏମାନଙ୍କ ମଧ୍ୟରୁ ବସୁଦେବଙ୍କ ଜନ୍ମ କାଳରେ ସ୍ୱର୍ଗରୁ ଦେବ ଦୁନ୍ଦୁଭି ଓ ଢକ୍କା ବାଜି ଉଠିଥିଲା । ୨୮, ୨୯ ।

---

ବିବାହ କଲେ ଶୁଭବେଳେ
ଉଚିତେ ଗୃହ କର୍ମ୍ମକଲେ ।୨୪, ୨୫
ବିଦୁରଥର ଶୂର ସୁତ
ଭଜମାନ ତା ସାତର୍ଯ୍ୟ ଜାତ
ତାର କୁମର ନାମ ଶିନି
ତାହାର ସୁତ ଭୋଜ ଘେନି
ହୃଦିକ ତାହାର ନନ୍ଦନ
ତାହାର ତିନିପୁତ୍ର ଜାଣ

ଦେବମୀଢ ଯେ ଶତଧନୁ
ଅବର କୃତବର୍ମ୍ମା ସୂନୁ
ଯେ ଦେବମୀଢ ଶୂର ସୁତ
ତା ପତ୍ନୀ ମାରିଷା ବିଖ୍ୟାତ
ସେ ଦେବମୀଢ ତାର ଗର୍ଭେ
ଦଶ ସନ୍ତତି କଲା ଭବେ
ବସୁଦେବ ଦେବଭାଗକ
ଦେବଶ୍ରବସ ଯେ ଆନକ

ସୃଞ୍ଜୟ ଶ୍ୟାମଙ୍କ ଯେ କଙ୍କ
ଶମୀକ ବତ୍ସକ ଯେ ବୃକ ।୨୭, ୨୮
ବସୁଦେବର ଜନ୍ମକାଳେ
ବାଦ୍ୟ ଶୁଭିଲା ଅନ୍ତରୀକ୍ଷେ
ସ୍ୱର୍ଗେ ଦେବ ଆନକ ଦୁନ୍ଦୁଭି
ବାଜି ଆକାଶ ପୂରି ଶୁଭି
ଯେ ଯେଣୁ ବସୁର ନିଧାନ
ଆନକ-ଦୁନ୍ଦୁଭି ତା ନାମ

ବସୁଦେବଂ ହରେଃ ସ୍ଥାନଂ ବଦନ୍ତ୍ୟାନକଦୁନ୍ଦୁଭିମ୍ ।
ପୃଥା ଚ ଶ୍ରୁତଦେବା ଚ ଶ୍ରୁତକୀର୍ତ୍ତିଃ ଶ୍ରୁତଶ୍ରବାଃ । ୩୦ ।
ରାଜାଧିଦେବୀ ଚୈତେଷାଂ ଭଗିନ୍ୟଃ ପଞ୍ଚ କନ୍ୟକାଃ ।
କୁନ୍ତେଃ ସଖ୍ୟୁଃ ପିତା ଶୂରୋ ହ୍ୟପୁତ୍ରସ୍ୟ ପୃଥାମଦାତ୍ । ୩୧ ।
ସାଽପ ଦୁର୍ବାସସୋ ବିଦ୍ୟାଂ ଦେବହୂତିଂ ପ୍ରତୋଷିତାତ୍ ।
ତସ୍ୟା ବୀର୍ଯ୍ୟପରୀକ୍ଷାର୍ଥମାଜୁହାବ ରବିଂ ଶୁଚିଃ । ୩୨ ।
ତଦୈବୋପାଗତଂ ଦେବଂ ବୀକ୍ଷ୍ୟ ବିସ୍ମିତମାନସା ।
ପ୍ରତ୍ୟୟାର୍ଥଂ ପ୍ରଯୁକ୍ତା ମେ ଯାହି ଦେବ କ୍ଷମସ୍ୱ ମେ । ୩୩ ।
ଅମୋଘଂ ଦେବସନ୍ଦର୍ଶମାଦଧେ ତ୍ୱୟି ଚାତ୍ମଜମ୍ ।
ଯୋନିର୍ଯଥା ନ ଦୁଷ୍ୟେତ କର୍ତ୍ତାହଂ ତେ ସୁମଧ୍ୟମେ । ୩୪ ।

---

ଶ୍ରୀହରି କୃଷ୍ଣ ରୂପରେ ବସୁଦେବ ଗୃହରେ ଅବତୀର୍ଣ୍ଣ ହୋଇଥିଲେ । ତେଣୁ ତାହାଙ୍କୁ ହରିସ୍ଥାନ ବୋଲିଯାଉଥିଲା ଏବଂ ତାଙ୍କ ଜନ୍ମକାଳରେ ସ୍ୱର୍ଗରୁ ଆନକ ଦୁନ୍ଦୁଭି ବାଜି ଉଠିବାରୁ ତାଙ୍କୁ ଆନକ ଦୁନ୍ଦୁଭି ବୋଲିଯାଉଥିଲା । ପୃଥା, ଶ୍ରୁତଦେବା, ଶ୍ରୁତକୀର୍ତ୍ତି, ଶ୍ରୁତଶ୍ରବା, ରାଜାଧିଦେବୀ ଏହି ପାଞ୍ଚୋଟି ବସୁଦେବଙ୍କର ଭଗିନୀ । ଏମାନଙ୍କର ପିତା ଶୂର ତାଙ୍କର ଅପୁତ୍ରକ ସଖା କୁନ୍ତିରାଜଙ୍କ ହସ୍ତରେ ପୃଥାଙ୍କୁ ଅର୍ପଣ କରିଥିଲେ । ୩୦, ୩୧ ।

ପୃଥା ଏକଦା ଦୁର୍ବାସାଙ୍କୁ ଉତ୍ତମ ସେବାରେ ପରିତୁଷ୍ଟ କରି କପରି ଦେବଗଣଙ୍କୁ ଆକର୍ଷଣ କରିପାରିବ ଏହି ବିଦ୍ୟା ପ୍ରାପ୍ତ ହୋଇଥିଲେ । ଏହି ବିଦ୍ୟାର ସତ୍ୟତା ପରୀକ୍ଷା ନିମିତ୍ତ ସେ ଦିନେ ଶୁଚି ପବିତ୍ରା ହୋଇ ସୂର୍ଯ୍ୟଙ୍କୁ ଆହ୍ୱାନ କରିଥିଲେ ।୩୨।

ପୃଥାଙ୍କର ଆହ୍ୱାନମାତ୍ରେ ସୂର୍ଯ୍ୟଦେବ ଆସି ଉପସ୍ଥିତ ହେଲେ । ତାହା ଦେଖି ପୃଥା ବିସ୍ମିତହୋଇ କହିଲେ ହେ ଦେବ ! ମୁଁ ବିଦ୍ୟା ପରୀକ୍ଷା କରୁଥିଲି । ଆପଣ ଫେରିଯାଉନ୍ତୁ; ମୋତେ କ୍ଷମା କରନ୍ତୁ ।୩୩।

ସୂର୍ଯ୍ୟଦେବ କହିଲେ ହେ କ୍ଷୀଣ ମଧ୍ୟମେ ! ଦେବଦର୍ଶନ ନିଷ୍ଫଳ ହୁଏନାହିଁ, ମୁଁ ତୁମ୍ଭ ଗର୍ଭରେ ପୁତ୍ରୋତ୍ପାଦନ କରିବି ! ତୁମ୍ଭର କନ୍ୟାକାଳହେଲେ ମଧ୍ୟ ତୁମ୍ଭର ଯୋନି ଯେପରି ଦୂଷିତ ନ ହୁଏ ମୁଁ ତହିଁର ବ୍ୟବସ୍ଥା କରିବି ।୩୪।

---

ପୁଣ ହୋଇଲେ କନ୍ୟା ପାଞ୍ଚ
ସୁନ୍ଦର ସୁରୂପ ସୁସ୍ୱଚ୍ଛ
ଯେ ପୃଥା ଆଉ ଶ୍ରୁତଦେବା
ଶ୍ରୁତକୀର୍ତ୍ତି ଯେ ଶ୍ରୁତଶ୍ରବା
ରାଜାଧିଦେବୀଙ୍କି ଯେ ଘେନି
ଏ ପାଞ୍ଚ ବସୁଦେବ ଭଗ୍ନୀ
ପୃଥା କନ୍ୟାକୁ ତାର ତାତ
କୁନ୍ତି ରାଜନେ କଲେ ଦତ୍ତ

ଯେଣୁ ତା ନ ଥିଲା ସନ୍ତତ
ଏଣୁ ସେ କନ୍ୟା ନାମ କୁନ୍ତୀ
ଦୁର୍ବାସା ସେବି ସେହି କୁନ୍ତୀ
ଲଭିଲେ ବିଦ୍ୟା ଦେବହୂତି
ସେ ବିଦ୍ୟା ପରୀକ୍ଷାର ଅର୍ଥେ
ସୂର୍ଯ୍ୟଙ୍କୁ ଡାକିଲେ ଏକାନ୍ତେ ।୨୯,୩୨
ସୂର୍ଯ୍ୟ ଆସନ୍ତେ ତତକ୍ଷଣେ
ପୃଥା ଚକିତ ଦେଖି ମନେ

ବୋଇଲା ପରୀକ୍ଷାର ପାଇଁ
ଡାକିଲି କ୍ଷମାକର ତୁହି ।୩୩।
ସୂର୍ଯ୍ୟ ବୋଲନ୍ତି ଶୁଣ ପୃଥା
ଦେବ ଦର୍ଶନ ନୋହେ ବୃଥା
ଅବଶ୍ୟ ତୋ ପୁତ୍ର ହୋଇବ
ତୋତେ ସେ ଦୋଷ ନ ଲଗିବ

ଇତ ତସ୍ୟାଂ ସ ଆଧାୟ ଗର୍ଭଂ ସୂର୍ଯ୍ୟୋ ଦିବଂ ଗତଃ ।
ସଦ୍ୟଃ କୁମାରଃ ସଂଜଜ୍ଞେ ଦ୍ୱିତୀୟ ଇବ ଭାସ୍କରଃ । ୩୫ ।
ତଂ ସା ତ୍ୟଜନ୍ ନଦୀତୋୟେ କୃଚ୍ଛ୍ରାଲ୍ଲୋକସ୍ୟ ବିଭ୍ୟତୀ ।
ପିତାମହସ୍ତାମୁବାହ ପାଣ୍ଡୁର୍ବୈ ସତ୍ୟବିକ୍ରମଃ । ୩୬ ।
ଶ୍ରୁତଦେବାଂ ତୁ କାରୁଷୋ ବୃଦ୍ଧଶର୍ମ୍ମା ସମଗ୍ରହୀତ୍ ।
ଯସ୍ୟାମଭୂଦ୍ଦନ୍ତବକ୍ର ଋଷିଶପ୍ତୋ ଦିତେଃ ସୁତଃ । ୩୭ ।
କୈକେୟୋ ଧୃଷ୍ଟକେତୁଶ୍ଚ ଶ୍ରୁତକୀର୍ତ୍ତିମବିନ୍ଦତ ।
ସନ୍ତର୍ଦ୍ଦନାଦୟସ୍ତସ୍ୟାଂ ପଞ୍ଚାସନ୍ କୈକୟାଃ ସୁତାଃ । ୩୮ ।
ରାଜାଧିଦେବ୍ୟାମାବନ୍ତ୍ୟୌ ଜୟସେନୋଽଜନିଷ୍ଟ ହ ।
ଦମଘୋଷଶ୍ଚେଦିରାଜଃ ଶ୍ରୁତଶ୍ରବସମଗ୍ରହୀତ୍ । ୩୯ ।

---

ସୂର୍ଯ୍ୟ ଏହା କହି ପୃଥାଙ୍କର ଗର୍ଭାଧାନକରି ସୂର୍ଯ୍ୟଲୋକକୁ ଫେରିଗଲେ । ହେ ମହାରାଜ । ଏହି ପୃଥାଙ୍କଠାରୁ ଦ୍ୱିତୀୟ ସୂର୍ଯ୍ୟତୁଲ୍ୟ ଏକପୁତ୍ର ଜନ୍ମିଥିଲା ।୩୫।

ପୃଥା ଲୋକଲଜ୍ଜା ଭୟରେ ଅତି କଷ୍ଟରେ ଏହି କୁମାରକୁ ନଦୀ ଜଳରେ ଭସାଇ ଦେଇଥିଲେ, ହେ ରାଜନ୍ । ସତ୍ୟବିକ୍ରମ ଆପଣଙ୍କର ପିତାମହ ପାଣ୍ଡୁ ଏହି ପୃଥାର ପାଣିଗ୍ରହଣ କରିଥିଲେ ।୩୬।

ଶ୍ରୁତଦେବାଙ୍କ କାରୁଷ ବଂଶୀୟ ବୃଦ୍ଧଶର୍ମା ବିବାହ କରିଥିଲେ । ଏହି ସୁତଦେବାଙ୍କ ଗର୍ଭରେ ଋଷିଙ୍କ ଶାପରେ ଅଭିଶପ୍ତ ଅଶୁଭ ସ୍ୱଭାବଯୁକ୍ତ ଦନ୍ତବକ୍ର ଜନ୍ମଗ୍ରହଣ କରିଥିଲେ ।୩୭।

କେକୟ ବଂଶୀୟ ଧୃଷ୍ଟକେତୁ ଶ୍ରୁତକୀର୍ତ୍ତିଙ୍କୁ ବିବାହ କରିଥିଲେ ଏବଂ ତାହାଙ୍କ ଔରସରେ ଶ୍ରୁତ-କୀର୍ତ୍ତିଙ୍କ ଗର୍ଭରେ ସନ୍ତର୍ଦ୍ଦନାଦି ପାଞ୍ଚିପୁତ୍ର ଜନ୍ମିଥିଲେ ।୩୮।

ଜୟସେନ, ରାଜାଧିଦେବୀଙ୍କ ଗର୍ଭରେ ବିନ୍ଦ ଓ ଅନୁବିନ୍ଦ ନାମକ ଦୁଇପୁତ୍ର ଉତ୍ପାଦନ କରିଥିଲେ । ଚେଦିରାଜ ଦମଘୋଷ ଶ୍ରୁତଶ୍ରବାଙ୍କୁ ଗ୍ରହଣ କରିଥିଲେ ।୩୯।

---

ଏମନ୍ତେ କଲେ ଗର୍ଭାଧାନ
ପୁତ୍ର ହୋଇଲା ତତକ୍ଷଣ ।୩୪,୩୫
ପୃଥା ଶିଶୁକୁ ନିନ୍ଦା ଡରେ
ଭସାଇ ଦେଲା ନଦୀ ଜଳେ
ତାହାକୁ ତୋର ପିତାମହ
ପାଣ୍ଡୁ ଯେ ହୋଇଲେ ବିବାହ ।୩୬
କରୁଷ ବୃଦ୍ଧଧର୍ମ୍ମା ନାମ
ଶ୍ରୁତଦେବାକୁ ବରେ ସମ

ବିବାହ କରି ବେଦ ମତେ
ତା ଗର୍ଭେ ଜନ୍ମିଲେକ ସୁତେ
ତା ଦେଖି ଡରେ ଋଷିଚନ୍ଦ୍ର
ତା ନାମ ହେଲା ଦନ୍ତବକ୍ର ।୩୭।
କୈକେୟ ବଂଶେ ଧୃଷ୍ଟକେତୁ
ସେ ପୁଣି ନିଜ ବଂଶ ହେତୁ
ଶ୍ରୁତକୀର୍ତ୍ତିକି ବିଭା କଲା
ତା ସୁତ ପଞ୍ଚ ଉପୁଜିଲା

ସେ ସୁତ ସନ୍ତର୍ଦ୍ଦନ ଆଦି
ସ୍ୱଭାବେ ସର୍ବଗୁଣେ ସିଦ୍ଧି ।୩୮।
ଆବନ୍ତ୍ୟ ଜୟସେନ ବଳୀ
ରାଜାଧିଦେବୀ ଗର୍ଭେ ହେଲି
ଚେଦି ରାଜନ ଦମଘୋଷ
ଶ୍ରୁତଶ୍ରବାକୁ ବରି ତୋଷ
ତାର କୁମର ଶିଶୁପାଳ
ସେ ସ୍ୱାର ତେଜେ ଅନର୍ଗଳ

ଶିଶୁପାଲଃ ସୁତସ୍ତସ୍ୟାଃ କଥିତସ୍ତସ୍ୟ ସମ୍ଭବଃ ।
ଦେବଭାଗସ୍ୟ କଂସାୟାଂ ଚିତ୍ରକେତୁବୃହଦ୍‌ବଲୌ । ୪୦ ।
କଂସବତ୍ୟାଂ ଦେବଶ୍ରବସଃ ସୁବୀର ଇଷୁମାଂସ୍ତଥା ।
ବକଃ କଙ୍କାତ୍ ତୁ କଙ୍କାୟାଂ ସତ୍ୟଜିତ୍ ପୁରୁଜିତ୍ତଥା । ୪୧ ।
ସୃଞ୍ଜୟୋ ରାଷ୍ଟ୍ରପାଲ୍ୟାଞ୍ଚ ବୃଷଦୁର୍ମର୍ଷଣାଦିକାନ୍ ।
ହରିକେଶହିରଣ୍ୟାକ୍ଷୌ ଶୂରଭୂମ୍ୟାଞ୍ଚ ଶ୍ୟାମକଃ । ୪୨ ।
ମିଶ୍ରକେଶ୍ୟାମପ୍‌ସରସି ବୃକାଦୀନ୍ ବତ୍ସକସ୍ତଥା ।
ତକ୍ଷପୁଷ୍କରଶାଲାଦୀନ୍ ଦୂର୍ବାକ୍ଷ୍ୟାଂ ବୃକ ଆଦଧେ । ୪୩ ।
ସୁମିତ୍ରାର୍ଜ୍ଜୁନପାଲାଦୀନ୍ ସମୀକାତ୍ ତୁ ସୁଦାମନୀ ।
ଆନକଃ କର୍ଣ୍ଣିକାୟାଂ ବୈ ଋତଧାମାଜୟାବପି । ୪୪ ।

---

ଶ୍ରୁତଶ୍ରବାଙ୍କର ପୁତ୍ର ଶିଶୁପାଳ, ଏହା ପୂର୍ବରୁ କହିଅଛୁ । ଦେବଭାଗଙ୍କ ଔରସରେ କଂସାଗର୍ଭରେ ଚିତ୍ରକେତୁ ଓ ବୃହଦ୍‌ବଳ ନାମରେ ଦୁଇପୁତ୍ର ଜାତ ହୋଇଥିଲେ । ୪୦ ।

ଦେବଶ୍ରବା ଓ କଂସାବତୀଙ୍କଠାରୁ ସୁବୀର, ଇଷୁମାନ୍ ଏବଂ କଙ୍କାରଙ୍କ ଗର୍ଭରୁ କଙ୍କଙ୍କ ଔରସରେ ବକ, ସତ୍ୟଜିତ ଓ ପୁରୁଜିତ ଜନ୍ମି ଥିଲେ ।୪୧।

ସୃଞ୍ଜୟ ରାଷ୍ଟ୍ରପାଳୀଙ୍କଠାରେ ବୃଷ ଓ ଦୁର୍ମର୍ଷଣ ପ୍ରଭୃତି ପୁତ୍ର ଉତ୍ପାଦନ କରିଥିଲେ । ଶ୍ୟାମକ ଶୂରଭୂମିଙ୍କଠାରେ ହରିକେଶ ଓ ହିରଣ୍ୟାକ୍ଷ ନାମକ ପୁତ୍ର ଦ୍ୱୟ ଉତ୍ପାଦନ କରିଥିଲେ ।୪୨।

ବତ୍ସକ ମିଶ୍ରକେଶୀ ନାମ୍ନୀ ଅପ୍‌ସରା ଗର୍ଭରେ ବୃକାଦି ଏବଂ ବୃକ ଦୂର୍ବାକ୍ଷୀଙ୍କ ଗର୍ଭରେ ତକ୍ଷ ପୁଷ୍କରଶାଳାଦି ସନ୍ତାନ ଉତ୍ପାଦନ କରିଥିଲେ ।୪୩।

ସୁଦାମନୀ ସମୀକଙ୍କଠାରୁ ସୁମିତ୍ର ଓ ଅର୍ଜ୍ଜୁନପାଳାଦି ପୁତ୍ର ଓ ଆନକ, କର୍ଣ୍ଣିକାଙ୍କଠାରୁ ଋତଧାମା ଓ ଜୟ ନାମକ ଦୁଇପୁତ୍ର ଜାତ ହୋଇଥିଲେ ।୪୪।

---

ତାହାର କଥା ତୋତେ ଭବେ
ମୁଁ ପୁଣି କହିଅଛୁ ପୂର୍ବେ
ଦେବଭାଗର କଂସା ପତ୍ନୀ
ତା ଗର୍ଭେ ଜାତ ସୁତ ବେନି
ଚିତ୍ରକେତୁ ଯେ ବୃହଦ୍‌ବଳ
ଦେବଶ୍ରବାର ପୁତ୍ର ଦୁଇ
ସୁବୀର ଇଷୁମାନ ହୋଇ
କଙ୍କର ପୁତ୍ର ସତ୍ୟଜିତ
ବକ ଅବର ପୁରୁଜିତ
ସୃଞ୍ଜୟ ପୁତ୍ର ବେନି ହୋଏ
ବୃଷ ଦୁର୍ମର୍ଷଣ ତନୟେ ।୪୧।
ହରିକେଶ ଯେ ହିରଣ୍ୟାକ୍ଷ
ଶ୍ୟାମକଙ୍କ ସୁତ ଯେ ପ୍ରତ୍ୟକ୍ଷ
ବତ୍ସକ ମିଶ୍ରକେଶୀ ଗର୍ଭେ
ବୃକାଦି ସନ୍ତାନ ସମ୍ଭବେ ।୪୨।
ତକ୍ଷ ପୁଷ୍କର ମାଳା ଆଦି
ବୃକର ସନ୍ତାନ ପ୍ରସିଦ୍ଧି
ସମୀକ ପୁତ୍ର ଯେ ସୁମିତ୍ର
ଅର୍ଜ୍ଜୁନପାଳ ଆଦି ପୁତ୍ର
ଋତଧାମା ଯେ ଆଉ ଜୟ
ଜାଣ ତୁ ଆନକ ତନୟ ।୪୩-୪୪।

ତେତେବେଳେ ଜନ୍ମଗଲେ ।୩୯,୪୦

ପୌରବୀ ରୋହିଣୀ ଭଦ୍ରା ମଦିରା ରୋଚନା ଇଳା ।
ଦେବକୀ ପ୍ରମୁଖାଶ୍ଚାସନ୍ ପତ୍ନ୍ୟ ଆନକଦୁନ୍ଦୁଭେଃ । ୪୫ ।
ବଳଂ ଗଦଂ ସାରଣଞ୍ଚ ଦୁର୍ମ୍ମଦଂ ବିପୁଳଂ ଧ୍ରୁବମ୍ ।
ବସୁଦେବସ୍ତୁ ରୋହିଣ୍ୟାଂ କୃତାଦୀନୁଦପାଦୟତ୍ । ୪୬ ।
ସୁଭଦ୍ରୋ ଭଦ୍ରବାହୁଶ୍ଚ ଦୁର୍ମ୍ମଦୋ ଭଦ୍ର ଏବ ଚ ।
ପୌରବ୍ୟାସ୍ତନୟା ହ୍ୟେତେ ଭୂତାଦ୍ୟା ଦ୍ୱାଦଶାଭବନ୍ । ୪୭ ।
ନନ୍ଦୋପନନ୍ଦକୃତକଶୂରାଦ୍ୟା ମଦିରାତ୍ମଜାଃ ।
କୌଶଲ୍ୟା କେଶିନଂ ତ୍ୱେକମସୂତ କୁଳନନ୍ଦନମ୍ । ୪୮
ରୋଚନାୟାମତୋ ଜାତା ହସ୍ତହେମାଙ୍ଗଦାଦୟଃ ।
ଇଳାୟାମୁରୁବଲ୍କାଦୀନ୍ ଯଦୁମୁଖ୍ୟାନଜୀଜନତ୍ । ୪୯ ।

---

ହେ ରାଜନ୍ ! ବସୁଦେବଙ୍କର ଦେବକୀ, ପୌରବୀ, ରୋହିଣୀ, ଭଦ୍ରା, ମଦିରା, ରୋଚନା ଏବଂ ଇଳାନାମ୍ନୀ ପତ୍ନୀ ଥିଲେ ।୪୫।

ରୋହିଣୀ ଗର୍ଭରେ ବସୁଦେବଙ୍କର ବଳ, ଗଦ, ସାରଣ, ଦୁର୍ମଦ, ବିପୁଳ, ଧ୍ରୁବ ଏବଂ କୃତାଦି ବହୁ ପୁତ୍ର ଜନ୍ମିଥିଲେ ।୪୬।

ବସୁଦେବଙ୍କଠାରୁ ପୌରବୀ ଗର୍ଭରେ ସୁଭଦ୍ର, ଭଦ୍ରବାହୁ, ଦୁର୍ମଦ, ଭଦ୍ର ଏବଂ ଭୂତାଦି ଦ୍ୱାଦଶ ପୁତ୍ର ଜନ୍ମିଥିଲେ ।୪୭।

ମଦିରାଙ୍କର ନନ୍ଦ, ଉପନନ୍ଦ, କୃତକ ସୂରାଦି ବହୁପୁତ୍ର ଜନ୍ମିଥିଲେ । କିନ୍ତୁ ଭଦ୍ରା ବଂଶର ଗୌରବ ସ୍ୱରୂପ କେଶୀ ଏକ ମାତ୍ର ପୁତ୍ର ଜନ୍ମ କରିଥିଲେ ।୪୮।

ବସୁଦେବଙ୍କର ରୋଚନାଠାରୁ ହସ୍ତ, ଓ ହେମାଙ୍ଗାଦି ବହୁପୁତ୍ର ଜନ୍ମିଥିଲେ ଏବଂ ବସୁଦେବ ଇଳା ଗର୍ଭରେ ଉରୁବଲ୍କାଦି ଶ୍ରେଷ୍ଠ ଯଦୁବଂଶୀୟମାନେ ଜନ୍ମିଥିଲେ ।୪୯।

---

ବସୁଦେବର ଯେତେ ନାରୀ
ଶୁଣ ସୁମନେ ଦଣ୍ଡଧାରୀ
ପୌରବୀ ରୋହିଣୀ ରୋଚନା
ମଦିରା ଭଦ୍ରା ଇଳା କନ୍ୟା
ଦେବକୀ ଆଦି ବହୁ ନାରୀ
ସେ ବସୁଦେବ ବିଭା କରି ।୪୫।

ରୋହିଣୀ ଗର୍ଭେ ବସୁଦେବ
ଜନ୍ମାଏ ପୁତ୍ର ବଳଦେବ
ଧ୍ରୁବ ସାରଣ ଆଉ ଗଦ
ବିପୁଳ କୃତ ଯେ ଦୁର୍ମ୍ମଦ
ପୌରବୀ ଗର୍ଭରେ ସୁଭଦ୍ର
ଦୁର୍ମ୍ମଦ ଭଦ୍ରବାହୁ ଭଦ୍ର

ମଦିରା ଗର୍ଭେ ଉପାନନ୍ଦ
କୃତକ ଶୂର ପୁଣି ନନ୍ଦ
କୌଶଲ୍ୟା ଗର୍ଭେ କେଶୀ ସୁତ
ରୋଚନା ହେମାଙ୍ଗଦ ହସ୍ତ
ଉରୁ ବଲ୍କଳ ଇଳା ଗର୍ଭେ
ବସ୍ତ୍ରଷ୍ଠ ଧୃତାଦେବୀ ଗର୍ଭେ

ବପୃଷ୍ଟୋ ଧୃତଦେବାୟାମେକ ଆନକଦୁନ୍ଦୁଭେଃ ।
ଶାନ୍ତି ଦେବାତ୍ମଜା ରାଜନ୍ ପ୍ରଶମପ୍ରଥିତାଦୟଃ । ୫୦ ।
ରାଜନ୍ୟକଲ୍ପବର୍ଷାଦ୍ୟା ଉପଦେବାସୁତା ଦଶ ।
ବସୁହଂସସୁବଂଶାଦ୍ୟା ଶ୍ରୀଦେବାୟାସ୍ତୁ ଷଟ୍ ସୁତାଃ । ୫୧ ।
ଦେବରକ୍ଷିତୟା ଲବ୍ଧା ନବ ଚାତ୍ର ଗଦାଦୟଃ ।
ବସୁଦେବଃ ସୁତାନଷ୍ଟାବାଦଧେ ସହଦେବୟା । ୫୨ ।
ପ୍ରବରଶ୍ରୁତମୁଖ୍ୟାଂଶ୍ଚ ସାକ୍ଷାଦ୍ଧର୍ମୋ ବସୂନିବ ।
ବସୁଦେବସ୍ତୁ ଦେବକ୍ୟାମଷ୍ଟୌ ପୁତ୍ରାନଜୀଜନତ୍ । ୫୩ ।
କୀର୍ତ୍ତିମନ୍ତଂ ସୁଷେଣଞ୍ଚ ଭଦ୍ରସେନମୁଦାରଧୀଃ ।
ଋଜୁଂ ସଂମ୍ମର୍ଦ୍ଦନଂ ଭଦ୍ରଂ ସଙ୍କର୍ଷଣମହୀଶ୍ୱରମ୍ । ୫୪ ।
ଅଷ୍ଟମସ୍ତୁ ତୟୋରାସୀତ୍ ସ୍ୱୟମେବ ହରିଃ କିଲ ।
ସୁଭଦ୍ରା ଚ ମହାଭାଗା ତବ ରାଜନ୍ ପିତାମହୀ । ୫୫ ।

---

ଧୃତଦେବାଙ୍କର ବସୁଦେବଙ୍କଠାରୁ ବପୃଷ୍ଟ ନାମରେ ଗୋଟିଏ ପୁତ୍ର ଜନ୍ମିଥିଲେ । ହେ ରାଜନ୍ ! ଶାନ୍ତିଦେବାଙ୍କର ପ୍ରଶମ ଓ ପ୍ରଥିତାଦି ବହୁପୁତ୍ର ହୋଇଥିଲେ ।୫୦।

ଉପଦେବାଙ୍କର ରାଜନ୍ୟ, କଳ୍ପ, ବର୍ଷାଦି ଦଶପୁତ୍ର ଏବଂ ବସୁ ହଂସ ଏବଂ ସୁବଂଶ ପ୍ରଭୃତି ଶ୍ରୀ ଦେବାଙ୍କର ଛଅପୁତ୍ର ଜନ୍ମ ହୋଇଥିଲେ ।୫୧।

ଯଦୁବଂଶରେ ଦେବରକ୍ଷିତା ବସୁଦେବଙ୍କଠାରୁ ଗଦାଦି ନଅପୁତ୍ର ଜନ୍ମି ଥିଲେ । ସହଦେବାଙ୍କର ଗର୍ଭରେ ପ୍ରବର, ଶ୍ରୁତମୁଖ୍ୟ ପ୍ରଭୃତି ପୁତ୍ରମାନେ ଜାତ ହୋଇଥିଲେ । ସାକ୍ଷାତ୍ ଧର୍ମ ଯେପରି ଅଷ୍ଟବସୁଙ୍କୁ ଉତ୍ପାଦନ କରିଥିଲେ ସେହିପରି ବସୁଦେବ ଦେବକୀ ଗର୍ଭରେ କୀର୍ତ୍ତିମନ୍ତ ସୁଷେଣ, ଭଦ୍ରସେନ, ଋଜୁ, ସମ୍ମର୍ଦ୍ଦନ, ଭଦ୍ର, ନାଗରାଜାବତାର, ବଳରାମ ଓ କୃଷ୍ଣ ଏହି ଅଷ୍ଟପୁତ୍ର ଉତ୍ପାଦନ କରିଥିଲେ । ଦେବକୀ ବସୁଦେବଙ୍କର ଏହି ଆଠପୁତ୍ରମଧ୍ୟରୁ ସ୍ୱୟଂ ଶ୍ରୀକୃଷ୍ଣ ଅଷ୍ଟମପୁତ୍ର । ହେ ରାଜନ୍ ! ମହାଭାଗା ସୁଭଦ୍ରା ତୁମ୍ଭର ପିତାମହୀ । ୫୨, ୫୫ ।

---

ଶାନ୍ତିଦେବାର ଗର୍ଭେ ସୁତ
ପ୍ରଶମ ଆବର ପ୍ରଜାତ ।୪୭-୫୦।
ରାଜନ୍ୟ କଲ୍ପ ଆଉ ବର୍ଷ
ଉପଦେବାର ପୁତ୍ର ଦଶ
ଶ୍ରୀଦେବାଗର୍ଭେ ବସୁ ହଂସ
ଛ ପୁତ୍ର ଘେନିଣ ସୁବଂଶ

ଦେବରକ୍ଷିତାର ନନ୍ଦନ
ଗଦାଦି ନବଗୋଟି ଜାଣ
ସହଦେବାର ଗର୍ଭେ ଅଷ୍ଟ
ଶ୍ରୁତପ୍ରବର ଯହିଁ ଜ୍ୟେଷ୍ଠ
ଦେବକୀ ଗର୍ଭେ ବସୁଦେବ
କରିଲେ ଅଷ୍ଟ ପୁତ୍ର ଲାଭ ।୫୧-୫୩।

କୀର୍ତ୍ତିମନ୍ତ ଆଉ ସୁଷେଣ
ଋଜୁ ଆବର ଭଦ୍ର ସେନ
ଭଦ୍ର ଆବର ସମର୍ଦ୍ଦନ
ସପ୍ତମ ପୁତ୍ର ସଙ୍କର୍ଷଣ
ଅଷ୍ଟମେ କୃଷ୍ଣ ଜାତ ହୋଇ
କନ୍ୟାଏ ତୋର ପିତାମହୀ ।୫୪,୫୫

ଯଦା ଯଦା ହି ଧର୍ମ୍ମସ୍ୟ କ୍ଷୟୋ ବୃଦ୍ଧିଶ୍ଚ ପାପ୍ମନଃ ।
ତଦା ତୁ ଭଗବାନୀଶ ଆତ୍ମାନଂ ସୃଜତେ ହରିଃ । ୫୬ ।
ନହ୍ୟସ୍ୟ ଜନ୍ମନୋ ହେତୁଃ କର୍ମ୍ମଣୋ ବା ମହୀପତେ ।
ଆତ୍ମମାୟାଂ ବିନେଶସ୍ୟ ପରସ୍ୟ ଦ୍ରଷ୍ଟୁରାତ୍ମନଃ । ୫୭ ।
ଯନ୍ମାୟାଚେଷ୍ଟିତଂ ପୁଂସଃ ସ୍ଥିତ୍ୟୁତ୍ପତ୍ତ୍ୟପ୍ୟୟାୟ ହି ।
ଅନୁଗ୍ରହସ୍ତନ୍ନିବୃତ୍ତେରାତ୍ମଲାଭାୟ ଚେଷ୍ୟତେ । ୫୮ ।
ଅକ୍ଷୌହିଣୀନାଂ ପତିଭିରସୁରୈର୍ନୃପଲାଞ୍ଛନୈଃ ।
ଭୁବ ଆକ୍ରମ୍ୟମାଣାୟା ଅଭାରାୟ କୃତୋଦ୍ୟମଃ । ୫୯ ।
କର୍ମ୍ମାଣ୍ୟପରମେୟାନି ମନସାପି ସୁରେଶ୍ୱରୈଃ ।
ସହସଙ୍କର୍ଷଣଶ୍ଚକ୍ରେ ଭଗବାନ୍ ମଧୁସୂଦନଃ । ୬୦ ।

---

ଯେତେବେଳେ ଧର୍ମର କ୍ଷୟ ହୁଏ ଏବଂ ପାପବୃଦ୍ଧି ହୁଏ ସେତେବେଳେ ସ୍ୱୟଂ ଭଗବାନ୍ ମାନବ ଦେହରେ ଅବତୀର୍ଣ୍ଣ ହୁଅନ୍ତି ।୫୬। ❋

ହେ ରାଜନ ! ସେହି ମାୟାନିୟନ୍ତା ପୂର୍ଣ୍ଣ ପରଂବ୍ରହ୍ମ ଭଗବାନ୍ ଶ୍ରୀହରି କେବଳ ମାତ୍ର ମାୟା-ବିକାଶ ନିମିତ୍ତ ଜନ୍ମ ଓ କର୍ମ କରିଥାନ୍ତି ।୫୭।

ତଥାପି ତାହାଙ୍କର ଯେ ମାୟାବିକାଶ ତାହା ଜୀବପ୍ରତି ଅନୁଗ୍ରହ ମାତ୍ର, କାରଣ ତାହାଙ୍କର ମାନବଲୀଳାରେ ସୃଷ୍ଟି ସ୍ଥିତି ସଂହାର ବୃତ୍ତି ଜୀବଗଣଙ୍କର ମୋକ୍ଷର କାରଣ ହୋଇଥାଏ ।୫୮।

ରାଜଲକ୍ଷଣଯୁକ୍ତ ଅକ୍ଷୌହିଣୀ ସୈନ୍ୟାଧୀଶ୍ୱର ବହୁ ଅସୁର କର୍ତ୍ତୃକ ପୃଥିବୀ ଭାରକ୍ରାନ୍ତ ହେବାରୁ ସେ ଭାରହରଣ ନିମିତ୍ତ ଅବତାର ଗ୍ରହଣ କରିଥିଲେ ।୫୯ ।

ଦେବତାମାନେ ମନେ ମନେ ଯେଉଁ ସମସ୍ତ କାର୍ଯ୍ୟ ମୀମାଂସା କରି ନ ପାରନ୍ତି ଭଗବାନ୍ ଶ୍ରୀହରି ନାଗରାଜ ସଙ୍କର୍ଷଣଙ୍କ ସହିତ ତାହା ସହଜରେ ସମ୍ପାଦନ କରନ୍ତି ।୬୦।

---

ଧର୍ମ୍ମର କ୍ଷୟ ଯେତେବେଳେ
ପାପର ଭରେ ମହୀତଳେ
ସେ ହରି ନର ଦେହ ଧରି
ସ୍ୱମାୟା ବଳେ ଅବତରି

ଜଗତ ହିତେ ମାୟାଧର
ଲୀଳାବିହାରେ ହରେ ଭର ।୫୬-୫୭
ବସୁଦେବର ଘରେ ଏବେ
ସଙ୍ଗତେ ଘେନି ବଳଦେବେ

ଅନେକ ଅକ୍ଷୌହିଣୀ ପତି
ଅସୁର ପ୍ରାୟ ଯେ ନୃପତି
ତାହାଙ୍କୁ ସଂହାରିଲେ ବଳେ
ଯଶ ବିସ୍ତାରି ମହୀତଳେ

---

❋ ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ॥
( ଶ୍ରୀ ମଦ୍ଭଗବଦ୍ଗୀତା )

କଲୌ ଜନିଷ୍ୟମାଣାନାଂ ଦୁଃଖଶୋକତମୋନୁଦମ୍ ।
ଅନୁଗ୍ରହାୟ ଭକ୍ତାନାଂ ସୁପୁଣ୍ୟଂ ବ୍ୟତନୋଦ୍ୟଶଃ । ୭୧ ।
ଯସ୍ମିନ୍ ସତ୍କର୍ଣ୍ଣପୀୟୂଷେ ଯଶସ୍ତୀର୍ଥବରେ ସକୃତ୍ ।
ଶ୍ରୋତ୍ରାଞ୍ଜଲିରୁପସ୍ପୃଶ୍ୟ ଧୁନୁତେ କର୍ମ୍ମବାସନାମ୍ । ୭୨ ।
ଭୋଜବୃଷ୍ଣ୍ୟନ୍ଧକମଧୁଶୂରସେନଦଶାର୍ହକୈଃ ।
ଶ୍ଲାଘନୀୟେହିତଃଶଶ୍ୱତ୍ କୁରୁସୃଞ୍ଜୟପାଣ୍ଡୁଭିଃ । ୭୩ ।
ସ୍ନିଗ୍ଧସ୍ମିତେକ୍ଷିତୋଦାରୈର୍ବାକ୍ୟୈର୍ବିକ୍ରମଲୀଳୟା ।
ନୃଲୋକଂ ରମୟାମାସ ମୂର୍ତ୍ତ୍ୟା ସର୍ବାଙ୍ଗରମ୍ୟୟା । ୭୪ ।
ଯସ୍ୟାନନଂ ମକରକୁଣ୍ଡଳଚାରୁକର୍ଣ୍ଣ-
ଭ୍ରାଜଂକପୋଳସୁଭଗଂ ସବିଳାସହାସମ୍ ।
ନିତ୍ୟୋତ୍ସବଂ ନ ତତୃପୁର୍ଦୃଶିଭିଃ ପିବନ୍ତ୍ୟୋ,
ନାର୍ଯ୍ୟୋ ନରାଶ୍ଚ ମୁଦିତାଃ କୁପିତା ନିମେଶ୍ଚ । ୭୫ ।

କଳିରେ ଯେଉଁ ଭକ୍ତମାନେ ଜନ୍ମଗ୍ରହଣ କରିବେ ସେମାନଙ୍କ ପ୍ରତି ଅନୁଗ୍ରହ ଦେଖାଇବା ଲାଗି ଭଗବାନ୍ ସେମାନଙ୍କର ଦୁଃଖ ଶୋକ ଜନିତ ଅନ୍ଧକାର ନିବାରଣ ନିମନ୍ତେ ନିର୍ମଳ ଯଶ ବିସ୍ତାର କରିଥିଲେ ।୭୧।

ସେହି ଯଶ ସଜ୍ଜନଗଣଙ୍କର କର୍ଣ୍ଣାମୃତ ତୁଲ୍ୟ । ଯେଉଁ ପୁରୁଷ ଏହି କର୍ଣ୍ଣରୂପ ଅଞ୍ଜଳିଦ୍ୱାରା ଥରେ ମାତ୍ର ଏହା ପାନ କରିଥାଏ ସେ ଅଖିଳ କର୍ମବାସନା ପରିତ୍ୟାଗ କରିବାକୁ ସମର୍ଥ ହୁଏ ।୭୨।

ଭୋଜ, ବୃଷ୍ଣି, ଅନ୍ଧକ, ମଧୁ, ଶୂରସେନ, ଦଶାର୍ହ, କୁରୁ, ସୃଞ୍ଜୟ । ପାଣ୍ଡୁବଂଶୀୟମାନେ ସର୍ବଦା ତାହାଙ୍କ କାର୍ଯ୍ୟର ପ୍ରଶଂସା କରୁଥିଲେ । ଶ୍ରୀକୃଷ୍ଣ ସ୍ନିଗ୍ଧହାସ୍ୟ ଯୁକ୍ତ ସସ୍ନେହ ଉଦାର ବାକ୍ୟରେ ବୀରଲୀଳା ଓ ସର୍ବାଙ୍ଗ ସୁନ୍ଦର ମୂର୍ତ୍ତିରେ ନରଲୋକରେ ଆନନ୍ଦ ବିତରଣ କରୁଥିଲେ । ୭୩, ୭୪ ।

ତାହାଙ୍କର କର୍ଣ୍ଣରେ ମନୋଜ୍ଞ ମକରକୁଣ୍ଡଳ ବିଲମ୍ବିତ ହୋଇ ଗଣ୍ଡସ୍ଥଳକୁ ନିରନ୍ତର ଶୋଭା-ଯୁକ୍ତ କରୁଥିଲା । ବିଳାସ ସମନ୍ୱିତ ହାସ୍ୟ ତାହାଙ୍କ ମୁଖରେ ପ୍ରସ୍ଫୁଟିତ ହେଉଥିଲା । ତାହାଙ୍କର ଏହି ଆନନ୍ଦମୟ ବଦନ ସନ୍ତୁଷ୍ଟରେ ଅବଲୋକନ କରି ନରନାରୀଗଣ ପ୍ରମୁଦିତ ହେଉଥିଲେ । କିନ୍ତୁ ନୟନର ନିମେଷ ଓ ଉନ୍ମେଷ ସମୟରେ କ୍ଷଣକାଳ ତାହାଙ୍କୁ ଦେଖି ନ ପାରିଲେ ସେହି ନିମେଷ ଓ ଉନ୍ମେଷ କର୍ତ୍ତା ନିମିଙ୍କ ପ୍ରତି କୁପିତ ହେଉଥିଲେ ।୭୫।

ସେ ଯଶ କର୍ଣ୍ଣ ରନ୍ଧ୍ରେ ପିଇ
କର୍ମ୍ମ ବାସନା ଦୂରେ ଯାଇ
ଭକ୍ତେ ଯା ଗାଇ କଳିକାଳେ
ଦୁର ଦୁତର ଯିବେ ହେଳେ ।୬୮-୭୧
କୁରୁ ସୃଞ୍ଜୟ ଆଦି ବଂଶ
ଆଦରେ ଗାଉନ୍ତି ତା ଯଶ
ତା କୃପା କଟାକ୍ଷ ବହିଁଣୀ
ମିଶା ଉଦାର ମଞ୍ଜୁ ବାଣୀ

ଗଣ୍ଡେ କୁଣ୍ଡଳ ଅତି ହାସ
ମୁଖେ ମଧୁର ମନ୍ଦହାସ
ନେତ୍ର ଉତ୍ସବ ତାର ଶୋଭା
ଲୋକ ଲୋଚନ ମନ ଲୋଭା
ତୃପତ ନୋହେ ଚାହିଁ ଚାହିଁ
ପଲକ ପଡ଼େ ରହି ରହି
ଅଧିକ କି ବୋଲିବା ଆଉ
ଯେ ରୂପ ଦେଖି ଦେବାସୁର

ପଶୁ ମନୁଷ୍ୟ ଆଦି ଯେତେ
ଶରୀର ଧରି ଏ ଜଗତେ
କୀଟ ପତଙ୍ଗ ଆଦି କରି
ଯେ ରୂପ ଦେଖି ଗଲେ ତରି
ତାର ମହିମା କେବା କହି
ପାରିବ ନରଦେହ ବହି ।୭୨-୭୫

ଜାତୋ ଗତଃ ପିତୃଗୃହାଦ୍ ବ୍ରଜମେଧିତାର୍ଥୋ—
ହତ୍ୱା ରିପୂନ୍ ସୁତଶତାନି କୃତୋରୁଦାରଃ ।
ଉତ୍ପାଦ୍ୟ ତେଷୁ ପୁରୁଷଃ କ୍ରତୁଭିଃ ସମୀଜେ—
ଆତ୍ମାନମାତ୍ମନିଗମଂ ପ୍ରଥୟନ୍ ଜନେଷୁ । ୬୬ ।
ପୃଥ୍ୱ୍ୟାଃ ସ ବୈ ଗୁରୁଭରଂ କ୍ଷପୟନ୍ କୁରୂଣା—
ମନ୍ତଃ ସମୁତ୍ଥକଲିନା ଯୁଧି ଭୂପଚମ୍ୱଃ ।
ଦୃଷ୍ଟ୍ୱା ବିଧୂୟ ବିଜୟେ ଜୟମୁଦ୍ୱିଘୋଷ୍ୟ—
ପ୍ରୋଚ୍ୟୋଦ୍ଧବାୟ ଚ ପରଂ ସମଗାତ୍ ସ୍ୱଧାମ ।୬୭।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ନବମସ୍କନ୍ଧେ ଯଦୁବଂଶକୀର୍ତ୍ତନଂ ନାମ ଚତୁର୍ବିଂଶୋଽଧ୍ୟାୟଃ ।

---

ସେ ଜନ୍ମିବାମାତ୍ରେ ବ୍ରଜବାସୀଙ୍କର ହିତାର୍ଥେ ବସୁଦେବଙ୍କ ଭବନରୁ ବ୍ରଜକୁ ଗମନ କରିଥିଲେ ; ଯଥାକାଳରେ ବହୁଦାର ସଂଗ୍ରହ କରି ସେହି ନାରୀମାନଙ୍କଠାରେ ଶତପୁତ୍ର ଉତ୍ପାଦନ କରିଥିଲେ ଏବଂ ବହୁ ରିପୁବଧ କରି ଜ୍ଞାନ ଓ ବେଦମାର୍ଗ ବିସ୍ତାର ନିମିତ୍ତ ବହୁଯଜ୍ଞ ସମ୍ପାଦନ କରି ଦେବତାମାନଙ୍କର ସନ୍ତୋଷ ବିଧାନ କରିଥିଲେ ।୬୬।

ସେ ଦୁର୍ଯ୍ୟୋଧନାଦିଙ୍କର ଅନ୍ତଃକରଣରେ ଜାଗରୂକ କଳହକୁ ଅବଲମ୍ବନ କରି ପୃଥିବୀର ଗୁରୁଭାର ହରଣ କରିବା ଉଦ୍ଦେଶ୍ୟରେ ଯୁଦ୍ଧକ୍ଷେତ୍ରରେ ଦୃଷ୍ଟିଦ୍ୱାରା ଶତ୍ରୁସୈନ୍ୟ ସଂହାର କରିଥିଲେ । ଅର୍ଜ୍ଜୁନଙ୍କର ଜୟ ଘୋଷଣା କରିଥିଲେ ଏବଂ ଉଦ୍ଧବଙ୍କ ପ୍ରତି ପ୍ରକୃଷ୍ଟ ପରମାତ୍ମଜ୍ଞାନ ଉପଦେଶ ପ୍ରଦାନ କରି ବୈକୁଣ୍ଠ ଧାମକୁ ଗମନ କରିଥିଲେ । ୬୭ ।

---

ସେ ବନ୍ଦୀଘରେ ନିଜ ରୂପେ
ଜନ୍ମି ଗୁପତେ ଗଲେ ଗୋପେ
ରିପୁ ସଂହାରି ବଢି ବ୍ରଜେ
ମାରି ମଥୁରା କଂସ ରାଜେ
ଦ୍ୱାରକାପୁରେ ବାସ କରି
ବିବାହ କରି ବହୁ ନାରୀ
ଜନ୍ମାଇ ଅସଂଖ୍ୟ ନନ୍ଦନ
ଅନେକ କରି ଯଜ୍ଞ ମାନ
ଲୋକଙ୍କୁ ଦେଇ ଯଜ୍ଞ ଶିକ୍ଷା
ନିଗମ ମାର୍ଗ କଲେ ରକ୍ଷା ।୬୬।
କୁରୁ ପାଣ୍ଡବ ମଧ୍ୟେ କଳି
ଲଗାଇ ବହୁ ସୈନ୍ୟ ମାରି
ଧରଣୀ ଭାର ଅପହରି
ଅର୍ଜ୍ଜୁନେ ଦେଇ ଜୟ ଶିରୀ
ଉଦ୍ଧବେ ଦେଇ ଆତ୍ମଜ୍ଞାନ
ଚଳିଲେ ଆପଣା ଭୁବନ । ୬୭ ।
ବୋଲଇ ବିପ୍ର ଜଗନ୍ନାଥ
ନବମେ ବଂଶାନୁଚରିତ
ସୁଜନ ଜନ ଏହା ଶୁଣି
ଭକତି ହୃଦେ ପରମାଣି
ଏ ଭବଜଳ ତରି ଯିବ
ଯାହା ନ ଲଭେ ବ୍ରହ୍ମା ଶିବ ।

ସମାପ୍ତ ।



କଟକ ଅରୁଣୋଦୟ ପ୍ରେସରେ ପ୍ରିଣ୍ଟର ଚୌଧୁରୀ ଶ୍ରୀ ମଧୁସୂଦନ ମହାପାତ୍ରଙ୍କ ଦ୍ୱାରା ମୁଦ୍ରିତ

